# ନିଗମ-ତତ୍ତ୍ୱ



ସଂପାଦକ

ଶ୍ରୀ ଦୁର୍ଗାଚରଣ ମହାନ୍ତି

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ,
ତ୍ୱମେବ ସର୍ବଂ ମମ ଦେବଦେବ ॥

**ଯେ**ତେବେଳେ ଯେଉଁଭାବର ପ୍ରଚାର ହେବା ଆବଶ୍ୟକ, ସେତେବେଳେ ଜୀବଭିତରେ ସେ ସେହିପରି ପ୍ରେରଣା ଜାଗ୍ରତ କରାଇଦିଅନ୍ତି । ସେହି ପ୍ରେରଣା ବଳରେ ଜୀବ ନୂତନ ସତ୍ୟ ଆବିଷ୍କାର କରେ । ମୂଳରେ ସେ ବିଦ୍ୟମାନ; ଜୀବ ନିମିତ୍ତ ମାତ୍ର ।

—**ଶ୍ରୀଶ୍ରୀ ଠାକୁର**

**ବ**ର୍ତ୍ତମାନ ଜଗତରେ ବୈଜ୍ଞାନିକତତ୍ତ୍ୱ ଆବିଷ୍କାର ପାଇଁ ଧାଁ-ଦଉଡ଼ ଲାଗିଛି—ଏହା ମଧ୍ୟ ତାଙ୍କରି ଇଚ୍ଛା । ତାଙ୍କ ଅନନ୍ତ ଜ୍ଞାନରୁ ଛିଡ଼ିକି ପଡ଼ିଥିବା ଟୋପିଏ ମାତ୍ର କଣା ସେ ଜୀବକୁ ଦେଇଛନ୍ତି । ତଦ୍ଦ୍ୱାରା ଜୀବ ତାଙ୍କୁ କିପରି ବା ବୁଝିପାରିବ ? ଜୀବ ଯେତିକି ବୁଝେ, ସେତିକି ତାଙ୍କ କରୁଣା ।

—**ଶ୍ରୀଶ୍ରୀ ଠାକୁର**

**ବି**ଜ୍ଞାନ ଜଡ଼କୁ ଧରି କାରବାର କରେ । ତାହା ମନୁଷ୍ୟକୁ ବହିର୍ମୁଖୀ କରିଦିଏ । ପ୍ରଥମେ ମନୁଷ୍ୟ କିଛି ଦେଖିଲେ, ତାହା ଭଗବାନଙ୍କର ଲୀଳା ବୋଲି ଭାବି ଆଧ୍ୟାତ୍ମ୍ୟଭାବ ସହିତ ଯୋଗ କରିଦେଉଥିଲା । ବର୍ତ୍ତମାନ ତାହା ହେଉ ନାହିଁ; କାରଣ, ବିଜ୍ଞାନ ସବୁ ବିଷୟରେ ବିଶ୍ଳେଷଣ କରିବାକୁ ଶିକ୍ଷା ଦେଉଛି; ଫଳରେ ଲୋକଙ୍କ ମଧ୍ୟରେ ଅଶ୍ରଦ୍ଧା ଆସିଯାଉଛି ଅଥଚ ବୈଜ୍ଞାନିକମାନେ ଯାହା ଜାଣୁଛନ୍ତି, ତାହା ଅପୂର୍ଣ୍ଣ ।

—**ଶ୍ରୀଶ୍ରୀ ଠାକୁର**

# ନିଗମ ତତ୍ତ୍ୱ

ସଂପାଦନା :

**ଶ୍ରୀ ଦୁର୍ଗାଚରଣ ମହାନ୍ତି**

ପ୍ରକାଶକ

**ନୀଳାଚଳ ସାରସ୍ୱତ ସଂଘ, ପୁରୀ**

କେନ୍ଦ୍ର ଆସନ ମନ୍ଦିର, ବୀରତୁଙ୍ଗ

୪ର୍ଥ ସଂସ୍କରଣ;

ମାଘ ପୂର୍ଣ୍ଣିମା-୨୦୨୦

ପ୍ରଚ୍ଛଦ : ଶ୍ରୀ ବିଜୟ ପ୍ରଧାନ

ଲିପି ସଂଯୋଜନା ଓ ମୁଦ୍ରଣ:

ଗୁରୁପ୍ରସନ୍ନ ପ୍ରେସ୍,

ଝୋଲାସାହି (ନିଉ କଲୋନୀ) କଟକ-୧

ମୂଲ୍ୟ:

**ଏକଶହ ପଚାଶ ଟଙ୍କା ମାତ୍ର**

ପ୍ରାପ୍ତି ସ୍ଥାନ;

ନୀଳାଚଳ ସାରସ୍ୱତ ସଂଘ, ପୁରୀ

କେନ୍ଦ୍ର ଆସନ ମନ୍ଦିର, ବୀରତୁଙ୍ଗ

ଓ

ନୀଳାଚଳ କୁଟୀର

ସ୍ୱର୍ଗଦ୍ୱାର, ପୁରୀ

ଏବଂ

ନିଗମ ସ୍ମୃତି-କୁଟୀର

ଯୋବ୍ରା, କଟକ-୩

# ପଦେ କଥା

"ଜ୍ଞାନଶକ୍ତିସମାରୂଢ଼ଂ ତତ୍ତ୍ୱମାଳାବିଭୂଷିତମ୍ ।
ଭୁକ୍ତିମୁକ୍ତିପ୍ରଦାତାରଂ ତସ୍ମୈ ଶ୍ରୀଗୁରବେ ନମଃ ।"

ଯୁଗଗୁରୁ ଠାକୁର ଶ୍ରୀ ଶ୍ରୀ ନିଗମାନନ୍ଦଦେବଙ୍କ ବିଭିନ୍ନ ସମୟର ଭାବନାଗୁଡ଼ିକ 'ନିଗମ-ତତ୍ତ୍ୱ' ନାମରେ ସେହି ଗୁରୁଦେବଙ୍କ ଅପାର କରୁଣାବଳରେ ପ୍ରକାଶିତ ହେଲା । ଠାକୁର ୧୩୪୨ରେ ସ୍ଥୂଳଦେହ ବିଲୋପ କଲେ; ତା'ର ୩୦ ବର୍ଷ ପୂର୍ବରୁ ଅର୍ଥାତ୍ ଆଜକୁ ପ୍ରାୟ ୪୦ ବର୍ଷତଳେ ହିନ୍ଦୁଧର୍ମ, ହିନ୍ଦୁ ଧର୍ମର ସଂସ୍କାର ଏବଂ ସମଗ୍ର ମାନବଜାତିର କଲ୍ୟାଣ-ନିମିତ୍ତ ଯେଉଁ ନିରପେକ୍ଷ ସତ୍ୟସବୁ ତାଙ୍କ ଅନ୍ତରରେ ପ୍ରତିଭାତ ହୋଇଥିଲା, ସେ ନିଜେ ତାହା ବିଭିନ୍ନ ସଙ୍କେତ ଓ ସୂଚନାରେ ଲିପିବଦ୍ଧ କରିଯାଇଥିଲେ ଓ 'ଯୋଗୀଗୁରୁ', 'ଜ୍ଞାନୀଗୁରୁ', 'ତାନ୍ତ୍ରିକ ଗୁରୁ', 'ପ୍ରେମିକ ଗୁରୁ' ପ୍ରଭୃତି ଗ୍ରନ୍ଥମାନଙ୍କରେ ଏବଂ ତତ୍କାଳୀନ 'ଆର୍ଯ୍ୟଦର୍ପଣ' ପତ୍ରିକାରେ ତାହା ପ୍ରକାଶିତ ହୋଇଥିଲା । 'ନିଗମ-ତତ୍ତ୍ୱ' ସେସବୁର ସଂକଳନ ମାତ୍ର । ଏହାର ପ୍ରତ୍ୟେକ ବାକ୍ୟ ଠାକୁରଙ୍କ ନିଜ ରଚିତ; ତେଣୁ ସଂସାର କ'ଣ, ଧର୍ମ କ'ଣ, ଭଗବାନଙ୍କ ସହିତ ମନୁଷ୍ୟର କି ସମ୍ପର୍କ, ଏ ସଂସାରରେ ଚଳିବାକୁ ହେଲେ କେଉଁ ପଥ ବରଣୀୟ—ସେସବୁ ବିଷୟରେ ଏହି 'ନିଗମ-ତତ୍ତ୍ୱ' ପାଠକମାନଙ୍କର ନିଶ୍ଚୟ ପଥପ୍ରଦର୍ଶକ ହେବ, ଏଥିରେ ସନ୍ଦେହ ନାହିଁ । ବିଷୟଗୁଡ଼ିକ ଅତି ଦୁରୂହ ହେଲେ ମଧ୍ୟ ପ୍ରକାଶଭଙ୍ଗୀ ଏପରି ସହଜ, ସରସ ଓ ସାବଲୀଳ ହୋଇଛି ଯେ ତାହା ସିଦ୍ଧପୁରୁଷଙ୍କ ବ୍ୟତୀତ ଅନ୍ୟ କାହା ଲେଖନୀରୁ ଆଶା କରାଯାଇ ନ ପାରେ । ଠାକୁରଙ୍କ ଏକନିଷ୍ଠ ସେବକ, କରୁଣାଜଳସ୍ନାତ, ଅନ୍ୟତମ ପ୍ରିୟଶିଷ୍ୟ ଶ୍ରୀଯୁକ୍ତ ଦୁର୍ଗାଚରଣ ମହାନ୍ତି ଏହାକୁ ଦକ୍ଷତାର ସହିତ ସମ୍ପାଦନା କରିଛନ୍ତି । ଏ ନଭେଲ୍-ନାଟକଯୁଗରେ ମଧ୍ୟ ପୂର୍ବରୁ ନିରସ କଠୋର ବିବେଚିତ ହେଉଥିବା ଏହି ଧର୍ମତତ୍ତ୍ୱଗୁଡ଼ିକ ପାଠକଙ୍କୁ ବେଶ୍ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ନୂତନ ଆଲୋକ ହୃଦୟରେ ପ୍ରତିଭାତ କରାଇଦେବ ।

ଠାକୁରଙ୍କ ଶ୍ରୀମୁଖବଚନ–"ସ୍ରୋତ ଅନୁକୂଳ ଗତିରେ ପ୍ରବାହିତ ହେଲାଣି । ବର୍ତ୍ତମାନ ହିନ୍ଦୁ ସନ୍ତାନଗଣ ହିନ୍ଦୁ ଧର୍ମ ମାନିଲେଣି, ହିନ୍ଦୁ-ଶାସ୍ତ୍ରକୁ ବିଶ୍ୱାସ କଲେଣି, ହିନ୍ଦୁ-ମତାନୁସାରେ ଉପାସନା କଲେଣି । ସୁଖର ବିଷୟ ଏହି ଯେ ସ୍କୁଲ-କଲେଜ

ଛାତ୍ର, ଉଚ୍ଚ ଉପାଧିଧାରୀ ଓ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କଠାରୁ ଆରମ୍ଭ କରି ବଡ଼-ସାନ ସମସ୍ତେ ହିନ୍ଦୁ ଧର୍ମରେ ବିଶ୍ୱାସ କଲେଣି ଏବଂ କେତେକଙ୍କର ସାଧନ-ଭଜନରେ ପ୍ରବୃତ୍ତି ମଧ୍ୟ ହେଲାଣି ।

ଏହି ଯୁଗପ୍ରବର୍ତ୍ତନ କାଳରେ ଅମାଅନ୍ଧକାର ଦୂର ହେବାକୁ ଯାଉଥିବାବେଳେ ଶ୍ରୀଶ୍ରୀଠାକୁରଙ୍କ ବାଣୀ ଯେ ବାଳସୂର୍ଯ୍ୟର ରଶ୍ମି ବିକିରଣ କରିବ—ଏହା ନିଃସନ୍ଦେହ ।

'ନୀଳାଚଳ ସାରସ୍ୱତ ସଂଘ'ର ସଭାପତି ଓ ଆସାମ-ବଙ୍ଗୀୟ ସାରସ୍ୱତ ମଠର ଅନ୍ୟତମ ଟ୍ରଷ୍ଟି ଶ୍ରୀଯୁକ୍ତ ବନମାଳୀ ଦାଶଙ୍କ ପ୍ରେରଣା ଓ ଠାକୁରଙ୍କ ଅନ୍ୟତମ ଶିଷ୍ୟ ଶ୍ରୀଯୁକ୍ତ ଈଶ୍ୱର ସାହୁଙ୍କ ଅକ୍ଳାନ୍ତ ପରିଶ୍ରମ ବ୍ୟତୀତ ଏ ପୁସ୍ତକ-ପ୍ରକାଶ ଅସମ୍ଭବ ହୋଇଥାନ୍ତା; ତେଣୁ ସମ୍ପାଦକ ସେମାନଙ୍କଠାରେ ଋଣୀ ।

**–ଉଦୟନାଥ ଷଡ଼ଙ୍ଗୀ**

## ଜୟଗୁରୁ

# ସୂଚିପତ୍ର

ଜୟଗୁରୁ

# ନିବେଦନ

ନ ଗୁରୋରଧିକଂ ତତ୍ତ୍ୱଂ ନ ଗୁରୋରଧିକଂ ତପଃ ।
ତତ୍ତ୍ୱଜ୍ଞାନାତ୍ ପରଂ ନାସ୍ତି ତସ୍ମୈ ଶ୍ରୀଗୁରବେ ନମଃ ॥

ପରମାରାଧତମ ଶ୍ରୀଶ୍ରୀ ଠାକୁରଙ୍କ ଅହେତୁକୀ କୃପାବଳରୁ 'ନିଗମତତ୍ତ୍ୱ'ର ଦ୍ୱିତୀୟ ସଂସ୍କରଣ ବହୁ ବାଧାବିଘ୍ନ ମଧ୍ୟ ଦେଇ ପ୍ରକାଶିତ ହେଲା ।

ଚିରଦିନ ସମାନଭାବରେ ଅତିବାହିତ ହୁଏ ନାହିଁ । ପଚାଶ ବର୍ଷ ପୂର୍ବେ ଦେଶରେ ଯେଉଁ ସ୍ରୋତ ପ୍ରବାହିତ ହେଉଥିଲା, ବର୍ତ୍ତମାନ ସେ ସ୍ରୋତର ଗତି କ୍ରମେ ପରିବର୍ତ୍ତିତ ହେଉଅଛି । ବର୍ତ୍ତମାନ ହିନ୍ଦୁ ସନ୍ତାନ ହିନ୍ଦୁ ଧର୍ମକୁ ବିଶ୍ୱାସ କଲେଣି, ହିନ୍ଦୁ ଶାସ୍ତ୍ରକୁ ଶ୍ରଦ୍ଧାଚକ୍ଷୁରେ ଦେଖିଲେଣି । ଆହୁରି ମଧ୍ୟ ସୁଖର ବିଷୟ ଯେ ଉଚ୍ଚ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ଛାତ୍ର, ଉଚ୍ଚ ଉପାଧିଧାରୀ ରାଜକର୍ମଚାରୀ ଏବଂ ଦେଶର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କଠାରୁ ଆରମ୍ଭ କରି ସାଧାରଣ ଜନସମାଜଙ୍କ ମଧ୍ୟରୁ ଅଧିକାଂଶଙ୍କର ହିନ୍ଦୁଧର୍ମପ୍ରତି ବିଶ୍ୱାସ ସ୍ଥାପିତ ହେଉଅଛି ଏବଂ ସେମାନଙ୍କ ମଧ୍ୟରୁ କେତେକଙ୍କର ସାଧନ-ଭଜନରେ ପ୍ରବୃତ୍ତି ମଧ୍ୟ ଜାତ ହୋଇଅଛି; କିନ୍ତୁ ଉପଯୁକ୍ତ ଉପଦେଷ୍ଟାଙ୍କ ଅଭାବରୁ ସେମାନେ ପ୍ରକୃତ ପଥ ନ ପାଇ ବିପଥରେ ଏଣେତେଣେ ଘୂରିବୁଲୁଛନ୍ତି ।

ଯେଉଁ ଭାରତ ଦିନେ ଆର୍ଯ୍ୟ ଋଷିମାନଙ୍କ ଜ୍ଞାନଗରିମାର ବିମଳ-ସ୍ନିଗ୍ଧ କିରଣରେ ଉଦ୍ଭାସିତ ହେଉଥିଲା, କାଳପ୍ରଭାବରେ ସେହି ଭାରତ ପୁଣି ଅଜ୍ଞାନ-ଅନ୍ଧକାରରେ ବୁଡ଼ିଗଲା । ସେହି ଅନ୍ଧକାର ମଧ୍ୟରେ ସାମାନ୍ୟ କେତେ ଜଣ ମହାପୁରୁଷ ବିଦ୍ୟମାନ ରହି ପଥଭ୍ରାନ୍ତ ଦେଶବାସୀଙ୍କୁ ସେମାନଙ୍କ ଗନ୍ତବ୍ୟପଥରେ କ୍ଷୀଣ ଆଲୋକରେଖା ଦେଖାଇ ସୁପଥକୁ ଆନୟନ କରୁଥିଲେ; କିନ୍ତୁ ଦେଶବାସୀ ଲୋକେ ଅନ୍ଧକାରମଧ୍ୟରେ ଆର୍ଯ୍ୟଶାସ୍ତ୍ରର ଯେଉଁ କ୍ଷୀଣ ଆଲୋକରେଖା ଦେଖିପାରୁଥିଲେ, ଅସଂପୂର୍ଣ୍ଣ ପାଶ୍ଚାତ୍ୟ ଶିକ୍ଷା ଲାଭ କରି ଦୃଷ୍ଟିଶକ୍ତିହୀନ ହେବାଫଳରେ ସେହି କ୍ଷୀଣ ଜ୍ଞାନାଲୋକର ପଥ ମଧ୍ୟ ରୁଦ୍ଧ ହୋଇଗଲା । ପାଶ୍ଚାତ୍ୟ ଶିକ୍ଷା ହିଁ ଆମମାନଙ୍କୁ ଋଷିମାନଙ୍କ ପ୍ରତି ଏବଂ ସେମାନଙ୍କ ପ୍ରଣୀତ ଅନ୍ତର୍ଦୃଷ୍ଟିପ୍ରସୂତ ଶାସ୍ତ୍ରମାନଙ୍କ ପ୍ରତି ବୀତଶ୍ରଦ୍ଧ କରିଦେଇଛି । ଶ୍ରଦ୍ଧାହୀନ ହେବାରୁ ଋଷିମାନଙ୍କ ପ୍ରଦତ୍ତ ଅମୃତମୟ

ଫଳଭୋଗରୁ ଦେଶବାସୀ ବଞ୍ଚିତ ହେଉଛନ୍ତି । ଶ୍ରଦ୍ଧା ହିଁ ଜ୍ଞାନଲାଭର ପ୍ରକୃଷ୍ଟ ଉପାୟ । ଶ୍ରଦ୍ଧାହୀନ ହେଲେ ଜ୍ଞାନଲାଭରେ ଅନ୍ତରାୟ ସୃଷ୍ଟି ହୁଏ । ସେହି ଅନ୍ତରାୟ ଦୂର କରିବାକୁ ହେଲେ ଯେପରି ଆମେ ପୁରାତନ ଆର୍ଯ୍ୟଋଷିମାନଙ୍କ ବାକ୍ୟରେ ଶ୍ରଦ୍ଧାସମ୍ପନ୍ନ ହୋଇପାରିବା, ସେପରି ଚେଷ୍ଟା କରିବାକୁ ହେବ । ସେଥିପାଇଁ ପାଶ୍ଚାତ୍ୟ ଶିକ୍ଷାରେ ବିକୃତମସ୍ତିଷ୍କ ଭ୍ରାନ୍ତପଥାବଲମ୍ବୀ ଜନସାଧାରଣ ଯେପରି ସେମାନଙ୍କ ଭ୍ରାନ୍ତଦୃଷ୍ଟି ମଧ୍ୟ ଦେଇ ଆର୍ଯ୍ୟଶାସ୍ତ୍ରର ଆଲୋକ ଗ୍ରହଣ କରିବାକୁ କ୍ଷମ ହେବେ ଏବଂ ପ୍ରକୃତ ସନାତନ ପଥକୁ ଗତି କରିପାରିବେ, ସେ ବିଷୟରେ ଯତ୍ନବାନ ହେବାକୁ ପଡ଼ିବ । ସେପରି କରିବାକୁ ହେଲେ ଶାସ୍ତ୍ରବ୍ୟାଖ୍ୟାରେ ନବୀନ ଆଲୋକ ଫୁଟାଇବାକୁ ପଡ଼ିବ । ସତ୍ୟ କେବେ ଅପ୍ରକାଶିତ ରହିବ ନାହିଁ । ସାମାନ୍ୟ ସୂତ୍ର ପାଇଲେ ତାହା ସ୍ୱମହିମାରେ ଦିନେ ସମସ୍ତଙ୍କ ହୃଦୟରେ ସୁପ୍ରତିଷ୍ଠିତ ହୋଇପାରିବ । ଶ୍ରଦ୍ଧା ଅଭାବରୁ ଦାତାଙ୍କର ଅଯାଚିତଭାବରେ ପ୍ରଦତ୍ତ ଦ୍ରବ୍ୟକୁ ଗ୍ରହୀତା ସମ୍ୟକ ପ୍ରକାରରେ ଉପଭୋଗ କରିପାରନ୍ତି ନାହିଁ । ଭାରତବାସୀଙ୍କ ମନରେ ଭାରତୀୟ ଋଷି ଓ ସେମାନଙ୍କ ପ୍ରଣୀତ ଶାସ୍ତ୍ରାଦି ପ୍ରତି ଅଶ୍ରଦ୍ଧାଭାବ ଉତ୍ପନ୍ନ କରାଇଦିଆଯାଇଛି । ତେଣୁ ଶ୍ରଦ୍ଧାହୀନ ହେବାଫଳରେ ସେମାନେ ସବୁ ପ୍ରକାର ଜ୍ଞାନ ହରାଇବସିଛନ୍ତି । ଏଥିପାଇଁ ଶ୍ରୀଶ୍ରୀ ଠାକୁର ନିଗମାନନ୍ଦ ସରସ୍ୱତୀ ଦେବ ତାଙ୍କ ଗୁରୁଦେବଙ୍କ ଆଦେଶରେ ଏହି ଭ୍ରାନ୍ତପଥାବଲମ୍ବୀ ଜନସାଧାରଣଙ୍କୁ ସୁପଥକୁ ଆନୟନ କରିବାନିମିତ୍ତ ସଂକଳ୍ପବଦ୍ଧ ହୋଇ ପ୍ରଥମେ ହିନ୍ଦୁ ଋଷିମାନଙ୍କପ୍ରତି ଓ ସେମାନଙ୍କ ପ୍ରଣୀତ ଶାସ୍ତ୍ରାଦି ପ୍ରତି ଶ୍ରଦ୍ଧା ଆନୟନ କରିବାନିମିତ୍ତ ବିବିଧ ଗ୍ରନ୍ଥ ରଚନା କଲେ ଏବଂ ଦେଶବାସୀଙ୍କୁ ସୁପଥକୁ ଆନୟନ କରିବାନିମିତ୍ତ ବିବିଧ ଚେଷ୍ଟା କରି ବିଶେଷ ସୁଫଳ ଲାଭ କଲେ । ପାଠକମାନଙ୍କ ବୁଦ୍ଧିକୁ ସ୍ଥିର କରିବାନିମିତ୍ତ ଆର୍ଯ୍ୟଧର୍ମଶାସ୍ତ୍ରର ଗୋଟିଏ ସୁନ୍ଦର ପ୍ରଥା ଥିଲା । ଗ୍ରନ୍ଥପାଠରେ କେଉଁମାନଙ୍କର ଅଧିକାର, ସେ ସମ୍ପର୍କରେ ପ୍ରଥମେ ଗୋଟିଏ ସୁସ୍ପଷ୍ଟ ଧାରଣା ଜାତ କରାଇଦିଆଯାଉଥିଲା । ସେହି ଅନୁସାରେ ହିନ୍ଦୁ ଧର୍ମାବଲମ୍ବୀମାନଙ୍କୁ ପ୍ରଧାନତଃ ତିନି ଭାଗରେ ବିଭକ୍ତ କରାଯାଇଥାଏ–ନିମ୍ନାଧିକାରୀ, ମଧ୍ୟମାଧିକାରୀ ଓ ଉଚ୍ଚାଧିକାରୀ । ହିନ୍ଦୁଧର୍ମପ୍ରତି ନିମ୍ନାଧିକାରୀ ଜନସାଧାରଣଙ୍କର ଯେପରି ଦୃଢ଼ ଆସ୍ଥା ଅଛି, ସେଥିରେ ସେମାନଙ୍କୁ ଧର୍ମର ଯୁକ୍ତି ପ୍ରମାଣ ପ୍ରଦର୍ଶନ କରିବା ଆବଶ୍ୟକ ହୁଏ ନାହିଁ । ଉଚ୍ଚାଧିକାରୀ ସାଧୁସଜ୍ଜନମାନଙ୍କ ନିକଟରେ ହିନ୍ଦୁଧର୍ମ ସ୍ୱତଃପ୍ରମାଣିତ ବୋଲି ସେମାନେ ମଧ୍ୟ ଯୁକ୍ତିପ୍ରମାଣ ଚାହାନ୍ତି ନାହିଁ । କେବଳ

ମଧ୍ୟମାଧିକାରୀ ଜନସାଧାରଣ ଧର୍ମର ପ୍ରମାଣ ଇଚ୍ଛା କରନ୍ତି। ସେମାନଙ୍କ ମଧ୍ୟରୁ ସମସ୍ତେ ନୁହଁନ୍ତି, କେବଳ ସଂଶୟୀ ଜନସମାଜ ପ୍ରମାଣ ଚାହାନ୍ତି। ପାଶ୍ଚାତ୍ୟ ଶିକ୍ଷାର ବହୁଳ ପ୍ରଚାରଫଳରେ ଉକ୍ତ ସଂଶୟୀ ଲୋକଙ୍କ ସଂଖ୍ୟା ବିଶେଷଭାବରେ ବର୍ଦ୍ଧିତ ହୋଇଉଠିଛି। ପୁନରାୟ ଏହିମାନଙ୍କର ହିନ୍ଦୁ ଧର୍ମପ୍ରତି ଶ୍ରଦ୍ଧା ଜାତ କରାଇ ସେମାନଙ୍କୁ ସ୍ୱଧର୍ମରେ ପ୍ରତିଷ୍ଠିତ କରାଇବା ହିଁ ଶ୍ରୀ ଶ୍ରୀ ଠାକୁରଙ୍କର ପ୍ରଧାନ ଉଦ୍ଦେଶ୍ୟ। ସେହି ଉଦ୍ଦେଶ୍ୟସିଦ୍ଧିନିମିତ୍ତ ସେ 'ବ୍ରହ୍ମଚର୍ଯ୍ୟ ସାଧନ', 'ଯୋଗୀଗୁରୁ', 'ଜ୍ଞାନୀଗୁରୁ', 'ତାନ୍ତ୍ରିକଗୁରୁ' ଓ 'ପ୍ରେମିକଗୁରୁ' ପ୍ରଭୃତି ଗ୍ରନ୍ଥ ଏବଂ 'ଆର୍ଯ୍ୟଦର୍ପଣ' ନାମକ ଗୋଟିଏ ମାସିକ ପତ୍ରିକା ପ୍ରକାଶ କରିଥିଲେ। ସେଥିରେ ସେ ହିନ୍ଦୁଧର୍ମର ଗଭୀର ତତ୍ତ୍ୱ, ଶାସ୍ତ୍ରସମୂହର ଗୂଢ଼ ଓ କୂଟସ୍ଥାନର ବିଶଦବ୍ୟାଖ୍ୟା, କର୍ମଜ୍ଞାନ ଓ ଭକ୍ତିଭେଦରେ ଆଚାର ଓ ସାଧନାର ତାରତମ୍ୟ; ଯୋଗ, ତନ୍ତ୍ର ଓ ସ୍ୱରଶାସ୍ତ୍ରର ରହସ୍ୟ ଏବଂ ସାଧନା-ପ୍ରଣାଳୀ; ଯୋଗ, ତପ, ଜପ, ପୂଜା ପ୍ରଭୃତି ହିନ୍ଦୁମାନଙ୍କର ନିତ୍ୟନୈମିତ୍ତିକ ଯାବତୀୟ ଅନୁଷ୍ଠେୟ କର୍ମର ଉଦ୍ଦେଶ୍ୟ ଏବଂ ଯୁକ୍ତି, ଧର୍ମ ଓ ଶାସ୍ତ୍ରସମନ୍ୱୟ; ବର୍ତ୍ତମାନ ଯୁଗରେ ହିନ୍ଦୁମାନଙ୍କର କର୍ତ୍ତବ୍ୟ ଏବଂ ଧର୍ମର ସ୍ୱତଃ, ପରତଃ ତଥା ପ୍ରତ୍ୟକ୍ଷ ପ୍ରମାଣ ପ୍ରଭୃତି ଜଟିଳ ବିଷୟଗୁଡ଼ିକ ଆଲୋଚନା କରି ହିନ୍ଦୁଧର୍ମର ପୁନଃପ୍ରତିଷ୍ଠା ନିମିତ୍ତ ଆପ୍ରାଣ ଚେଷ୍ଟା କରିଛନ୍ତି। ସେହିସବୁ ପୁସ୍ତକ ଓ ତାଙ୍କ ପ୍ରତିଷ୍ଠିତ 'ସାରସ୍ୱତମଠ'ରୁ ପ୍ରକାଶିତ ପୁରାତନ 'ଆର୍ଯ୍ୟଦର୍ପଣ' ପତ୍ରିକାରୁ ସଂଗୃହୀତ ହୋଇ କେତେଗୁଡ଼ିଏ ଉପଦେଶ ସଂକଳିତ ହୋଇ 'ନିଗମ-ତତ୍ତ୍ୱ' ନାମରେ ପ୍ରକାଶିତ ହୋଇଅଛି।

ହିନ୍ଦୁ ଧର୍ମରେ ଭଗବତ୍ ଉପାସନା ହିଁ ସର୍ବଶ୍ରେଷ୍ଠ କରଣୀୟ ବିଷୟ। ପବିତ୍ର ଭାରତବର୍ଷ, ତପସ୍ତେଜପୂର୍ଣ୍ଣ ଭାରତବର୍ଷ, ବିଚାରବୈରାଗ୍ୟଯୁକ୍ତ ଭାରତବର୍ଷ, ସାଧନସିଦ୍ଧ ଭାରତବର୍ଷ ଭଗବାନଙ୍କ ଉପାସନାରେ ରତ; କିନ୍ତୁ ତତ୍ତ୍ୱଜ୍ଞାନ ଅଭବାରୁ ତାହାର ସଂପୂର୍ଣ୍ଣ ଫଳଲାଭରୁ ସାଧକମାନେ ବଞ୍ଚିତ। ଇଷ୍ଟଦେବତାଙ୍କଠାରେ ଶ୍ରଦ୍ଧା, ପ୍ରୀତି ଜାତ ନ ହେଲେ କେବେ ହେଲେ ଉପାସନା ସମ୍ଭବପର ହୁଏ ନାହିଁ। ତତ୍ତ୍ୱଜ୍ଞାନ ବ୍ୟତୀତ ଇଷ୍ଟଦେବତାଙ୍କ ପ୍ରତି କିମ୍ବା ତାଙ୍କୁ ପାଇବା ପଥରେ ଅଗ୍ରଗତି କରିବାକୁ ଅନ୍ତରରେ ସ୍ୱତଃ ପ୍ରେରଣା ବା ଶ୍ରଦ୍ଧାଭକ୍ତି ଜାତ ହୋଇପାରେ ନାହିଁ। ସେଥିପାଇଁ ମଧ୍ୟ ପୂର୍ବରୁ କିଞ୍ଚିତ ସାଧନାର ପ୍ରୟୋଜନ।

ଭଗବାନଙ୍କର ଅନନ୍ତ ନାମ ଓ ରୂପ। ସେଥିମଧ୍ୟରୁ କେଉଁଟି ସାଧାକଙ୍କ

ପକ୍ଷରେ ସର୍ବାର୍ଥସାଧକ ବା ଉପଯୁକ୍ତ, ତାହା ଶ୍ରୀଗୁରୁଦେବଙ୍କ କୃପାରୁ ଅନୁଭବ କରି ନ ପାରିଲେ ଉପାସନାର ଯୋଗ୍ୟତା ଲାଭ କରାଯାଇପାରେ ନାହିଁ। ତେଣୁ ଉପାସନା ପୂର୍ବରୁ ମଧ୍ୟ ବହୁ ପ୍ରକାର ଯୋଗ୍ୟତା ଅର୍ଜନ କରିବା ଏକାନ୍ତ ପ୍ରୟୋଜନ। ଉପାସନାପୂର୍ବରୁ ପ୍ରାଥମିକ ସାଧକମାନଙ୍କ ପକ୍ଷରେ ଯେଉଁ ବିଷୟ କରଣୀୟ, ତାହା ଦୁଇ ଭାଗରେ ବିଭକ୍ତ—ଆଚାର ଓ ବିଚାର। ଏହି ଆଚାର ଏବଂ ବିଚାରର ସମନ୍ୱୟରେ ହିନ୍ଦୁଧର୍ମର ଭିତ୍ତି ସୁପ୍ରତିଷ୍ଠିତ। ଉପାସନା ସେହି ଭିତ୍ତି ଉପରେ ସ୍ଥାପିତ ସୁରମ୍ୟ ମନ୍ଦିର। ଉପାସନାର ଯୋଗ୍ୟତା ଲାଭ କରିବାକୁ ହେଲେ ଉପଯୁକ୍ତ ବିଚାର ଏବଂ ଯଥାଯଥ ଆଚାର ଅବଲମ୍ବନ କରିବାକୁ ପଡ଼େ। 'ନିଗମ-ତତ୍ତ୍ୱ'ରେ କେବଳ ବିଚାରତତ୍ତ୍ୱ ବିଶେଷଭାବରେ ସନ୍ନିବେଶିତ ହୋଇଅଛି।*

ଏହି ସମଗ୍ର ବିଶ୍ୱଜଗତ୍ ବା ପ୍ରକୃତିମୂଳରେ ପ୍ରଥମତଃ ଏକ ଏବଂ ତତ୍ପରେ ତଦୁତ୍ପନ୍ନ କେତେକ ସାର୍ବଭୌମ ନୀତି ବା ନିୟମ (Universal rules and principles) ବିଦ୍ୟମାନ ରହି ତଦନୁଯାୟୀ ଏହି ଜଗତ୍ଯନ୍ତ୍ର ପରିଚାଳିତ ହେଉଅଛି। ଯେଉଁସବୁ ମାନବ ଅତିଶୟ ଧୀର, ସ୍ଥିର, ଗମ୍ଭୀର ଓ ସୁନିର୍ଦ୍ଦିଷ୍ଟ ଚିନ୍ତା, ଧ୍ୟାନ, ତପସ୍ୟା ଏବଂ ପୁରୁଷକାର ଅବଲମ୍ବନରେ ଉପର୍ଯ୍ୟୁକ୍ତ ନୀତି ଅବଗତ ହେବା ନିମିତ୍ତ ଯୋଗ୍ୟ କ୍ରିୟାରେ ନିରତ ଥାଆନ୍ତି, ସେହିସବୁ ସାଧକମାନେ ହିଁ ଯୋଗ ଓ ଧ୍ୟାନ ସାହାଯ୍ୟରେ ଏହିସବୁ ତତ୍ତ୍ୱର ସନ୍ଧାନ ଲାଭ କରିପାରନ୍ତି। ଫଳରେ ସେମାନେ ବହୁ ଜାଗତିକ ସମସ୍ୟାର ସତ୍ୟ ସମାଧାନପ୍ରାପ୍ତ ହୋଇ ପରମାନନ୍ଦ ଲାଭ କରନ୍ତି। ଗୋଟିଏ ମାତ୍ର ମୌଳିକ ନୀତିର ସନ୍ଧାନ ଲାଭ କରିବା ଫଳରେ ଏ ଜଗତର ଅନେକାଂଶର ରହସ୍ୟ ଓ କାର୍ଯ୍ୟକାରିତା ଜଣାପଡ଼େ। ଉଦାହରଣସ୍ୱରୂପ, ପ୍ରାକୃତିକ ବିଜ୍ଞାନର ମାଧ୍ୟାକର୍ଷଣ ନୀତି। ଏହି ନୀତିର ସୂକ୍ଷ୍ମପ୍ରକୃତିର ଅଭିଜ୍ଞାନଦ୍ୱାରା ସମଗ୍ର ନଭୋମଣ୍ଡଳର ଗ୍ରହ ନକ୍ଷତ୍ରମାନଙ୍କ ଗତିବିଧି ସୂକ୍ଷ୍ମଭାବରେ ଜଣାଯାଇଥାଏ; ତା'ଫଳରେ ଏହି ପାର୍ଥିବ ଜଗତର ନାନାବିଧ ଜ୍ଞାନ ଓ ରହସ୍ୟ ଉପଲବ୍ଧ ହୁଏ। ଜ୍ଞାନୀ, ଯୋଗୀ ପ୍ରଭୃତି ସାଧକମାନେ ଆଧ୍ୟାତ୍ମିକ ଜଗତ୍ର କେତେଗୁଡ଼ିଏ ନୀତି ବା ତତ୍ତ୍ୱ ଅବଗତ ହେଲେ ସେମାନଙ୍କର ଆତ୍ମଜ୍ଞାନ ଲାଭ ହୋଇ ପ୍ରଜ୍ଞାଦୃଷ୍ଟି ଖୋଲିଯାଏ।

---

* ସଂସାରରେ ରହି କିଭଳି ଭାବରେ ଆଚାରପରାୟଣ ହୋଇ ଉପାସନା କରିବାକୁ ପଡ଼େ, ତାହା 'ସଂସାରପଥେ' ପୁସ୍ତକରେ ବର୍ଣ୍ଣିତ ହୋଇଛି।

ଏଥିରେ ମାନବ-ମନର ସଂଶୟ ତିରୋହିତ ହେବାଫଳରେ ଚିତ୍ତର ଏକାଗ୍ରତାଶକ୍ତି ଲାଭ ହୋଇଥାଏ । ସେହି ଦୃଷ୍ଟିକୁ ପ୍ରଜ୍ଞାଦୃଷ୍ଟି କୁହାଯାଏ । ଯେଉଁସବୁ ମୌଳିକ ନୀତି ଅବଶ୍ୟ ଜ୍ଞାତବ୍ୟ, ସେଥିମଧ୍ୟରୁ କେତେକ ଏହି 'ନିଗମ-ତତ୍ତ୍ୱ' ପୁସ୍ତକରେ ପ୍ରକାଶିତ ହୋଇଅଛି ।

ପାଠକମାନଙ୍କୁ ସ୍ମରଣ ରଖିବାକୁ ହେବ ଯେ ପ୍ରାକୃତ ଜ୍ଞାନ ଓ ସତ୍ୟଜ୍ଞାନ ପରସ୍ପର ପୃଥକ୍ । ପୂର୍ବରୁ ଯେଉଁସବୁ ଅଭ୍ୟାସ ଅର୍ଜନ କରାଯାଇଛି, ତାହା ସଂସ୍କାରାବଦ୍ଧ ହୋଇ ବର୍ତ୍ତମାନ ପ୍ରକୃତିରେ ପରିଣତ ହୋଇଛି । ପୂର୍ବସଂସ୍କାରାଚ୍ଛନ୍ନ ଜ୍ଞାନକୁ ପ୍ରକୃତି ଏବଂ ସତ୍ୟଜ୍ଞାନକୁ ପୁରୁଷ କୁହାଯାଏ । ପ୍ରକୃତି ଅଜ୍ଞାନ ଏବଂ ପୁରୁଷ ସତ୍ୟଜ୍ଞାନସ୍ୱରୂପ । ପୁରୁଷ ବା ଆତ୍ମଚୈତନ୍ୟ ଯେତେବେଳେ ନିଜ ପ୍ରକୃତିର ଅଧୀନ ହୁଅନ୍ତି, ସେତେବେଳେ ପ୍ରକୃତି ଅତିଶୟ ଶକ୍ତିଶାଳୀ ହୋଇଉଠେ । ପୁରୁଷ ବା ଆତ୍ମଚୈତନ୍ୟ ଉପରେ ପ୍ରକୃତିର ପ୍ରଭାବବିସ୍ତାର ଘଟିଲେ ତାହାକୁ ସାଧାରଣ ଜୀବ କୁହାଯାଏ । ଶ୍ରୀଗୁରୁଦେବଙ୍କ ବାକ୍ୟ ପ୍ରତିପାଳନଦ୍ୱାରା ପ୍ରକୃତିକୁ ବଶୀଭୂତା କରିପାରିଲେ ଜୀବାତ୍ମା ପ୍ରକୃତିର ଆନୁଗତ୍ୟ ତ୍ୟାଗପୂର୍ବକ ଆତ୍ମସ୍ୱରୂପ ପ୍ରାପ୍ତ ହୋଇ ମୁକ୍ତ ହୋଇଥାଏ । ବ୍ୟାଧିଗ୍ରସ୍ତ ହେବା ପ୍ରକୃତିର କାର୍ଯ୍ୟ; ଔଷଧସେବନ ପୁରୁଷ ବା ବିବେକର କାର୍ଯ୍ୟ । କାମାଦି ନିକୃଷ୍ଟ ବୃତ୍ତିର ଅଧୀନ ହେବା ପ୍ରକୃତିର କାର୍ଯ୍ୟ; ପ୍ରେମଭକ୍ତି, ଧର୍ମପ୍ରବୃତ୍ତି ପ୍ରଭୃତି ବିବେକର କାର୍ଯ୍ୟ । ସୁଖସମ୍ଭୋଗ ପ୍ରକୃତିର କାର୍ଯ୍ୟ; ତ୍ୟାଗ, ସଂଯମ ପ୍ରଭୃତି ବିବେକର କାର୍ଯ୍ୟ । ସାମାଜିକ ଲୋକଙ୍କୁ ଦେଖି ତାଙ୍କ ଆଚରିତ ପନ୍ଥାରେ ଚଳିବା ପ୍ରକୃତିର କାର୍ଯ୍ୟ; ଶ୍ରୀ ଗୁରୁଦେବଙ୍କ ନିର୍ଦ୍ଦିଷ୍ଟ ପନ୍ଥାରେ ନିଜକୁ ପରିଚାଳିତ କରିବା ପୁରୁଷର କାର୍ଯ୍ୟ । ପୁରୁଷ ପ୍ରକୃତିର ଅଧୀନ ଥିଲେ ବାସନାବଶରୁ ବାର ବାର ଦେହ ଧାରଣ କରିବାକୁ ବାଧ୍ୟ ହୁଏ । ତେଣୁ ବିବେକ ବା ପୁରୁଷ ନିର୍ଦ୍ଦେଶରେ ଚଳି ପ୍ରକୃତିକୁ ବଶୀଭୂତା କରିବା ହିଁ ପ୍ରକୃତ ମନୁଷ୍ୟତ୍ୱ । ଏହି ପୁରୁଷ ବା ଜ୍ଞାନର ନାମ ଆତ୍ମା । ତେଣୁ ଆତ୍ମା ଅମର । ଉପର୍ଯ୍ୟୁକ୍ତ ତତ୍ତ୍ୱର ପ୍ରଧାନ ନୀତିଗୁଡ଼ିକ ଏହି ପୁସ୍ତକରେ ସଂକ୍ଷେପଭାବରେ ବର୍ଣ୍ଣିତ ହୋଇଅଛି । କିଭଳିଭାବରେ ଶ୍ରୀଗୁରୁଦେବଙ୍କ ନିର୍ଦ୍ଦେଶରେ ଚଳିଲେ ପ୍ରକୃତି ବଶୀଭୂତା ହେବେ ଓ ସାଧକମାନେ ଆତ୍ମଜ୍ଞାନରେ ପ୍ରତିଷ୍ଠିତ ରହି ଶ୍ରୀଗୁରୁଦେବଙ୍କ ସେବା କରିପାରିବେ, ତାହା ହିଁ ଏହି ପୁସ୍ତକରେ କେତେକ ପରିମାଣରେ ବିବୃତ୍ତ ହୋଇଅଛି ।

ପାଶ୍ଚାତ୍ୟ ଜଗତ୍‌ର ସମୁନ୍ନତ ଜାତିଗୁଡ଼ିକ କେବଳ ମୃତ୍ୟୁଦିଗକୁ ଧାବିତ

ହେଉଛନ୍ତି । ମାନସିକ ଓ ଆଧ୍ୟାତ୍ମିକ ଉନ୍ନତିକୁ ପ୍ରକୃତ ଉନ୍ନତି କୁହାଯାଏ । ପାର୍ଥିବ ଧନ-ସମ୍ପଦ ସଞ୍ଚୟକୁ କେବେହେଲେ ଉନ୍ନତି ବୋଲି ଧାରଣା କରିବା ଉଚିତ ନୁହେଁ । ପ୍ରାଚୀନ ଆର୍ଯ୍ୟଋଷିମାନେ ଜାଗତିକ କୌଣସି ସମ୍ପଦର ଅଧିକାରୀ ନ ଥିଲେ ଏବଂ ସେମାନେ ସରଳ ଉଦାର ଜୀବନ ଯାପନ କରୁଥିଲେ ମଧ୍ୟ ଅତି ଆଶ୍ଚର୍ଯ୍ୟଜନକ ତତ୍ତ୍ୱସମୂହ ଆବିଷ୍କାର କରି ଅମର ହୋଇ ରହିଛନ୍ତି । ବର୍ତ୍ତମାନ ସଭ୍ୟତା ମୂଳଲକ୍ଷ୍ୟରୁ ବିଚ୍ୟୁତ ହୋଇପଡ଼ିଛି । ଯାହାକୁ ଆମେ ସଭ୍ୟତା ବୋଲି ବର୍ତ୍ତମାନ ଧରିନେଇଛୁଁ, ତାହା ଅସଭ୍ୟତାର ଉନ୍ନତ ସଂସ୍କରଣ ମାତ୍ର । ଦିନେ କାଳର ଅପ୍ରତିହତ ପ୍ରଭାବରେ ପାଶ୍ଚାତ୍ୟର ମୋହନିଦ୍ରା ଭାଙ୍ଗିଯିବ । ଧନ-ସମ୍ପଦର ନିଶାରେ ମୁଗ୍ଧ ହୋଇ ସେମାନେ ଯେଉଁ ସଭ୍ୟତା ସୃଷ୍ଟି କରିଛନ୍ତି, ସେଥିରେ ପୃଥିବୀର ଅଧେ ଲୋକ ଅନ୍ନହୀନ ହୋଇ ନ ଖାଇ, ନ ପିନ୍ଧି ମୃତ୍ୟୁମୁଖରେ ପତିତ ହେଉଥିବାବେଳେ ଅବଶିଷ୍ଟ ସମ୍ପଦଶାଳୀ ବ୍ୟକ୍ତିମାନେ ଧନ-ସମ୍ପଦର ଦୁଃସହ ଅପବ୍ୟୟରେ, ବାହ୍ୟପରିପାଟୀର ଆତିଶଯ୍ୟରେ, କୃତ୍ରିମ ଆଡ଼ମ୍ବର ଓ ବିଳାସ-ବ୍ୟସନରେ ଅର୍ଥର ଉଚ୍ଛୃଙ୍ଖଳ ଓ ଅସ୍ୱାସ୍ଥ୍ୟକର ଅପବ୍ୟୟରେ ସର୍ବଦା ଲିପ୍ତ ରହି ଅଶାନ୍ତି-ଅନଳରେ ନିଜକୁ ଦଗ୍ଧ କରୁଛନ୍ତି; ତେଣୁ, ବର୍ତ୍ତମାନ ଧନ-ସମ୍ପଦଶାଳୀ ଆସକ୍ତଚିତ୍ତ ବ୍ୟକ୍ତିମାନେ ହିଁ ପ୍ରକୃତ କାଙ୍ଗାଳ, ଏମାନେ ହିଁ ଦୟାର ପାତ୍ର । ଧନ-ସମ୍ପଦର ଲକ୍ଷ୍ୟହୀନ ସଞ୍ଚୟରେ ଯେଉଁମାନେ ମତ୍ତ, ସେହିମାନେ ହିଁ ଅଧମ । ସେମାନେ ଐଶ୍ୱର୍ଯ୍ୟ-ଧୂଳିରେ ରୁଦ୍ଧଶ୍ୱାସ ହୋଇ କେବଳ ଆତ୍ମହତ୍ୟା କରୁଛନ୍ତି ମାତ୍ର । ବାହ୍ୟିକ ଦୃଷ୍ଟିରେ ସେମାନେ ରାଜା ବା ରାଷ୍ଟ୍ରପତି ହୋଇଥିଲେ ମଧ୍ୟ ସେମାନେ ଅଶାନ୍ତିର ତୀବ୍ର ବିଷରେ ସର୍ବଦା ଦଗ୍ଧ ହେଉଛନ୍ତି । ଯେଉଁମାନେ ଅବିଦ୍ୟାର ଅତଳ ଗହ୍ୱରରେ ବୁଡ଼ିମରୁଛନ୍ତି, ସେହିମାନେ ହିଁ ବର୍ତ୍ତମାନ ଯୁଗରେ ଦାର୍ଶନିକ୍ ଓ ପଣ୍ଡିତ । ସେହିମାନଙ୍କୁ ତ୍ୟାଗଧର୍ମର ମହତ୍ତ୍ୱ ଓ ତତ୍ତ୍ୱ ବୁଝାଇ ସେମାନଙ୍କ ସୁପ୍ତପ୍ରାଣକୁ ଜାଗ୍ରତ କରିବାନିମିତ୍ତ ବ୍ରାହ୍ମଣ୍ୟଭାବରେ କିଭଳି ସେବା କରିବାକୁ ହେବ, ତାହାର ତତ୍ତ୍ୱ ମଧ୍ୟ ଏହି 'ନିଗମ-ତତ୍ତ୍ୱ' ପୁସ୍ତକରେ କେତେ ପରିମାଣରେ ବିବୃତ ହୋଇଅଛି ।

ଯେକୌଣସି ସାଧକ ଯେ କୌଣସି ସାଧନ-ପନ୍ଥାରେ ଗତି କରୁଥିଲେ ମଧ୍ୟ ସେହି ସବୁ ସାଧନାର ଯେତେପ୍ରକାର କର୍ମପଦ୍ଧତି ଅଛି, ସେଥିମଧ୍ୟରେ ମନ ସ୍ଥିର କରିବା ହିଁ ସର୍ବପ୍ରଧାନ କାର୍ଯ୍ୟ । ମନ ସ୍ଥିର ନ ହେଲେ ଅସ୍ଥିରଚିତ୍ତରେ କେବେହେଲେ

ବ୍ରହ୍ମ, ଆତ୍ମା ଅଥବା ଭଗବାନଙ୍କ ପ୍ରତିଚ୍ଛବି ପତିତ ହୁଏ ନାହିଁ। ଏଥିପାଇଁ ସବୁ ପନ୍ଥାର ସାଧକମାନେ ପ୍ରଥମେ ଦେହକୁ, ତତ୍ପରେ ଇନ୍ଦ୍ରିୟବର୍ଗଙ୍କୁ, ତଦନନ୍ତର ବୁଦ୍ଧିକୁ ଏବଂ ପରିଶେଷରେ ଚିତ୍ତ ଓ ପ୍ରକୃତିକୁ ସ୍ଥିର ବା ଶୁଦ୍ଧ କରିବାକୁ ଚେଷ୍ଟା କରିଥାନ୍ତି। ସ୍ଥୁଳଦେହର ଚଞ୍ଚଳତା ନିବାରଣନିମିତ୍ତ ପ୍ରତ୍ୟହ ନିର୍ଦ୍ଦିଷ୍ଟ ସମୟରେ, ନିର୍ଦ୍ଦିଷ୍ଟ ପରିମିତ ସମୟ ସ୍ଥିର ସୁଖାସନରେ ଉପବେଶନ କରିବା ପାଇଁ ଅଭ୍ୟାସ ଗଠନ କରିବାକୁ ହେବ। ଏଥିନିମିତ୍ତ ଯେ କୌଣସି ଗୋଟିଏ ଆସନ ଅଭ୍ୟାସ କଲେ ଚଳିବ। ଦଶ ଇନ୍ଦ୍ରିୟଙ୍କୁ ବଶୀଭୂତ କରିବା ଉଦ୍ଦେଶ୍ୟରେ ପ୍ରତ୍ୟାହାର ଓ ଏକାଗ୍ରତା ଅଭ୍ୟାସ ନିମିତ୍ତ ନିବୃତ୍ତିପଥରେ ଚଳି ଜ୍ଞାନ ଆଲୋଚନା କରିବା ସଙ୍ଗେ ସଙ୍ଗେ ଶ୍ରୀଗୁରୁଦେବଙ୍କ ଧ୍ୟାନ କରିବାକୁ ହେବ। କେବଳ ଇନ୍ଦ୍ରିୟମାନେ ସଂଯତ ହୋଇଗଲେ ମଧ୍ୟ ମନର ଚଞ୍ଚଳତା ଦୂର ହେବ ନାହିଁ। ମନ ସ୍ଥିର କରିବା ଅତିଶୟ କଠିନ କାର୍ଯ୍ୟ। ସେଥିପାଇଁ ମନର ତତ୍ତ୍ୱ ଓ ସାଧନ ତତ୍ତ୍ୱ ଅବଗତ ହୋଇ ନିଃଶ୍ୱାସର ନିୟମିତ ପରିଚାଳନା ସଙ୍ଗେ ସଙ୍ଗେ ବିବେକ, ବୈରାଗ୍ୟ ଓ ସତ୍ୟଜ୍ଞାନ ଦ୍ୱାରା ମନର ସଂକଳ୍ପ-ବିକଳ୍ପ-ଶକ୍ତିକୁ ରୁଦ୍ଧ କରିବାକୁ ହେବ। ମନର ବିଚିତ୍ର ଚିନ୍ତା, ସ୍ମୃତି ଓ ବିଷୟସଂସର୍ଗ ହିଁ ବିକଳ୍ପ ଏବଂ କାମନା, ଆସକ୍ତି, ଆଶା ଓ ଉଦ୍‌ବେଗାଦି ସଂକଳ୍ପ ନାମରେ ଖ୍ୟାତ। ତେଣୁ ଏହିସବୁ ମାନସିକ ବୃତ୍ତିର ତତ୍ତ୍ୱ ଜାଣି ସେହି ସକଳ ଶକ୍ତିକୁ ଭାବନାର ପରିବର୍ତ୍ତନ ଦ୍ୱାରା ରୁଦ୍ଧ କରି ମନକୁ ସ୍ଥିର କରିବା ପାଇଁ ସାଧନ ଅଭ୍ୟାସ କରିବାକୁ ହେବ। ମନ ସ୍ଥିର ହେଲାମାତ୍ରେ ତାହା ଶୁଦ୍ଧ ହୋଇଯାଏ। ତେଣୁ ଅନ୍ତରରେ ଶୁଭବୁଦ୍ଧିର ଉଦୟ ହୁଏ। କାରଣ, ବୁଦ୍ଧିକୁ ତ୍ୟାଗ କରି ମନ ରହିପାରେ ନାହିଁ। ମନ ସ୍ଥିର ହେବା ଫଳରେ ଚିତ୍ତ ମଧ୍ୟ ଶୁଦ୍ଧଭାବ ଧାରଣ କରିଥାଏ। ଚିତ୍ତ ଶୁଦ୍ଧ ହେଲେ ଜଗତ୍‌ର ସମସ୍ତ ଜ୍ଞାନ ସାଧକଙ୍କ ଅନ୍ତରରେ ପ୍ରସ୍ଫୁଟିତ ହୁଏ। ଜ୍ଞାନ ଶ୍ରୀଗୁରୁଦେବଙ୍କ ମୂର୍ତ୍ତିରେ ସାଧକକୁ ଦର୍ଶନ ଦେଇ ଧନ୍ୟ କରେ। ସେହି ମନର ବିବିଧ ତତ୍ତ୍ୱ ଓ ସାଧନ-ସମୟରେ କିପରି ସତର୍କତା ଅବଲମ୍ବନ କରିବାକୁ ହେବ, ସେସବୁର ତତ୍ତ୍ୱ ମଧ୍ୟ ଏଥିରେ ବର୍ଣ୍ଣିତ ହୋଇଅଛି।

ଅନେକଙ୍କର ଧାରଣା, ସାଧୁଜୀବନ ଯାପନ କରିବାକୁ ହେଲେ ନିଷ୍କର୍ମ ଓ ନିଶ୍ଚେଷ୍ଟ ହୋଇ ବସିରହି କେବଳ ଭଗବତ୍‌ଧ୍ୟାନ ଧାରଣାରେ ସମୟ ଅତିବାହିତ କଲେ ଭଗବାନ୍ ସାଧକଙ୍କର ସବୁ ଅଭାବ ମୋଚନ କରିଦିଅନ୍ତି। ଦେଶର ଅଧିକାଂଶ ବ୍ୟକ୍ତି ପୁରାତନକୁ ତ୍ୟାଗ କରି ନୂତନ ପନ୍ଥା ଗ୍ରହଣ କରିବାକୁ ସହଜରେ ଇଚ୍ଛା କରନ୍ତି ନାହିଁ। ଅଧିକାଂଶ ନିଜ ଗୃହସଂସାର ତ୍ୟାଗ କରି ଅନ୍ୟତ୍ର ଯିବାକୁ ସୁଖବୋଧ

କରନ୍ତି ନାହିଁ । ସେମାନଙ୍କ ମଧ୍ୟରୁ କେତେକେ ଅନ୍ୟର ମୁଖାପେକ୍ଷୀ ହୋଇ ଜୀବନଯାତ୍ରା ନିର୍ବାହ କରିବାକୁ ଇଚ୍ଛା ପୋଷଣ କରନ୍ତି । ସେମାନଙ୍କ ଭାବନା, ଅନ୍ୟମାନେ ପରିଶ୍ରମ କରି ଯେଉଁ ଅର୍ଥ ସଞ୍ଚୟ କରିଛନ୍ତି, ସେମାନେ କାହିଁକି ଆଳସ୍ୟଜଡ଼ତାପୂର୍ଣ୍ଣ ଆଳସ୍ୟପରାୟଣ ମାନବମାନଙ୍କୁ ଅଯାଚିତ ଭାବରେ ସେହି ଅର୍ଥ ଦାନ କରୁନାହାନ୍ତି । ତେଣୁ ସେମାନେ ନିଜେ ପରିଶ୍ରମ ନ କରି କିଭଳି ଅନ୍ୟର ଉପାର୍ଜିତ ଧନ ଅପହରଣ କରିବେ, ସେଥିପାଇଁ ସର୍ବଦା ଚେଷ୍ଟା କରିଥାନ୍ତି । ଉପଯୁକ୍ତ ପ୍ରକାରର ଆଳସ୍ୟପରାୟଣ ତମୋଗୁଣୀ ଅଜ୍ଞାନାନ୍ଧ ମାନବ ହିଁ ପୃଥିବୀର ଭାରସ୍ୱରୂପ । ସେମାନଙ୍କର ସଂଖ୍ୟା ଯେତେ ବୃଦ୍ଧି ହେବ, ସେତିକି ପରିମାଣରେ ପୃଥିବୀରେ ଅଶାନ୍ତି ବୃଦ୍ଧି ହେବ । ଏହି ପ୍ରକାରର ଶ୍ରମବିମୁଖ, କ୍ଷୁଦ୍ର ସଂସାରମୁଗ୍ଧ ଅଜ୍ଞ ପରସ୍ୱାପହାରୀ ଆଳସ୍ୟପରାୟଣ ମାନବମାନଙ୍କୁ କିଭଳି ରଜୋଗୁଣର କର୍ମ ଦେଇ ସତ୍‌ପଥକୁ ଅଣାଯାଇପାରିବ, ସେସବୁର ବହୁବିଧ ତତ୍ତ୍ୱ ଏହି ପୁସ୍ତକରେ ପ୍ରଦତ୍ତ ହୋଇଅଛି ।

ଆତ୍ମା ଚଞ୍ଚଳାବସ୍ଥା ପ୍ରାପ୍ତ ହୋଇ ମନ ବା ଚିତ୍ତ ରୂପରେ ପରିଣତ ହୋଇଅଛି । ତେଣୁ ମନର ସଂଯମ ବା ନିରୋଧ ଅର୍ଥାତ୍ ମନୋଲୟ ହିଁ ଆତ୍ମସ୍ୱରୂପତା ଲାଭର ପ୍ରଧାନ ଉପାୟ । ଏକମାତ୍ର ସଂଯମ-ସାଧନା ଦ୍ୱାରା ଚିତ୍ତର ଲୟ ସାଧିତ ହେଲେ ତାହା ଆତ୍ମସ୍ୱରୂପତା ଲାଭ କରିଥାଏ । ଯେଉଁ ଶକ୍ତି ମନର ଚଞ୍ଚଳତାକୁ ବିନାଶ କରି ଜୀବଭାବର ମୃତ୍ୟୁ ଘଟାଏ ଏବଂ ଆତ୍ମାର ବିକାଶ କରେ, ତାହାକୁ ସଂଯମ ବା ଯମଦେବତା କୁହାଯାଏ । ଏହାର ସାଧନ ଦ୍ୱାରା ଚିତ୍ତର କିଭଳି ଉନ୍ନତି ସାଧିତ ହେବ, ତାହାର ବିବିଧ ତତ୍ତ୍ୱ ମଧ୍ୟ ଏଥିରେ ସନ୍ନିବେଶିତ କରାଯାଇଅଛି ।

ସାରସ୍ୱତ ସଂଘ ଅନ୍ତର୍ଗତ ଶିଷ୍ୟ ଭକ୍ତମାନଙ୍କ ମଧ୍ୟରୁ ସମସ୍ତେ ଗୁରୁ ଓ ଇଷ୍ଟଙ୍କ ଧ୍ୟାନ ଏବଂ ପୂଜା ପୃଥକ ଭାବରେ ନ କରି କେବଳ ଶ୍ରୀଗୁରୁଦେବଙ୍କର ଧ୍ୟାନ, ପୂଜା କରିଥାନ୍ତି । ଗୁରୁ ଓ ଇଷ୍ଟ ଏକ ଏବଂ ଅଭିନ୍ନ । ଗୁରୁପୂଜା କଲେ ତାହା ସହିତ ଇଷ୍ଟପୂଜା ମଧ୍ୟ ସମ୍ପନ୍ନ ହୋଇଥାଏ । ସମସ୍ତ ବେଦାନ୍ତଶାସ୍ତ୍ରର ସାରଭାଗ ସିଦ୍ଧ ମୋକ୍ଷଶାସ୍ତ୍ର ଶ୍ରୀମଦ୍ଭାଗତରେ ମଧ୍ୟ ଗୁରୁ ଓ ଇଷ୍ଟଙ୍କ ଅଭିନ୍ନଭାବର ବର୍ଣ୍ଣନା ଅଛି । ଦେବର୍ଷି ନାରଦ ରାଜା ଯୁଧିଷ୍ଠିରଙ୍କୁ କହୁଛନ୍ତି—

''ଏତତ୍ ସର୍ବଂ ଗୁରୌ ଭକ୍ତ୍ୟା ପୁରୁଷୋହ୍ୟଞ୍ଜସା ଜୟେତ ।''

—ଶ୍ରୀମଦ୍ଭାଗବତ-୭ମ ସ୍କନ୍ଧ-୧୫/୧୯

ହେ ରାଜନ୍ ! ଗୁରୁଦେବଙ୍କପ୍ରତି ଭକ୍ତି ଥିଲେ ପୁରୁଷ ଏହିସବୁ ସଂପୂର୍ଣ୍ଣରୂପେ ଜୟ କରିବାକୁ ସମର୍ଥ ହୋଇଥାନ୍ତି । ଜ୍ଞାନଦୀପପ୍ରଦ ଗୁରୁ ସାକ୍ଷାତ୍ ଭଗବାନ୍ଙ୍କର ସ୍ୱରୂପ । ଯେଉଁ ବ୍ୟକ୍ତି ତାଙ୍କୁ ମନୁଷ୍ୟ ମନେ କରନ୍ତି, ତାଙ୍କର ସମସ୍ତ ଶାସ୍ତ୍ର ଶ୍ରବଣ ହସ୍ତୀସ୍ନାନସଦୃଶ ନିଷ୍ଫଳ ହୋଇଥାଏ । ହେ ଯୁଧିଷ୍ଠିର ! ଗୁରୁ ସାକ୍ଷାତ୍ ଭଗବାନ୍ଙ୍କର ସ୍ୱରୂପ ଏବଂ ପ୍ରକୃତି-ପୁରୁଷଙ୍କର ଈଶ୍ୱର । ଯୋଗୀମାନେ ଏହି ଗୁରୁଦେବଙ୍କର ଚରଣ ଅନ୍ୱେଷଣ କରନ୍ତି । ଲୋକେ ଯେ ଏହାଙ୍କୁ ମନୁଷ୍ୟ ଜ୍ଞାନ କରନ୍ତି, ତାହା ସେମାନଙ୍କର ମହାଭ୍ରମ ।

''ଯସ୍ୟ ସାକ୍ଷାତ୍ ଭଵବତୀ ଜ୍ଞାନଦୀପପ୍ରଦୋଗୁରୌ । ୨୦ ।
ପ୍ରାପ୍ତ ବୈ ଭଗବାନ୍ ସାକ୍ଷାତ୍ ପ୍ରଧାନ ପୁରୁଷେଶ୍ୱରଃ । ୨୧ ।''

—ଶ୍ରୀମଭାଗବତ-୭ମ ସ୍କନ୍ଧ-୧୫ଶ ଅଧ୍ୟାୟ

ଭଗବାନ୍ ଉଦ୍ଧବଙ୍କୁ କହୁଛନ୍ତି—''ଅତଏବ ତୁମେ ଉପର୍ଯ୍ୟୁକ୍ତ ପ୍ରକାରରେ ଏକାନ୍ତ ଭକ୍ତିସହକାରେ ଗୁରୁଉପାସନାସମ୍ଭୂତ ଭକ୍ତିଯୋଗରେ ତୀକ୍ଷଣୀକୃତ ବିଦ୍ୟା-କୁଠାର ଦ୍ୱାରା ସାବଧାନରେ ଲିଙ୍ଗଶରୀର ଛେଦନପୂର୍ବକ ପରମାତ୍ମାଙ୍କଠାରେ ଲୀନ ହୋଇ ପରେ ଅସ୍ତ୍ର ତ୍ୟାଗ କର ।''

—''ଏବଂ ଗୁରୁପାସନୟୈକ ଭକ୍ତ୍ୟା ।''

—ଶ୍ରୀମଭାଗବତ-୧୧ଶ ସ୍କନ୍ଧ-୧୨/୨୪

''ଯେ ମୋତେ ବିଶେଷ ଭାବରେ ଜାଣନ୍ତି, ସେମାନେ ମୋ'ରି ସ୍ୱରୂପ ସେହି ଶାନ୍ତ ଗୁରୁଦେବଙ୍କର ଆରାଧନା କରିବେ । ଆଚାର୍ଯ୍ୟଙ୍କୁ ମୋ ସ୍ୱରୂପ ବୋଲି ଜାଣିବ ।''

''ମଦଭିଜ୍ଞଂ ଗୁରୁଂ ଶାନ୍ତମୁପାସୀତଂ ମଦାତ୍ମକମ୍ ।''

—ଶ୍ରୀମଭାଗବତ-୧୧ଶ ସ୍କନ୍ଧ-୧୦ । ୫

ଆହୁରି ମଧ୍ୟ ସଖା ସୁଦାମାଙ୍କୁ ଭଗବାନ୍ କହୁଛନ୍ତି—''ଇହସଂସାରରେ ଜନ୍ମଦାତା ହିଁ ପ୍ରଥମ ଗୁରୁ । ଯାହାଙ୍କଠାରୁ ଦ୍ୱିଜତ୍ୱ ପ୍ରାପ୍ତ ହୁଏ, ସେ ଦ୍ୱିତୀୟ ଗୁରୁ । ଆହୁରି ମଧ୍ୟ ଯେ ସମସ୍ତଙ୍କର ଜ୍ଞାନଗୁରୁ, ସେହି ଗୁରୁ ମୁଁ ସାକ୍ଷାତ୍ ଭଗବାନ୍ ବୋଲି ଜାଣିବ । ମୁଁ ଗୁରୁସେବାଦ୍ୱାରା ଯେପରି ସନ୍ତୁଷ୍ଟ ହୁଏ, ଗୃହଧର୍ମ, ଯତିଧର୍ମ, ବ୍ରହ୍ମଚାରୀଧର୍ମ କିମ୍ବା ବାନପ୍ରସ୍ଥଧର୍ମଦ୍ୱାରା ସେତେ ସନ୍ତୁଷ୍ଟ ହୁଏ ନାହିଁ (ଗୁରୁଶୁଶ୍ରୂଷୟୋ ଯଥା) ।'' ଶ୍ରୀଗୁରୁଦେବ ହିଁ ସାକ୍ଷାତ୍ ଜ୍ଞାନଦାତା । ଶିଷ୍ୟ ଦମ୍ଭାଦି ଦୋଷବର୍ଜ୍ଜିତ

ହୋଇ ସଦ୍‌ଗୁରୁଙ୍କୁ ଆଶ୍ରୟ କରିବା ବିଧେୟ। ଗୁରୁସେବାରେ ରତ ରହି ଈଶ୍ୱରବୁଦ୍ଧିରେ ତାଙ୍କୁ ତୁଷ୍ଟ କରିବା ଆବଶ୍ୟକ। ଆଚାର୍ଯ୍ୟ ଶଙ୍କର କହିଛନ୍ତି— ‘‘ଗୁରୁଃ ସ୍ୱୟଂ ସାକ୍ଷାତ୍ ବ୍ରହ୍ମଃ।’’ ମୁମୁକ୍ଷୁମାନେ ଶ୍ରୀଗୁରୁଦେବଙ୍କର ସେବାବନ୍ଦନା କରିବା ଦରକାର। କେବେ ହେଲେ ଶ୍ରୀଗୁରୁଦେବଙ୍କର ଉଦ୍‌ବେଗ ଜାତ କରାଇବା ଉଚିତ୍ ନୁହେଁ। ବୈଷ୍ଣବସଂପ୍ରଦାୟମାନେ ମଧ୍ୟ କହିଛନ୍ତି, ‘‘ଗୁରୁ କୃଷ୍ଣରୂପ ହନ୍ ଶାସ୍ତ୍ରେର ପ୍ରମାଣେ।’’ ତେଣୁ ଗରୁସେବା ଓ ଗୁରୁ ଉପାସନା ପ୍ରଣାଳୀ ସର୍ବଶାସ୍ତ୍ରସମ୍ମତ ଉପାସନା। ସାଧନ-ଭଜନର ମୂଳ ଉଦ୍ଦେଶ୍ୟ ମାନବର ପୂର୍ବସ୍ୱଭାବ ବା ପ୍ରକୃତିର ସଂଶୋଧନ। ପ୍ରକୃତି ବା ସ୍ୱଭାବ ଅବିଦ୍ୟା ବା ଅଜ୍ଞାନସ୍ୱରୂପ। ଏକମାତ୍ର ଆତ୍ମଜ୍ଞାନଦ୍ୱାରା ହିଁ ଏହି ପ୍ରକୃତି ଜୟ ସମ୍ଭବପର; କିନ୍ତୁ ସେହି ଜ୍ଞାନକୁ ପ୍ରକୃତି କେବେ ସ୍ୱେଚ୍ଛାରେ ଗ୍ରହଣ କରିବାକୁ ଆଗ୍ରହାନ୍ୱିତ ହୁଏ ନାହିଁ। ନିଜର ଶତ୍ରୁକୁ କିମ୍ବା ଯେ ନିଜର ସର୍ବନାଶ କରିବ, ଏଭଳି ବ୍ୟକ୍ତିକୁ କେହି ସ୍ୱେଚ୍ଛାରେ ନିମନ୍ତ୍ରଣ କରିବାକୁ ଇଚ୍ଛା କରନ୍ତି ନାହିଁ। ତେଣୁ ସାଧକମାନଙ୍କୁ ପ୍ରଥମେ ସତ୍‌ଶାସ୍ତ୍ରପାଠ ଓ ସତ୍‌ସଙ୍ଗ ଅବଲମ୍ବନ କରି ଶ୍ରଦ୍ଧା ଆନୟନ କରିବାକୁ ପଡ଼ିବ। ସାଧାରଣ ବିଷୟୀ ମାନବ ସତ୍‌ସଙ୍ଗ ଓ ସତ୍‌ଶାସ୍ତ୍ରପାଠପ୍ରତି ଆଗ୍ରହାନ୍ୱିତ ହୁଅନ୍ତି ନାହିଁ। ଅତି କଷ୍ଟରେ ଯେପରି ତିକ୍ତ ଔଷଧ ସେବନ କରାଯାଏ, ସେହିଭଳି ପ୍ରକୃତି-ଅନୁମୋଦିତ ସହସ୍ର, ସଂସାରକର୍ମର ଅସୁବିଧା ସହ୍ୟ କରି ସତ୍ୟଜ୍ଞାନ, ସତ୍‌କଥାପ୍ରସଙ୍ଗ ଓ ସାଧୁସଙ୍ଗରେ ଯୋଗ ଦେବାକୁ ହୁଏ। ଏହିଭଳି ପଥରେ ଚଳିଲେ ଭଗବତ୍‌କୃପାରୁ ସଦ୍‌ଗୁରୁଙ୍କ ସନ୍ଧାନ ମିଳେ। ନିଜ ଅନ୍ତରମଧ୍ୟରେ ସଦ୍‌ଗୁରୁ ବିବେକ ରୂପରେ ଧରାଦିଅନ୍ତି। ତା’ଫଳରେ ଶିଷ୍ୟ ବାହାରେ ସଦ୍‌ଗୁରୁଙ୍କୁ ଅନ୍ୱେଷଣ କରନ୍ତି ଏବଂ ଜଣେ ସାଧୁମହାତ୍ମାରୂପରେ ତାଙ୍କୁ ପ୍ରଥମେ ଦର୍ଶନ କରି ତାଙ୍କ ଶରଣ ଗ୍ରହଣ କରନ୍ତି ଅର୍ଥାତ୍ ତାଙ୍କ ନାମ ରୂପର ଆଶ୍ରୟ ନିଅନ୍ତି। ଶ୍ରୀଗୁରୁଦେବଙ୍କ ଆଶ୍ରୟ ବ୍ୟତୀତ କେବେହେଲେ ମାନବର ପୂର୍ବପ୍ରକୃତିର ସଂଶୋଧନ ବା ପରିବର୍ତ୍ତନ ହୋଇପାରେ ନାହିଁ; କାରଣ, ମାନବ ପ୍ରକୃତିର ବଶୀଭୂତ ଥାଏ। ତେଣୁ ପ୍ରକୃତିର ବାଧା ଅତିକ୍ରମ କରି ଶ୍ରୀଗୁରୁଦେବଙ୍କ ବାକ୍ୟ ଶ୍ରବଣ କରିବାକୁ କେବେହେଲେ ଆଗ୍ରହାନ୍ୱିତ ହୁଏ ନାହିଁ। ପୁଣି ସାଧାରଣ ମାନବଙ୍କର ପ୍ରକୃତି ବିରୁଦ୍ଧରେ ଗତି କରିବାର କ୍ଷମତା କେବେହେଲେ ହୁଏ ନାହିଁ। ଯଦି କେହି ପ୍ରକୃତ ବନ୍ଧୁ ଅପର ପ୍ରକୃତିର କିଛି ଦୋଷ-ତ୍ରୁଟି ଏବଂ ଅସଙ୍ଗତି ଦର୍ଶନ କରି ତାଙ୍କୁ ହିତ-ଉପଦେଶ ପ୍ରଦାନ

କରନ୍ତି, ତେବେ ସେହି ବ୍ୟକ୍ତି ଅମ୍ଭିମାନରେ ଅନ୍ଧ ହୋଇ ଉପଦେଷ୍ଟାଙ୍କ ପ୍ରତି ଅନ୍ତରରେ ଓ ବାହାରେ ଅତିଶୟ କ୍ରୋଧଭାବ ପ୍ରକାଶ କରିଥାନ୍ତି । ଏହା ହିଁ ମାନବର ସ୍ୱଭାବିକ ପ୍ରକୃତି । ତେଣୁ କେବେହେଲେ ପ୍ରକୃତିକୁ ପ୍ରକୃତିଦ୍ୱାରା ଜୟ କରାଯାଇପାରେ ନାହିଁ । ଏହି ପ୍ରକୃତିର ଅନ୍ୟନାମ ପ୍ରବୃତ୍ତି । ତେଣୁ ଶ୍ରୀଗୁରୁଦେବଙ୍କ ଶରଣାପନ୍ନ ହୋଇ ତାଙ୍କ ଉପଦେଶ ଅନୁସାରେ ପ୍ରବୃତ୍ତିକୁ ନିବୃତ୍ତିପଥରେ ପରିଚାଳିତ କରିବାକୁ ହୁଏ । ସଦ୍‌ଗୁରୁଙ୍କ ପ୍ରତି ଶ୍ରଦ୍ଧାବାନ୍ ହେବା, ତାଙ୍କ ଆଦେଶ ମାନି ଚଳିବା ଏବଂ ତାଙ୍କ କଠୋର ପରୀକ୍ଷାରେ ବିଚଳିତ ନ ହେବା ଓ ତାଙ୍କର କଟୁକଥା ସହ୍ୟ କରିବା ଦ୍ୱାରା ମାନବର ପ୍ରକୃତି ବଶୀଭୂତ ହୋଇଥାଏ । ସାଧାରଣ ଗୁରୁମାନଙ୍କ ନିର୍ଦ୍ଦେଶରେ ଚଳିଲେ ମାନବର ବାହ୍ୟପ୍ରକୃତି କେତେକ ପରିମାଣରେ ବଶୀଭୂତ ହୋଇଥାଏ; କିନ୍ତୁ ସଦ୍‌ଗୁରୁଙ୍କ ବ୍ୟତୀତ ଅନ୍ତଃପ୍ରକୃତି ବଶୀଭୂତା ହୋଇପାରେ ନାହିଁ । ନିଜର ଭାବ, ବାସନା, ଚିନ୍ତାପଦ୍ଧତି, ସଂସ୍କାର, ମୋହ, ଅବିଦ୍ୟା ପ୍ରଭୃତି ଅନ୍ତଃପ୍ରକୃତିର ବିଭିନ୍ନ ଅବସ୍ଥା । ଅନ୍ତରରେ ସଦ୍‌ଗୁରୁଙ୍କର ଦର୍ଶନ ନ ପାଇଲେ ଅନ୍ତଃପ୍ରକୃତିର ସଂଶୋଧନ ହୋଇପାରେ ନାହିଁ କିମ୍ବା ଦିବ୍ୟଜ୍ଞାନ ବା ସ୍ୱରୂପଜ୍ଞାନ ଲାଭ ହୁଏ ନାହିଁ । ଏହି ସଦ୍‌ଗୁରୁଙ୍କୁ ଯେଉଁମାନେ ଆଶ୍ରୟ କରି ତାଙ୍କର ନାମ, ରୂପ, ଲୀଳା ଓ ବିଗ୍ରହସେବାରେ ନିଜକୁ ନିୟୋଜିତ କରି ତାଙ୍କ ସ୍ୱରୂପଦର୍ଶନ ନିମିତ୍ତ ତାଙ୍କରି ଧ୍ୟାନ ଓ ନିଷ୍କାମକର୍ମରୂପ ସଂଘସେବାରେ ବ୍ରତୀ ଅଛନ୍ତି, ସେହିମାନେ ହିଁ ଦିନେ ଅନ୍ତଃପ୍ରକୃତିକୁ ଜୟ କରି ଆଧ୍ୟାତ୍ମ୍ୟଜଗତରେ ପ୍ରବେଶ କରିପାରିବେ । ଏହି ଅଦୃଶ୍ୟ ଅନ୍ତର୍ନିହିତ ଗୁରୁଶକ୍ତିକୁ ଯେଉଁମାନେ ଅବଲମ୍ବନ କରିପାରି ନାହାନ୍ତି, କେବଳ ବାହ୍ୟିକ ଗୁରୁ କିମ୍ବା କୁଳଗୁରୁ ତାଙ୍କୁ ଅନ୍ତର୍ଜଗତର ସନ୍ଧାନ ଦେଇ ଅନ୍ତଃପ୍ରକୃତି ଜୟ କରାଇଦେଇ ପାରିବେ ନାହିଁ । ତେଣୁ ନିଜର ମନ, ବୁଦ୍ଧି ଓ ଚିତ୍ତକୁ ଶୋଧନ କରିବାନିମିତ୍ତ ଶୁଦ୍ଧ ତତ୍ତ୍ୱଜ୍ଞାନର ଆଲୋଚନା ସାଧୁସଙ୍ଗରେ ସମ୍ପନ୍ନ କରିବା ବିଧେୟ । ସଦଗୁରୁଙ୍କ ନିର୍ଦ୍ଦିଷ୍ଟ ଧ୍ୟାନ, ନାମଜପ ଓ ନିଷ୍କାମ କର୍ମରେ ଆତ୍ମନିୟୋଗ କରି ଯଥାସାଧ୍ୟ ଜ୍ଞାନାନୁଶୀଳନ କଲେ ସହଜରେ ଅନ୍ତଃପ୍ରକୃତି ବଶୀଭୂତା ହୁଏ । ତେଣୁ ଜ୍ଞାନାଗ୍ନି ହିଁ ପ୍ରକୃତିରୂପ ଇନ୍ଧନର ଦଗ୍ଧକାରକ । ସତ୍ୟଜ୍ଞାନ ହିଁ ସାଧକଙ୍କ ଅଜ୍ଞାତରେ ତାଙ୍କର ଅନ୍ତଃପ୍ରକୃତିକୁ ପରିବର୍ତ୍ତିତ କରିଦେଇପାରେ । ଯେଉଁମାନେ ପାଣ୍ଡିତ୍ୟ ଲାଭ ନିମିତ୍ତ ଜ୍ଞାନାର୍ଜନ କରନ୍ତି, ସେମାନଙ୍କର ପ୍ରକୃତି ସଂଶୋଧିତ ହୋଇପାରେ ନାହିଁ, କିନ୍ତୁ ଯେଉଁମାନେ ପ୍ରକୃତି ସଂଶୋଧନ ଲକ୍ଷ୍ୟରେ

ଶ୍ରୀଗୁରୁଦେବଙ୍କ ନିକଟରୁ ଜ୍ଞାନ ଆହରଣ କରନ୍ତି, ସେହିମାନଙ୍କର ସତ୍ୱର ସିଦ୍ଧି ଲାଭ ହୁଏ । ସେତେବେଳେ ଜ୍ଞାନ ହିଁ ବିବେକରୂପରେ ସାଧକଙ୍କୁ ସତ୍‌ପଥକୁ ଟାଣିନେଇଯାଏ । କିଭଳି ଶ୍ରୀଗୁରୁଦେବଙ୍କ ତତ୍ତ୍ୱ ଜାଣି ତାଙ୍କ ସେବାରେ ସାଧକ ବାହାରେ ସଂଘସେବା ଓ ଅନ୍ତରରେ ଶ୍ରୀଗୁରୁଦେବଙ୍କ ନାମରୂପର ସେବା ଦ୍ୱାରା ଆତ୍ମଜ୍ଞାନଲାଭ ପଥରେ ଅଗ୍ରସର ହୋଇପାରିବେ, ସେହି ବିଷୟରେ ବିବିଧ ତତ୍ତ୍ୱ ଏହି ପୁସ୍ତକର ବିଭିନ୍ନ ଅଧ୍ୟାୟରେ ବିବୃତ ହୋଇଅଛି ।

ସାଧକମାନେ ସତ୍ୟଜ୍ଞାନୀ ସଦ୍‌ଗୁରୁଙ୍କର ଶରଣ ଗ୍ରହଣ କରି ତାଙ୍କୁ ପ୍ରଣିପାତ, ପରିପ୍ରଶ୍ନ ଓ ସେବା ଦ୍ୱାରା ସନ୍ତୁଷ୍ଟ କରିବା ଦରକାର । ଅନ୍ୟଥା ନିଜ ଚେଷ୍ଟାବଳରେ ସେମାନେ କେବେହେଲେ ନିଜ ପ୍ରକୃତିକୁ ବଶୀଭୂତ କରିପାରିବେ ନାହିଁ । ସଦ୍‌ଗୁରୁ ଶିଷ୍ୟମାନଙ୍କୁ ଯେଉଁ ନିର୍ଦ୍ଦେଶ ଦିଅନ୍ତି, ବିନା ବିଚାରରେ ଶ୍ରଦ୍ଧାପୂର୍ବକ ସେମାନେ ତାହା ପ୍ରତିପାଳନ କରିବା ବିଧେୟ । କେବେହେଲେ ତାଙ୍କ ଗୁଣରେ ଦୋଷ ଦର୍ଶନ କରିବା ଉଚିତ୍ ନୁହେଁ । ସର୍ବଦା ତାଙ୍କ ପ୍ରତି ଈଶ୍ୱରବୁଦ୍ଧି ରଖି ଚଳିବା ଆବଶ୍ୟକ । ତାଙ୍କ ବାକ୍ୟକୁ ଅମାନ୍ୟ କରିବା ଠାରୁ ଗୁରୁତର ପାପ ନାହିଁ ବୋଲି ଦୃଢ଼ଧାରଣା ପୋଷଣ କରିବା ବିଧେୟ । ତାଙ୍କୁ କିମ୍ବା ତାଙ୍କ ଭକ୍ତଙ୍କପ୍ରତି ଅବଜ୍ଞାଭାବ ଆଣିବା ଉଚିତ ନୁହେଁ । ଶିଷ୍ୟମାନଙ୍କର ଯେଉଁ କାର୍ଯ୍ୟରେ ଅକଲ୍ୟାଣ ହେବ, ଶ୍ରୀଗୁରୁଦେବ କେବେ ହେଲେ ସେପରି ନିର୍ଦ୍ଦେଶ ପ୍ରଦାନ କରନ୍ତି ନାହିଁ । ସେ ଶିଷ୍ୟମାନଙ୍କର ପ୍ରତି ପଦକ୍ଷେପ ପ୍ରତି ଦୃଷ୍ଟିଦେଇ ସେମାନଙ୍କୁ ପରିଚାଳନା କରନ୍ତି । ତେଣୁ ଦୁଃଖ-କଷ୍ଟ, ଅଭାବ-ଅସୁବିଧା ସହ୍ୟ କରି ମଧ୍ୟ ତାଙ୍କ ଆଦେଶ ପ୍ରତିପାଳନ କରିବାକୁ ଦୃଢ଼ସଂକଳ୍ପ କରି ଗୁରୁବରଣ କରିବା ବିଧେୟ ନଚେତ୍ ଆତ୍ମଶୁଦ୍ଧି ହେବ ନାହିଁ । ସର୍ବଦା ସୁଖ-ସୁବିଧା-କୋଳରେ ବସି କେବେ ହେଲେ ପରାଗତି ଲାଭ ହୋଇପାରେ ନାହିଁ । ସାଧାରଣ ମାନବଦୃଷ୍ଟିରେ ଶ୍ରୀଗୁରୁଦେବଙ୍କ ପ୍ରତି କେବେହେଲେ ଅବଜ୍ଞାଭାବ ଆଣିବା ଉଚିତ୍ ନୁହେଁ । ବାହ୍ୟିକଭାବରେ ନରାକାର ହେଲେ ମଧ୍ୟ ଶ୍ରୀଗୁରୁଦେବ ପୂର୍ଣ୍ଣ ପରଂବ୍ରହ୍ମଙ୍କ ପ୍ରକଟମୂର୍ତ୍ତି । ଶ୍ରୀଗୁରୁଦେବଙ୍କ ପ୍ରତି ଏହିଭଳି ଦୃଢ଼ ବିଶ୍ୱାସ ନ ଥିଲେ ମହାଦୁଃଖଦାୟକ ଶକ୍ତିଶାଳୀ ଜୀବ-ପ୍ରକୃତିର କରାଳ କବଳରୁ ସାଧକମାନେ କେବେହେଲେ ଉଦ୍ଧାର ପାଇପାରନ୍ତି ନାହିଁ । ପ୍ରକୃତି ହିଁ ଜୀବର ଚାଳକ । ତେଣୁ ଜୀବ ନିଜ ଶକ୍ତିବଳରେ ନିୟତିକୁ କେବେହେଲେ ନିଜ ଇଚ୍ଛାନୁସାରେ ପରିଚାଳିତ କରିପାରେ ନାହିଁ । ଆତ୍ମଶକ୍ତି ଓ ବିବେକ ବଳରେ ଏହି

ଶକ୍ତି ବଶୀଭୂତା ହୋଇଥାନ୍ତି । ଶ୍ରୀଗୁରୁଦେବଙ୍କ ବାକ୍ୟକୁ ବିଶ୍ୱାସ କରିବା ବିବେକର କାର୍ଯ୍ୟ ଓ ତାହା ପ୍ରତିପାଳନ କରିବାର ଶକ୍ତି ଆତ୍ମାର କାର୍ଯ୍ୟ । ଦେହ-ମନ-ପ୍ରାଣ ଏହାର ପ୍ରତିବନ୍ଧକ । ତେଣୁ ଦେହ-ମନ-ପ୍ରାଣରୂପ ପ୍ରକୃତିକୁ ଶ୍ରୀଗୁରୁଦେବଙ୍କୁ ସମର୍ପଣ କରି ପ୍ରକୃତିକୁ ବିଶୁଦ୍ଧ କରିବାକୁ ହୁଏ । ନିଜ ପ୍ରକୃତିବଶରୁ ମାନବର ସାଂସାରିକ, ପାରିବାରିକ, ମାନସିକ ଓ ଆଧାତ୍ମିକ ଅକଲ୍ୟାଣ ସାଧିତ ହୁଏ । ପାର୍ଥିବ ଧନ-ସମ୍ପଦଦ୍ୱାରା ସେହି ପ୍ରକୃତିର ସଂଶୋଧନ କେବେହେଲେ ହୋଇପାରେ ନାହିଁ । ତେଣୁ ପାର୍ଥିବ ଜଗତରେ ଯେତେ ଉଚ୍ଚକୋଟିର ଲୋକ ହେଲେ ମଧ୍ୟ ତାଙ୍କର ଅଶାନ୍ତି, ଦୁଃଖ ଓ ଅଜ୍ଞତା ଲାଗିରହିଥାଏ । କିଭଳି ଗୁରୁସେବାବଳରେ ଏହି ପ୍ରକୃତି ପରିବର୍ତ୍ତିତ ହୋଇ ଶୁଦ୍ଧ ହୁଏ, ତାହାର କେତେକ ତତ୍ତ୍ୱ ଶ୍ରୀଶ୍ରୀ ଠାକୁରଙ୍କ ପ୍ରଣୀତ ବିଭିନ୍ନ ପୁସ୍ତକରୁ ସଂଗୃହୀତ ହୋଇ ଏଥିରେ ପ୍ରକାଶ କରାଯାଇଛି ।

ଯେଉଁ ମହାପୁରୁଷ ସାଧାରଣଙ୍କୁ ସତ୍‌ପଥକୁ ଆନୟନନିମିତ୍ତ ବିବିଧ ଚେଷ୍ଟାନିରତ ଥାଇ ସତ୍‌ମାର୍ଗର ପଥପ୍ରଦର୍ଶକ, ସଦ୍‌ଗୁରୁ ରୂପରେ ବର୍ତ୍ତମାନ ସୁଦ୍ଧା ତାଙ୍କ ଜ୍ଞାନବଳରେ ତାଙ୍କ ଆଶ୍ରିତ ଶିଷ୍ୟ-ଭକ୍ତମାନଙ୍କୁ ପରିଚାଳନା କରୁଛନ୍ତି, ତାଙ୍କ ସମ୍ବନ୍ଧରେ ସାଧାରଣଙ୍କର କିଞ୍ଚିତ୍ ଧାରଣା ଥିବା ଆବଶ୍ୟକ ।

ପ୍ରେମାବତାର ଶ୍ରୀମନ୍ ମହାପ୍ରଭୁ ଗୌରାଙ୍ଗଦେବଙ୍କ ଜନ୍ମଭୂମି ନଦୀୟା ଜିଲ୍ଲାର ମେହେରପୁର ମହକୁମାରେ ଅବସ୍ଥିତ କୁତବପୁର ଗ୍ରାମରେ ୧୨୮୬ ସାଲ ଝୁଲଣପୂର୍ଣ୍ଣିମା ତିଥିରେ ପରମହଂସ ପରିବ୍ରାଜକାର୍ଯ୍ୟ ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ହେବ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଭୁବନମୋହନ ଓ ମାତାଙ୍କ ନାମ ଯୋଗେନ୍ଦ୍ର ମୋହିନୀ (ଡାକନାମ ମାଣିକ୍ୟସୁନ୍ଦରୀ) ଦେବୀ । ପିତାମାତା ବାଳକର ନାମ ରଖିଥିଲେ ନଳିନୀକାନ୍ତ । ବାଲ୍ୟକାଳରେ ତାଙ୍କର ମାତୃବିୟୋଗ ହେଲା ଏବଂ ସେ ମାତୁଳାଳୟ ରାଧାକାନ୍ତପୁରରେ ଥିବାରୁ ମାତାଙ୍କର ଶେଷ ଦର୍ଶନ ଲାଭ କରିପାରିଲେ ନାହିଁ । ମୃତ୍ୟୁ ସମୟରେ ମା' ନଳିନୀଙ୍କୁ ଜଗନ୍ମାତାଙ୍କ କୋଳରେ ସମର୍ପଣ କରିଦେଇଥିଲେ । ମା'ଙ୍କ କଥାକୁ ବିଶ୍ୱାସ କରି ନଳିନୀକାନ୍ତ ଜଗନ୍ମାତାଙ୍କ ଦର୍ଶନ ନିମିତ୍ତ ଯେତେ ବ୍ୟାକୁଳ ହୋଇ ଡାକିଲେ ମଧ୍ୟ ସ୍ୱପ୍ନରେ ସୁଦ୍ଧା ନିଜ ମା' କିମ୍ବା ଜଗନ୍ମାତା କାହାରି ହେଲେ ଦର୍ଶନ ଲାଭ କରିପାରିଲେ ନାହିଁ । ସେ ଭାବିଲେ, ଜଗନ୍ମାତା ବୋଲି କେହି ନାହାନ୍ତି । ଫଳରେ ତାଙ୍କର ଭଗବତ୍‌ବିଶ୍ୱାସ କ୍ରମେ ତିରୋହିତ ହୋଇଗଲା । ସେ ଏକପ୍ରକାର ନାସ୍ତିକ ହୋଇଗଲେ । ସେ ଅନ୍ତରରେ ନାସ୍ତିକଭାବ ପୋଷଣ କରୁଥିଲେ ମଧ୍ୟ ନୀତିପାଳନରୁ

କେବେହେଲେ ବିଚ୍ୟୁତ ହେଉ ନଥିଲେ । ସେ ପିତାଙ୍କୁ ଦେବତାଜ୍ଞାନରେ ଭକ୍ତି କରୁଥିଲେ । କିଛିଦିନ ପରେ ସୁଧାଂଶୁବାଳାନାମ୍ନୀ ଜଣେ ପରମା ସୁନ୍ଦରୀ କନ୍ୟାଙ୍କ ସହିତ ତାଙ୍କର ବିବାହ ହେଲା । ସେ ଆନନ୍ଦରେ ସୁଧାଦେବୀଙ୍କୁ ନେଇ କିଛି ଦିନ ଗୃହସଂସାର କରୁଥିବା ସମୟରେ ସୁଧାଦେବୀଙ୍କ ଅସାମାନ୍ୟ ପ୍ରଭାବରେ ତାଙ୍କ ନାସ୍ତିକଭାବ କେତେକ ପରିମାଣରେ ପରିବର୍ତ୍ତିତ ହେବାକୁ ଲାଗିଲା । ଏହା ହେଲେ ମଧ୍ୟ ପରକାଳର ଅସ୍ତିତ୍ୱ-ସମ୍ବନ୍ଧରେ ତାଙ୍କର ବିଶ୍ୱାସ ନଥିଲା । କିଛି ଦିନପରେ ସେ ଅର୍ଥ-ଉପାର୍ଜ୍ଜନ-ନିମିତ୍ତ ନାରାୟଣପୁର ଜମିଦାରୀର ସମୀକ୍ଷକ ପଦରେ ନିଯୁକ୍ତ ହେଲେ । ସେଠାରେ ସେ କାର୍ଯ୍ୟବ୍ୟସ୍ତ ଥିବା ସମୟରେ ତାଙ୍କ ସ୍ତ୍ରୀଙ୍କର ଛାୟାମୂର୍ତ୍ତି ଦର୍ଶନ କଲେ । ପରେ ଗୃହକୁ ଯାଇ ଜାଣିଲେ ଯେ ଉକ୍ତ ମୂର୍ତ୍ତି ଦର୍ଶନର ଚାରି ଦଣ୍ଡପୂର୍ବରୁ ସୁଧାଦେବୀଙ୍କର ମୃତ୍ୟୁ ଘଟିଛି ।

ଛାୟାମୂର୍ତ୍ତି ଦର୍ଶନ ପରେ ତାଙ୍କର ପରକାଳର ଅସ୍ତିତ୍ୱପ୍ରତି ଦୃଢ଼ ବିଶ୍ୱାସ ଜାତ ହେଲା । ସେ ମୃତା ପତ୍ନୀଙ୍କ ସାକ୍ଷାତ୍‌ଲାଭ ଏବଂ ପରକାଳର ତତ୍ତ୍ୱାନୁସନ୍ଧାନରେ ବ୍ୟାପୃତ ହେଲେ । ସେ ଭାବିଲେ, ମୃତ୍ୟୁପରେ ଆତ୍ମାର ଅସ୍ତିତ୍ୱ ରହିଛି ଓ ସେ ଆମ ସହିତ ସାକ୍ଷାତ୍ କରିପାରୁଛି; କିନ୍ତୁ ମାନବର ମୃତ୍ୟୁ ନ ହେଲେ ତ ପରକାଳବାସୀଙ୍କ ସହିତ ସାକ୍ଷାତ୍ ସମ୍ଭବପର ହେଉ ନାହିଁ । ତେବେ ବିଧାତାଙ୍କର ଏଭଳି ବିଧାନ କରିବାର ରହସ୍ୟ କ'ଣ ? ଏହି ପରକାଳ-ତତ୍ତ୍ୱ ଜାଣିବା ଏବଂ ଇହକାଳରେ ଏହି ସ୍ଥୂଳଦେହରେ କିପରି ପରକାଳବାସୀଙ୍କ ସହିତ ସାକ୍ଷାତ୍ ବାକ୍ୟାଳାପ ହୋଇପାରିବ, ସେହି ତଥ୍ୟର ଅନୁସନ୍ଧାନ କରିବା ନିମିତ୍ତ ସେ ନାନା ସ୍ଥାନରେ ଭ୍ରମଣ କରୁଥିବାବେଳେ ଥିଓସଫି ସଂପ୍ରଦାୟର ସନ୍ଧାନ ଲାଭ କରି ମାନ୍ଦ୍ରାଜ ଯାଇ ମହାତ୍ମା ଲେଡ୍ ବିଟର ସାହେବଙ୍କ ଠାରୁ ପ୍ରେତ-ତତ୍ତ୍ୱ ବିଦ୍ୟା ଶିକ୍ଷା କଲେ । ପ୍ରେତ-ତତ୍ତ୍ୱ ବିଦ୍ୟା ଶିକ୍ଷା କରି ମିଡ଼ିୟମ୍ ଦ୍ୱାରା ସୁଧାଦେବୀଙ୍କୁ ଅଣାଇ ବାକ୍ୟାଳାପ କଲେ; ମାତ୍ର ପ୍ରତ୍ୟକ୍ଷ ଦର୍ଶନ ପାଇପାରିଲେ ନାହିଁ । ତେଣୁ ପରକାଳବାସୀଙ୍କର ପ୍ରତ୍ୟକ୍ଷ ଦର୍ଶନ ନିମିତ୍ତି ସେ ନାନା ସ୍ଥାନ ଭ୍ରମଣ କରିବାକୁ ଲାଗିଲେ । ଏହି ସମୟରେ ତତ୍‌କାଳୀନ ପ୍ରସିଦ୍ଧ ସାଧୁ ପୂର୍ଣ୍ଣାନନ୍ଦ ସରସ୍ୱତୀଙ୍କ ସହିତ ତାଙ୍କ ସାକ୍ଷାତ୍ ହେଲା । ପୂର୍ଣ୍ଣାନନ୍ଦ ମହାରାଜଙ୍କ ଉପଦେଶାନୁସାରେ ସେ ସଦ୍‌ଗୁରୁ ଅନୁସନ୍ଧାନରେ ବ୍ରତୀ ହେଲେ । ମାତ୍ର କୌଣସି ଠାରେ ସେ ସଦ୍‌ଗୁରୁଙ୍କ ଦର୍ଶନ ପାଇଲେ ନାହିଁ । ସାଧୁ-ଶାସ୍ତ୍ରମୁଖରୁ ଅବଗତ ହେଲେ ଯେ ସଦ୍‌ଗୁରୁ ନିତ୍ୟ

ବର୍ତ୍ତମାନ । ଶିଷ୍ୟଙ୍କ ପ୍ରାଣରେ ଯଥାର୍ଥ ବ୍ୟାକୁଳତା ଜାତ ହେଲେ ଭଗବାନ୍ ସଦ୍‌ଗୁରୁଙ୍କ ରୂପ ଧାରଣ କରି ସାଧକଙ୍କୁ ସ୍ୱପ୍ନରେ ଦୀକ୍ଷା ପ୍ରଦାନ କରିଥାନ୍ତି ଏବଂ ଜଗତ୍‌ଗୁରୁ ମଧ୍ୟ ସଦ୍‌ଗୁରୁ ରୂପରେ ସାଧକଙ୍କୁ ଦର୍ଶନ ଦାନ କରି ଅଭିଳାଷ ପୂର୍ଣ୍ଣ କରନ୍ତି । ନଳିନୀକାନ୍ତଙ୍କର ବ୍ୟାକୁଳତା ଫଳରେ ରୁଦ୍ଧଦ୍ୱାରଭେଦପୂର୍ବକ ଜଣେ ମହାପୁରୁଷ ଆବିର୍ଭୂତ ହୋଇ ତାଙ୍କୁ କହିଲେ, ''ବତ୍ସ ! ମନ୍ତ୍ର ନିଅ ।'' ଏହା କହି ସେହି ସାଧୁ ନଳିନୀକାନ୍ତଙ୍କୁ ବିଲ୍ୱ ପତ୍ରରେ ରକ୍ତଚନ୍ଦନ ଦ୍ୱାରା ଲିଖିତ ବୀଜ ମନ୍ତ୍ର ପ୍ରଦାନ କରି ଅନ୍ତର୍ହିତ ହୋଇଗଲେ ।

ନଳିନୀକାନ୍ତ ଅତିଶୟ ବ୍ୟାକୁଳଭାବରେ ସେହି ମହାପୁରୁଷଙ୍କ ସନ୍ଧାନରେ ବ୍ରତୀ ହେଲେ ଏବଂ ମନ୍ତ୍ରର ସାଧନ-ପ୍ରଣାଳୀ ଜାଣିବା ନିମିତ୍ତ ବହୁ ସାଧୁସନ୍ନ୍ୟାସୀଙ୍କ ଦ୍ୱାରସ୍ଥ ହେଲେ ମଧ୍ୟ କେହି ତାଙ୍କୁ କୌଣସି ସଦୁତ୍ତର ପ୍ରଦାନ କରିପାରିଲେ ନାହିଁ । ଏହିପରି ଅବସ୍ଥାରେ ସ୍ୱପ୍ନରେ ଜଣେ ବୃଦ୍ଧ ବ୍ରାହ୍ମଣଙ୍କର ଆବିର୍ଭାବ ହେଲା । ତାଙ୍କଠାରୁ ଆଦେଶ ପାଇଁ ସେ ବୀରଭୂମ ଜିଲ୍ଲାର ତାରାପୁର ଗ୍ରାମରେ ଉପସ୍ଥିତ ହୋଇ ବାମାକ୍ଷେପାଙ୍କ ଶରଣାପନ୍ନ ହେଲେ । ସେ ବାମାକ୍ଷେପାଙ୍କ ନିକଟରେ ଉପନୀତ ହୋଇ ତାଙ୍କ କୃପାରୁ ମନ୍ତ୍ରସିଦ୍ଧି ଲାଭ କରି ମହାଶକ୍ତି ତାରାଦେବୀଙ୍କୁ ସୁଧାଦେବୀ ମୂର୍ତ୍ତିରେ ଦର୍ଶନ କରି ବାକ୍ୟାଳାପ କଲେ । ନଳିନୀକାନ୍ତ ସୁଧାଦେବୀଙ୍କୁ ସାକ୍ଷାତ୍ ଦର୍ଶନ ଓ ତାଙ୍କ ସହିତ ବାକ୍ୟାଳାପ କଲେ ମଧ୍ୟ ତାଙ୍କୁ ସ୍ପର୍ଶ କରିବାକୁ ଅକ୍ଷମ ହେବାରୁ ତାଙ୍କ ମନରେ ଏ ସିଦ୍ଧିସମ୍ବନ୍ଧରେ ସଂଶୟ ଜାତ ହେଲା । ପୁନରାୟ ଏହାର ତତ୍ତ୍ୱ ଜାଣିବା ନିମିତ୍ତ ବ୍ୟାକୁଳ ହୋଇ ବାମାକ୍ଷେପାଙ୍କ ଆଦେଶରେ ଶଙ୍କରସଂପ୍ରଦାୟଭୁକ୍ତ ସନ୍ନ୍ୟାସୀଗୁରୁଙ୍କ ଅନୁସନ୍ଧାନରେ ବ୍ରତୀ ହୋଇ ସେ ସଂସାର ତ୍ୟାଗ କରି ଚାଲିଗଲେ । ଅବଶେଷରେ ସ୍ୱାମୀ ସଚ୍ଚିଦାନନ୍ଦ ସରସ୍ୱତୀଙ୍କୁ ସ୍ୱପ୍ନଦୃଷ୍ଟ ଗୁରୁମୂର୍ତ୍ତିରେ ଦର୍ଶନ କରି ତାଙ୍କୁ ଗୁରୁପଦରେ ବରଣ କଲେ ଓ ତାଙ୍କ କୃପାରୁ ଅଳ୍ପ ଦିନମଧ୍ୟରେ ଜ୍ଞାନ ସାଧନା କରି ସେଥିରେ ସିଦ୍ଧମନୋରଥ ହେବାରୁ ଗୁରୁ ସଚ୍ଚିଦାନନ୍ଦ ସରସ୍ୱତୀ ତାଙ୍କୁ ସନ୍ନ୍ୟାସଦୀକ୍ଷା ପ୍ରଦାନପୂର୍ବକ ତାଙ୍କର ନାମ ଦେଲେ 'ନିଗମାନନ୍ଦ' ।

କିଛିଦିନ ପରେ ପୁଣି ତାଙ୍କ ମନରେ ସଂଶୟ ଉପସ୍ଥିତ ହେଲା । ସେ ଭାବିଲେ, ସାଧକଙ୍କ ନିକଟରେ ଜଗତ୍ ମିଥ୍ୟା ଓ ବ୍ରହ୍ମ ସତ୍ୟ ହୋଇପାରେ । ସିଦ୍ଧଦୃଷ୍ଟିରେ ଜଗତ୍ କିଭଳି ଭାବରେ ଦୃଷ୍ଟିଗୋଚର ହେବ ଏବଂ ଯେଉଁ ଜ୍ଞାନ ସେ ଶିକ୍ଷା କଲେ, ତାହା କିପରି ଜୀବନରେ ପ୍ରତିଫଳିତ ହୋଇପାରିବ, ସେଥିପାଇଁ ସେ ଗୁରୁଦେବଙ୍କ ଆଦେଶରେ ଏହି ତତ୍ତ୍ୱକୁ ଜୀବନରେ ଉପଲବ୍ଧି କରିବା ନିମିତ୍ତ

'ଯୋଗୀଗୁରୁ'ଙ୍କ ଅନୁସନ୍ଧାନରେ ବ୍ରତୀ ହେଲେ । ସଚ୍ଚିଦାନନ୍ଦ ପରମ ଜ୍ଞାନୀ ଥିଲେ ମଧ୍ୟ ଯୋଗୀ ନଥିଲେ । ଅବଶେଷରେ ସ୍ୱାମୀ ସୁମେରୁଦାସଜୀଙ୍କୁ ଯୋଗୀଗୁରୁ ଭାବରେ ପ୍ରାପ୍ତ ହୋଇ ତାଙ୍କ କୃପାରୁ ଯୋଗ ଶିକ୍ଷା କରି ଯୋଗସାଧନ ନିମିତ୍ତ ଲୋକାଳୟକୁ ପ୍ରତ୍ୟାଗମନ ପୂର୍ବକ ପ୍ରଥମେ ହରିପୁର ଗ୍ରାମରେ ଏବଂ ତତ୍ପରେ ଗୌହାଟୀର ରାଜକର୍ମଚାରୀ ଶ୍ରୀ ଯଜ୍ଞେଶ୍ୱର ବିଶ୍ୱାସଙ୍କ ଆଶ୍ରୟରେ ଯୋଗ ସାଧନା କରି ସିଦ୍ଧମନୋରଥ ହେଲେ । ତତ୍ପରେ କୁମ୍ଭମେଳାରେ ସମାଗତ ସାଧୁମଣ୍ଡଳୀ ତାଙ୍କ ତତ୍ତ୍ୱଜ୍ଞାନର ପରିଚୟ ପାଇ ତାଙ୍କୁ 'ପରମହଂସ' ଉପାଧିରେ ଭୂଷିତ କଲେ । ଏହାପରେ ଗୁରୁ ସଚ୍ଚିଦାନନ୍ଦଙ୍କ ଆଦେଶରେ ଚାରି ଧାମ ଭ୍ରମଣ କରିବା ସମୟରେ ପୁରୀଧାମରେ ଜଗନ୍ନାଥ ଦର୍ଶନ କରି ତାଙ୍କର ଧାରଣା ପରିବର୍ତ୍ତିତ ହେଲା । ସେ ବୁଝିଲେ ଯେ ସାଧକମାନେ ସିଦ୍ଧ-ଦଶାରେ ଜଗତ୍‌କୁ ମାୟା ବୋଲି ଦର୍ଶନ ନକରି ଜଗନ୍ନାଥଙ୍କ ପରି ଭଗବତ୍ ଦୃଷ୍ଟିରେ ଦର୍ଶନପୂର୍ବକ ସେବାପରାୟଣ ହେବା ଦରକାର । କିଭଳି ସେହି ଦୃଷ୍ଟି ଖୋଲିବ, ସେଥିନିମିତ୍ତ ସେ ପୁନରାୟ ନିର୍ବିକଳ୍ପ ସମାଧି ଲାଭ କରି ଗୁରୁଭାବରେ ପ୍ରତିଷ୍ଠିତ ହୋଇ ଜଗତ୍‌କୁ ପ୍ରତ୍ୟାବର୍ତ୍ତନ କଲେ ।

ନିର୍ବିକଳ୍ପ ସମାଧିରେ ଗୁରୁଭାବରେ ପ୍ରତିଷ୍ଠିତ ହେବାଫଳରେ ପୁଣି କିଭଳି ଭଗବତ୍‌ଦୃଷ୍ଟିରେ ଜଗତକୁ ଦେଖିବେ, ଏହି ତତ୍ତ୍ୱ ଅନୁସନ୍ଧାନ କରିବା ନିମିତ୍ତ ଏବଂ ଯୋଗଜ୍ଞାନ ସାଧନାରେ ଦେବୀଙ୍କୁ ସୂକ୍ଷ୍ମଭାବରେ ଅନୁଭବ କରିଥିଲେ ମଧ୍ୟ ସ୍ଥୁଳ ଭାବରେ ସ୍ପର୍ଶ କରିବାକୁ ଅକ୍ଷମ ହେବାରୁ ପୁନରାୟ ପ୍ରସିଦ୍ଧ ସିଦ୍ଧା ଭୈରବୀ ଗୌରୀମା'ଙ୍କ ଆଶ୍ରମକୁ ଗଲେ ଏବଂ ତାଙ୍କ କୃପାରୁ ଭଗବାନ୍‌ଙ୍କୁ ସ୍ଥୁଳଭାବରେ ଲାଭ କରିବାର ଶ୍ରେଷ୍ଠ ଉପାୟ ପ୍ରେମଭକ୍ତି ଲାଭ କରି ସାଧନାର ପରିସମାପ୍ତି କଲେ ।

ତତ୍ପରେ ଗୁରୁ ସଚ୍ଚିଦାନନ୍ଦ ତାଙ୍କୁ ଗୁରୁଦକ୍ଷିଣା ସ୍ୱରୂପ ଗୁରୁଭାର ଅର୍ପଣ କଲେ । ଏହାପରେ ନିଗମାନନ୍ଦ ଲୋକାଳୟକୁ ଆସି ଗୁରୁଭାବରେ ଅବତୀର୍ଣ୍ଣ ହେଲେ । ସେ ଦେଖିଲେ ଯେ ସଦ୍‌ଗୁରୁଙ୍କ ନିର୍ଦ୍ଦିଷ୍ଟ ପନ୍ଥାରେ ସାଧନା କରିବା ନିମିତ୍ତ ସାଧାରଣଙ୍କର ଶକ୍ତି, ଉଦ୍ୟମ, ସାହସ, ଧୈର୍ଯ୍ୟ, ତିତିକ୍ଷା, ସଂଯମ ଏବଂ ଅଧ୍ୟବସାୟ ନାହିଁ । ବ୍ରହ୍ମଚର୍ଯ୍ୟ ଅଭାବରୁ ଗୃହସ୍ଥାଶ୍ରମୀମାନେ ବିପଥଗାମୀ । ଏହି ଗୃହସ୍ଥାଶ୍ରମ ଆଦର୍ଶଭାବରେ ଗଠିତ ନ ହେଲେ ଅନ୍ୟ ତିନି ଆଶ୍ରମ ବିପଥଗାମୀ ହେବା ସୁନିଶ୍ଚିତ । ତେଣୁ ସେହି ଉଦ୍ଦେଶ୍ୟ-ସିଦ୍ଧିନିମିତ୍ତ ସେ 'ଯୋଗୀଗୁରୁ', 'ବ୍ରହ୍ମଚର୍ଯ୍ୟ ସାଧନ', 'ଜ୍ଞାନୀଗୁରୁ', 'ତାନ୍ତ୍ରିକଗୁରୁ' ଓ 'ପ୍ରେମିକ ଗୁରୁ' ଗ୍ରନ୍ଥମାନ ପ୍ରଣୟନ

କରିବା ସଙ୍ଗେ ସଙ୍ଗେ 'ସାରସ୍ୱତ ମଠ' ସ୍ଥାପନପୂର୍ବକ ତାଙ୍କ ଭାବଧାରାର ଧାରାବାହିକ ପ୍ରଚାର ଉଦ୍ଦେଶ୍ୟରେ 'ଆର୍ଯ୍ୟଦର୍ପଣ' ନାମକ ଗୋଟିଏ ମାସିକ ପତ୍ରିକା ପ୍ରକାଶ କରି ବିଭିନ୍ନ ମତବାଦ ଭିତରେ ସମନ୍ୱୟ ଓ ସାମଞ୍ଜସ୍ୟ ସ୍ଥାପନ କଲେ ।

ଭାରତୀୟ ଶିକ୍ଷା ଓ ପାଶ୍ଚାତ୍ୟ ଶିକ୍ଷା ମଧ୍ୟରେ ଆକାଶ-ପାତାଳ ପ୍ରଭେଦ । ପ୍ରାଚ୍ୟର ସାଧନା ଅନ୍ତର୍ମୁଖୀ ଏବଂ ପାଶ୍ଚାତ୍ୟର ସାଧନା ବହିର୍ମୁଖୀ । ବିଦେଶୀୟ ବୀରଗଣ ବାହ୍ୟଶକ୍ତି ବଳରେ ଅନ୍ଧ ହୋଇ ଭାରତର ବାହ୍ୟସମ୍ପଦ ଲୁଣ୍ଠନ କରିଛନ୍ତି ସତ୍ୟ, ମାତ୍ର ଭାରତର ଅନ୍ତର୍ମୁଖୀ ଶକ୍ତିକୁ ବିନାଶ କରିବାକୁ ସେମାନେ ସକ୍ଷମ ହୋଇନାହାନ୍ତି । ଦୁଃଖ, ଅମଙ୍ଗଳ ଓ ବିପଦ ମଧ୍ୟରେ ଭଗବାନ୍‌ଙ୍କୁ ବରଣ କରିନେବା ହିଁ ଭାରତର ଅନ୍ତର୍ମୁଖୀ ସାଧନା । ବିପଦରେ ଯେପରି ଆମ୍ଭେମାନେ ବୀର୍ଯ୍ୟହୀନ ହୋଇ ଭଗବତ୍ ଶକ୍ତି ଉପରେ ବିଶ୍ୱାସହୀନ ହୋଇ ନ ପଡୁ, ଏହା ହିଁ ଆମର ଅନ୍ତର୍ମୁଖୀ ଶକ୍ତିର ପରିଚୟ । ଯେଉଁସବୁ ସୁଖ-ସମ୍ପଦ ଆମର ଥିଲା, ସେହି ସୁଖ-ସମ୍ପଦକୁ ଯଦି ଆମେ ଆତ୍ମଶକ୍ତିବଳରେ ଧାରଣ କରିବାକୁ ଅକ୍ଷମ ହେଲୁ, ତେବେ ପୁନରାୟ ସେହି ଆତ୍ମଶକ୍ତି ଲାଭ କରିବା ପର୍ଯ୍ୟନ୍ତ ଆମେ ଯେପରି ଦୁଃଖ-ନିର୍ଯ୍ୟାତନାକୁ ଭଗବାନ୍‌ଙ୍କ ଦାନ ବୋଲି ଗ୍ରହଣ କରି ଲକ୍ଷ୍ୟପଥରେ ଅଗ୍ରସର ହେଉ, ଏହି ଭାବ ରଖି ଚାଲିବାକୁ ହେବ । ସନ୍ତାନକୁ ଜାଗ୍ରତ କରିବା ନିମିତ୍ତ ଭଗବାନ୍‌ଙ୍କ ଦାନକୁ ମଥାପାତି ଗ୍ରହଣ କରିବାକୁ ହେବ । ଭାରତବାସୀ ଏହା ଅନ୍ତରରେ ହୃଦୟଙ୍ଗମ କରୁଛନ୍ତି ସତ୍ୟ, ମାତ୍ର ଯେଉଁ ଦେଶରେ ଦୁର୍ଭିକ୍ଷ ଓ ମହାମାରୀ ଦେଶର ରକ୍ତ ଶୋଷଣ କରୁଛି; ଅନ୍ନାଭାବ, ଅର୍ଥାଭାବ, ବସ୍ତ୍ରାଭାବ, ବିଦ୍ୟାର ଅଭାବ, ସ୍ୱାସ୍ଥ୍ୟର ଅଭାବ ପ୍ରଭୃତି ଅଭାବର ତାଡ଼ନା ଚତୁର୍ଦ୍ଦିଗରେ ଲାଗିରହିଛି, ମାନବ ଦୁଃଖ-କଷ୍ଟରେ ବ୍ୟସ୍ତ ହୋଇପଡୁଛି, ଦୈବୀ-ଦୁର୍ବିପାକ ତ ଲାଗିରହିଛି, ଏପରି କ୍ଷେତ୍ରରେ ମାନବ ଯଦି ଭଗବତ୍ ନିର୍ଭରତା ଟିକକ ହରାଇବସେ, ତେବେ ତାହାର ଚରମ ଦୁର୍ଦ୍ଦଶାର ବାକୀ ରହିଲା କେଉଁଠି ? ଅନ୍ନଚିନ୍ତା ମାନବକୁ ଏପରି ବ୍ୟାକୁଳ କରିପକାଇଛି ଯେ ଅର୍ଥ-ଅଭାବରୁ ଧର୍ମ ଚିନ୍ତା ମଧ୍ୟ ହୋଇପାରୁ ନାହିଁ । ତେଣୁ କେତେକ ଦେଶହିତୈଷୀ ଅର୍ଥକୁ ଶ୍ରେଷ୍ଠ ମନେ କରି ଧର୍ମକୁ ତ୍ୟାଗ କରିବାକୁ ପ୍ରଚାର କରୁଛନ୍ତି, କିନ୍ତୁ ଧର୍ମ ବ୍ୟତୀତ ଅର୍ଥଲାଭ ସମ୍ଭବ ନୁହେଁ । ଆତ୍ମଶକ୍ତିର ସାଧନାକୁ ଧର୍ମ କୁହାଯାଏ । ଆତ୍ମଶକ୍ତି ବା ନାରାୟଣଙ୍କ କୃପା ନ

ହେଲେ ଲକ୍ଷ୍ମୀଙ୍କ କୃପା ହୋଇପାରିବ ନାହିଁ । ତେଣୁ ନିଦାରୁଣ ଦୁଃଖ-କଷ୍ଟ ଭିତରେ ମଧ୍ୟ ଜନସାଧାରଣଙ୍କୁ ଭଗବାନ୍‌ଙ୍କ କଥା, ଧର୍ମକଥା ଶୁଣାଇବାକୁ ପଡ଼ିବ । ଲୋକେ ସେହି ଧର୍ମକଥା ଶୁଣି ଦୁଃଖରେ ସାନ୍ତ୍ୱନା ଲାଭ କରିବା ସଙ୍ଗେ ସଙ୍ଗେ ଆତ୍ମଶକ୍ତିର ଉଦ୍‌ବୋଧନ କରିପାରିବେ । ଆତ୍ମଶକ୍ତି ହରାଇବସିବା ଫଳରେ ଦେଶବାସୀ ନିଜକୁ ଦୀନହୀନ କାଙ୍ଗାଳ ବୋଲି ମନେ କରୁଛନ୍ତି । ସେମାନଙ୍କର ସାହସ ନାହିଁ, ଉଦ୍ୟମ ନାହିଁ । ଅନ୍ୟକୁ ବିଶ୍ୱାସ କରିବା ଭଳି ଚିତ୍ତର ପ୍ରସାର ନାହିଁ । ଧର୍ମ ବର୍ତ୍ତମାନ ଶକ୍ତିହୀନର ଲକ୍ଷଣ ହୋଇ ଦେଖାଦେଇଛି । ଯେକୌଣସି ପ୍ରକାର ସମାଜସେବା ମଧ୍ୟରେ ଆତ୍ମଶକ୍ତିର ଉଦ୍‌ବୋଧନ କରିବାକୁ ହେବ । ପାଶବଶକ୍ତିର ଅଭିନୟ ଜଗତରେ ବହୁ ବାର ହୋଇଯାଇଛି, କିନ୍ତୁ ପ୍ରେମ ଓ ତପସ୍ୟାର ଶକ୍ତି ଯେ ଜାତୀୟ ଜୀବନରେ ମୂର୍ତ୍ତି ହୋଇ ଫୁଟିପାରେ, ଜଗତ ଏପର୍ଯ୍ୟନ୍ତ ତାହାର ପରିଚୟ ପାଇପାରି ନାହିଁ ।

କେବଳ ଭାରତବର୍ଷର ଜୀବନରେ ହିଁ ତାହା ସମ୍ଭବ ହେବ । ଖାଲି ଆଦର୍ଶ ମହତ୍ ହେଲେ ଚଳିବ ନାହିଁ । ସେହି ଆଦର୍ଶରେ ପ୍ରତିଷ୍ଠିତ ହେବା ନିମିତ୍ତ ଯୋଗ୍ୟତା ଅର୍ଜନ କରିବାକୁ ହେବ । ସ୍ୱୟଂ ତପସ୍ୱୀ ଓ ବୀର୍ଯ୍ୟବାନ୍‌ଙ୍କୁ ପୂଜା କରିବାକୁ ପଡ଼ିବ । ଏହା ହିଁ ହେବ ଆଦର୍ଶପ୍ରତି ଯଥାର୍ଥ ଶ୍ରଦ୍ଧାର ନିଦର୍ଶନ । ଆମ ଦେଶରେ ଆଦର୍ଶକୁ ରୂପଦେବା ପରିବର୍ତ୍ତେ ଅନ୍ଧଅନୁକରଣକାରୀ ଦଳଙ୍କ ସଂଖ୍ୟା ବୃଦ୍ଧି ପାଉଥିବାରୁ ନିଜ ନିଜ ଭିତରେ ଦ୍ୱନ୍ଦ୍ୱ-ବିବାଦର ସୃଷ୍ଟି ହେଉଛି । ଯାହାଙ୍କ ନିକଟରେ ଇହକାଳ ଓ ପରକାଳର ସମସ୍ତ ଭାର ସମର୍ପଣ କରାଯାଇପାରେ, ତାଙ୍କୁ ହିଁ ସଦ୍‌ଗୁରୁ କୁହାଯାଏ । ସେ ହିଁ ଆମର ଧର୍ମ । ସେହି ଧର୍ମ ପ୍ରତିପାଳନ ସବୁଠାରୁ ଶ୍ରେଷ୍ଠ । ଦେଶବାସୀଙ୍କୁ ନାରାୟଣ ଜ୍ଞାନରେ ସେବା କରିବାକୁ ଶିକ୍ଷା ନ କଲେ ଦେଶସେବା ସାର୍ଥକ ହୋଇପାରେ ନାହିଁ । ସେବାବୃତ୍ତିର ଚରିତାର୍ଥତା ମାଧ୍ୟମରେ ଦେଶ ଆମର ମାତୃଭୂମି । ତା ନ ହେଲେ ତାହା ନିର୍ଜୀବ ଭୂମିଖଣ୍ଡ ମାତ୍ର । ଏହି ଭାବ ଅନ୍ତରର ଆଧ୍ୟାତ୍ମ୍ୟ ଚେତନାରୁ ଆସିଥାଏ । ସାର୍ବଜନୀନ ଉଦାରଭାବ ହିଁ ମାନବକୁ ଦେଶ ସେବାରେ ଉଦ୍‌ବୁଦ୍ଧ କରେ । ସେତେବେଳେ ଭଗବତ୍‌ପୂଜା ଓ ଦେଶପୂଜା ମଧ୍ୟରେ କିଛି ପ୍ରଭେଦ ରହେନାହିଁ । ହାତ୍ମଶକ୍ତିଲାଭ ବ୍ୟତୀତ ଯଦି ଲୌକିକ ସ୍ୱାର୍ଥଲାଭ-ଆଶାରେ ଦେଶସେବା କରାଯାଏ, ତେବେ ଭଗବାନ୍‌ଙ୍କ ନିକଟରେ ତାହାର କ୍ଷମା ନାହିଁ । ଆତ୍ମଶକ୍ତି ଲାଭ ହେଲେ ଅନ୍ୟାୟ ବିରୁଦ୍ଧରେ

ସଂଗ୍ରାମ କରିବାକୁ ଯେପରି ପ୍ରେରଣା ଜାତ ହେବ, ସେହିପରି ଅନ୍ୟ କୌଣସି ପ୍ରାଣୀର କ୍ଷତି କରିବାକୁ ମନ ଉତ୍ତେଜିତ ହେବ ନାହିଁ ।

ଉକ୍ତ ଭାବରେ ଆତ୍ମଶକ୍ତିର ଉଦ୍‌ବୋଧନ କରିବା ସଙ୍ଗେ ସଙ୍ଗେ ଦେଶସେବାର ଆଦର୍ଶ ନେଇ ଶ୍ରୀ ଶ୍ରୀ ଠାକୁର ଆସାମର କୋକିଳାମୁଖଠାରେ ଅସାମ୍ପ୍ରଦାୟିକ ଭାବରେ ଧର୍ମର ପ୍ରଚାରନିମିତ୍ତ 'ସାରସ୍ୱତ ମଠ' ପ୍ରତିଷ୍ଠା କଲେ ଏବଂ ତାଙ୍କ ଆଶ୍ରିତ ଶିଷ୍ୟ-ଭକ୍ତମାନଙ୍କୁ ତାଙ୍କ ଭାବଧାରାରେ ଅନୁପ୍ରାଣିତ କରି ଦେଶସେବା ନିମିତ୍ତ ଉଦ୍‌ବୁଦ୍ଧ କରିବା ଉଦ୍ଦେଶ୍ୟରେ ବଙ୍ଗ ଦେଶର ବିଭିନ୍ନ ସ୍ଥାନରେ 'ସାରସ୍ୱତ ଆଶ୍ରମ'ମାନ ସ୍ଥାପନ କରି ଶେଷରେ ତାଙ୍କର ଜୀବନବ୍ୟାପୀ ପରିଶ୍ରମର ଫଳ ସାରସ୍ୱତ ମଠ ଓ ଆଶ୍ରମସମୂହ ଏବଂ ତାଙ୍କ ରଚିତ ପୁସ୍ତକାବଳୀର ଆୟ ଗୋଟିଏ ଟ୍ରଷ୍ଟମଣ୍ଡଳୀ ହାତରେ ସମର୍ପଣ କରି କର୍ମ କ୍ଷେତ୍ରରୁ ବିଦାୟ ନେଇ ଅଧିକାଂଶ ସମୟରେ ପୁରୀଧାମସ୍ଥ ସ୍ୱର୍ଗଦ୍ୱାରର 'ନୀଳାଚଳ କୀଟୀର'ରେ ନିର୍ଜ୍ଜନ-ବାସ କରିବାକୁ ଲାଗିଲେ । ସେହି ନିର୍ଜ୍ଜନ-ବାସ ସମୟରେ ଯେଉଁ କେତେଜଣ ଶିଷ୍ୟ ଭକ୍ତ ତାଙ୍କ ଶ୍ରୀଚରଣଦର୍ଶନର ସୁଯୋଗ ଲାଭ କରିଥିଲେ, ସେମାନଙ୍କ ମଧ୍ୟରେ 'ଆଦର୍ଶ ଗୃହସ୍ଥଜୀବନ ଯାପନ', 'ସଂଘଶକ୍ତିର ପ୍ରତିଷ୍ଠା' ଓ 'ଭାବ ବିନିମୟ' କରିବା ନିମିତ୍ତ ଉତ୍କଳରେ ଶ୍ରୀଶ୍ରୀ ଠାକୁର ନିଜେ 'ନୀଳାଚଳ ସାରସ୍ୱତ ସଂଘ' ସ୍ଥାପନ କରି ଆତ୍ମଗଠନ କରିବା ସଙ୍ଗେ ସଙ୍ଗେ ତାଙ୍କ ଭାବଧାରାକୁ ଉତ୍କଳରେ ପ୍ରଚାର କରିବା ନିମିତ୍ତ ନିର୍ଦ୍ଦେଶ ଦେଇ ଇଂରାଜୀ ୧୯୩୫ ମସିହା ନଭେମ୍ବର ମାସରେ କଲିକତା ମହାନଗରୀରେ ଦେହରକ୍ଷା କଲେ ।

ତାଙ୍କ ଦେହରକ୍ଷା ପରେ ତାଙ୍କ ଆଦେଶକୁ କାର୍ଯ୍ୟକାରୀ କରିବା ନିମିତ୍ତ ପ୍ରଥମେ ଉତ୍କଳ ଭାଷାରେ 'ଶ୍ରୀଶ୍ରୀ ଠାକୁର ନିଗମାନନ୍ଦ' ନାମକ ପୁସ୍ତକ ପ୍ରକାଶିତ ହେଲା । ସେହି ପୁସ୍ତକ ପାଠ କରି ଭକ୍ତମାନେ ସଂଘବଦ୍ଧ ହୋଇ ଯେଉଁ ତତ୍ତ୍ୱସବୁ ଆଲୋଚନା କରୁଥିଲେ, ତାହା ହିଁ 'ନିଗମ-ତତ୍ତ୍ୱ' ନାମରେ ଆଜରୁ ତେଇଶି ବର୍ଷତଳେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକ ଅଳ୍ପଦିନ ମଧ୍ୟରେ ଶେଷ ହୋଇ ଯାଇଥିଲେ ମଧ୍ୟ ବିବିଧ ପ୍ରତିକୂଳ ପରିସ୍ଥିତିରେ ପଡ଼ି ଏପର୍ଯ୍ୟନ୍ତ ତାହାର ପୁନଃମୁଦ୍ରଣ ହୋଇପାରି ନଥିଲା । ବର୍ତ୍ତମାନ ଭକ୍ତମାନଙ୍କ ବିଶେଷ ଅନୁରୋଧକ୍ରମେ ସେହି 'ନିଗମ-ତତ୍ତ୍ୱ' ପୁସ୍ତକକୁ କିଞ୍ଚିତ୍ ପରିବର୍ଦ୍ଧନ କରି ପ୍ରକାଶ କରାଗଲା ।

ଶ୍ରୀଶ୍ରୀ ଠାକୁର ଅଦେହୀ ହେଲେ ମଧ୍ୟ ବର୍ତ୍ତମାନ ସୁଦ୍ଧା ସଦ୍‌ଗୁରୁ ଭାବରେ ନିତ୍ୟବର୍ତ୍ତମାନ ରହି ଶିଷ୍ୟ-ଭକ୍ତମାନଙ୍କୁ ପରିଚାଳନା କରୁଛନ୍ତି । ଭକ୍ତମାନେ ତାଙ୍କ

ପ୍ରତିଷ୍ଠିତ ସଂଘ ମାଧ୍ୟମରେ ଗତି କଲେ ଏବଂ ତାଙ୍କ ପ୍ରଦତ୍ତ ସିଦ୍ଧମନ୍ତ୍ର 'ଜୟଗୁରୁ' ନାମ ଗ୍ରହଣ କରି ତାହାର ସ୍ମରଣ-ମନନ କଲେ ଏବଂ ତାଙ୍କ ଭାବଧାରାର ଆଲୋଚନା କଲେ ବର୍ତ୍ତମାନ ମଧ୍ୟ ତାଙ୍କ ଦର୍ଶନରୁ ବଞ୍ଚିତ ହେବେ ନାହିଁ ।

ପରିଶେଷରେ ନିବେଦନ, ଯେଉଁସବୁ ମୂଳ ଗ୍ରନ୍ଥରୁ ଆଲୋଚ୍ୟ ବିଷୟମାନ ଗୃହୀତ ହୋଇଛି, ତନ୍ମଧ୍ୟରେ 'ବ୍ରହ୍ମଚର୍ଯ୍ୟ ସାଧନ', 'ଯୋଗୀଗୁରୁ', 'ଜ୍ଞାନୀଗୁରୁ', 'ତାନ୍ତ୍ରିକ ଗୁରୁ', 'ପ୍ରେମିକଗୁରୁ', ପୁରାତନ ବର୍ଷର 'ଆର୍ଯ୍ୟଦର୍ପଣ' ପତ୍ରିକା, 'ସାରସ୍ୱତ ମଠ' ଓ ସ୍ୱାମୀ ସ୍ୱରୂପାନନ୍ଦ', 'ତତ୍ତ୍ୱମାଳା', 'ଶ୍ରୀଶ୍ରୀନିଗମାନନ୍ଦ କଥା ସଂଗ୍ରହ', 'ଶ୍ରୀଶ୍ରୀନିଗମାନନ୍ଦ କଥାମୃତ ଓ ତାଙ୍କ ଶ୍ରୀମୁଖନିଃସୃତ ବାଣୀ 'ନୀଳାଚଳବାଣୀ' ପ୍ରଭୃତି ଗ୍ରନ୍ଥ ପ୍ରଧାନ । ପାଠକମାନେ ଦୋଷାଂଶ ପରିହାର କରି ତତ୍ତ୍ୱାଲୋଚନାରେ ବ୍ରତୀ ହେଲେ ଶ୍ରମ ସାର୍ଥକ ମନେ କରିବୁଁ ।

ଜୟଗୁରୁ

ବୀରତୁଙ୍ଗ
ତା ୧୫/୧/୬୯

**ଶ୍ରୀ ଦୁର୍ଗାଚରଣ ମହାନ୍ତି**
ସମ୍ପାଦକ
ନୀଳାଚଳ ସାରସ୍ୱତ ସଂଘ, ପୁରୀ

# ହିନ୍ଦୁଧର୍ମ ସନାତନ

## ଅଟଳ ଜୀବନୀଶକ୍ତି

ଆଜକୁ ସାତ ଶହ ବର୍ଷ ହେଲା ବିଜାତୀୟ ରାଜାଙ୍କ ଅତ୍ୟାଚାର ସହ୍ୟ କରି ଏକମାତ୍ର ହିନ୍ଦୁବ୍ୟତୀତ ଅପର କୌଣସି ଜାତି ସ୍ୱାତନ୍ତ୍ର୍ୟ ରକ୍ଷା କରିପାରି ନାହିଁ। ପ୍ରାଚୀନ ରୋମୀୟଗଣ କାହାନ୍ତି ? କେତେ ଦୁର୍ଦ୍ଦାନ୍ତ ପାର୍ବତୀୟ ଜାତି ଆସି ରୋମ୍ ରାଜ୍ୟ ଅଧିକାର କଲେ। କ୍ରମେ ରୋମୀୟ ଜାତି ନିଜ ବିଶେଷତ୍ୱ ହରାଇ କାଳସାଗରରେ ବିଲୀନ ହୋଇଗଲେ। ପ୍ରାଚୀନ ଗ୍ରୀକ୍‌ଜାତି ଓ ସେମାନଙ୍କ ଧର୍ମ, ଆଚାର-ବ୍ୟବହାର ବର୍ତ୍ତମାନ କାହିଁ ? ପ୍ରାଚୀନ ପାରସିକମାନଙ୍କର ଆଚାର-ବ୍ୟବହାର ଓ ଧର୍ମ କାହିଁ ? ସବୁ ବର୍ତ୍ତମାନ ପ୍ରତ୍ନତତ୍ତ୍ୱାନୁସନ୍ଧିତ୍ସୁଙ୍କର ଅନୁସନ୍ଧାନର ବିଷୟ ହୋଇଛି। ଧନ୍ୟ ହିନ୍ଦୁ ! ଧନ୍ୟ ତୁମ୍ଭର ଧର୍ମ ! ତୁମ୍ଭେ ପୂର୍ବଗୌରବ ସବୁ ଭୁଲିଯାଇଛ; ମାତ୍ର ଧର୍ମର ମର୍ଯ୍ୟାଦା ଭୁଲିପାରି ନାହଁ। ଉପର୍ଯ୍ୟୁପରି ବିଜାତୀୟ ରାଜାମାନଙ୍କ ଅତ୍ୟାଚାର ସହ୍ୟ କରି ମଧ୍ୟ ଜାତୀୟ ଧର୍ମ ଅକ୍ଷୁଣ୍ଣ ରଖିପାରିଛି। ବର୍ତ୍ତମାନ ମଧ୍ୟ କେତେ ହିନ୍ଦୁ ବିଜାତୀୟଙ୍କ ହାତରୁ ଅନ୍ନଜଳ ନଖାଇ ଆନନ୍ଦରେ ମୃତ୍ୟୁକୁ ବରଣ କରୁଛନ୍ତି। ହିନ୍ଦୁମାନଙ୍କ ଧର୍ମପ୍ରାଣତା ପୃଥିବୀରେ କିଏ ନ ଜାଣେ ! 'ଧର୍ମୋ ରକ୍ଷତି ରକ୍ଷିତ' ଏ ମହାବାକ୍ୟ କେବେ ମିଥ୍ୟା ହୋଇନାହିଁ। ରୋମୀୟ ପ୍ରଭୃତି ଜାତିର ପୂର୍ବପୁରୁଷଗଣ ପାର୍ଥିବ ବିଷୟ-ଲାଳସାରେ ହୃଦୟ ପୂର୍ଣ୍ଣ କରି ବିଷୟ-ସାଧନା କରିଥିଲେ। ସୁତରାଂ, ସେମାନେ ଧର୍ମଲାଭ କରି ନଥିଲେ। ଧର୍ମର ମୂଳ ଶିଥିଳ ଥିଲା ବୋଲି ତାହା ସାମାନ୍ୟ ପବନରେ ବିଲୀନ ହୋଇଗଲା। ଏଣେ ହିନ୍ଦୁମାନେ ସର୍ବସ୍ୱ ତ୍ୟାଗ କରି ଧର୍ମ-ସାଧନା କରିଥିଲେ। ଧର୍ମର ଭିତ୍ତି ଅତିଶୟ ଦୃଢ଼ ଥିବାରୁ ପରାଧୀନତାର ପ୍ରବଳ ଝଞ୍ଜା ପବନରେ ମଧ୍ୟ ଅଟଳ ରହିଛି।

ଭାରତର ସୁଖସୂର୍ଯ୍ୟ ଆଜି ଅସ୍ତମିତ। ଶତ ଶତ ବର୍ଷ ହେଲା ଭାରତଭୂମି ବିଦେଶୀୟଙ୍କ ଦୁର୍ଦ୍ଧର୍ଷ ଆକ୍ରମଣ ସହ୍ୟ କରିଆସିଛି। କେତେ ଜାତି ଭାରତରେ

ପ୍ରଭୁତ୍ୱ କରିଗଲେ, କେତେ ପ୍ରଭୁତ୍ୱରୁ ବଞ୍ଚିତ ହେଲେ; କିନ୍ତୁ ଭାରତର ସ୍ୱାଧୀନତା ଆଉ ଫେରିଆସିଲା ନାହିଁ। ବର୍ତ୍ତମାନ ପରାଧୀନତା ହିଁ ସ୍ୱାଭାବିକ ଅବସ୍ଥାରେ ପରିଣତ ହୋଇଗଲାଣି। ଚିରରୋଗୀ ଯେପରି ପାର୍ଶ୍ୱପରିବର୍ତ୍ତନ କରିବାକୁ କଷ୍ଟବୋଧ କରେ, ସେହିପରି ଭାରତ ଆଜି କଠୋର ପରାଧୀନତାର ପ୍ରାଚୀର ଅତିକ୍ରମ କରି ପଦେହେଲେ ଅଗ୍ରସର ହେବାକୁ କଷ୍ଟବୋଧ କରୁଛି। ମୁସଲମାନମାନଙ୍କ ରାଜତ୍ୱକାଳରେ ହିନ୍ଦୁମାନଙ୍କୁ କେତେ ଯେ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼ିଛି, ତା'ର ଇୟତ୍ତା ନାହିଁ। ଏମାନଙ୍କ ରାଜତ୍ୱକାଳରେ ଅସଂଖ୍ୟ ହିନ୍ଦୁ ବିନା କାରଣରେ ମୂର୍ତ୍ତିପୂଜା-ଅପରାଧରେ ଭଗବତ୍ ପଦ ସ୍ମରଣ କରୁ କରୁ ନିହତ ହୋଇଛନ୍ତି। କଳାପାହାଡ଼ ହିନ୍ଦୁମାନଙ୍କ ଶ୍ରେଷ୍ଠତମ ତୀର୍ଥ ପବିତ୍ର ପୁରୁଷୋତ୍ତମ ଧାମରେ ପ୍ରବେଶ କରି (ଲେଖିବାକୁ ଛାତି ଫାଟିଯାଏ) ଜଗନ୍ନାଥଦେବଙ୍କ ମୂର୍ତ୍ତି ଦଗ୍ଧ କଲା। ଆଜି ମଧ୍ୟ ସୁସଭ୍ୟ ଇଂରେଜମାନଙ୍କ ସୁଶାସିତ ଦେଶରେ ପୂର୍ବବଙ୍ଗର ହିନ୍ଦୁଗଣ କେତେଗୁଡ଼ିଏ ନଗଣ୍ୟ ଚଷାଶ୍ରେଣୀର ମୁସଲମାନଙ୍କ ଦ୍ୱାରା ଉତ୍ପୀଡ଼ିତ ହେଉଛନ୍ତି। ଖ୍ରୀଷ୍ଟୀୟ ଗଭର୍ଣ୍ଣମେଣ୍ଟଙ୍କ ଅନୁମୋଦିତ ବିଦ୍ୟାଳୟରେ ହିନ୍ଦୁ ବାଳକମାନେ ଖ୍ରୀଷ୍ଟଧର୍ମ ଶିକ୍ଷା କରୁଅଛନ୍ତି। ଏଣେ ଗଭର୍ଣ୍ଣମେଣ୍ଟଙ୍କ ନାନାପ୍ରକାର ସାହାଯ୍ୟରେ ପରିପୁଷ୍ଟ ଖ୍ରୀଷ୍ଟୀୟ ଧର୍ମପ୍ରଚାରକଗଣ ହିନ୍ଦୁମାନଙ୍କୁ ଖ୍ରୀଷ୍ଟୀୟାନ କରିବା ନିମିତ୍ତ କେତେ ପ୍ରକାର ଚେଷ୍ଟା କରୁଛନ୍ତି। ପାଦ୍ରୀ ମାଆମାନେ ହିନ୍ଦୁମାନଙ୍କ ଅନ୍ତଃପୁରରେ ପ୍ରବେଶ କରି ସୁକୋମଳସ୍ୱଭାବ ରମଣୀମାନଙ୍କୁ ବାଇବେଲ ଉପଦେଶ ଦେବାରେ ଲାଗିଛନ୍ତି। କି ନିର୍ବୋଧତା ! ଯେଉଁମାନେ ଖ୍ରୀଷ୍ଟୀୟାନମାନଙ୍କ ସଂସ୍ପର୍ଶରେ ଆସିଲେ ନିଜକୁ ଅପବିତ୍ର ମନେ କରି ସ୍ନାନ କରନ୍ତି, ସେମାନେ ବାଇବେଲ୍‌ର ଦୁଇ ଚାରି ପୃଷ୍ଠା ଶୁଣି ହିନ୍ଦୁ ଧର୍ମ ତ୍ୟାଗ କରିବେ ? ଯାହାହେଉ, ଆର୍ଯ୍ୟ ଭାରତର ପବିତ୍ରତମ ଆର୍ଯ୍ୟଭାବ ବର୍ତ୍ତମାନ ମଧ୍ୟ ସଂପୂର୍ଣ୍ଣ ଚାଲିଯାଇ ନାହିଁ କିମ୍ବା କେବେ ଚାଲିଯିବ ବୋଲି ମନେ ହେଉନାହିଁ। ଯେତେ ଦିନଯାଏ ବେଦ, ଉପନିଷଦ, ରାମାୟଣ ଓ ମହାଭାରତ ରହିଥିବ, ସେତେଦିନ ପର୍ଯ୍ୟନ୍ତ ଏହି ପୁଣ୍ୟଭୂମି ଭାରତରୁ ହିନ୍ଦୁତ୍ୱ କେବେହେଲେ ଦୂର ହୋଇଯିବ ନାହିଁ। ପରିବାର, ସମାଜ କ୍ଷେତ୍ରରେ, ଆଚାର-ବ୍ୟବହାରରେ ସଂସାରଧର୍ମ ସାଧନାସହିତ ସନାତନ ଧର୍ମ ସଂଯୋଜିତ ବୋଲି ଆଜି ମଧ୍ୟ ହିନ୍ଦୁ ଜାତିର ସ୍ୱାତନ୍ତ୍ର୍ୟ ରକ୍ଷିତ ହୋଇଆସୁଛି।

# ହିନ୍ଦୁର ଗୌରବ

ବଡ଼ ଦୁଃଖର କଥା, ଗୋଟିଏ ଶ୍ରେଣୀର ହିନ୍ଦୁ ବର୍ତ୍ତମାନ ଏପରି ଆତ୍ମମର୍ଯ୍ୟାଦା ହରାଇବସିଛନ୍ତି ଯେ ପାଶ୍ଚାତ୍ୟ ପଣ୍ଡିତମାନେ ସେମାନଙ୍କ ଅମୂଲ୍ୟ ଶାସ୍ତ୍ରଗୁଡ଼ିକୁ ଶ୍ରଦ୍ଧା ନ କଲାପର୍ଯ୍ୟନ୍ତ ସେମାନେ ଜାତୀୟ ଶାସ୍ତ୍ରପ୍ରତି ଦୃଷ୍ଟି ଦେବାକୁ ଲଜ୍ଜାବୋଧ କରନ୍ତି । ସର୍ବନାଶୀ କାଳର ଗୁରୁତର ସଂଘର୍ଷରେ ବିଜାତୀୟ ଶିକ୍ଷା ପ୍ରଚଳନ ଯୋଗେ ଅନେକେ ହିନ୍ଦୁ ଶାସ୍ତ୍ର ଅବହେଳା କରି ସ୍ୱ-କପୋଳକଳ୍ପିତ ମତଅନୁସାରେ ଧର୍ମସାଧନା କରିବାକୁ ପ୍ରୟାସୀ । ଏପ୍ରକାର ମାର୍ଜିତ ବୁଦ୍ଧି ପାଶ୍ଚାତ୍ୟ ଧର୍ମ ଓ ବିଜାତୀୟ ସଂସର୍ଗଜନିତ ବିକୃତ ମସ୍ତିଷ୍କର ଫଳ ମାତ୍ର । ସୁବିଖ୍ୟାତ ଜର୍ମାନ ଦାର୍ଶନିକ ସୋଫେନହାଓ୍ୱର୍ ଲେଖିଛନ୍ତି ଯେ ହିନ୍ଦୁମାନଙ୍କ ଉପନିଷଦସମୂହ ତାଙ୍କୁ ଇହଜୀବନରେ ଶାନ୍ତି ଦାନ କରିଛି, ପରକାଳରେ ମଧ୍ୟ ଶାନ୍ତି ଦେବ । ଆଉ ଜଣେ ବିଖ୍ୟାତ ପଣ୍ଡିତ କହିଛନ୍ତି, ''ପୃଥିବୀର ଯାବତୀୟ ଧର୍ମ-ସଂପ୍ରଦାୟର ଓ ସମସ୍ତ ଧର୍ମଶାସ୍ତ୍ର ବିଲୁପ୍ତ ହୋଇ ହିନ୍ଦୁମାନଙ୍କ ଉପନିଷଦ୍ ଯଦି ଥାଏ, ତେବେ କୌଣସି ସଂପ୍ରଦାୟ ଧର୍ମଗ୍ରନ୍ଥର ଅଭାବ ଅନୁଭବ କରିବେ ନାହିଁ ।''

ତେଣୁ ଆମ ବାବୁମାନେ ଯେତେ କୃତ୍ରିମ ଆବରଣରେ ଅଙ୍ଗ ଆଚ୍ଛାଦନ କଲେ ମଧ୍ୟ ସାହେବମାନେ ସେମାନଙ୍କୁ 'କଲା ଆଦ୍‌ମୀ' ଭିନ୍ନ ଅନ୍ୟ କିଛି କହିବେ ନାହିଁ । ବୀର ଜାତିର କେବେହେଲେ ଅମ୍ଳପିତ୍ତ ରୋଗଗ୍ରସ୍ତ ଧାତୁଦୁର୍ବଳ ବାବୁ ଜାତିକୁ ସମତୁଲ୍ୟ ଜ୍ଞାନ କରିବ ନାହିଁ । ଜଣେ ଶିକ୍ଷିତ ହିନ୍ଦୁ ଯୁବକ ଇଉରୋପ, ଆମେରିକା ପ୍ରଭୃତି ଭ୍ରମଣ କଲାପରେ ଭାରତକୁ ପ୍ରତ୍ୟାବର୍ତ୍ତନ କରି କହିଲେ, ''ତୁମେ ଯେ କୌଣସି ଦେଶରୁ ଯାଇ ହିନ୍ଦୁ ବୋଲି ପରିଚୟ ଦିଅ, ସେହି ଦେଶର ଲୋକେ ତୁମକୁ ସଂସମ୍ଭ୍ରମ ନମସ୍କାର କରିବେ । ଏ ନମସ୍କାର ତୁମ ବ୍ୟକ୍ତିତ୍ୱକୁ ନୁହେଁ, ଏ ନମସ୍କାର ହିନ୍ଦୁ ବୋଲି ତୁମ ଜାତୀୟ ଧର୍ମକୁ ।''

ପ୍ରାଣପଣେ ଧର୍ମରକ୍ଷା କରିଥିବାରୁ ହିନ୍ଦୁମାନଙ୍କ ଯଶଃସୌରଭ ଦେଶବିଦେଶରେ ବିସ୍ତାରିତ ହୋଇଅଛି ଓ ହେଉଅଛି । ଯେଉଁସବୁ ଶାସ୍ତ୍ରକୃପାରୁ ହିନ୍ଦୁ ଜାତି ଧର୍ମଭାବକୁ ଏହିପରି ପରିପୁଷ୍ଟ କରିବାରକୁ କ୍ଷମ ହୋଇଛି, ସେହିସବୁ ହିନ୍ଦୁଶାସ୍ତ୍ରକୁ ପାଶ୍ଚାତ୍ୟ ପଣ୍ଡିତମାନେ କଣ୍ଠଭୂଷଣ, ଶାନ୍ତିବାରି ବୋଲି ଗ୍ରହଣ କରନ୍ତି । ପାଶ୍ଚାତ୍ୟ ଜଗତର ସୁବିଖ୍ୟାତ ପଣ୍ଡିତ ମେକ୍‌ସ୍‌ମୁଲାର୍ ଇଂଲଣ୍ଡପ୍ରବାସୀ ଜଣେ

ହିନ୍ଦୁଙ୍କୁ କହିଲେ, "ତୁମ୍ଭେମାନେ ଆମ ଇଂରେଜ ଜାତିକୁ ଆଉ କି ଶିକ୍ଷା ବା ଦେବ ? ଯଦି ଦେଇପାର, ତାହା ଏକମାତ୍ର ହିନ୍ଦୁମାନଙ୍କ ଉପନିଷଦ ଶାସ୍ତ୍ରର ଧର୍ମଜ୍ଞାନ। ହିନ୍ଦୁ ସବୁ ବିଷୟରେ ସବୁ ଜାତିଠାରୁ ଅଧମ ହୋଇଛି: କେବଳ ହିନ୍ଦୁଜାତିର ଧର୍ମଗୌରବ ଅକ୍ଷୁଣ୍ଣ ରହିଛି।"

## ମୁଖ୍ୟ ଓ ଗୌଣ୍ୟ ବିଦ୍ୟା

ଅନ୍ୟଭାବରେ ଏହି ଧର୍ମର ଗ୍ଳାନିରୁ ହିଁ ହିନ୍ଦୁମାନଙ୍କର ଯେତେ ସବୁ ଅବନତି ଘଟିଛି। ଅନ୍ୟାନ୍ୟ ଜାତି ବିଷୟ-ଲାଳସାରେ ଧର୍ମ ଲାଭ କରିପାରୁ ନାହାନ୍ତି; କିନ୍ତୁ ହିନ୍ଦୁମାନେ ଆଇନ୍, ପଦାର୍ଥ-ବିଜ୍ଞାନ, ଶିଳ୍ପନୈପୁଣ୍ୟ ପ୍ରଭୃତି ଉତ୍କର୍ଷ ସାଧନରେ ବ୍ରତୀ ହୋଇ ପାରିଛନ୍ତି। ଏହିସବୁ ପାର୍ଥିବ ବିଦ୍ୟାକୁ ଆର୍ଯ୍ୟଋଷିମାନେ ନିମ୍ନ ପଦବୀ ଦାନ କରି ମୁଖ୍ୟବିଷୟକ ଜ୍ଞାନକୁ ଜ୍ଞାନ ବା ମୁଖ୍ୟ ଓ ବସ୍ତୁଗତ ଜ୍ଞାନକୁ ବିଜ୍ଞାନ ବା ଗୌଣ ବୋଲି ଆଖ୍ୟା ଦେଇଛନ୍ତି। ତେଣୁ ପୂର୍ବପୁରୁଷ ମୁନିଋଷୀମାନଙ୍କ ପାର୍ଥିବ ବିଷୟଲାଳସା ଦୂରକୁ ଫିଙ୍ଗି ଦେଇ ଗିରିକନ୍ଦରା, ନଦୀତୀର ଓ ନିବିଡ଼ ଅରଣ୍ୟରେ ଆତ୍ମଗୋପନ କରି ଅନୁପମ ଧର୍ମଲାଭ କରିଥିଲେ। ସେହି ଅନୁପମ ବ୍ରହ୍ମସାଧନ ହିନ୍ଦୁଶାସ୍ତ୍ରରେ ବର୍ଣ୍ଣିତ। ଧର୍ମଚର୍ଚ୍ଚା ହିଁ ମାନବ ଜୀବନର ଏକମାତ୍ର କର୍ତ୍ତବ୍ୟ ବୋଲି ହିନ୍ଦୁମାନେ ସେଥିରେ ମନୋନିବେଶ କରିଥିଲେ। ଏସବୁ ସତ୍ତ୍ୱେ ଏହି ଭାରତ ବ୍ୟତୀତ ଆଉ କେଉଁ ଦେଶରେ ସର୍ବପ୍ରଥମେ ସଂଖ୍ୟାଗଣନା ଆବିଷ୍କୃତ ହୋଇଥିଲା ?

ଧର୍ମାଲୋଚନା ଏକମାତ୍ର କର୍ତ୍ତବ୍ୟ ବୋଲି ଧରିନେଇଥିବାରୁ ଧର୍ମଶାସ୍ତ୍ର-କର୍ତ୍ତୃକ ନିବୃତ୍ତିଜନକ ଶିକ୍ଷା ପ୍ରଚାରିତ ହେଲା। ଶିଳ୍ପ-ବିଜ୍ଞାନରେ କେହି ଆଉ ମନ ନ ଦେବାରୁ ତାହା ଲୁପ୍ତ ହେବାକୁ ଲାଗିଲା। କେହି ଏ କଥା ଦେଖି ସୁଦ୍ଧା ଦେଖିଲେ ନାହିଁ। ଯେ ଯେପରି ଅବସ୍ଥାରେ ଥିଲେ, ସେଥିରେ ସନ୍ତୁଷ୍ଟ ରହି ଧର୍ମ-ସାଧନା କରିବାକୁ ଲାଗିଲେ। ସମସ୍ତେ ପ୍ରକୃତି ଗୁଣରେ ଧର୍ମାମୃତ ପାନରେ ବିଭୋର ରହିଲେ, ଏ ଦିଗକୁ କେହିହେଲେ ଥରେ ଦୃଷ୍ଟିପାତ କଲେ ନାହିଁ। ଦୂରବସ୍ଥାର ଆଶଙ୍କାରେ ବିଚଳିତ ନ ହୋଇ ହିନ୍ଦୁମାନେ ସନ୍ତୋଷ-ସୁଧାପାନରେ କାଳକ୍ଷୟ କରିବାକୁ ଲାଗିଲେ। ବର୍ତ୍ତମାନ ମଧ୍ୟ ସେହି ସନ୍ତୋଷର ମୋହ ହିନ୍ଦୁମାନେ ତ୍ୟାଗ କରିପାରି ନାହାନ୍ତି, ତେଣୁ ବର୍ତ୍ତମାନ ଅତ୍ୟାଚାର, ଉତ୍ପୀଡ଼ନ, ଦୁର୍ଭିକ୍ଷର ପ୍ରକୋପ, ବିସୂଚିକା, ପ୍ଳେଗ୍ ଆଦି ମହାମାରୀର ପ୍ରାଦୁର୍ଭାବକୁ ଏମାନେ ଅକାତରରେ

ସହ୍ୟ କରୁଛନ୍ତି । ହିନ୍ଦୁମାନଙ୍କ ଦ୍ୱାରା କୌଣସି କାରଣରୁ ଅଶାନ୍ତି ଉତ୍ପାଦିତ ହୋଇ ନାହିଁ । ଯେଉଁମାନେ ଧର୍ମବଳରେ ହସ ହସ ବଦନରେ ମୃତ୍ୟୁକୁ ବରଣ କରିପାରନ୍ତି, କୌଣସି ପାର୍ଥିବ କଷ୍ଟରେ ସେମାନେ ବିଚଳିତ ହେବେ ବା କାହିଁକି ?

ହିନ୍ଦୁମାନଙ୍କର ଧର୍ମ ହିଁ ସର୍ବସ୍ୱ । ତେଣୁ ମୁସଲମାନ୍‌ମାନେ ହିନ୍ଦୁରାଜ୍ୟ ଆତ୍ମସାତ୍ କରିବାକୁ ସମର୍ଥ ହେଲେ । ବିଜାତୀୟ ରାଜାମାନଙ୍କ ଅଧୀନତାଯୋଗୁଁ ହିନ୍ଦୁସମାଜ ଉଚ୍ଛୃଙ୍ଖଳ ହେବାରୁ ଉପଧର୍ମର ପ୍ରବଳତା ବୃଦ୍ଧି ପାଇବାକୁ ଲାଗିଲା । ଯେଉଁମାନେ ପ୍ରକୃତ ମୂର୍ଖ, ସେମାନେ ଗୁରୁବେଶରେ ଧର୍ମ ଶିକ୍ଷା ଦେବାକୁ ଲାଗିଲେ । ଶିକ୍ଷିତ ଲୋକେ ଗୁରୁ ପୁରୋହିତଙ୍କ କାର୍ଯ୍ୟକୁ ଘୃଣା କରି ରାଜସେବାରେ ବ୍ରତୀ ହେଲେ । ଶିକ୍ଷିତ ସଂପ୍ରଦାୟ ଏପରି ଅଗାଧ ଜ୍ଞାନବିଶିଷ୍ଟ ହେଲେ ଅଧଃପତନର ବାକୀ ରହିଲା କେଉଁଠି ?

## ବେଦଧର୍ମର ପ୍ରାଚୀନତ୍ୱ

ବର୍ତ୍ତମାନ ଯେତେ ପ୍ରସିଦ୍ଧ ଧର୍ମ ପ୍ରଚଳିତ, ତନ୍ମଧ୍ୟରେ ହିନ୍ଦୁଧର୍ମ ପରି ପ୍ରାଚୀନ ଧର୍ମ ଆଉ ନାହିଁ । କେବଳ ପ୍ରାଚୀନ ନୁହେଁ, ଏହାର ଆଦି ଯେଉଁଠାରେ, ନିର୍ଣ୍ଣୟ କରିବା ଦୁଃସାଧ୍ୟ । ହିନ୍ଦୁ ଧର୍ମ ଯେଉଁ ବେଦମୂଳକ, ତାର ଆଦି କେଉଁଠାରେ, ନିର୍ଣ୍ଣିତ ହୋଇପାରି ନାହିଁ । ତାହା ଶ୍ରୁତି ପରମ୍ପରାରେ ଅତି ପ୍ରାଚୀନକାଳରୁ ଚାଲିଆସିଛି । ଏଥିପାଇଁ ବେଦର ଅନ୍ୟ ନାମ ଶ୍ରୁତି । ଶାସ୍ତ୍ରମତରେ ବେଦ ସୃଷ୍ଟିକାଳରେ ଆବିର୍ଭୂତ ହୁଏ ଏବଂ ପ୍ରଳୟକାଳରେ ବିଲୀନ ହୋଇଯାଏ । ସୁତରାଂ, ପ୍ରତିକଳ୍ପରେ ଯେତେବେଳେ ବେଦର ପୁନରାବିର୍ଭାବ ଘଟେ, ସେତେବେଳେ ଏହି ବିଶ୍ୱସଂସାର ଯେପରି ଅନାଦି ଓ ନିତ୍ୟ ରୂପରେ ସୃଷ୍ଟ ହୁଏ, ବେଦ ମଧ୍ୟ ତଦ୍ରୂପ । ବେଦ ଯଦି ସନାତନ ଓ ନିତ୍ୟ ହୁଏ, ସେହି ବେଦମୂଳକ ଧର୍ମ ସନାତନ ଓ ନିତ୍ୟ । ତେଣୁ ହିନ୍ଦୁ ଧର୍ମର ଅନ୍ୟ ନାମ ସନାତନ ଧର୍ମ । ଏହି ସନାତନ ଧର୍ମର ପ୍ରାଚୀନତ୍ୱ ବିବେଚନା କରିବାକୁ ଗଲେ ବୌଦ୍ଧ, ଜୈନ, ଖ୍ରୀଷ୍ଟିୟାନ୍, ଶିଖ, ପାରସିକ, ମହମ୍ମଦୀୟ ପ୍ରଭୃତି ଧର୍ମ ପ୍ରଣାଳୀକୁ ଆଧୁନିକ କୁହାଯିବ । ଯାହା ଆଧୁନିକ, ତାହା ଉତ୍ପନ୍ନ ଧର୍ମ । ଏହିସବୁ ଆଧୁନିକ ଓ ଉତ୍ପନ୍ନ ଧର୍ମପ୍ରଣାଳୀ ଠାରୁ ହିନ୍ଦୁ ଧର୍ମ ଏହି ଭାବରେ ପୃଥକ୍ ।

କେବଳ ପ୍ରାଚୀନତ୍ୱରେ ନୁହେଁ, ସେହିସବୁ ଉତ୍ପନ୍ନ ଧର୍ମଠାରୁ ହିନ୍ଦୁ ଧର୍ମର ପ୍ରକୃତିଗତ ବୈଶିଷ୍ଟ୍ୟ ମଧ୍ୟ ଅଛି । ହିନ୍ଦୁଧର୍ମ ନିବୃତ୍ତିମୂଳକ ସ୍ୱର୍ଗଦେଶରୁ ଅବତରଣ କରି ପ୍ରବୃତ୍ତିମୂଳକ ଶତ ସଂପ୍ରଦାୟରେ ବିଭକ୍ତ ହୋଇ ଜନସମାଜରେ ପ୍ରବେଶ କରିଛି, କିନ୍ତୁ ସବୁ ସାଧନପଥର ଗତି ଏକମୁଖୀ । ଏହି ଗତିପଥର ବିଭିନ୍ନ ସ୍ତରରେ ଧର୍ମପ୍ରଣାଳୀ ବିଦ୍ୟମାନ । ହିନ୍ଦୁମାନଙ୍କର କାମ୍ୟ ଓ ନିଷ୍କାମ ଉଭୟ ପଥ ଅଛି । ଦେବ-ଦେବୀଙ୍କର ସ୍ଥୂଳ ସାକାର ଉପାସନା ଏବଂ ସୂକ୍ଷ୍ମ ସାକାର ଉପାସନା ଅଛି । ଶାକ୍ତ, ବୈଷ୍ଣବ, ଖ୍ରୀଷ୍ଟିୟାନ୍, ମୁସଲମାନ୍, ବ୍ରାହ୍ମ ପ୍ରଭୃତି ସଂପ୍ରଦାୟଭେଦରେ ସମସ୍ତେ ଅଛନ୍ତି । ଏପରି ସାର୍ବଭୌମ ଧର୍ମ ଅନ୍ୟ କୁତ୍ରାପି ନାହିଁ । ସବୁ ପ୍ରକାର ଅଧିକାରୀଙ୍କ ନିମିତ୍ତ ଏ ଧର୍ମ ପ୍ରଚାରିତ । ଘୋର ବିଷୟୀ ଠାରୁ ଆରମ୍ଭ କରି ବ୍ରହ୍ମବିଦ୍ ତତ୍ତ୍ୱଜ୍ଞାନୀପର୍ଯ୍ୟନ୍ତ ଏହି ଧର୍ମର ଆଶ୍ରିତ । ଏଇଥିପାଇଁ ହିନ୍ଦୁ ଧର୍ମର ସାଧନପ୍ରଣାଳୀ ପୂର୍ଣ୍ଣାବୟବ । ଯେ ଯେପରି ପୂଜାପଦ୍ଧତି ଅବଲମ୍ବନ କରନ୍ତୁ ପଛକେ, ସବୁ ଏକ ଅଦ୍ୱିତୀୟ ବ୍ରହ୍ମଙ୍କ ଉପାସନା । ହିନ୍ଦୁ ଧର୍ମ ପ୍ରଣାଳୀରେ ଅଦ୍ୱୈତ ଜ୍ଞାନସହିତ ଐଶୀ ଭକ୍ତି ମିଳିତ ହୋଇ ସର୍ବବିଧ ଜନଗଣଙ୍କର ତାହା ଆଶ୍ରୟ ଭୂମି ହୋଇଅଛି । ଏହା ବିଶ୍ୱବ୍ୟାପୀ ଧର୍ମପ୍ରଣାଳୀ ।

## ହିନ୍ଦୁଧର୍ମ ସର୍ବାଙ୍ଗବ୍ୟାପୀ

ସାଧକର ଅଧିକାର ଅନୁସାରେ ବିଭକ୍ତ ହୋଇଥିବାରୁ ହିନ୍ଦୁ ଧର୍ମର କଳେବର ଅତି ବୃହତ୍ ହୋଇଛି । ସଂସାରତ୍ୟାଗୀ ସାଧୁ-ସନ୍ନ୍ୟାସୀଙ୍କ ଧର୍ମଠାରୁ ଆରମ୍ଭ କରି ସାଧାରଣ ଜନସମାଜର ଧର୍ମାଚରଣ-ପଦ୍ଧତି-ପର୍ଯ୍ୟନ୍ତ ସମସ୍ତ ହିନ୍ଦୁଧର୍ମର ଦେହ । ସାମନ୍ୟ ଲୋକର ଧର୍ମପ୍ରଣାଳୀ ଦେଖି ଏହା ହିଁ ହିନ୍ଦୁଧର୍ମ ବୋଲି ଯେଉଁମାନେ କହନ୍ତି, ସେମାନେ ଏକଦେଶଦର୍ଶୀ । ସେହି ସ୍ତରର ଲୋକସଂଖ୍ୟା ଅଧିକ ହେଲେ ମଧ୍ୟ ଏହା ଧର୍ମର ମୂଳଦେଶ ମାତ୍ର । ଯେପରି ପର୍ବତର ମୂଳଦେଶ ଅତି ବିଶାଳ, ଏହା ସେହିପରି । ଉଚ୍ଚ ଉଚ୍ଚତର ଦେଶର ଲୋକସଂଖ୍ୟା କ୍ରମେ ଊଣା ହୋଇଯାଇଛି । ଉଚ୍ଚଦେଶର ଧର୍ମାବଲମ୍ବୀମାନେ ଧର୍ମର ପବିତ୍ରତା ଓ ପ୍ରକୃତ ମୂର୍ତ୍ତି ଆହୁରି ବିଶଦ କରି ଦେଖାଇଛନ୍ତି । ଏ ଧର୍ମର ଉଚ୍ଚ ଉଚ୍ଚତର ଦେଶକୁ ଉଠିଲେ ନବ ନବ ଅଧ୍ୟାତ୍ମ ତତ୍ତ୍ୱାବଳୀର ସୁନ୍ଦର ସୁନ୍ଦର ଦେଶ ପ୍ରତ୍ୟକ୍ଷୀଭୂତ ହୁଏ । ଅବଶେଷରେ ଚୂଡ଼ାଦେଶର ଅନନ୍ତ ଆକାଶରେ କେବଳ 'ଏକମେବାଦ୍ୱିତୀୟଂ' ।

## କୁସଂସ୍କାର ନୁହେଁ

ଏହିସବୁ ମହାନ୍ ତତ୍ତ୍ୱ ନ ବୁଝି ଅନ୍ୟଧର୍ମାବଲମ୍ବୀମାନେ, ସଭ୍ୟ ଶିକ୍ଷିତ ପାଶ୍ଚାତ୍ୟ ଦେଶୀୟମାନେ ଏବଂ ପାଶ୍ଚାତ୍ୟ-ଶିକ୍ଷାବିକୃତ ମସ୍ତିଷ୍କ ପଥହରା ଭାରତବାସୀଙ୍କ ମଧ୍ୟରୁ ଅନେକେ ହିନ୍ଦୁମାନଙ୍କୁ ପୌତ୍ତଳିକ, ଜଡ଼ୋପାସକ, କୁସଂସ୍କାରାଚ୍ଛନ୍ନ ବୋଲି ତାଚ୍ଛଲ୍ୟ କରିଥାନ୍ତି । ବହୁ କାଳରୁ ଅଧୀନତା-ଶୃଙ୍ଖଳ ପିନ୍ଧି ହିନ୍ଦୁମାନେ ଜଡ଼ ହୋଇଛନ୍ତି । ତେଣୁ ସେମାନଙ୍କୁ ଜଡ଼-ଉପାସକ ପ୍ରଭୃତି ଯାହା ଇଚ୍ଛା, ତାହା କୁହାଯାଇପାରେ । ଅନ୍ୟଥା ଯେଉଁ ଜଡ଼ବାଦୀମାନଙ୍କର ଅନୁଷ୍ଠିତ ଧର୍ମ ପୌତ୍ତଳିକତା ଓ କାମ-କାମନାରେ କଳୁଷିତ, ସେମାନେ ହିନ୍ଦୁମାନଙ୍କୁ ପୌତ୍ତଳିକ କହନ୍ତେ କିପରି ? ଯେଉଁମାନଙ୍କ ଧର୍ମ ବର୍ତ୍ତମାନ ସୁଦ୍ଧା ପଙ୍ଗୁ ଶିଶୁପରି ଉଠିବାକୁ କ୍ଷମ ନୁହେଁ, ସେହିମାନେ ହିଁ ହିନ୍ଦୁଧର୍ମର ନିନ୍ଦାବାଦ କରୁଛନ୍ତି । ଏହା ବିସ୍ମୟକର—ସନ୍ଦେହ ନାହିଁ । ହିନ୍ଦୁମାନେ ଯାହା କରନ୍ତି, ସେଥିରେ ବିନ୍ଦୁଏ ହେଲେ କୁସଂସ୍କାର ବା ମିଥ୍ୟା ନାହିଁ । ହିନ୍ଦୁମାନେ ଯେତିକି ବୁଝନ୍ତି, ତାହାର ସୀମା ସ୍ପର୍ଶ କରିବାକୁ ଅନ୍ୟ ଧର୍ମୀଙ୍କର ବହୁ କାଳ ଲାଗିଯିବ । ହିନ୍ଦୁଧର୍ମ ଗଭୀର ସୂକ୍ଷ୍ମ ଆଧ୍ୟାତ୍ମିକ ବିଜ୍ଞାନରେ ପରିପୂର୍ଣ୍ଣ । ଜଡ଼ବୈଜ୍ଞାନିକ ଅଥବା ଶିକ୍ଷିତ ସଜ୍ଜନ ଆଖ୍ୟାଧାରୀ ନିନ୍ଦୁକମାନେ ଜଡ଼ାତିରିକ୍ତ କିଛି ବୁଝନ୍ତି ନାହିଁ ବୋଲି ହିନ୍ଦୁମାନଙ୍କୁ ଜଡ଼-ଉପାସକ କହିଥାନ୍ତି; କିନ୍ତୁ ସେମାନେ ବୁଝୁଛନ୍ତି ଯେ ଯେତେ ଦୂରଯାଏ ସେମାନଙ୍କର ଆଲୋଚନା ଗତି କରିଛି, ତାହାପରେ ଆଉ କିଛି ରହିଯାଉଛି । ଆଲୋଚନା ଶେଷ ହେଲା ସତ୍ୟ; କିନ୍ତୁ ଆଲୋଚ୍ୟ ବିଷୟର ଶେଷ ହେଲା ନାହିଁ । ଖୋଜିବା ଶେଷ ହେଲା; କିନ୍ତୁ ଯାହା ଖୋଜୁଥିଲେ, ପାଇଲେ ନାହିଁ । ବିଖ୍ୟାତ ପଣ୍ଡିତ ହାର୍ବର୍ଟ ସ୍ପେନ୍‌ସର୍ ଉପର୍ଯ୍ୟୁକ୍ତ କଥା ସ୍ପଷ୍ଟ ଭାବରେ ବ୍ୟକ୍ତ କରିଯାଇଛନ୍ତି । ଜଡ଼ବାଦୀଙ୍କ ଅନୁସନ୍ଧାନର ଏହା ଚରମ ଫଳ । ଏଥିର କାରଣ କଅଣ ? ଯେଉଁ ବସ୍ତୁ ଖୋଜିବ, ତଦୁପଯୋଗୀ ଦର୍ଶନଶକ୍ତି ଲାଭ କର । ବ୍ରହ୍ମତତ୍ତ୍ୱ ଅବଗତ ହେବା ପାଇଁ ବ୍ରହ୍ମତତ୍ତ୍ୱର ସତ୍ତା ସମ୍ଭାବିତ ହୁଅ । ଯୋଗୀଙ୍କ ସମାଧି ବ୍ୟତୀତ ତାହା ଅସମ୍ଭବ । ସେହି ଯୋଗଶକ୍ତି ହିନ୍ଦୁମାନେ ଆବିଷ୍କାର କରିଛନ୍ତି । ହିନ୍ଦୁ ଧର୍ମପ୍ରଣାଳୀରେ ତତ୍ତ୍ୱ ବିଧିବଦ୍ଧ ।

ପ୍ରଥମେ ପଶୁତ୍ୱର ମୁକ୍ତ ହୋଇ ମନୁଷ୍ୟତ୍ୱକୁ ଉନ୍ନୀତ ହେବା, ମନୁଷ୍ୟତ୍ୱରୁ ଉପରକୁ ଉଠି ଦେବତ୍ୱ ଲାଭ କରିବା ଏବଂ ସର୍ବଶେଷରେ ବ୍ରହ୍ମତ୍ୱ ଲାଭ କରିବା

ପରମ ମୋକ୍ଷପଦ ବୋଲି ଏହି ଧର୍ମପ୍ରଣାଳୀରେ ଅଛି । ସାମ୍ପ୍ରଦାୟିକ ଧର୍ମପ୍ରଣାଳୀ କେବଳ ଦେବତ୍ୱ ପର୍ଯ୍ୟନ୍ତ ଉଠିଛି—ବିଜାତୀୟ ଅନ୍ୟାନ୍ୟ ଧର୍ମପ୍ରଣାଳୀର ସୀମା ମଧ୍ୟ ଏହିପର୍ଯ୍ୟନ୍ତ । ଅତଏବ ହିନ୍ଦୁଧର୍ମର ବିଶାଳ ଆଶ୍ରୟରେ ଅବସ୍ଥାନ କରି ଧର୍ମର ସୁଶୀତଳ ଛାୟାରେ ସମସ୍ତେ ତୃପ୍ତ ।

## ଶିକ୍ଷାର କ୍ରମ

ମାନବ ସମାଜରେ ବିଦ୍ୟାଶିକ୍ଷାର ଯେପରି ପ୍ରଣାଳୀ ଅଛି, ହିନ୍ଦୁସମାଜରେ ସେହିପରି ଧର୍ମ ଶିକ୍ଷାର ସ୍ୱତନ୍ତ୍ର ପ୍ରଣାଳୀ ମଧ୍ୟ ଅଛି । ପ୍ରଥମେ ବର୍ଣ୍ଣଶିକ୍ଷା । ଦେବ ଦେବୀପୂଜାର ବ୍ରତାନୁଷ୍ଠାନ ଏବଂ ପ୍ରବୃତ୍ତିପଥର କ୍ରିୟାକଳାପ ସେହି ବର୍ଣ୍ଣପରିଚୟସ୍ୱରୂପ । ଏଥିପାଇଁ ସ୍ୱତନ୍ତ୍ର ଗୁରୁ ନିର୍ଦ୍ଦିଷ୍ଟ ଅଛନ୍ତି । କୁଳଗୁରୁଙ୍କ ଠାରୁ ଧର୍ମାନୁଷ୍ଠାନ ଓ ପୂଜାପଦ୍ଧତି ଶିକ୍ଷା ଆରମ୍ଭ ହୁଏ । ଚାଟଶାଳୀ ଶିକ୍ଷକ ସେପରି ବିଶିଷ୍ଟ ପଣ୍ଡିତ ନ ହେଲେ ମଧ୍ୟ ଚଳେ, କୁଳଗୁରୁ ସେହିପରି ବିଶିଷ୍ଟ ତତ୍ତ୍ୱଜ୍ଞାନୀ ନ ହେଲେ ମଧ୍ୟ ଚଳିପାରେ । ସେ ଧର୍ମାନୁଷ୍ଠାନ ରୂପ ଖଡ଼ି ହାତରେ ଦିଅନ୍ତି । ସେଠାରେ ଶିକ୍ଷା ଶେଷ କଲେ ଜ୍ଞାନାର୍ଥୀ ଶିଷ୍ୟମାନେ ଅନ୍ୟ ଗୁରୁଙ୍କ ଆଶ୍ରୟ ଗ୍ରହଣ କରନ୍ତି ।

ଶାକ୍ତ, ଶୈବ, ତାନ୍ତ୍ରିକ ପ୍ରଭୃତି ସର୍ବସମ୍ପ୍ରଦାୟଭୁକ୍ତ ଜନସାଧାରଣ ଶ୍ରୀଗୁରୁଦେବଙ୍କ ଉପଦେଶରେ ଅନୁଷ୍ଠାନାଦି କରି ଧର୍ମାଚାରଦ୍ୱାରା ପରିଶୁଦ୍ଧ ହୁଅନ୍ତି । ପରିଶୁଦ୍ଧ ହୋଇ ନ ପାରିଲେ ଏମାନେ ନିଜ ନିଜ ସାମ୍ପ୍ରଦାୟିକ ଧର୍ମର ଉପର ଦେଶକୁ ଉଠିପାରିବେ ନାହିଁ । ଏହାର ଉଚ୍ଚ ଦେଶକୁ ଗଲେ ହିନ୍ଦୁଧର୍ମର ଉଚ୍ଚଶିଖରରେ ପହଞ୍ଚିହେବ । ଏହି ଉଚ୍ଚଶିଖର ହେଉଛି ସନ୍ନ୍ୟାସଧର୍ମ । ଏହି ସ୍ତରରେ ସବୁ ସମ୍ପ୍ରଦାୟର ଜନସାଧାରଣ ଏକତ୍ର ହୁଅନ୍ତି । ଏହି ସନ୍ନ୍ୟାସଧର୍ମ ବ୍ରହ୍ମତନ୍ମୟତା ଭିନ୍ନ ଅନ୍ୟ କିଛି ନୁହେଁ । ବ୍ରହ୍ମତନ୍ମୟତା ଦ୍ୱାରା ବ୍ରହ୍ମମୟ ବିଶ୍ୱର ପୂଜା ହୁଏ ।

ଧର୍ମଶିକ୍ଷା ଆରମ୍ଭକୁ ହିନ୍ଦୁ ଧର୍ମରେ ଦୀକ୍ଷା କୁହାଯାଏ । ଦୀକ୍ଷାଗୁରୁ, ଶିକ୍ଷାଗୁରୁ ଓ ପରମଗୁରୁ ଭେଦରେ ଗୁରୁ ତ୍ରିବିଧ । ଗୁରୁଶବ୍ଦ ପୁରୋହିତଙ୍କୁ ମଧ୍ୟ ବୁଝାଇଥାଏ । ପିତା ମାତା ଗୁରୁପଦବାଚ୍ୟ, ସେମାନେ ଉପଦେଶ ଓ ଆଚାର ଅନୁଷ୍ଠାନ ଦ୍ୱାରା ସନ୍ତାନ-ସନ୍ତତିଙ୍କୁ ଧର୍ମକର୍ମରେ ସୁଶିକ୍ଷିତ କରାନ୍ତି । କୁଳଗୁରୁଙ୍କ ନିକଟରୁ ଦୀକ୍ଷିତ ହୋଇ ଶୁଦ୍ଧ ହେଲାପରେ ଯେଉଁମାନଙ୍କର ଧର୍ମଜ୍ଞାନ ଲାଭ ନିମିତ୍ତ ପ୍ରବୃତ୍ତି ଜାତ

ହୁଏ, ସେମାନଙ୍କର ଅନ୍ୟ ଗୁରୁ ପ୍ରୟୋଜନ। ଅନୁସନ୍ଧାନ କଲେ ଏହି ଗୁରୁ ମିଳନ୍ତି। ସମୟକ୍ରମେ ଅଧିକାର ଅନୁଯାୟୀ ସମସ୍ତେ ଗୁରୁ ଲାଭ କରିଥାନ୍ତି। ଉପଯୁକ୍ତ ଗୁରୁ ବିରଳ ଏବଂ ଦୁଷ୍ପ୍ରାପ୍ୟ ସତ୍ୟ; କିନ୍ତୁ ଖୋଜିଲେ ଯେ ନ ମିଳିବେ, ଏ ବିଶ୍ୱାସ ମୁଁ କରେ ନାହିଁ। ମୁଁ ଭୁକ୍ତଭୋଗୀ; ମୁଁ ଜାଣେ, ଏପରି ଗୁରୁ ଅନେକ ସମୟରେ ଆପଣା ମନକୁ ଆସି ଧରାଦିଅନ୍ତି।

## ଧର୍ମଶାସ୍ତ୍ର

ଉତ୍ପନ୍ନ ବା ଆଧୁନିକ ଧର୍ମସାଧନା ପ୍ରଣାଳୀ ଗୋଟିଏ ଗୋଟିଏ ଶାସ୍ତ୍ରରେ ନିବଦ୍ଧ। ବାଇବେଲ୍, କୋରାନ୍, ତ୍ରିପିଟକ ଇତ୍ୟାଦି ସେହିସବୁ ଧର୍ମଗ୍ରନ୍ଥ; କିନ୍ତୁ ହିନ୍ଦୁଧର୍ମର ଶାଖା-ପ୍ରଶାଖା ଏତେ ଅଧିକ ଯେ ତାହା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଗ୍ରନ୍ଥରେ ନିବଦ୍ଧ ନୁହେଁ। ବିଭିନ୍ନ ଅଧିକାରୀଙ୍କ ନିମିତ୍ତ ବିଭିନ୍ନ ଶାସ୍ତ୍ରାଦେଶ ଆବଶ୍ୟକ ହୁଏ। ସୁତରାଂ, ହିନ୍ଦୁ ଧର୍ମ ଶ୍ରୁତି, ସ୍ମୃତି, ପୁରାଣ, ତନ୍ତ୍ର ପ୍ରଭୃତି ଶାସନରେ ଶାସିତ। କେହି ବେଦବିରୋଧୀ ନୁହଁନ୍ତି। ଯାହା ବେଦମୂଳକ, ତାହା ମୋକ୍ଷଧାମକୁ ନେଇଯାଇପାରେ। ଅଧିକାରୀଭେଦରେ ବେଦର ବିସ୍ତର ଶାଖା-ପ୍ରଶାଖା ଅଛି; କିନ୍ତୁ ସେ ସମସ୍ତ ମୋକ୍ଷମୁଖାପେକ୍ଷୀ। ସୁତରାଂ, ବେଦ ହିଁ ହିନ୍ଦୁଧର୍ମର ପ୍ରାଣ। ବୌଦ୍ଧାଦି ଉତ୍ପନ୍ନ ଧର୍ମ ବେଦର ଶାସନରେ ଶାସିତ ହେବାକୁ ପ୍ରସ୍ତୁତ ନୁହଁନ୍ତି।

ବେଦ କର୍ମକାଣ୍ଡ ବିଭାଗ ଏବଂ ବେଦାନ୍ତ ଜ୍ଞାନକାଣ୍ଡ ବିଭାଗ। ମନୁଷ୍ୟକୁ କ୍ରମେ ନିବୃତ୍ତିପଥକୁ ଆଣି ନିଷ୍କାମ କରିବାର ଶିକ୍ଷା-ପ୍ରଣାଳୀର ନାମ ବୈଦିକ କର୍ମକାଣ୍ଡ। ନିଷ୍କାମ ଧର୍ମରେ ମନୁଷ୍ୟର ଯେଉଁ ଜ୍ଞାନ ଉଦୟ ହୁଏ, ସେହି ବିବେକ-ଜ୍ଞାନରେ ତା'ର ବ୍ରହ୍ମଦର୍ଶନହେତୁ ମୋକ୍ଷଲାଭ ହୁଏ। ବ୍ରହ୍ମଦର୍ଶନରେ ମନୁଷ୍ୟ ସମସ୍ତ ବିଶ୍ୱକୁ ବ୍ରହ୍ମମୟ ଦେଖେ। ବେଦ-ବେଦାନ୍ତ ଏହି ଅଧ୍ୟାତ୍ମ୍ୟ ବିଜ୍ଞାନର ଶିକ୍ଷାପ୍ରଣାଳୀ। ସୁତରାଂ, ବେଦ ପ୍ରଧାନତଃ ପ୍ରବୃତ୍ତିପଥର ଏବଂ ବେଦାନ୍ତ ପ୍ରଧାନତଃ ଜ୍ଞାନପଥର ପ୍ରଦର୍ଶକ। ପ୍ରଥମେ କର୍ମ, ତତ୍ପରେ ଜ୍ଞାନ, ତେଣୁ କର୍ମକାଣ୍ଡ ପୂର୍ବଭାଗ ଏବଂ ଜ୍ଞାନକାଣ୍ଡ ଶେଷଭାଗ।

ବେଦ ବେଦାନ୍ତର ପ୍ରଧାନ ଚକ୍ଷୁ ଓ ମୀମାଂସା ଶାସ୍ତ୍ରରୂପରେ ଦର୍ଶନଶାସ୍ତ୍ରଗୁଡ଼ିକ ତ୍ରୟୀ ବିଦ୍ୟାର ଦର୍ଶନସ୍ୱରୂପ। ଅଧିକାରୀଭେଦରେ ଦର୍ଶନଶାସ୍ତ୍ର 'ଦ୍ୱୈତବାଦ, ଦ୍ୱୈତାଦ୍ୱୈତବାଦ ଏବଂ ଅଦ୍ୱୈତବାଦ' ଏହି ତିନି ଭାଗରେ ବିଭକ୍ତ। ଆସ୍ତିକ ଓ

ନାସ୍ତିକ ଭେଦରେ ଦର୍ଶନଶାସ୍ତ୍ର ଦ୍ୱିବିଧ । ସଂଶୟ ନ ହେଲେ ମୀମାଂସା ହେବ କିପରି ? ପ୍ରମାଣପଥ ପରିଷ୍କାର କରିବା ନିମିତ୍ତ ଷଡ଼ବିଧ ଆସ୍ତିକ ଦର୍ଶନ ନାସ୍ତିକବାଦ ଖଣ୍ଡନ କରି ବେଦକୁ ପ୍ରକୃଷ୍ଟ ରୂପରେ ପ୍ରତିଷ୍ଠିତ କରିଛି । ସ୍ମୃତି ଆଦି ସମାଜର ଧର୍ମଶାସ୍ତ୍ର । ଏଥିରେ ଲୋକଯାତ୍ରାର କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଣ୍ଣୀତ ହୋଇଅଛି । ଏହିସବୁ ଶାସ୍ତ୍ରରେ କର୍ମକାଣ୍ଡର ଯେଉଁସବୁ ପ୍ରାୟଶ୍ଚିତ ବ୍ୟବସ୍ଥା ଅଛି, ପୂର୍ବମୀମାଂସା ଦର୍ଶନରେ ସେସବୁର ସୁନ୍ଦର ମୀମାଂସା ପ୍ରଦତ୍ତ ହୋଇଛି । ବିଜ୍ଞାନଲାଭର ପନ୍ଥାକୁ ସୁପ୍ରଣାଳୀବଦ୍ଧ କରି ଶାସ୍ତ୍ରକାରମାନେ ଅତି ସ୍ପଷ୍ଟ କରିଦେଇଛନ୍ତି । ଦର୍ଶନଶାସ୍ତ୍ରରେ ଯେପରି କର୍ମକାଣ୍ଡ ଓ ଜ୍ଞାନକାଣ୍ଡର ମୀମାଂସା ଅଛି, ସେହିପରି ଭକ୍ତିପଥର ସ୍ୱତନ୍ତ୍ର ମୀମାଂସା ଶାସ୍ତ୍ରମାନ ଋଷିମାନଙ୍କ କର୍ତ୍ତୃକ ପ୍ରଣୀତ ହୋଇଅଛି । ତଦ୍ଦ୍ୱାରା ଭକ୍ତିପଥର ଆଲୋକରେ ଚାଳିତ ହୋଇ ଭକ୍ତମାନେ ପରମେଶ୍ୱରଙ୍କ ଦର୍ଶନଲାଭପୂର୍ବକ ସର୍ବଶାନ୍ତିମୟ ଆନନ୍ଦଧାମରେ ଉପନୀତ ହୁଅନ୍ତି । ଜ୍ଞାନକାଣ୍ଡ ସହିତ ଭକ୍ତି ମିଶ୍ରିତ ହୋଇ ତାହାକୁ ବଡ଼ ମଧୁର କରିଛି ।

ହିନ୍ଦୁମାନଙ୍କର ପୁରାଣ ଦେଖି ଏହାକୁ ଅନେକ ମିଥ୍ୟା ଗଳ୍ପ ବା ବ୍ରାହ୍ମଣମାନଙ୍କର ସ୍ୱାର୍ଥବିରଚିତ ଗଳ୍ପଗାଥା କହିଥାନ୍ତି ଏବଂ ତଦୁକ୍ତ ବିଭିନ୍ନ ଅଧିକାରୀନିମିତ୍ତ ଭିନ୍ନ ଭିନ୍ନ ସାଧନପ୍ରଣାଳୀ ଦେଖି ତାହା ପିଲାଖେଳ ବା କୁସଂସ୍କାର ବୋଲି କହି ନିଜ ଅନଭିଜ୍ଞତାର ପରିଚୟ ଦିଅନ୍ତି । ଯେଉଁ ଦେଶରେ ତନ୍ତ୍ର-ପୁରାଣର ଜନ୍ମ, ଯେଉଁ ଦେଶର ଲୋକେ କେତେ ଯୁଗଯୁଗାନ୍ତରରୁ ତନ୍ତ୍ର ଓ ପୁରାଣ ମତରେ ପୂଜା ଓ କ୍ରିୟାକଳାପ କରିଆସୁଛନ୍ତି, ତାହାର ପ୍ରକୃତ ଓ ମହାନ୍ ଉଦ୍ଦେଶ୍ୟ ଅନ୍ୟ ଦେଶର ଲୋକଙ୍କର ବୁଝିବାର ସାଧ କାହିଁ ? ପୁରାଣାଦି ଦର୍ଶନଶାସ୍ତ୍ରର ସ୍ଥୂଳାଂଶ । ଯେଉଁମାନଙ୍କ ବୁଦ୍ଧିରେ ଦର୍ଶନର ସୂକ୍ଷ୍ମତତ୍ତ୍ୱସମୂହର ଧାରଣା ହୁଏ ନାହିଁ, ଗଳ୍ପ ଓ ଉଦାହରଣ ଦ୍ୱାରା ସେମାନଙ୍କନିମିତ୍ତ ପୁରାଣ-ଆଖ୍ୟାନର ସୃଷ୍ଟି; ଅତଏବ ଅଦୂରଦର୍ଶୀ, ଅଜ୍ଞାନୀଙ୍କ ନିକଟରେ ପୁରାଣ-ଅଖ୍ୟାନସବୁ ଆରବ-ଉପନ୍ୟାସପରି ବୋଧହୁଏ । ଯେଉଁମାନେ ଅଧିକାରୀ, ସେହିମାନେ ହିଁ ଧର୍ମର ମର୍ମ ଗ୍ରହଣ କରିବାକୁ କ୍ଷମ ହୋଇଥାନ୍ତି ।

ବେଦରେ ଯେଉଁ ଯୋଗପଥ ସୂକ୍ଷ୍ମରେ ଆଭାସିତ ହୋଇଛି, ତନ୍ତ୍ର ବା ଆଗମ ଶାସ୍ତ୍ରରେ ତାହା ସ୍ପଷ୍ଟ ହୋଇ ବିବୃତ—ଶ୍ରୁତି, ସ୍ମୃତି ଓ ଦର୍ଶନାଦିରେ ସୂକ୍ଷ୍ମ କଥାପ୍ରସଙ୍ଗ; ପୁରାଣ, ତନ୍ତ୍ରରେ ସ୍ଥୂଳ କଥାପ୍ରସଙ୍ଗ । ତନ୍ତ୍ରର ଶକ୍ତିସାଧନା ଯୋଗବିଦ୍ୟାର ଚିତ୍ରିତ ଛବି । ପୁରାଣର ଦେବ-ଦେବୀ ବୈଦିକ ବ୍ରହ୍ମବିଦ୍ୟାର ଖଣ୍ଡିତ ସ୍ଥୂଳରୂପ ଓ ପ୍ରତିମା ।

# ବିଭିନ୍ନ ସଂପ୍ରଦାୟ ଧର୍ମ

ମୁସଲମାନ୍ ଓ ଖ୍ରୀଷ୍ଟିୟାନ ଧର୍ମ ସକାମ। ସେମାନଙ୍କ ଧର୍ମସାଧନାରେ ସ୍ୱର୍ଗପ୍ରାପ୍ତି ହିଁ ଚରମ ଫଳ ବୋଲି ନିର୍ଣ୍ଣିତ ହୋଇଅଛି । ହିନ୍ଦୁଧର୍ମ ନିଷ୍କାମତାମୂଳକ । ଯେପର୍ଯ୍ୟନ୍ତ ଶୁଭ ବା ଅଶୁଭ କର୍ମ କ୍ଷୟପ୍ରାପ୍ତ ନ ହୋଇଛି, ସେପର୍ଯ୍ୟନ୍ତ ମାନବ ମୁକ୍ତି ଲାଭ କରିନପାରେ। ଯେପରି ଲୌହ ଓ ସ୍ୱର୍ଣ୍ଣ—ଉଭୟବିଧ ଶୃଙ୍ଖଳରେ ମନୁଷ୍ୟ ଆବଦ୍ଧ ହୋଇପାରେ, ଜୀବ ସେହିପରି ପାପ ଓ ପୁଣ୍ୟ ଉଭୟଦ୍ୱାରା ବଦ୍ଧ ହୋଇଥାଏ ଅଥଚ ଏହି ଉଭୟଭୋଗ ଶେଷ ନ ହେଲେ ତାହା ବିନଷ୍ଟ ହୁଏ ନାହିଁ। ଏହା ହିନ୍ଦୁଧର୍ମର କର୍ମଫଳବାଦ। ଏହି କର୍ମଫଳବାଦରେ ପାପର ଶାସନ ଓ ପୁଣ୍ୟର ଉଦ୍‌ବୋଧନ। କର୍ମଫଳବାଦର ତାତ୍ପର୍ଯ୍ୟ—ସୁଖ ଭୋଗ ହେଲେ ପୁଣ୍ୟ କ୍ଷୀଣ ହୁଏ ଏବଂ ଦୁଃଖର ଭୋଗ ହେଲେ ପାପ ବିନଷ୍ଟ ହୁଏ। ଅତଏବ ସ୍ୱର୍ଗସୁଖ ଭୋଗପରେ ମାନବାତ୍ମା ପୁନରାୟ ଦୁଃଖ ଭୋଗ କରେ। ସୁତରାଂ, ହିନ୍ଦୁଧର୍ମ ଆତ୍ମାର ଗତିପଥ ତାହାର ଉର୍ଦ୍ଧ୍ୱକୁ ନିର୍ଣ୍ଣୟ କରିଛନ୍ତି । ଅନ୍ୟାନ୍ୟ ସାଂପ୍ରଦାୟିକ ଧର୍ମପ୍ରଣାଳୀ ଆତ୍ମାର ଗତିପଥର ଶେଷସୀମା ଦେଖାଇଦିଅନ୍ତି; କାରଣ, ସେମାନଙ୍କ ଦ୍ୱୈତ ମତରେ ଈଶ୍ୱର ମାନବାତ୍ମାଠାରୁ ସଂପୂର୍ଣ୍ଣ ଭିନ୍ନ ପଦାର୍ଥ। ସେଥିରେ କେବଳ ସଗୁଣ ଈଶ୍ୱରଙ୍କର ସୂକ୍ଷ୍ମ ସାକାର ଉପାସନା ପର୍ଯ୍ୟନ୍ତ ବିହିତ ହୋଇଛି। ତେଣୁ ଖ୍ରୀଷ୍ଟଧର୍ମ (Be perfect as God) ବୋଲି କହି ନିଶ୍ଚିନ୍ତ ରହିଲେ, ତାହା ମାନବକୁ ସାମିପ୍ୟ ମୁକ୍ତିପର୍ଯ୍ୟନ୍ତ ଉଠିବାକୁ କହିଲେ; କିନ୍ତୁ ହିନ୍ଦୁମାନେ ଜାଣନ୍ତି (Be God) ବ୍ରହ୍ମବିଦ୍ ବ୍ରହ୍ମୈବ ଭବତି । ବ୍ରହ୍ମଜ୍ଞ ପୁରୁଷ ବ୍ରହ୍ମ ହିଁ ହୁଅନ୍ତି । ଏହା ସନାତନ ଧର୍ମର ବିଶେଷତ୍ୱ।

ହିନ୍ଦୁ ଧର୍ମ କେବଳ ଧ୍ୟାନ, ସ୍ତବ, ସ୍ତୁତି ଓ ପୂଜା ନୁହେଁ। ସକଳ ବିଷୟରେ ତାହା ଆନୁଷ୍ଠାନିକ ଧର୍ମ। କେବଳ ବ୍ୟକ୍ତିଗତ ନୁହେଁ, ତାହା ପାରିବାରିକ ଓ ସାମାଜିକ ଧର୍ମ ପ୍ରଣାଳୀ ରୂପରେ ବିଦ୍ୟମାନ। ହିନ୍ଦୁମାନଙ୍କ ଈଶ୍ୱର ସର୍ବବ୍ୟାପୀ। ଏଥିପାଇଁ ସମଗ୍ର ବିଶ୍ୱକୁ ସାଧନା କରି ହିନ୍ଦୁ ଈଶ୍ୱର ଉପାସନା କରିଥାଏ। କି ଦେବ ମନ୍ଦିରରେ, କି ପରିବାର ମଣ୍ଡଳରେ, କି ଶ୍ରାଦ୍ଧ ତର୍ପଣାଦିରେ, କି ବିବାହ-ବ୍ରତାଦିରେ, କି ଆଚାର-ବ୍ୟବହାରରେ—ସବୁଠାରେ ହିନ୍ଦୁର ଧର୍ମ ସାଧନା। ସମୁଦାୟ ବିଶ୍ୱକୁ ଘେନି ଧର୍ମସାଧନା କରିବା ଅନ୍ୟ କେଉଁ ଧର୍ମରେ ଦୃଷ୍ଟ ହୁଏ ନାହିଁ। ଜ୍ଞାନୀ

ସାକ୍ଷାତ୍‌ଭାବରେ ମୁକ୍ତି ସାଧାନରେ ଯେପରି ତତ୍ପର, ଅଜ୍ଞାନୀ ସଂସାରୀ ଅସାକ୍ଷାତ୍ ଭାବରେ ସେହିପରି ଧର୍ମ-ସାଧନାରେ ତତ୍ପର ରହିଅଛି । ବିଷୟ କାର୍ଯ୍ୟ ସହିତ ଧର୍ମକୁ ମିଶାଇ ହିନ୍ଦୁଧର୍ମ ଯେପରି ପୂର୍ଣ୍ଣାବୟବ ହୋଇପାରିଛି, ଅନ୍ୟ କୌଣସି ଧର୍ମ ସେପରି ହୋଇନାହିଁ । ହିନ୍ଦୁ ଧର୍ମର ସମସ୍ତ ସାଧନପଥ ଏକମାତ୍ର ଅଦ୍ୱୈତ ବ୍ରହ୍ମଙ୍କ ସାଧନା ।

ଅନେକ ସଂପ୍ରଦାୟ ଅଛନ୍ତି, ସେମାନଙ୍କ ବ୍ୟବସ୍ଥା ବର୍ତ୍ତମାନ ସମାଜ ପକ୍ଷରେ କେତେକ ପରିମାଣରେ ଉପକାରୀ ହେଲେ ମଧ୍ୟ ସେମାନଙ୍କ ମତ ସଂକୀର୍ଣ୍ଣ ଓ ଏକଦେଶଦର୍ଶୀ । ସେମାନଙ୍କ ମତକୁ ଠିକ୍ ସନାତନଧର୍ମ ବୋଲି କୁହାଯାଇପାରିବ ନାହିଁ; କାରଣ, ସେମାନେ ବେଦ ମାନନ୍ତି ଅଥଚ ଅନ୍ୟ ଶାସ୍ତ୍ର ମାନନ୍ତି ନାହିଁ; ଈଶ୍ୱରଙ୍କୁ ସ୍ୱୀକାର କରନ୍ତି କିନ୍ତୁ ତାଙ୍କ ଅବତାରଙ୍କୁ ସ୍ୱୀକାର କରନ୍ତି ନାହିଁ ଅଥବା ବିଶ୍ୱାସ କରନ୍ତି ନାହିଁ; ଦେବ-ଦେବୀଙ୍କୁ ମାନନ୍ତି ନାହିଁ, ତନ୍ତ୍ରପୁରାଣକୁ ଅସ୍ୱୀକାର କରନ୍ତି; ବେଦବ୍ୟାସଙ୍କୁ ମାନନ୍ତି କିନ୍ତୁ ତାଙ୍କ ରଚିତ ପୁରାଣଶାସ୍ତ୍ରକୁ ମାନନ୍ତି ନାହିଁ । ଶ୍ରୀକୃଷ୍ଣଙ୍କୁ ମାନନ୍ତି ମାତ୍ର ତାଙ୍କୁ ଈଶ୍ୱରଙ୍କ ଅବତାର ବୋଲି ବିଶ୍ୱାସ କରନ୍ତି ନାହିଁ । ଶ୍ରୀକୃଷ୍ଣଲୀଳାକୁ ମିଥ୍ୟା ମନଗଢ଼ା ଗଳ୍ପ ବୋଲି କହି ଉପହାସ କରନ୍ତି । ଈଶ୍ୱରଙ୍କ ଅବତାର କିମ୍ବା ତାଙ୍କର ଜନ୍ମ ହୋଇପାରେ ନାହିଁ ବୋଲି ସେମାନଙ୍କର ଧାରଣା । ହିନ୍ଦୁଶାସ୍ତ୍ର ସହିତ ଯେଉଁଠାରେ ସେମାନଙ୍କର ମତର ସାମଞ୍ଜସ୍ୟ ହୁଏ ନାହିଁ, ସେହି ଶାସ୍ତ୍ରକୁ ସେମାନେ ମିଥ୍ୟା ବୋଲି ପ୍ରଚାର କରନ୍ତି । ତେଣୁ ସେମାନଙ୍କ ଧର୍ମ ପ୍ରକୃତ ପକ୍ଷରେ ସନାତନ ଧର୍ମ ନୁହେଁ ।

ଯେଉଁ ଧର୍ମ ଅଧିକାରୀଭେଦ ସ୍ୱୀକାର ନ କରି ଯୁକ୍ତି-ବିଚାରହୀନ ଉଦାରମତ ପ୍ରଚାର କରିଛନ୍ତି, ସେହି ଧର୍ମର ପତନ ହୋଇଛି । ହିନ୍ଦୁଧର୍ମ ଅଧିକାରୀଭେଦ, ଉପଦେଶ ଓ ସାଧନ କଥା ପ୍ରଚାର କରୁଥିବାରୁ ଅନେକ ହିନ୍ଦୁମାନଙ୍କୁ ସଂକୀର୍ଣ୍ଣଚେତା ବୋଲି କହନ୍ତି, କିନ୍ତୁ ଏହା ହିଁ ସନାତନ ଧର୍ମର ବିଶେଷତ୍ୱ । ଯେ ଯେଉଁ ବିଷୟର ଅଧିକାରୀ ନୁହଁନ୍ତି, ତାଙ୍କୁ ସେ ବିଷୟରେ ଉପଦେଶ ଦେବା ଉଚିତ୍ ନୁହେଁ । ବୌଦ୍ଧଧର୍ମ ଉଚ୍ଚ ଓ ଉଦାର, ସତ୍ୟ; ମାତ୍ର ଅଧିକାରୀଭେଦ ସ୍ୱୀକାର ନ କରିବା ହେତୁ ଭାରତରେ ବୌଦ୍ଧଧର୍ମ ସ୍ଥାନ ପାଇପାରିଲା ନାହିଁ ।

## ସାଧନାର ଲକ୍ଷ୍ୟ

ଖ୍ରୀଷ୍ଟିୟାନ୍ ବା ମୁସଲମାନ୍‌ମାନଙ୍କର ଈଶ୍ୱର ସର୍ବବ୍ୟାପୀ ନୁହନ୍ତି। ସେ ବିଶ୍ୱଠାରୁ ଭିନ୍ନ ଏକ ସ୍ୱତନ୍ତ୍ର ପୁରୁଷ। ସେମାନେ ମୁଖରେ ଈଶ୍ୱରଙ୍କୁ ସର୍ବବ୍ୟାପୀ ବୋଲି କହନ୍ତି ମାତ୍ର; କିନ୍ତୁ ହିନ୍ଦୁମାନେ ତାଙ୍କୁ ସର୍ବବ୍ୟାପୀ ରୂପରେ ସବୁଠାରେ ଦେଖନ୍ତି ଓ ପୂଜା କରନ୍ତି। କେହି ଜଡ଼ର ପୂଜା କରନ୍ତି ନାହିଁ। ସମସ୍ତେ ଜଡ଼ାନ୍ତର୍ଗତ ଶକ୍ତିନିହିତ ଅଭିନ୍ନ ପୁରୁଷଙ୍କର ପୂଜା କରନ୍ତି। ମୂର୍ତ୍ତି ନ ଗଢ଼ି ମଧ୍ୟ ହିନ୍ଦୁ ସେହି ପରମପୁରୁଷଙ୍କର ପୂଜା କରିଥାନ୍ତି। ଧାନ-ଚାଉଳରେ ସେମାନେ ଲକ୍ଷ୍ମୀ ପୂଜା କରନ୍ତି। ହିନ୍ଦୁମାନଙ୍କର ସମସ୍ତ ଦେବଦେବୀ ଯୁଗଳ ରୂପଧାରୀ। ସୁତରାଂ, ଏହି ଦେବ-ଦେବୀପୂଜାରେ ଅଦ୍ୱୟ ବ୍ରହ୍ମ ଅତି ସୂକ୍ଷ୍ମଭାବରେ ବିଦ୍ୟମାନ। ହିନ୍ଦୁମାନେ ଦେଖନ୍ତି, ବ୍ରହ୍ମଙ୍କର ଅନନ୍ତ ରୂପର ଐଶ୍ୱର୍ଯ୍ୟ ମୂର୍ତ୍ତି ତେତ୍ରିଶ କୋଟି ଦେବତା। ଦ୍ୱୈତ ଜଗତ୍ ମଧ୍ୟରେ ଅଦ୍ୱୈତର ଆଭାସ। ହିନ୍ଦୁମାନେ ଉପାସନା ନିମିତ୍ତ ଶକ୍ତି ଓ ଶକ୍ତିମାନଙ୍କୁ ଅଭେଦ କଳ୍ପନା କରନ୍ତି। ଜୀବ ଯୋଗବଳରେ ଐଶ୍ୱର୍ଯ୍ୟ ଲାଭ କରି ଈଶ୍ୱରତ୍ୱ ଲାଭ କରେ। ସେତେବେଳେ ଗୁଣଭାବ ବିଦ୍ୟମାନ ଥାଏ। ଶେଷରେ ନିସ୍ତ୍ରୈଗୁଣ୍ୟ ସାଧନାଦ୍ୱାରା ପରିପୂର୍ଣ୍ଣ ପରଂବ୍ରହ୍ମ ଭାବରେ ଉପନୀତ ହୁଏ, କ୍ଷୁଦ୍ର ଆକାଶ ମହାକାଶରେ ମିଳାଇଯାଏ, କ୍ଷୁଦ୍ର ନଦୀ ଅନନ୍ତ ସାଗରରେ ବିଲୀନ ହୁଏ।

ତାହା ହେଲେ ହିନ୍ଦୁ କିପରି ପୌତ୍ତଳିକ, ଜଡ଼ଉପାସକ, ତେତ୍ରିଶ କୋଟି ଦେବତା-ଉପାସକ ? ହିନ୍ଦୁଧର୍ମ ବୁଝିବାକୁ ଚେଷ୍ଟା କର, ଦେଖିବ, ତାହା ଗଭୀର ସୂକ୍ଷ୍ମ ଆଧ୍ୟାତ୍ମିକ ବିଜ୍ଞାନରେ ପରିପୂର୍ଣ୍ଣ। କେତେ ଯୁଗଯୁଗାନ୍ତରରୁ ହିନ୍ଦୁ ଧର୍ମର ବିମଳ ସ୍ନିଗ୍ଧ କିରଣ ବିକୀର୍ଣ୍ଣ ହେଉଛି। କେତେ ଅତୀତ କାଳରୁ ଏହି ଧର୍ମର ଆଲୋଚନା, ଆନ୍ଦୋଳନ ଓ ସାଧନରହସ୍ୟ ଉଦ୍ଭବ ହେଉଅଛି। ଏପରି ଉଦାର, ବିଶ୍ୱବ୍ୟାପକ, ସାର୍ବଭୌମ ଧର୍ମ ଜଗତ୍‌ରେ ଅନ୍ୟ କୁତ୍ରାପି ନାହିଁ। ତୁମେମାନେ ଚାରି ଶହ ବର୍ଷର ମାତ୍ର ସଭ୍ୟ। ତୁମମାନଙ୍କର ଜ୍ଞାନ କେତେ ? ବର୍ତ୍ତମାନ ସୁଦ୍ଧା ତୁମେମାନେ ଜଡ଼ର ସାଧନା କରୁଛ; ହିନ୍ଦୁ ଧର୍ମର ସୀମା ସ୍ପର୍ଶ କରିବାକୁ ତୁମର ବହୁ ବିଳମ୍ବ ହେବ। ହିନ୍ଦୁମାନଙ୍କ ମଧ୍ୟରେ ସାମାନ୍ୟ ଲୋକଙ୍କ ଆଚରିତ ଧର୍ମ ଦେଖି ଅନ୍ଧ ହସ୍ତୀ ଦେଖିଲାପରି କର୍ଣ୍ଣରେ ବା ପାଦରେ ହାତ ଦେଇ ହସ୍ତୀକୁ

କୁଲା ବା ସ୍ତମ୍ଭ ବୋଲି ନିର୍ଣ୍ଣୟ କର ନାହିଁ—ରସନା କଳୁଷିତ ହେବ । ଯେତେବେଳେ ଆଧ୍ୟାତ୍ମଜ୍ଞାନ ଲାଭ କରିବ, ସେତେବେଳେ ହୁଏତ ହିନ୍ଦୁ ଧର୍ମର ମହତ୍ତ୍ୱ ବୁଝିପାରିବ । ସେତେବେଳେ ତା'ର ଅମଳ ଧବଳ କୌମୁଦୀରେ ଉଦ୍‌ଭାସିତ ଓ ପ୍ରଫୁଲ୍ଲିତ ହେବ, ମରଜଗତରେ ଅମରତ୍ୱ ଲାଭ କରି ମାନବ-ଜୀବନ ସାର୍ଥକ କରିବ ଓ ମୁକ୍ତିଲାଭରେ ସମର୍ଥ ହେବ ।



# ବେଦ ଓ ଅଧିକାରୀ

## ସତ୍ୟ ଶାସ୍ତ୍ର ଏକ

ବେଦ ଅନାଦି, ଈଶ୍ୱରପ୍ରଣୀତ ଏବଂ ଅପରାପର ଶାସ୍ତ୍ର ଆଧୁନିକ, ମାନବକଳ୍ପିତ ଓ ଭ୍ରମପୂର୍ଣ୍ଣ ବୋଲି କେହି କେହି କହିବାର ଶୁଣାଯାଏ । ଖ୍ରୀଷ୍ଟଧର୍ମାବଲମ୍ବୀଙ୍କ ମତରେ ବାଇବେଲ୍ ଏକମାତ୍ର ସତ୍ୟ ଧର୍ମଗ୍ରନ୍ଥ ଓ ଈଶ୍ୱର ବାକ୍ୟ; ଅନ୍ୟ ଶାସ୍ତ୍ରସବୁ ମିଥ୍ୟା । ମୁସଲମାନ୍‌ମାନେ କହନ୍ତି, କୋରାନ୍ ଏକମାତ୍ର ସତ୍ୟ ଶାସ୍ତ୍ର, ଅନ୍ୟ ସମସ୍ତ ଶାସ୍ତ୍ର ଭ୍ରମପୂର୍ଣ୍ଣ । ଏହିସବୁ ଧର୍ମ-ମତ ମଧ୍ୟରେ କେଉଁଟି ସତ୍ୟ ଏବଂ କେଉଁ ଧର୍ମାବଲମ୍ବୀମାନେ ଯଥାର୍ଥରେ ସତ୍ୟଧର୍ମ ଆଚରଣ କରୁଛନ୍ତି, ସେହି ସତ୍ୟସ୍ୱରୂପ ପରମବ୍ରହ୍ମ ଏକ କିମ୍ବା ଦୁଇ, ତାହା ଦେଖିବାକୁ ହେବ । ସତ୍ୟ ଏକ ଭିନ୍ନ ଦୁଇ ହୋଇ ନ ପାରେ, ପୁଣି ସେହି ସତ୍ୟସ୍ୱରୂପ ପରମବ୍ରହ୍ମ ଏକ ବ୍ୟତୀତ ଦୁଇ ନୁହନ୍ତି ବୋଲି ସବୁ ଶାସ୍ତ୍ର କହନ୍ତି ।

ଯଦି ଜଣେ ସତ୍ୟପୁରୁଷଙ୍କ କର୍ତ୍ତୃକ ବେଦ, ଉପନିଷଦ୍, ବାଇବେଲ, କୋରାନ୍, ପୁରାଣ, ତନ୍ତ୍ରାଦି ରଚିତ, ତେବେ ସେସବୁଥିରେ ପରସ୍ପର-ମଧ୍ୟରେ ବିରୋଧ ଓ ମତଭେଦ କେବେହେଲେ ଦୃଷ୍ଟ ହେବ ନାହିଁ । ଈଶ୍ୱର ତ ମନୁଷ୍ୟ ନୁହଁନ୍ତି । ସୁତରାଂ, ତାଙ୍କ ବୟସ ସହିତ କାଳର ଏବଂ ଜ୍ଞାନସହିତ ମତର ଭିନ୍ନତା ଦେଖାଯିବ ନାହିଁ । ଅତଏବ ସମସ୍ତ ଶାସ୍ତ୍ର ଈଶ୍ୱରଙ୍କ କର୍ତ୍ତୃକ ପ୍ରଣୀତ ହେଲେ ସବୁ ଶାସ୍ତ୍ରମତ ନିଶ୍ଚୟ ସବୁ ଜୀବଙ୍କର ହିତକର ହେବ ଏବଂ ତାହା ସଙ୍ଗେ ସଙ୍ଗେ ଏକ ମଧ୍ୟ ହେବ—ଏଥିରେ ସନ୍ଦେହ ନାହିଁ ।

ତେବେ ଏସବୁ ଶାସ୍ତ୍ର ମଧ୍ୟରେ ମତଭେଦ କାହିଁକି ଦୃଷ୍ଟ ହେଉଛି ? ଯେଉଁମାନେ ନିଜ ନିଜ ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ଶାସ୍ତ୍ର ଲେଖିଛନ୍ତି, ଅପର ଲିଖିତ ଶାସ୍ତ୍ର ସହିତ ସେମାନଙ୍କର ମତର ସାମଞ୍ଜସ୍ୟ ହେବ ନାହିଁ । ଯେଉଁ ମହାପୁରୁଷମାନେ ନିଃସ୍ୱାର୍ଥ ଭାବରେ ସାରତତ୍ତ୍ୱ ଲେଖିଯାଇଛନ୍ତି, ତାହା ନିଶ୍ଚୟ ସମସ୍ତଙ୍କ ପକ୍ଷରେ କଲ୍ୟାଣକର । ଜଗତର କୌଣସି ସତ୍ୟାନୁସନ୍ଧିତ୍ସୁ ଲୋକଙ୍କ ମତ ସହିତ ତା'ର

ଅସାମଞ୍ଜସ୍ୟ ହେବ ନାହିଁ । ସତ୍ୟ ସବୁ ସ୍ଥାନରେ, ସମସ୍ତଙ୍କ ନିକଟରେ ସତ୍ୟ । ପୁରାକାଳରେ ଋଷିମାନଙ୍କ ମଧ୍ୟରେ ଯେ ଯେପରି ଅବସ୍ଥା ପ୍ରାପ୍ତ ହୋଇଥିଲେ, ସେ ସେହିପରି ମତ ପ୍ରକାଶ କରିଗଲେ । ସେହି ସେହି ଅବସ୍ଥାପନ୍ନ ବ୍ୟକ୍ତିମାନେ ସେହି ସେହି ଭାବ ବୁଝିବାକୁ କ୍ଷମ ।

## ଶାସ୍ତ୍ରର ସାରବସ୍ତୁ ସତ୍ୟ

କିନ୍ତୁ ଅନ୍ୟ ଅବସ୍ଥାପ୍ରାପ୍ତ ବ୍ୟକ୍ତିମାନେ ସେହି ଅବସ୍ଥାର ଭାବ ଗ୍ରହଣ କରିବାକୁ କ୍ଷମ ନୁହଁନ୍ତି । ସ୍ୱପ୍ନାବସ୍ଥାପ୍ରାପ୍ତ ବ୍ୟକ୍ତିମାନେ ଜାଗ୍ରତ ମନୁଷ୍ୟର ଭାବ ବୁଝିପାରନ୍ତି ନାହିଁ । ଜ୍ଞାନମୟ ଈଶ୍ୱର ଅଖଣ୍ଡାକାରରେ ସମସ୍ତଙ୍କ ଭିତରେ ଓ ବାହାରେ ପରିପୂର୍ଣ୍ଣ ରୂପରେ ବିରାଜମାନ । ବେଦ, ଉପନିଷଦ, ବାଇବେଲ୍, ସମସ୍ତ ତାଙ୍କରି ନାମ ମାତ୍ର । ଯେଉଁମାନେ ଭଗବାନଙ୍କୁ ମାନନ୍ତି, ସେମାନେ ଯଥାର୍ଥ ବେଦ, ଉପନିଷଦ୍, କୋରାନ୍ ପ୍ରଭୃତି ସମସ୍ତ ଶାସ୍ତ୍ରର ମର୍ଯ୍ୟାଦା ରକ୍ଷା କରନ୍ତି; କିନ୍ତୁ ମୁହଁରେ ବେଦ ମାନି ଯେଉଁ ବ୍ୟକ୍ତି ତା'ର ମର୍ମାନୁସାରେ କାର୍ଯ୍ୟ କରନ୍ତି ନାହିଁ, ସେ ଅସଲ ଅମର୍ଯ୍ୟାଦାକାରୀ ଓ ଭଣ୍ଡ । ଏମାନେ ଚିରକାଳ ଅଶାନ୍ତି ଭୋଗ କରନ୍ତି ।

ବେଦାଦି ଶାସ୍ତ୍ରର ଉଦ୍ଦେଶ୍ୟ ଏକ । ଏକମାତ୍ର ପୂର୍ଣ୍ଣ ପରମବ୍ରହ୍ମ ଜ୍ୟୋତିଃସ୍ୱରୂପ ପରମାତ୍ମା ସବୁ ଶାସ୍ତ୍ରରେ ପ୍ରତିପାଦ୍ୟ ବିଷୟ । ତାଙ୍କୁ ହୃଦୟରେ ଧାରଣ କଲେ ବ୍ୟାବହାରିକ ଓ ପରମାର୍ଥିକ ସକଳ କର୍ମ ଉତ୍ତମରୂପେ ନିର୍ବାହ କରାଯାଇପାରେ; ପୁଣି ଆତ୍ମା ଚିରକାଳ ଶାନ୍ତିରେ ରହେ । ଗୋଟିଏ ହେଲେ ତୃଣ ଉତ୍ପନ୍ନ କରିବାର କ୍ଷମତା ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ କାହାରି ନାହିଁ । ବ୍ରହ୍ମଙ୍କର ଆଦି ନାହିଁ, ମଧ୍ୟ ନାହିଁ କି ଅନ୍ତ ନାହିଁ । ସେ ଯେପରି ଥିଲେ ସେହିପରି ପୂର୍ଣ୍ଣ ହୋଇ ରହିଛନ୍ତି । ନିରାକାର ବ୍ରହ୍ମ ସାକାର ଜଗତ୍ ରୂପରେ ବିରାଜିତ । ଆଦି କାଳରେ ଯେଉଁ ପୃଥିବୀ ଥିଲା, ବର୍ତ୍ତମାନ ମଧ୍ୟ ତାହା ଅଛି । ପ୍ରଥମରୁ ଅଗ୍ନି ଓ ବାୟୁ ଯେପରି ଥିଲେ, ବର୍ତ୍ତମାନ ସେହି ଅଗ୍ନି, ସେହି ବାୟୁ ସେହିପରି ଅଛନ୍ତି । ନୂଆ ସୃଷ୍ଟି କେହି କରିପାରି ନାହାନ୍ତି ବା କରିପାରିବେ ନାହିଁ । ଏଥିରୁ ହିଁ ସାରବସ୍ତୁ ସତ୍ୟକୁ ଗ୍ରହଣ କରିବାକୁ ହେବ । ସତ୍ୟରୁ ବିଚ୍ୟୁତ ହୋଇ ସମୟ ନଷ୍ଟ କରିବା ଓ କଷ୍ଟ ଭୋଗ କରିବା ଉଚିତ୍ ନୁହେଁ ।

ପୁତ୍ର-କନ୍ୟାଙ୍କର କହିବା ଉଚିତ୍ ନୁହେଁ ଯେ ପ୍ରପିତାମହ ମରିଯାଇଛନ୍ତି, ସେ ପୁରାତନ। ସୁତରାଂ, ତାଙ୍କୁ ସମ୍ମାନ କରିବୁ ଅଥବା ପିତାମହ ନୂତନ, ତାଙ୍କୁ ମାନିବୁ ନାହିଁ। କିନ୍ତୁ ସେମାନଙ୍କର ବୁଝିବା ଉଚିତ୍ ଯେ ଏହି ପିତାମହ ଆଦ୍ୟରେ ଥିଲେ, ବର୍ତ୍ତମାନ ଅଛନ୍ତି, ନୂତନ ସୃଷ୍ଟି ହୋଇନାହାନ୍ତି। ପିତାମହଙ୍କୁ ଅପମାନ କରିବା ଅର୍ଥ ପ୍ରପିତାମହଙ୍କର ଅପମାନ କରିବା। ସାକାର ଜ୍ୟୋତିଃସ୍ୱରୂପ ବ୍ରହ୍ମଙ୍କୁ ଅପମାନ କଲେ ନିରାକାର ବ୍ରହ୍ମଙ୍କର ଅପମାନ ହୁଏ। ବେଦାଦି ଶାସ୍ତ୍ରରେ ସାରବସ୍ତୁ ଏହି ଭାବରେ ଗ୍ରହଣ କରି ପରମାନନ୍ଦରେ ଆନନ୍ଦସ୍ୱରୂପ ହୋଇ ରହିବା ଉଚିତ୍।

## ଅଧିକାରୀ କିଏ ?

ବେଦପାଠ, ଓଁକାର ବା ବ୍ରହ୍ମଗାୟତ୍ରୀ ଜପ ଓ ସ୍ୱାହା ବୋଲି ଅଗ୍ନିରେ ଆହୁତି-ପ୍ରଦାନରେ ସ୍ତ୍ରୀ ଓ ଶୂଦ୍ରଙ୍କର ଅଧିକାର ନାହିଁ ବୋଲି କେତେକ ଶାସ୍ତ୍ରରେ ଉଲ୍ଲେଖ ଅଛି; କିନ୍ତୁ ମାନ-ଅପମାନ, ଜୟ-ପରାଜୟ, ସାମାଜିକ ମିଥ୍ୟା ସ୍ୱାର୍ଥ ପରିତ୍ୟାଗ କରି ଗମ୍ଭୀର ଓ ଶାନ୍ତଭାବରେ ବିଚାର କରି ଏ କଥାର ସାରବସ୍ତୁ ଗ୍ରହଣ କରାଯାଉ। ଏଥିରେ ସବୁ ଅମଙ୍ଗଳ ଦୂର ହୋଇଯିବ। ଯାହାଙ୍କ ଘରେ ଅନ୍ଧକାର ଅଛି, ତାଙ୍କର ଅଗ୍ନିର ପ୍ରୟୋଜନ। ଯେଉଁ ବ୍ୟକ୍ତି ଅଜ୍ଞାନ, ଜ୍ଞାନାଲୋକ ତାଙ୍କର ଏକାନ୍ତ ଆବଶ୍ୟକ। ବେଦପାଠ, ଓଁକାର ମନ୍ତ୍ରଜପ, ଅଗ୍ନିରେ ଆହୁତିପ୍ରଦାନ ଅଜ୍ଞାନ ଅବସ୍ଥାପନ୍ନ ଲୋକଙ୍କପାଇଁ ଉଦ୍ଦିଷ୍ଟ। ସେଥିରେ ସେମାନେ ଅଜ୍ଞାନରୁ ମୁକ୍ତିଲାଭ କରି ଜ୍ଞାନମୁକ୍ତି ସ୍ୱରୂପ ପରମାନନ୍ଦରେ ଅବସ୍ଥାନ କରିବେ—ଏହା ହିଁ ଉଦ୍ଦେଶ୍ୟ।

ଜ୍ଞାନବାନ୍ ବ୍ୟକ୍ତିଙ୍କର ବେଦପାଠ, ଓଁକାର ଜପାଦି ଆବଶ୍ୟକ ନାହିଁ। କେବଳ ଶାସ୍ତ୍ରପାଠ କଲେ ଯେ ପ୍ରକୃତ ଜ୍ଞାନ ହୁଏ, ତାହା ନୁହେଁ। ଅଜ୍ଞାନ ଅବସ୍ଥାପନ୍ନ ବ୍ୟକ୍ତିମାନେ କହନ୍ତି ଯେ ବେଦୋକ୍ତ ବିଧାନରେ ସ୍ତ୍ରୀ ଓ ଶୂଦ୍ରଙ୍କର ଅଧିକାର ନାହିଁ। ଜ୍ଞାନବିସ୍ତାର ନିମିତ୍ତ ବେଦପାଠ। ଅତଏବ ଅଜ୍ଞାନୀ, ସ୍ତ୍ରୀ ଓ ଶୂଦ୍ରମାନଙ୍କ ପାଇଁ ବେଦପାଠ ଆବଶ୍ୟକ। ବ୍ରାହ୍ମଣ ଅର୍ଥ ଜ୍ଞାନୀ। ବ୍ରାହ୍ମଣମାନଙ୍କ ପାଇଁ ଜ୍ଞାନଶିକ୍ଷା ବା ବେଦପାଠ ନିଷ୍ପ୍ରୟୋଜନ। ଶାସ୍ତ୍ର ଅନୁସାରେ ବିଚାର କରି ଦେଖିଲେ ସ୍ତ୍ରୀ ଓ ଶୂଦ୍ରମାନଙ୍କର ସବୁ ବିଷୟରେ ଅଧିକାର ଅଛି; କାରଣ ଶୂଦ୍ର ଅଜ୍ଞାନ ଅବସ୍ଥାପନ୍ନ ଲୋକଙ୍କୁ ବୁଝାଏ ଏବଂ ଜ୍ଞାନବାନ୍ ଲୋକକୁ ବ୍ରାହ୍ମଣ କୁହାଯାଏ।

ବ୍ରହ୍ମବିଦ୍‌ଙ୍କୁ ଶାସ୍ତ୍ରରେ ବ୍ରାହ୍ମଣ କହନ୍ତି। ଯେଉଁ ବ୍ୟକ୍ତି ବ୍ରହ୍ମଙ୍କୁ ଜଗନ୍ମୟ ପରମାତ୍ମାଙ୍କ ସ୍ୱରୂପ ବୋଲି ଜାଣନ୍ତି, ସେହି କେବଳ ବ୍ରାହ୍ମଣ। ବ୍ରାହ୍ମଣ ଓ ବ୍ରହ୍ମ

ଗୋଟିଏ ଅବସ୍ଥାର ନାମ। 'ବ୍ରହ୍ମବିଦ୍ ବ୍ରହ୍ମୈବ ଭବତି'। ଯେ ବ୍ରହ୍ମଙ୍କୁ ଜାଣନ୍ତି, ସେ ବ୍ରାହ୍ମଣ। ପୁଣି ବ୍ରହ୍ମଙ୍କୁ ଜାଣିବା ପାଇଁ ବେଦପାଠ ଆବଶ୍ୟକ। ସୁତରାଂ, ଯେ ବ୍ରହ୍ମଙ୍କୁ ଜାଣନ୍ତି, ସେହି ବ୍ରାହ୍ମଣମାନଙ୍କର ବେଦପାଠ ଓ ଗାୟତ୍ରୀଜପର କୌଣସି ପ୍ରୟୋଜନ ନାହିଁ। ଯେ ବ୍ରହ୍ମଙ୍କୁ ଜାଣନ୍ତି ନାହିଁ, ଯେ ଅଜ୍ଞାନ, ସେ ଶୂଦ୍ର। ଜ୍ଞାନଲାଭ ନିମିତ୍ତ ସେମାନଙ୍କର ବେଦପାଠ ଏକାନ୍ତ ଆବଶ୍ୟକ। ଶୂଦ୍ରମାନେ ହିଁ ଏହାର ଅଧିକାରୀ। ଶୂଦ୍ର ଓ ସ୍ତ୍ରୀ କାହାକୁ କହନ୍ତି ? ଯଦି ସ୍ଥୁଳ ଶରୀରକୁ ଶୂଦ୍ର ବା ସ୍ତ୍ରୀ କୁହାଯାଏ, ତାହାହେଲେ ପ୍ରତ୍ୟେକ ସ୍ଥୁଳ ଶରୀର ଶୂଦ୍ର ବା ସ୍ତ୍ରୀ ହେବ। ଯାହା ପ୍ରକୃତି ଓ ଶକ୍ତିର ଅତୀତ, ଶାସ୍ତ୍ର ତାହାକୁ ଚୈତନ୍ୟ ବୋଲି କହେ। ବ୍ରାହ୍ମଣ ଶକ୍ତିର ଅତୀତ। ଅତଏବ ଶକ୍ତିହୀନ ପୁରୁଷ ଅନଧିକାରୀ। ଫଳରେ ମନୁଷ୍ୟମାତ୍ରକେ ଜ୍ଞାନ-ମୁକ୍ତି-ନିମିତ୍ତ ଓ ବ୍ରହ୍ମପଦପ୍ରାପ୍ତି ନିମିତ୍ତି ଉଲ୍ଲିଖିତ କାର୍ଯ୍ୟ କରିବାର ବିଧି ଓ ଅଧିକାର ଅଛି।

''ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରାତ୍ ଦ୍ୱିଜମୁଚ୍ୟତେ।
ବେଦାଭ୍ୟାସାତ୍ ଭବେଦ୍‌ବିପ୍ରୋ ବ୍ରହ୍ମଜାନାତିତି ବ୍ରାହ୍ମଣଃ ॥''

ଜୀବ ଜନ୍ମ ହେଲାମାତ୍ରେ ଶୂଦ୍ର। ଯେତେବେଳେ ଏହି ଶୂଦ୍ରର ପରମେଶ୍ୱରଙ୍କ ସମ୍ବନ୍ଧୀୟ ସଂସ୍କାର ହୁଏ, ସେତେବେଳେ ସେ ଦ୍ୱିଜ। ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଦ୍ୱିଜ। ଯେତେବେଳେ ସେହି ଜୀବ ବେଦପାଠ କରି ଇନ୍ଦ୍ରିୟକୁ ପରିଶୁଦ୍ଧ କରନ୍ତି ଓ ଆତ୍ମାରେ ନିଷ୍ଠାବାନ୍ ହୁଅନ୍ତି, ସେତେବେଳେ ସେ ବିପ୍ର ଅର୍ଥାତ୍ ଯାହାଙ୍କର ତେଜ, ବଳ, ଜ୍ଞାନ ଓ ଶକ୍ତି ଅଛି; ଯେତେବେଳେ ସେହି ଜୀବ ବ୍ରହ୍ମଙ୍କୁ ଜାଣନ୍ତି ଏବଂ ଜୀବାତ୍ମା-ପରମାତ୍ମାଙ୍କ ସହିତ ଏକ ହୋଇ ଅଭିନ୍ନ ହୁଅନ୍ତି, ସେହି ଅବସ୍ଥାରେ ସେ ବ୍ରାହ୍ମଣ। ଶାସ୍ତ୍ରରେ ଆହୁରି ଅଛି–

''ଶୂଦ୍ରୋବ୍ରାହ୍ମଣତାମେତି ବ୍ରାହ୍ମଣଶ୍ଚୈତି ଶୂଦ୍ରତାଂ।
କ୍ଷତ୍ରିୟାଃ ଜାତମେବନ୍ତୁ ବିଦ୍ୟାତ୍ ବୈଶ୍ୟାଃ ତଥୈବ ଚ ॥''

ଶୂଦ୍ର ହୁଅନ୍ତୁ, ବୈଶ୍ୟ ହୁଅନ୍ତୁ ଅଥବା କ୍ଷତ୍ରିୟ ହୁଅନ୍ତୁ, ଯେ କେହି ଶ୍ରେଷ୍ଠ କାର୍ଯ୍ୟ କରନ୍ତି, ସେ ବ୍ରାହ୍ମଣପଦବାଚ୍ୟ ହୁଅନ୍ତି। ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରି କେହି ନିକୃଷ୍ଟ କାର୍ଯ୍ୟ କଲେ, ସେ ବ୍ୟକ୍ତି ଶୂଦ୍ର ହୁଅନ୍ତି। ଭାଗବତର ମଧ୍ୟ ଏହି ମତ। ଯଜୁର୍ବେଦରେ ଅଛି—

''ଯ ଥେ ମାଂବାଚିଂ କଲ୍ୟାଣି ମା ବଦାନି ଜନେଭ୍ୟଃ ।
ବ୍ରହ୍ମରାଜନାଭ୍ୟାଂ ଶୂଦ୍ରାୟ ଚାର୍ଯ୍ୟାୟ ଚ ସ୍ୱାୟ ଚାରଣାୟ ॥''
—ଯଜୁର୍ବେଦ— ୨୬-୨

ମୁଁ ଅର୍ଥାତ୍ ବ୍ରହ୍ମ । ଏହି କଲ୍ୟାଣକର ବାକ୍ୟ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ସମସ୍ତେ ଗ୍ରହଣ କରିବେ ଅର୍ଥାତ୍ ସମସ୍ତେ ବେଦପାଠ-ଦ୍ୱାରା ବେଦର ସାରଭାଗ ଗ୍ରହଣ କରି ଶ୍ରେଷ୍ଠକାର୍ଯ୍ୟ କରିବେ । ବ୍ରାହ୍ମଣ, କ୍ଷତ୍ରିୟାଦି ଚଣ୍ଡାଳ ପର୍ଯ୍ୟନ୍ତ ସ୍ତ୍ରୀ, ପୁରୁଷ ସମସ୍ତେ ବେଦପାଠ କରି ତା'ର ସାରଭାଗ ଗ୍ରହଣ କରିବେ ଏବଂ ତଦ୍ଦ୍ୱାରା ବ୍ୟାବହାରିକ ଓ ପାରମାର୍ଥିକ ଶ୍ରେଷ୍ଠକାର୍ଯ୍ୟ କରିବା ପାଇଁ କାହାର ବାଧା ରହିବ ନାହିଁ । ସମସ୍ତେ ଓଁକାର ମନ୍ତ୍ରଜପ, ଗାୟତ୍ରୀ ଅର୍ଥାତ୍ ଜ୍ୟୋତିଃସ୍ୱରୂପ ଆତ୍ମଗୁରୁଙ୍କ ଉପାସନା କରିବେ । ତାଙ୍କୁ ଜାଣିବା ନିମିତ୍ତ ଜ୍ଞାନ ଉପାର୍ଜ୍ଜନ କରିବାକୁ ବେଦପାଠ କୁହାଯାଏ । ଜ୍ଞାନର ନାମ ବେଦ ।

## ବିଭିନ୍ନ ନାମ ଓ ରୂପ

ପାରମାର୍ଥିକ ବିଷୟରେ କାହାର ଅଧିକାର ବା ଅନଧିକାର, ଏସବୁ କଳ୍ପନା ମାତ୍ର । ଏଥିରୁ ନାନା ଅମଙ୍ଗଳ ଉତ୍ପନ୍ନ ହୋଇଅଛି । ପରମାତ୍ମାଙ୍କୁ କେହି ଗୋଟିଏ ନାମରେ ଡାକିଲେ ଅନ୍ୟ କେହି ଆଉ ଗୋଟିଏ ନାମରେ ଡାକିଥାନ୍ତି । କିଏ କି ପ୍ରକାର ରୂପ କଳ୍ପନା କରୁଥାନ୍ତି । ଗୋଟିଏ ନାମ ଓ ଗୋଟିଏ ରୂପର ଉପାସକ ଅନ୍ୟ ନାମ ଓ ଅନ୍ୟ ରୂପର ଉପାସକଙ୍କ ସହିତ ଏକମତ ହୋଇପାରନ୍ତି ନାହିଁ । ଉଭୟେ ବିବାଦ ଓ ଅଶାନ୍ତିରେ କାଳାତିପାତ କରୁଛନ୍ତି । ଯାହାଙ୍କର ଯେଉଁ କ୍ରିୟାରେ ସଂସ୍କାର ଜନ୍ମିଛି, ସେଥିରେ ଅଧିକାର କଳ୍ପିତ ହୋଇନଥିବା ବ୍ୟକ୍ତିଙ୍କୁ ସେ ନାସ୍ତିକ, ପାଷଣ୍ଡ, ଅଧାର୍ମିକ ବୋଲି କହୁଛନ୍ତି । ଫଳରେ ପରସ୍ପର ଭିତରେ ହିଂସା-ଦ୍ୱେଷବଶରୁ ସମସ୍ତେ ଇଷ୍ଟଭ୍ରଷ୍ଟ ହୋଇ ନାନା ଦୁଃଖ ଭୋଗ କରୁଛନ୍ତି । ଏହାର ମୂଳ କାରଣ ଅଧିକାରୀ-ଅନଧିକାରୀ କଳ୍ପନା; କିନ୍ତୁ ସମସ୍ତଙ୍କର ସତ୍‌ପଥ ବା ପରମାର୍ଥପ୍ରାପ୍ତି ପଥରେ ଅଧିକାର ଅଛି । ସତ୍‌ପଥ ଏକ ଭିନ୍ନ ଦୁଇ ନୁହେଁ । ପରମେଶ୍ୱର ଜୀବକୁ ଯେଉଁ ଅଧିକାର ଦେଇଛନ୍ତି, ତାହାର ଅନ୍ୟଥାଚରଣ କେହି କରିପାରିବେ ନାହିଁ । ଜଳଜନ୍ତୁଙ୍କର ଜଳରେ ବାସ ଓ ଖେଚର ଜୀବଙ୍କର ଆକାଶରେ ବିଚରଣ କରିବାର ଅଧିକାର ଅଛି । ସହସ୍ର ଚେଷ୍ଟାରେ ସୁଦ୍ଧା ଖେଚର ଜୀବ ଜଳଜନ୍ତୁ ହୋଇପାରିବେ ନାହିଁ । ଈଶ୍ୱରଦତ୍ତ ଅଧିକାର ଏହିପରି ବିଚାରଦ୍ୱାରା ବୁଝାଯାଏ ।

ଈଶ୍ୱରନିର୍ଦ୍ଦିଷ୍ଟ ଅଧିକାର ବା ଅନଧିକାର ସମ୍ବନ୍ଧରେ ମନୁଷ୍ୟର ବିଧିନିଷେଧର ସ୍ଥାନ ନାହିଁ । ବିଧି ବ୍ୟବସ୍ଥା କରିଦେଲେ ମଧ୍ୟ ଅଧିକାର ବା ଅନଧିକାର ହେବ ନାହିଁ; କିନ୍ତୁ ଧର୍ମସମ୍ବନ୍ଧରେ ଅଧିକାର ଅନଧିକାର ବୋଲି କିଛି ନାହିଁ । କାରଣ, ତାହା ସମସ୍ତଙ୍କର ପ୍ରୟୋଜନ । ମନୁଷ୍ୟର ସ୍ୱାର୍ଥ ଅଛି ବୋଲି ଅଧିକାର ବା ଅନଧିକାର ଭାବ ବୋଧ ହୁଏ । ଗୋଟିଏ ନିର୍ଦ୍ଦିଷ୍ଟ କ୍ଷେତ୍ର ତୁମ ନିଜ ବୋଲି ମନେ କଲେ ତାହାର ଫଳଭୋଗରେ ତୁମର ଅଧିକାର ଜାତ ହୁଏ, କିନ୍ତୁ ଈଶ୍ୱରଙ୍କ ଉପରେ କାହାର ସ୍ୱତ୍ୱାଧିକାର ହୋଇପାରେ ? ଭଗବାନ୍‌ଙ୍କୁ କଅଣ କିଏ ଠିକା ବନ୍ଦୋବସ୍ତ କରିନେଇଛି ଯେ ସେହି ଲୋକଙ୍କ ବିନା ଅନୁମତିରେ କେହି ଈଶ୍ୱରଙ୍କ ନିକଟକୁ ଯାଇପାରିବେ ନାହିଁ ?

ସ୍ୱାର୍ଥହେତୁ ତୁମେମାନେ ଯେଉଁ କ୍ଷେତ୍ରକୁ ନିଜର ବୋଲି ଜାଣୁଛ, ସେଥିରେ ଜଳ ଦେଉଛ । ଈଶ୍ୱରଙ୍କର କିନ୍ତୁ ଭେଦ ନାହିଁ । ସେ ସବୁ ସ୍ଥାନରେ ଜଳ ବର୍ଷଣ କରନ୍ତି । ସମଦୃଷ୍ଟିସମ୍ପନ୍ନ ଜ୍ଞାନବାନ୍ ବ୍ୟକ୍ତି ସମସ୍ତଙ୍କ ପକ୍ଷରେ ପରମାନନ୍ଦପ୍ରାପ୍ତି ନିମିତ୍ତ ମନୁଷ୍ୟ ମାତ୍ରକୁ ଆପଣାର ବା ପରମାତ୍ମାଙ୍କର ସ୍ୱରୂପ ଜାଣି ନିଃସ୍ୱାର୍ଥଭାବରେ ସତ୍‌ପଥରେ ନେବାକୁ ଚେଷ୍ଟା କରନ୍ତି; କାହାକୁ ବଞ୍ଚିତ କରନ୍ତି ନାହିଁ । ସେ ଜାଣନ୍ତି, ବେଦ ବା ଧର୍ମ ସମସ୍ତଙ୍କର ଏକ । ସେ ସମସ୍ତଙ୍କର ଆତ୍ମା ଓ ପ୍ରିୟ । ତାଙ୍କଠାରେ ସମସ୍ତଙ୍କର ଅଧିକାର ଅଛି ।

## ସତ୍ ଶାସ୍ତ୍ର

ବେଦ କହିଲେ ନିର୍ଦ୍ଦିଷ୍ଟ କୌଣସି ଶାସ୍ତ୍ରକୁ ବୁଝାଏ ନାହିଁ । ଶିକ୍ଷା, କଳ୍ପ, ନିରୁକ୍ତ, ବ୍ୟାକରଣ, ଛନ୍ଦ, ଜ୍ୟୋତିଷ ପ୍ରଭୃତି ସମସ୍ତ ଅଂଶକୁ ନେଇ ବେଦ ରଚିତ । ବେଦ ସାଧାରଣତଃ ଦୁଇ ଭାଗରେ ବିଭକ୍ତ— କର୍ମକାଣ୍ଡ ଓ ଜ୍ଞାନକାଣ୍ଡ । ତନ୍ମଧ୍ୟରେ ସଂହିତା ଭାଗକୁ କର୍ମକାଣ୍ଡ, ବ୍ରାହ୍ମଣ ବା ଉପନିଷଦ୍ ଭାଗକୁ ଜ୍ଞାନକାଣ୍ଡ କୁହାଯାଏ ।

ଗୀତା ମଧ୍ୟ ଶତ୍‌ଶାସ୍ତ୍ରର ଅନ୍ତର୍ଗତ । ଗୀତାପାଠକୁ "ମୁଁ କିଏ, କେଉଁଠୁ ଆସିଛି, ପୁଣି କର୍ମଶେଷରେ କେଉଁ ସ୍ଥାନକୁ ଗମନ କରିବି ? ଭଗବାନ୍ କିଏ, ତାଙ୍କ ସହିତ ଆମର ସମ୍ପର୍କ କ'ଣ ? ସେ ନିତ୍ୟ ନା ଅନିତ୍ୟ, ମୁଁ ନିତ୍ୟ ନା ଅନିତ୍ୟ, ଭଗବାନ୍‌ଙ୍କ ସହିତ ଜୀବର ସମ୍ବନ୍ଧ" ଇତ୍ୟାଦି ବିଷୟ ବିଶେଷ ଭାବରେ ଜଣାଯାଏ ।

ଶାସ୍ତ୍ର ଅନେକ । ସମସ୍ତ ଶାସ୍ତ୍ର ଜାଣିବା ଜଣକ ପକ୍ଷରେ ସମ୍ଭବପର ନୁହେଁ । ଭିନ୍ନ ଭିନ୍ନ ଶାସ୍ତ୍ର ମତ ବିଭିନ୍ନ । ସମସ୍ତ ଶାସ୍ତ୍ର ମତଗୁଡ଼ିକୁ ସାମଞ୍ଜସ୍ୟ କରି ଗ୍ରହଣ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବପର ନୁହେଁ । ସମଗ୍ର ବେଦର ସାର ଉପନିଷଦ୍, ସମଗ୍ର ଉପନିଷଦ୍‌ର ସାର ଗୀତା ।*

ଈଶ୍ୱରଜ୍ଞାନସମ୍ପନ୍ନ ବ୍ୟକ୍ତି ସର୍ବସାଧାରଣଙ୍କ ହିତ ପାଇଁ ଶାସ୍ତ୍ର ରଚନା କରନ୍ତି ଏବଂ ସଦୁପଦେଶ ଦିଅନ୍ତି । ଏହା ବିଶେଷ ଭାବରେ କାହାପାଇଁ ଉଦ୍ଦିଷ୍ଟ ନୁହେଁ । ଯେଉଁ ଶାସ୍ତ୍ର ବା ଉପଦେଶରେ ଏହାର ବିପରୀତ ଦେଖାଯାଏ, ତାହାର କର୍ତ୍ତା ଈଶ୍ୱର ବା ସମଦୃଷ୍ଟିସମ୍ପନ୍ନ ଜ୍ଞାନୀ ନୁହଁନ୍ତି । ତାହା ସ୍ୱାର୍ଥପର ମନୁଷ୍ୟଙ୍କ ରଚନା— ଏହା ଧ୍ରୁବ ସତ୍ୟ ।

ପୁତ୍ର-କନ୍ୟାମାନେ ଶ୍ରଦ୍ଧାଭକ୍ତିପୂର୍ବକ ପିତାମାତାଙ୍କ ଆଜ୍ଞା ପାଳନ କଲେ ପିତାମାତା ପ୍ରସନ୍ନ ହୋଇ ସେମାନଙ୍କର ମଙ୍ଗଳ କାମନା କରନ୍ତି । ପୁତ୍ର-କନ୍ୟାମାନେ ଏହା ଦେଖି ଅଧିକ ଆନନ୍ଦିତ ହୁଅନ୍ତି । ସମସ୍ତ ସ୍ତ୍ରୀ-ପୁରୁଷ ଭଗବାନ୍‌ଙ୍କର ପୁତ୍ର-କନ୍ୟା । ବେଦ ମାତା, ଓଁକାର ମନ୍ତ୍ର ଅର୍ଥାତ୍ ପରଂବ୍ରହ୍ମ ଜ୍ୟୋତିଃସ୍ୱରୂପ ବିରାଟ ପୁରୁଷ ପିତା । ଏହି ବିରାଟ ପୁରୁଷଙ୍କ ଠାରୁ ସମଗ୍ର ଜଗତ୍‌ର ସ୍ତ୍ରୀ-ପୁରୁଷଙ୍କ ସ୍ଥୂଳ, ସୂକ୍ଷ୍ମ ଶରୀର ଗଠିତ ହୋଇ ଓଁକାର ରୂପରେ ରହିଅଛି । ଶେଷରେ ସେଥିରେ ଲୀନ ହୋଇ ପୁନରାୟ ପ୍ରକାଶ ପାଉଅଛି । ଏହି ପ୍ରଭାବ ଅନାଦି କାଳରୁ ଚାଲିଆସୁଛି । ଜଗଦ୍‌ବାସୀ ସମସ୍ତ ସ୍ତ୍ରୀ-ପୁରୁଷ 'ଓଁ ସଦ୍‌ଗୁରୁ' ଏହି ମନ୍ତ୍ରର ଅଧିକାରୀ ଅନଧିକାରୀ ଭାବନା ନ କରି ଦ୍ୱିଧାଶୂନ୍ୟ ହୋଇ ପ୍ରୀତିପୂର୍ବକ ଜପ କରିବା ଉଚିତ୍ । ସେ ମଙ୍ଗଳମୟ—ସର୍ବବିଷୟରେ ମଙ୍ଗଳ କରିବେ ।

---

* ଶ୍ରୀଶ୍ରୀନିଗମାନନ୍ଦ କଥାମୃତ ଦ୍ରଷ୍ଟବ୍ୟ

# ଉପାସନା

## ଅଗ୍ନି ପୂଜାର ତାତ୍ପର୍ଯ୍ୟ

ଗୋଟିଏ ଶ୍ରେଣୀର ହିନ୍ଦୁ ଜାତୀୟ ଗୌରବ ଉପଲବ୍ଧି କରିବାର ଉପଯୋଗୀ ଶିକ୍ଷା ଓ ସଂଯମ ହରାଇ ନିଜକୁ ପୌତ୍ତଳିକ, ଜଡ଼ଉପାସକ ଓ କୁସଂସ୍କାରାଛନ୍ନ ମନେ କରି ଲଜ୍ଜିତ ହେଉଛନ୍ତି । ହିନ୍ଦୁ ଧର୍ମାଶ୍ରିତ ସଂଶୟୀ ଲୋକଙ୍କ ସନ୍ଦେହ ଅପନୋଦନ କରିବା ହିନ୍ଦୁମାତ୍ରେ ସମସ୍ତଙ୍କର କର୍ତ୍ତବ୍ୟ । ହିନ୍ଦୁଧର୍ମ ବେଦମୂଳକ । ସେହି ବେଦରେ ଅଗ୍ନିପୂଜାରୂପ ଯଜ୍ଞକାର୍ଯ୍ୟ ଉଲ୍ଲିଖିତ । ତଦ୍ୱାରା ଅଗ୍ନି, ଜଳ, ମେଘ, ଆକାଶ, ବାୟୁ, ଦିକ୍ ଓ କାଳ ପ୍ରଭୃତିଙ୍କୁ ବଶୀଭୂତ କରି ସ୍ୱକାର୍ଯ୍ୟ ସାଧନର ବ୍ୟବସ୍ଥା ଅଛି । ଏସବୁ ଆମର ଭ୍ରମାତ୍ମକ ବିଶ୍ୱାସ, କୁସଂସ୍କାର ଓ ଜଡ଼-ଉପାସନା ବୋଲି ସେହି ଶ୍ରେଣୀର ଲୋକେ ମନେ କରନ୍ତି । ସେମାନଙ୍କ ଦୃଷ୍ଟି ସଂସ୍କାର-ଶାସନହେତୁ ସ୍ଥୁଳ-ଜଡ଼ ପ୍ରାଚୀରର ପରପାରକୁ ଯିବାକୁ ଅନିଚ୍ଛୁକ । ଜଡ଼ାତିରିକ୍ତ କିଛି ସେମାନେ ବୁଝନ୍ତି ନାହିଁ । ହିନ୍ଦୁମାନେ ଚନ୍ଦ୍ର, ସୂର୍ଯ୍ୟ, ବାୟୁ ପ୍ରଭୃତିର ଆରାଧନା କରୁଥିଲେ ମଧ୍ୟ ଏ ସବୁର ସ୍ଥୁଳ ଭାବର ଆରାଧନା କରନ୍ତି ନାହିଁ । ସେମାନେ ପାର୍ଥିବ ଅଗ୍ନି ପ୍ରଜ୍ୱଳିତ କରି ତାହାର ପୂଜା କରନ୍ତି । ସେଥିରେ ହୋମ କରନ୍ତି ଓ ପ୍ରାର୍ଥନା କରନ୍ତି । ପ୍ରଥମେ ଅଗ୍ନି ପ୍ରଜ୍ୱଳନ କରି ହୋତା ଆବାହନ କରନ୍ତି—

ଓଁ ସର୍ବତଃ ପାଣିପାଦାନ୍ତଃ ସର୍ବତୋଽକ୍ଷି ଶିରୋମୁଖଃ ।
ବିଶ୍ୱରୂପା ମହାନଗ୍ନିଂ ପ୍ରଣୀତଂ ସର୍ବକର୍ମଃସୁ

ତତ୍ପରେ ଧ୍ୟାନ କରି ପୂଜା କରନ୍ତି । ଧ୍ୟାନରେ କହନ୍ତି—

ଓଁ ପିଙ୍ଗୁଭ୍ରଶ୍ମଶ୍ରୁ କେଶାକ୍ଷଃ ପୀନାଙ୍ଗ ଜଠରୋହରୁଣଃ ।
ଛାଗସ୍ଥଃ ସାକ୍ଷ ସୂତ୍ରୋଽଗ୍ନିଂ ସପ୍ତାର୍ଚ୍ଚିଃ ଶକ୍ତିଧାରକଃ ॥

ଏଥିରେ କ'ଣ ପାର୍ଥିବ ଅଗ୍ନିର ଆକୃତି ଓ ରୂପର ଆରାଧନା କରାଯାଉଛି ? ଅଗ୍ନି ଯେଉଁ ସତ୍ତା ଧରି ନିଜ କାର୍ଯ୍ୟ ସାଧନ କରୁଛନ୍ତି, ଅଗ୍ନିଙ୍କର ଯେଉଁ ଅଗ୍ନିତ୍ୱ, ହିନ୍ଦୁମାନେ ସେହି ସୂକ୍ଷ୍ମ ଚୈତନ୍ୟ-ତତ୍ତ୍ୱ ବା ସୂକ୍ଷ୍ମାତିସୂକ୍ଷ୍ମ ଅଗ୍ନି-ତତ୍ତ୍ୱର ପୂଜା କରିଥାନ୍ତି ।

# ଭୌତିକ ତତ୍ତ୍ୱ

ପରମେଶ୍ୱରଙ୍କର ସର୍ବବ୍ୟାପକତାକୁ ହିନ୍ଦୁମାନେ ମହାକାଶ ଶବ୍ଦରେ ଅଭିହିତ କରିଛନ୍ତି । ଆକାଶ ଅର୍ଥ ଶୂନ୍ୟ । ଯାହା ବୁଝାଯାଏ ନାହିଁ, ତାହା ଶୂନ୍ୟ । ଈଶ୍ୱରଙ୍କ ଗୁଣ ଆମେ ବୁଝିପାରୁ ନାହିଁ । ତେଣୁ ସେହି ଈଶ୍ୱରଙ୍କ ସର୍ବବ୍ୟାପକ ଗୁଣ ଆକାଶ ବା ଶୂନ୍ୟ । ଆକାଶର ଯାହା ଆକାଶ ବା ପ୍ରାଣ, ତାହା ବ୍ରହ୍ମ । ହିନ୍ଦୁମାନେ ସେହି ଆକାଶତତ୍ତ୍ୱର ଆରାଧନା କରିଥାନ୍ତି ।

ଆକାଶରୁ ବାୟୁ; କିନ୍ତୁ ବାୟୁ ଆକାଶରୁ ସୃଜିତ ନୁହେଁ । ବାୟୁ ମଧ୍ୟ ସେହି ଅବ୍ୟକ୍ତ ସତ୍ତାରେ ଲୀନ ଥିଲା । ଆକାଶ ସଙ୍ଗରେ ମିଶି ତହିଁରୁ ପୁଣି ବ୍ୟକ୍ତ ହୋଇଅଛି । ଲବଣ ପାର୍ଥିବ ପଦାର୍ଥ, ଜଳ ସହିତ ତାହା ମିଶିଥାଏ, ବାହାରେ ବ୍ୟକ୍ତ ହୁଏ । ସେହିପରି ଆକାଶରୁ ବାୟୁର ବ୍ୟକ୍ତଭାବ । ଯେଉଁଠାରେ କାର୍ଯ୍ୟ, ସେହିଠାରେ ଗତି । କାର୍ଯ୍ୟର ଶବ୍ଦରୁ କମ୍ପନ ଉତ୍ଥିତ ହୁଏ । ଏହା ପ୍ରତ୍ୟକ୍ଷ ଦୃଷ୍ଟ । ଗତି ଦ୍ୱାରା ସ୍ପର୍ଶ ଜ୍ଞାନ ହୁଏ । ବାୟୁରେ ଶବ୍ଦ ଓ ସ୍ପର୍ଶ ଦୁଇ ସତ୍ତା ଅଛି । ବାୟୁ ତ୍ରିଜଗତ୍‌ର ପ୍ରାଣସ୍ୱରୂପ । ସମୁଦାୟ ଭୂତ ବାୟୁସୂତ୍ରରେ ଗ୍ରଥିତ ହୋଇ ରହିଛି । ବାୟୁ କର୍ମ୍ମି-କର୍ମ୍ମି ଜଗତ୍‌ର ଆଧାର ହୋଇଅଛି । ଜଗତ୍‌ର ସମସ୍ତ କମ୍ପନରେ ତାହା ଅବସ୍ଥିତ । କମ୍ପନ ଦ୍ୱାରା ଆମ ଚିନ୍ତା, ଆବେଦନ-ନିବେଦନ, ପ୍ରାର୍ଥନା ଚାଲିଥାଏ । ଜଗତ୍ କମ୍ପନରେ ଅବସ୍ଥିତ । ତେଣୁ କମ୍ପନର ଦେବତା ବାୟୁ ବିଶ୍ୱର ପ୍ରାଣ । ବାୟୁର ବାୟୁତ୍ୱ କମ୍ପନ । ସେହି କମ୍ପନକୁ ବିଶ୍ୱପ୍ରାଣ କୁହାଯାଏ । ପ୍ରାଣରୁ ସର୍ବଭୂତର ଉତ୍ପତ୍ତି ଓ ପୁଣି ଭୂତସକଳ ସେହି ପ୍ରାଣରେ ଲୟ ହୁଅନ୍ତି । ସୁତରାଂ, ଜଡ଼ବାୟୁ ହିନ୍ଦୁର ଉପାସ୍ୟ ନୁହେଁ; ସେହି ବିଶ୍ୱପ୍ରାଣ ହିଁ ଉପାସ୍ୟ ।

ବାୟୁରୁ ଅଗ୍ନିର ଉତ୍ପତ୍ତି । ଏହା ଜଡ଼ବିଜ୍ଞାନର ମଧ୍ୟ ମତ; ତେବେ ଟିକିଏ ସ୍ୱତନ୍ତ୍ର । ସ୍ୱତନ୍ତ୍ର ଏଥିଯୋଗୁ ଯେ ହିନ୍ଦୁ ସୂକ୍ଷ୍ମାତିସୂକ୍ଷ୍ମ ରାଜ୍ୟର ସନ୍ଧାନରେ କୃତକାର୍ଯ୍ୟ । ବାୟୁରୁ ଅଗ୍ନିର ଉତ୍ପତ୍ତି; କିନ୍ତୁ ବାୟୁ ଅଗ୍ନିର ଜନକ ନୁହେଁ । ଅଗ୍ନି ବାୟୁର ବିକାଶ ମାତ୍ର । ଅଗ୍ନି-ତତ୍ତ୍ୱ ବ୍ରହ୍ମଙ୍କ ଠାରେ ଅବ୍ୟକ୍ତ ଭାବରେ ବିଲୀନ ଥିଲା । ଅଗ୍ନିତେଜ । ଏହି ତେଜରେ ଜଗତ୍ ପାଳିତ, ରକ୍ଷିତ ଓ ସଂହୃତ । ତେଜୋରୂପୀ ଅଗ୍ନି ହିଁ ତ୍ରିଲୋକ ଧାରଣ କରିଛନ୍ତି । ଆମ ପୃଥିବୀ ଅଗ୍ନିର ମୂର୍ତ୍ତି । ଅଗ୍ନି ଦ୍ୱାରା ଭୂ, ଭୂବଃ. ସ୍ୱଃ—ଏହି ତ୍ରିଲୋକ ସୂକ୍ଷ୍ମ ପଦାର୍ଥ ଗ୍ରହଣ କରିବାକୁ କ୍ଷମ । ଭୁବଃଲୋକବାସୀ ମଧ୍ୟ

ଅଗ୍ନି ଦ୍ୱାରା ଭୋଜନ କରନ୍ତି । ସେହି ଅଗ୍ନି ଏହି ସ୍ଥୁଳ ଅଗ୍ନି ନୁହେଁ, ତାହା ଅଗ୍ନିର ପ୍ରାଣତତ୍ତ୍ୱ । ଅଗ୍ନି-ତତ୍ତ୍ୱ ଈଶ୍ୱର-ସତ୍ତା; ତେଣୁ ଅଗ୍ନି ପୂଜକ ହିନ୍ଦୁମାନେ ଜଡ଼ଉପାସକ ନୁହଁନ୍ତି ।

ଅଗ୍ନିରୁ ଜଳ ଜାତ—ଏହା ସର୍ବବାଦୀସମ୍ମତ; କିନ୍ତୁ ଅଗ୍ନିରୁ ଜଳର ସୃଷ୍ଟି ନୁହେଁ । ଅଗ୍ନିରେ ଜଳ ଅଧ୍ୟାସିତ ଥିଲା । ଜଳର ଯାହା ସତ୍ତା, ଜଳର ଯାହା ପ୍ରାଣ, ସେହି ରସ-ତତ୍ତ୍ୱ ହିଁ କାରଣଜଳ । କାରଣଜଳ ହିଁ ନାରାୟଣ । ରସ-ତତ୍ତ୍ୱରେ ଭୌତିକ ସ୍ଥିତି; ରସ-ତତ୍ତ୍ୱର ସ୍ୱରୂପ ବରୁଣ-ଦେବତା ନାମରେ ହିନ୍ଦୁମାନଙ୍କ ଦ୍ୱାରା ପୂଜିତ ।

## ପ୍ରତୀକ ଉପାସନା

ଏଥିରୁ ବୁଝାଯାଏ, ହିନ୍ଦୁମାନେ ଜଡ଼ ଆରାଧନା କରନ୍ତି ନାହିଁ । ପ୍ରତିମାପୂଜା ପୌତ୍ତଳିକତା ନୁହେଁ । ଏହା ପ୍ରତୀକୋପାସନା । ଆର୍ଯ୍ୟ ଋଷିମାନେ ଯୋଗବଳରେ ସୃଷ୍ଟିଦୃଷ୍ଟିରେ ଯେଉଁସବୁ ଆଧ୍ୟାତ୍ମ୍ୟ ତତ୍ତ୍ୱ ଆବିଷ୍କାର କରିଛନ୍ତି, ପ୍ରତିମାଗୁଡ଼ିକ ତାହାର ସ୍ଥୁଳରୂପ । ହିନ୍ଦୁମାନେ ମାଟିକୁଟା ନିର୍ମିତ ମୂର୍ତ୍ତି ପୂଜା କରନ୍ତି ନାହିଁ; ସେମାନେ ପ୍ରାଣପ୍ରତିଷ୍ଠିତ ଦେବତାଙ୍କ ପୂଜା କରିଥାନ୍ତି ମାତ୍ର । ସେହି ପ୍ରାଣ ପ୍ରତିଷ୍ଠା ହେଲେ ମୃତ୍ତିକା, ପାଷାଣ, କାଷ୍ଠ ଉଠିଯାଏ ଏବଂ ସେଥିରେ ଭଗବାନ୍‌ଙ୍କର ସୂକ୍ଷ୍ମରୂପର ଆବିର୍ଭାବ ହୁଏ । ମନରେ ସ୍ଥାପନ କରି ଯେବେ ତାଙ୍କୁ ପୂଜା କରାଯାଇପାରେ, ତେବେ ଅନ୍ୟ ବସ୍ତୁରେ ଅର୍ଥାତ୍ ଘଟରେ ପଟରେ ତାଙ୍କୁ ପୂଜା କରାଯାଇ ନ ପାରିବ ବା କାହିଁକି ? ଯେଉଁମାନେ ପ୍ରତିମା-ବିସର୍ଜନକ୍ରିୟା ମନୋଯୋଗସହକାରେ ଲକ୍ଷ୍ୟ କରିବେ, ସେମାନେ ଏହାର ସତ୍ୟତା ଉପଲବ୍ଧି କରି ଧନ୍ୟ ହେବେ । ବିସର୍ଜନ ଅନୁଷ୍ଠାନରୁ ପ୍ରମାଣିତ ହୁଏ ଯେ ହିନ୍ଦୁମାନେ ପ୍ରତିମା ପୂଜା କରନ୍ତି ନାହିଁ । ବଡ଼ଲୋକଙ୍କ ପୂଜା କରିବା ପାଇଁ ସେମାନଙ୍କ ପ୍ରତିମୂର୍ତ୍ତି ରକ୍ଷିତ ହୁଏ । ଏପରି ସ୍ଥୁଳ ପୌତ୍ତଳିକତା ହିନ୍ଦୁ ଧର୍ମରେ ନାହିଁ ।

ହିନ୍ଦୁମାନେ ବହୁ ଭିତରେ ଏକ ଈଶ୍ୱର ସତ୍ତାର ଆରାଧନା କରନ୍ତି । କେହି କହିପାରନ୍ତି ସର୍ବଭୂତ ଆଶ୍ରୟ, ସର୍ବ ଲୋକନିୟନ୍ତା ଭଗବାନଙ୍କ ଉପାସନା ନ କରି ତାଙ୍କର ବିକ୍ଷିପ୍ତ ଶକ୍ତିସମୂହର ପୃଥକ୍ ପୃଥକ୍ ଭାବରେ ଆରାଧନା କରିବାର ତାତ୍ପର୍ଯ୍ୟ କ'ଣ ? ତା'ର ଉତ୍ତର ହେଉଛି, ଭଗବାନ୍ ଅନନ୍ତ, ମନୁଷ୍ୟ ସାନ୍ତ ।

ସାନ୍ତ ମନୁଷ୍ୟ ଅନନ୍ତ ଭଗବାନଙ୍କ ଧାରଣା କିପରି ବା କରିପାରିବ ? ବିଶେଷତଃ ଆମମାନଙ୍କର ଚିତ୍ତବୃତ୍ତିସମୂହର ଉତ୍କର୍ଷ ସାଧିତ ନ ହେଲେ ସେହି ଚରମୋତ୍କର୍ଷ ପୁରୁଷୋତ୍ତମଙ୍କୁ ବୁଝିହେବ ନାହିଁ । ମାନବର ବହିର୍ଜଗତରେ ଯେତେ ପ୍ରକାର ଶକ୍ତି ଓ ଭାବ ଅଛି, ତାହା ଦେବତାମାନଙ୍କର ସୂକ୍ଷ୍ମ ଶକ୍ତି । ସେହିସବୁ ଦେବଶକ୍ତିର ପୂର୍ଣ୍ଣ ଚୈତନ୍ୟ ସାଧନ କରି ନ ପାରିଲେ ପୂର୍ଣ୍ଣ ଚୈତନ୍ୟଙ୍କ ପ୍ରତି କେହି ଅଗ୍ରସର ହୋଇପାରିବ ନାହିଁ । ଦେବଶକ୍ତି ଜାଗ୍ରତ କରିବାର ସାଧନା ହିଁ ଦେବତା-ଆରାଧନା ।

କର୍ଣ୍ଣ ଶବ୍ଦେନ୍ଦ୍ରିୟ । ବ୍ୟୋମରୁ ଶବ୍ଦର ଉତ୍ପତ୍ତି; କିନ୍ତୁ ବ୍ୟୋମର ପ୍ରାଣ ବା ସୂକ୍ଷ୍ମଶକ୍ତି ଅର୍ଥାତ୍ ବ୍ୟୋମତତ୍ତ୍ୱର ଆରାଧନା କରି ଏହି ତତ୍ତ୍ୱର ଉତ୍କର୍ଷ ସାଧନ କରିବାକୁ ହୁଏ । ଏହିପରି ଭାବରେ ସବୁ ତତ୍ତ୍ୱ ସମ୍ବନ୍ଧରେ ବୁଝିବାକୁ ହେବ । ଆରାଧନାକୁ ଶକ୍ତିର ଉତ୍କର୍ଷ ସାଧନ କୁହାଯାଇପାରେ । ଗୋଟିଏ ଗୋଟିଏ କରି ଚଉଷଠି ପଇସା ଏକତ୍ର କଲେ ଗୋଟିଏ ଟଙ୍କା ହୁଏ । ସେହିପରି ସମସ୍ତ ଶକ୍ତି, ସମସ୍ତ ଗୁଣ ଗୋଟି ଗୋଟି ଜାଣି ସେମାନଙ୍କ ଉତ୍କର୍ଷ ସାଧନ କରିବା ପରେ ପୂର୍ଣ୍ଣତା ଆଡ଼କୁ ଯିବାକୁ ହୁଏ । ସୁତରାଂ, ହିନ୍ଦୁମାନେ ଜଡ଼ ଉପାସନା କରନ୍ତି ନାହିଁ, ଜଡ଼ର ପ୍ରାଣାତ୍ମକ ପରମ ଚୈତନ୍ୟଙ୍କର ଉପାସନା କରନ୍ତି ।

## ଅଦ୍ୱୈତ ବ୍ରହ୍ମସାଧନା

ହିନ୍ଦୁମାନେ ବିଶ୍ୱ ପୂଜା କରି ବିଶ୍ୱବ୍ୟାପୀ ଭଗବାନ୍ଙ୍କର ପୂଜା ମାତ୍ର କରନ୍ତି । ହିନ୍ଦୁଧର୍ମର ସମସ୍ତ ସାଧନପଥ ଏକମାତ୍ର ଅଦ୍ୱୈତ ବ୍ରହ୍ମଙ୍କ ସାଧନା । ଯୋଗାଭ୍ୟାସରେ ଯେଉଁମାନଙ୍କ ଚିତ୍ତ ବଶୀଭୂତ ଓ ସର୍ବତ୍ର ବ୍ରହ୍ମଦର୍ଶନରୂପ ସମଦୃଷ୍ଟି ହୋଇଅଛି, ସେମାନେ ପରମାତ୍ମାଙ୍କୁ ସର୍ବଭୂତରେ ଅଧିଷ୍ଠିତ ବୋଲି ଦେଖନ୍ତି । ଅନ୍ୟ ଧର୍ମାବଲମ୍ବୀମାନଙ୍କ ଈଶ୍ୱର ସର୍ବବ୍ୟାପୀ ଈଶ୍ୱର ନୁହନ୍ତି । ସେମାନଙ୍କ ଈଶ୍ୱର ବିଶ୍ୱଠାରୁ ଭିନ୍ନ ଜଣେ ସ୍ୱତନ୍ତ୍ର ପୁରୁଷ । ସେମାନେ ମୁଖରେ ଈଶ୍ୱରଙ୍କୁ ସର୍ବବ୍ୟାପୀ ବୋଲି କହନ୍ତି ମାତ୍ର; କିନ୍ତୁ ହିନ୍ଦୁମାନେ ତାଙ୍କୁ ସର୍ବବ୍ୟାପୀ ଭାବରେ ସର୍ବତ୍ର ଦେଖନ୍ତି । ଶାଳଗ୍ରାମଶିଳାରେ, ଜଳରେ, ସ୍ଥଳରେ, ଆକାଶରେ, ସର୍ବଘଟରେ ବିଶ୍ୱବ୍ୟାପୀ ରୂପରେ ଉପଲବ୍ଧି କରି ପୂଜା କରନ୍ତି ।

ହିନ୍ଦୁ ଧର୍ମର ମୂଳମନ୍ତ୍ର 'ଏକମେବାଦ୍ୱିତୀୟଂ' । କେହି ହେଲେ ଜଡ଼ ପୂଜା କରନ୍ତି ନାହିଁ । ସମସ୍ତେ ଜଡ଼ାନ୍ତର୍ଗତ ଶକ୍ତିନିହିତ ଅଭିନ୍ନ ପୁରୁଷଙ୍କ ପୂଜା କରନ୍ତି ।

ଲକ୍ଷ୍ମୀପୂଜାରେ ପ୍ରଥମେ ଅନନ୍ତ ପୂଜା, ପରେ ଦେବୀଙ୍କ ପୂଜା ହୁଏ । ହିନ୍ଦୁର ସମସ୍ତ ଦେବଦେବୀଙ୍କ ଯୁଗଳରୂପଧାରୀ; ସୁତରାଂ, ଏହି ଦେବଦେବୀପୂଜାରେ ଅଦ୍ୱୟ ବ୍ରହ୍ମ ଅତି ସୂକ୍ଷ୍ମଭାବରେ ବିଦ୍ୟମାନ । ବ୍ରହ୍ମଙ୍କର ଅନନ୍ତ ରୂପର ଐଶ୍ୱର୍ଯ୍ୟ ମୂର୍ତ୍ତି । ତେତ୍ରିଶ କୋଟି ଦେବତା ଦ୍ୱୈତଜଗତ୍ ମଧ୍ୟରେ ସେହି ଅଦ୍ୱୈତଙ୍କ ଆଭାସ ।

## ଦେବତା-ତତ୍ତ୍ୱ

ଶବ୍ଦ ଉପରେ ଜ୍ୟୋତି । ସେଥିରେ ଏକମାତ୍ର ଜ୍ୟୋତିର ଅଭିମାନ ଅଛି; ଶବ୍ଦ, ସ୍ପର୍ଶ ଇତ୍ୟାଦି ଅବ୍ୟକ୍ତଭାବରେ ଅଛି । ସେହି ଜ୍ୟୋତିର୍ମୟ ପୁରୁଷ ଏକ ପାବଚ୍ଛତଳକୁ ଖସିଆସିଲେ ଶବ୍ଦରେ ତାଙ୍କର ଅଭିମାନ ହୁଏ; ସ୍ପର୍ଶ, ରୂପ ଇତ୍ୟାଦି ଅବ୍ୟକ୍ତ ଥାଏ । ସେତେବେଳେ ସେ ଶବ୍ଦବ୍ରହ୍ମ । ଏହି ଭାବରେ ଅଗ୍ନି, ବରୁଣ ଇତ୍ୟାଦି ଦେବତାଙ୍କର ସୃଷ୍ଟି ହୋଇଅଛି । ପ୍ରତ୍ୟେକ କାର୍ଯ୍ୟର ସୂକ୍ଷ୍ମ କାରଣ ଅଛି । ହିନ୍ଦୁମାନେ ସେହି କାରଣକୁ ଦେବତା କହନ୍ତି । ଖଣ୍ଡକାର୍ଯ୍ୟ ସିଦ୍ଧିପାଇଁ ଖଣ୍ଡଦେବତାଙ୍କ ଆରାଧନାର ବ୍ୟବସ୍ଥା ଅଛି । ଏମାନେ ସମଷ୍ଟି ଭାବରେ ସଗୁଣ ବ୍ରହ୍ମ ବା ଆଦ୍ୟାଶକ୍ତି ।-ବ୍ରହ୍ମଜ୍ଞାନରେ ପୂଜା କଲେ ସମସ୍ତ ତତ୍ତ୍ୱ ଲାଭ ହୁଏ । ଦେବପୂଜା କଲେ ସେହି ଦେବତାଙ୍କର ସମସ୍ତ କ୍ଷମତା ଲାଭ ହୁଏ ।

## ତନ୍ତ୍ରପୂଜା ତତ୍ତ୍ୱ

ଦେହର ସ୍ଥୁଳ, ସୂକ୍ଷ୍ମ, କାରଣ ଅଛି । ସୂକ୍ଷ୍ମ ଦେହର ସ୍ଥାନ ଅନାହତପଦ୍ମ । ତାହା ଦେହର ଯନ୍ତ୍ର । ପ୍ରତ୍ୟେକ ଦେବତାଙ୍କର ଏହିପରି ସୂକ୍ଷ୍ମ ଦେହ ବା ଯନ୍ତ୍ର ଅଛି । ପ୍ରତିମାଦିରେ ଦେବତା ପୂଜା ନ କରିବା ସ୍ଥଳେ ଯନ୍ତ୍ରରେ ପୂଜା କରାଯାଏ । ଯନ୍ତ୍ରପୂଜା ଦୁଇ ପ୍ରକାର ହୋଇପାରେ—ଅଂକିତ ଯନ୍ତ୍ରରେ ଅଥବା ଯନ୍ତ୍ରପୁଷ୍ପରେ । କୌଣସି କୌଣସି ବିଶେଷ ଫୁଲ ଦେବତା-ବିଶେଷଙ୍କ ଯନ୍ତ୍ର ବୋଲି ଶାସ୍ତ୍ରରେ ଲିଖିତ ହୋଇଅଛି । ଅପରାଜିତା, କରବୀ—ଏସବୁ ଶକ୍ତି-ଯନ୍ତ୍ର; ଦ୍ରୋଣପୁଷ୍ପ ବିଷ୍ଣୁ ଯନ୍ତ୍ର ।

ବିଷ୍ଣୁ, ଇନ୍ଦ୍ର, ବାୟୁ, ବରୁଣ ପ୍ରଭୃତି ସ୍ଥିତି ଦେବତା । ଏମାନଙ୍କ ସମ୍ବନ୍ଧରେ ନାନା ବିଚାର ଜାତ ହୁଏ । ତେଣୁ ବ୍ରାହ୍ମଣଙ୍କ ବ୍ୟତୀତ ଅନ୍ୟ ଜାତିକୁ ଏସବୁ ଦେବତାଙ୍କ ପୂଜା କରିବା ପାଇଁ ଅଧିକାର ଦିଆଯାଇ ନାହିଁ । ଶିବ କିନ୍ତୁ ଲୟର

ମୂର୍ତ୍ତି । ତାଙ୍କ ଠାରେ ଭଲ-ମନ୍ଦ ସବୁ ଲୟ ହୋଇଥାଏ । ସୁତରାଂ, ତାଙ୍କର କୌଣସି ବାଛବିଚାର ନାହିଁ । ଏହି କାରଣରୁ ଶୂଦ୍ରମାନେ ମଧ୍ୟ ଶିବପୂଜା କରିପାରନ୍ତି; କିନ୍ତୁ ଶୂଦ୍ରମାନେ ଅନ୍ୟ କୌଣସି ଦେବତାଙ୍କ ପୂଜା କରିପାରନ୍ତି ନାହିଁ । ଖ୍ରୀଷ୍ଟିୟାନ୍‌ମାନେ ଖ୍ରୀଷ୍ଟଙ୍କୁ ନିରାକାର କହନ୍ତି ନାହିଁ । ନିରାକାର ଉପାସନା କରି ମଧ୍ୟ ସେମାନେ ସାକାର ଲକ୍ଷ୍ୟ କରନ୍ତି । ହିନ୍ଦୁମାନେ ଶାଳଗ୍ରାମଶିଳାରେ ସାକାର ଉପାସନା କରି ମଧ୍ୟ ସେମାନେ ସକାର ଲକ୍ଷ୍ୟ କରନ୍ତି । ହିନ୍ଦୁମାନେ ଶାଳଗ୍ରାମଶିଳାରେ ସାକାର ଉପାସନା କରି ମଧ୍ୟ ତାହାର ଅନ୍ତରାଳରେ ନିରାକାରଙ୍କୁ ଲକ୍ଷ୍ୟ କରିଥାନ୍ତି ।

## ସକଳ କର୍ମରେ ସାଧନା

ହିନ୍ଦୁଧର୍ମ କେବଳ ଧ୍ୟାନ, ସ୍ତବ, ସ୍ତୁତି ଓ ପୂଜାର ଧର୍ମ ନୁହେଁ । ସକଳ ବିଷୟରେ ତାହା ଆନୁଷ୍ଠାନିକ ଧର୍ମ । ତାହା କେବଳ ବ୍ୟକ୍ତିର ସାଧନା ଧର୍ମ ନୁହେଁ; ତାହା ପାରିବାରିକ ଓ ସାମାଜିକ ଧର୍ମପ୍ରଣାଳୀ ରୂପରେ ବିଦ୍ୟମାନ । ହିନ୍ଦୁମାନଙ୍କର ଈଶ୍ୱର ସର୍ବବ୍ୟାପୀ । ଏଥିପାଇଁ ବିଶ୍ୱର ସର୍ବତ୍ର ସାଧନ କରି ହିନ୍ଦୁମାନେ ଈଶ୍ୱର ଉପାସନା କରିଥାନ୍ତି । ସମୁଦାୟ ବିଶ୍ୱକୁ ଧରି ଏପରି ଦେବ ଉପାସନା ବୋଧହୁଏ ଆଉ କୌଣସି ଧର୍ମରେ ନାହିଁ । ସମସ୍ତ ବୃତ୍ତିର ସମଞ୍ଜସୀଭୂତ ସଂଯମରେ ଓ ତୃପ୍ତିରେ ମାନବର ଈଶ୍ୱରୋପାସନା ହୁଏ । ତେଣୁ ସମାଜକ୍ଷେତ୍ର ସଂସାରଧର୍ମ ସାଧନା ସଙ୍ଗେ ହିନ୍ଦୁ ଧର୍ମ କାର୍ଯ୍ୟରେ ବ୍ୟାପୃତ ରହିଅଛି । ବିଷୟକର୍ମ ସହିତ ଧର୍ମକୁ ଯୋଗକରି ହିନ୍ଦୁ ଧର୍ମ ଯେପରି ପୂର୍ଣ୍ଣାବୟବ ହୋଇଛି, ଆଉ କୌଣସି ଧର୍ମପ୍ରଣାଳୀ ସେପରି ହୋଇ ନାହିଁ ।

## ଲିଙ୍ଗତତ୍ତ୍ୱ

ଇନ୍ଦ୍ରିୟବିଶେଷକୁ ଲିଙ୍ଗ କୁହାଯାଏ ନାହିଁ । ଆଲୟକୁ ଲିଙ୍ଗ ବୋଲି ଜାଣିବ । ଆଲୟ ଅର୍ଥାତ୍ ସର୍ବଭୂତ ଯହିଁରେ ଲୟପ୍ରାପ୍ତ ହୁଅନ୍ତି, ତାହା ଲିଙ୍ଗ । ସମୁଦ୍ରରେ ଯେପରି ସମୁଦ୍ରୋତ୍‌ଥିତ ଲହରୀ ଲୟପ୍ରାପ୍ତ ହୁଏ, ସେହିପରି ଶିବଙ୍କ ଠାରୁ ଉଦ୍ଭୂତ ବୁଦ୍‌ବୁଦ ସ୍ୱରୂପ ଜୀବସକଳ ଯହିଁରେ ଲୟପ୍ରାପ୍ତ ହୁଅନ୍ତି, ତାହା ହିଁ ଲିଙ୍ଗ । ମହାପ୍ରଳୟ କାଳରେ ସମୁଦାୟ ଦେବତାଙ୍କର ନାଶ ହେବାପରେ ଏକମାତ୍ର ଲିଙ୍ଗରୂପୀ ମହାଦେବ ବର୍ତ୍ତମାନ ଥିଲେ । ତେଣୁ ସେ ଲିଙ୍ଗ ନାମରେ ଅଭିହିତ । ଅତଏବ

ଲିଙ୍ଗ ବା ଗୌରୀପୀଠ ଅର୍ଥ ପୁରୁଷ ବା ସ୍ତ୍ରୀର ନିକୃଷ୍ଟତମ ଇନ୍ଦ୍ରୟବିଶେଷ ନୁହେଁ। ଅନନ୍ତ ଈଶ୍ୱର ଏବଂ ସୂକ୍ଷ୍ମ ମୂଳାପ୍ରକୃତିକୁ ସାଧାରଣ ଜନସମାଜ ଧ୍ୟାନ ଧାରଣାର ବିଷୟୀଭୂତ କରିପାରନ୍ତି ନାହିଁ। ସେହି କାରଣରୁ ଅଧିକାର-ଭେଦବିରହିତ ଏହି ଲିଙ୍ଗରୂପୀ ଶିବ ଓ ଶିବଶକ୍ତିଙ୍କର ଆରାଧନାବିଧି ପ୍ରଚଳିତ। ବ୍ରହ୍ମ ନିର୍ଗୁଣ। ନିର୍ଗୁଣଙ୍କ ଉପାସନା ସମ୍ଭବ ନୁହେଁ। ଅତଏବ ଶକ୍ତି ସହଯୋଗରେ ତାଙ୍କର ଉପାସନା କରିବା ବିଧି; ତେଣୁ ଲିଙ୍ଗମୟ ଈଶ୍ୱର ଚୈତନ୍ୟଙ୍କ ସହିତ ଯୋନୀପୀଠର ସଂସ୍ଥାପନ। ଅତଏବ ଶିବ ଲିଙ୍ଗପୂଜା ସଗୁଣ ବ୍ରହ୍ମଙ୍କ ଉପାସନା ମାତ୍ର।

## ସାରୂପ୍ୟଲାଭ

ଭାରତର ସ୍ୱର୍ଣ୍ଣଯୁଗରେ ଯୋଗବଳଶାଳୀ ଆର୍ଯ୍ୟଋଷିମାନେ ସୂକ୍ଷ୍ମ ଅନ୍ତର୍ଦୃଷ୍ଟି ଶକ୍ତିରେ ଜାଣିପାରିଥିଲେ ଯେ ପ୍ରତ୍ୟେକ ଶକ୍ତି ମୂଳତଃ ସୂକ୍ଷ୍ମ ଜଗତ୍‌ରେ ଚିତ୍‌ଶକ୍ତିବିଶିଷ୍ଟ ଦେବଗଣଙ୍କକର୍ତ୍ତୃକ ଅଧିକୃତ। ସୂକ୍ଷ୍ମଜଗତ୍‌ରୁ ସେମାନେ ଏପରି ସାମଞ୍ଜସ୍ୟ ଓ ଶୃଙ୍ଖଳା ସହିତ ପରିଚାଳନ କରନ୍ତି। ହୁଏତ ଆମମାନଙ୍କ ସ୍ଥୁଳଜଗତ୍‌ରେ ଅମିଶ୍ର ମିଶ୍ରିରୂପେ ତେତ୍ରିଶ କୋଟି ପଦାର୍ଥ ଅଛି। ଏହିସବୁ ସ୍ଥୁଳପଦାର୍ଥର ସୂକ୍ଷ୍ମଶକ୍ତି ତେତ୍ରିଶ କୋଟି ଦେବତାଙ୍କ ନାମରେ ଅଭିହିତ।

ଉପାସନାରେ ସାରୂପ୍ୟ ଲାଭ ହୁଏ। ଯେ ଯାହାଙ୍କର ଉପାସନା କରନ୍ତି, କ୍ରମଶଃ ତାଙ୍କର ମନ ତଦାକାରାକାରିତ ହୋଇଥାଏ। ପରିଶେଷରେ ସେ ତତ୍‌ସ୍ୱରୂପ ପ୍ରାପ୍ତ ହୁଅନ୍ତି। ଯେଉଁମାନେ ଶ୍ରୀଗୁରୁଦେବଙ୍କୁ ସୁଖ ପାଆନ୍ତି, ସେମାନେ ଉପାସନା କରିବା ସଙ୍ଗେ ସଙ୍ଗେ ତାଙ୍କ ପ୍ରଦତ୍ତ ନିଷ୍କାମ କର୍ମରେ ଆତ୍ମନିୟୋଗ କରିଥାଆନ୍ତି। ଯାହାଙ୍କ ଦ୍ୱାରା ଯେଉଁ କାର୍ଯ୍ୟ ସମ୍ପନ୍ନ ହେବ, ଶ୍ରୀଗୁରୁଦେବ ତାଙ୍କ ଦ୍ୱାରା ସେହି କାର୍ଯ୍ୟ ହିଁ ସମ୍ପନ୍ନ କରାଇଥାନ୍ତି। ତାହାଫଳରେ ଗୁଣ କ୍ଷୟ ହୁଏ। ଏକମାତ୍ର ଶ୍ରୀଗୌରାଙ୍ଗଦେବଙ୍କ ଉପାସନା କଲେ ପରଂବ୍ରହ୍ମଙ୍କ ଉପାସନା ସମ୍ଭବ ହୋଇପାରିବ। ଶ୍ରୀ ରାଧାକୃଷ୍ଣ ମଧ୍ୟ ବ୍ରହ୍ମ; କିନ୍ତୁ ସେ ଦୁହେଁ ପୃଥକ୍। ମାତ୍ର ଶ୍ରୀ ଗୌରାଙ୍ଗଦେବଙ୍କ ମଧ୍ୟରେ ରାଧାକୃଷ୍ଣ ମିଳିତ ଭାବରେ ବିଦ୍ୟମାନ। ତେଣୁ ଶଙ୍କରଙ୍କ ଠାରୁ ଗୌରାଙ୍ଗଦେବଙ୍କ ଉପାସନାରେ ଶୀଘ୍ର ଫଳ ମିଳେ। କାରଣ, ସେ ପତିତପାବନ, ଦୟାର ଅବତାର, ପ୍ରେମଦାତା। ତେଣୁ ହରିନାମ ଠାରୁ ଗୌରାଙ୍ଗଦେବଙ୍କ ନାମ ବିଶେଷ ଶକ୍ତିଶାଳୀ।

ପ୍ରତ୍ୟେକ ସଂପ୍ରଦାୟ ହିଁ ଆପଣା ଆପଣା ଗୁରୁଙ୍କୁ ଭାବଭେଦରେ ନାନା ଭାବରେ ଉପାସନା କରିପାରନ୍ତି। କେହି ଫୁଲ-ଜଳ ଦେଇ ପୂଜା କରନ୍ତି, କେହି ବା ଭାବ ଭିତର ଦେଇ ତାଙ୍କୁ ପୂଜା କରନ୍ତି, ପୁଣି କେହି ଧ୍ୟାନ-ଧାରଣା ସାହାଯ୍ୟରେ ଉପାସନା କରିଥାନ୍ତି। ଏହିଭଳି ବିଭିନ୍ନତା ଦ୍ୱାରା କିଛି କ୍ଷତି ଘଟେ ନାହିଁ। ଶ୍ରୀଗୁରୁଦେବଙ୍କୁ ଉଦ୍ଦେଶ୍ୟ କରି ତାଙ୍କ ପ୍ରତିକୃତିକୁ ଜଳ-ତୁଳସୀ ଦେଇ ପୂଜା କଲେ ମଧ୍ୟ ଯଥେଷ୍ଟ କାର୍ଯ୍ୟ ସାଧିତ ହୁଏ। ସବୁ ଶ୍ରେଣୀର ଶିଷ୍ୟଙ୍କ ପ୍ରତି ଶ୍ରୀଗୁରୁଦେବଙ୍କର ଦୃଷ୍ଟି ସମାନ। ଭାବଭେଦରେ ଉପାସନାର ତାରତମ୍ୟ ହୋଇଥାଏ ମାତ୍ର। ଶ୍ରୀଗୁରୁଦେବଙ୍କୁ ସୁଖ ପାଇ ଚିତ୍ତ ଯେତେ ଉନ୍ନତି ଲାଭ କରେ; ଧ୍ୟାନ, ଧାରଣା, ଉପାସନା ଦ୍ୱାରା ତେତେ ସହଜରେ ଉନ୍ନତି ହୁଏ ନାହିଁ। ସୁଖ ପାଇବା ଭିତର ଦେଇ ଗୁରୁଶକ୍ତିର କ୍ରିୟା ହୋଇଥାଏ। ତେଣୁ ମୁଁ ନାମବ୍ରହ୍ମର ଉପାସନା ପ୍ରବର୍ତ୍ତନ କରିବି। ଜଗଦ୍‌ଗୁରୁ ଗୁରୁଗୌରାଙ୍ଗ ବୋଲି ସମସ୍ତେ ତାଙ୍କ ଉପାସନା କରିପାରିବେ।

ହିନ୍ଦୁମାନଙ୍କ ବେଦାନ୍ତଧର୍ମ ମଧ୍ୟରେ ସବୁ ସଂପ୍ରଦାୟଙ୍କର ସ୍ଥାନ ଅଛି। ଭକ୍ତିପଥରେ ଉପାସ୍ୟ-ଉପାସକ ଭେଦ ଥାଏ। ଉପାସ୍ୟ-ଉପାସକ ଭାବ ନଥିଲେ ଭକ୍ତମାନେ ଭକ୍ତି କରିବେ କାହାକୁ ? ଅଦ୍ୱୈତବାଦୀମାନେ ଭକ୍ତି କରିବେ କାହାକୁ ? ତେଣୁ ତାଙ୍କ ନିକଟରେ ଉପାସ୍ୟ-ଉପାସକ ଭେଦ ନାହିଁ। ବେଦାନ୍ତ ଏକତତ୍ତ୍ୱ ବସ୍ତୁକୁ ବ୍ରହ୍ମ, ଆତ୍ମା ଓ ଭଗବାନ୍ ବୋଲି ଲକ୍ଷ୍ୟ ରଖି ଉପାସନା କରନ୍ତି। ଯୋଗୀମାନେ ପରମାତ୍ମଭାବକୁ, ଜ୍ଞାନୀମାନେ ବ୍ରହ୍ମଭାବକୁ ଓ ଭକ୍ତମାନେ ଭଗବତ୍‌ଭାବକୁ ଲକ୍ଷ୍ୟ କରି ଉପାସନା କରିଥାନ୍ତି। ବୈଷ୍ଣବମାନଙ୍କ ଭାବର ସାଧନଗୁଡ଼ିକ ପ୍ରକୃତ ବେଦାନ୍ତ ଉପରେ ପ୍ରତିଷ୍ଠିତ। ସଖୀଭାବ ଧରି ଯେଉଁମାନେ ସାଧନ କରନ୍ତି, ସେମାନେ କ୍ରମେ ସଖୀରେ ଲୟ ହୁଅନ୍ତି; ସେତେବେଳେ ତାଙ୍କର ସଗୁଣ-ନିର୍ଗୁଣାତ୍ମକ ଯୁଗଳ ମୂର୍ତ୍ତିର ଦର୍ଶନ ହୁଏ। ସଖୀମାନେ ହିଁ ବେଦାନ୍ତବର୍ଣ୍ଣିତ ସାକ୍ଷୀଚେତା। ସାକ୍ଷୀ ଭାବରେ, ସାକ୍ଷୀ ସ୍ୱରୂପରେ ରହି ସମସ୍ତ ବ୍ରହ୍ମାଣ୍ଡରେ ଶ୍ରୀରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ଦେଖାଯାଇଥାଏ। ପଞ୍ଚଭାବର ଉପାସନା ଠାରୁ ମଧ୍ୟ ଗୋପୀଭାବ ଶ୍ରେଷ୍ଠ। ତାହା ବେଦାନ୍ତର ସାକ୍ଷୀଚେତା ନିର୍ଗୁଣ ଭାବ। ଗୋପୀମାନଙ୍କର

ସ୍ୱ-ସୁଖବାଞ୍ଛା ନ ଥିବାରୁ ସେମାନେ ସର୍ବଶ୍ରେଷ୍ଠ ଆନନ୍ଦ-ଆସ୍ୱାଦନର ଅଧିକାରିଣୀ । ସାକ୍ଷୀ ବା ଦ୍ରଷ୍ଟାଭାବରେ ଥାଇ ସମଷ୍ଟିଗତ ମିଳନାନନ୍ଦଙ୍କୁ ଗୋପୀମାନେ ଉପଲବ୍ଧ କରିଥାନ୍ତି ଅଥଚ ସେଥିରେ ନିର୍ଲିପ୍ତ ରହନ୍ତି । ଏହା ହିଁ ବେଦାନ୍ତର ଚରମ ସିଦ୍ଧି । ତେଣୁ ପଞ୍ଚଭାବର ଉପାସନା ବେଦାନ୍ତମୂଳକ କାରଣ, ଭାବସାଧନାରେ ଅହଂତ୍ୱର ସଂକୀର୍ଣ୍ଣତା ଲୋପ ହୋଇ ଭାବ ଆକାରରେ ତାହାର ପ୍ରତିଷ୍ଠା ହୋଇଥାଏ ।

ତେଣୁ ବେଦାନ୍ତଶାସ୍ତ୍ର ପ୍ରତ୍ୟକ୍ଷ ଓ ଜାଗ୍ରତ । ବେଦାନ୍ତଜ୍ଞାନ ଲାଭ ହେଲେ ହିଁ ପ୍ରକୃତ ପ୍ରେମଭକ୍ତି ଲାଭ ହୋଇଥାଏ । ଭାବ ସେତେବେଳେ ବିଶ୍ୱମୟ ବ୍ୟାପ୍ତ ହୋଇଯାଏ । ବ୍ରହ୍ମାଣ୍ଡର ପ୍ରତି ଅଣୁ-ପରମାଣୁରେ ମଧ୍ୟ ଭଗବତ୍ ଅନୁଭୂତି ଲାଭ ହୋଇଥାଏ । ଯେତେବେଳେ ସାଧକଙ୍କର ପ୍ରତି ଅଣୁ-ପରମାଣୁରେ ଇଷ୍ଟସ୍ଫୁର୍ତ୍ତି ହୁଏ, ସେତେବେଳର ଅବସ୍ଥାକୁ ମଧୁରଭାବ କୁହାଯାଏ । ଗୋପୀଭାବର ଉପାସନା ଦ୍ୱାରା ରାଧାକୃଷ୍ଣ ଉଭୟଙ୍କର ଭାବ ଅନୁଭୂତ ହେଉଥିବାରୁ ଏହି ଭାବର ଉପାସନା ସର୍ବଶ୍ରେଷ୍ଠ ।

ଭାବସାଧନା ଶ୍ରେଷ୍ଠ ହେଲେ ମଧ୍ୟ ଭାବ ଦୃଢ଼ ରଖିବାକୁ ହେଲେ ଅନୁଗତ ହୋଇ ଉପାସନା କରିବାକୁ ହୁଏ । ଶ୍ରୀକୃଷ୍ଣଙ୍କୁ ଆରାଧନା ବା ଉପାସନା କଲେ ଶ୍ରୀକୃଷ୍ଣ ମିଳନ୍ତି ନାହିଁ, ସାଧକ ନିଜେ ଶ୍ରୀକୃଷ୍ଣ ହୋଇଯାନ୍ତି । ତେଣୁ ଶ୍ରୀକୃଷ୍ଣଙ୍କୁ ଲାଭ କରିବାକୁ ହେଲେ ରାଧାଭାବ ଅବଲମ୍ବନ କରି ଉପାସନା କରିବାକୁ ପଡ଼ିବ । ଭଗବାନ୍‌ଙ୍କୁ ସଖା ରୂପରେ ପାଇବାକୁ ହେଲେ ଶ୍ରୀଦାମ-ସୁଦାମଙ୍କ ଅନୁଗତ ହୋଇ ଉପାସନା କରିବାକୁ ହେବ । ବାତ୍ସଲ୍ୟ ଭାବରେ ଭଗବାନ୍‌ଙ୍କୁ ଆସ୍ୱାଦନ କରିବାକୁ ହେଲେ ଯଶୋଦାଙ୍କ ଭାବ ଅବଲମ୍ବନ କରିବାକୁ ପଡ଼ିବ ।

ସାଧାରଣ ଲୋକେ ଯାହାକୁ ବୁଝିପାରନ୍ତି ନାହିଁ, ତାକୁ ଗ୍ରହଣ କରିଥାନ୍ତି । ଯେ ଯାହାକୁ ବୁଝିପାରନ୍ତି ନାହିଁ, ସେ ସେହି ପଥକୁ ଶ୍ରେଷ୍ଠ ମନେକରି ଉପାସନା କରିଥାନ୍ତି । ରାମାନୁଜ ସାକାର ଉପାସକ । ସାକାର ଉପାସନା ଶ୍ରେଷ୍ଠ ହେଲେ ମଧ୍ୟ ପ୍ରଥମେ ନିରାକାର-ତତ୍ତ୍ୱ ବୁଝି ନ ଥିଲେ ସାକାର-ତତ୍ତ୍ୱ ହୃଦୟଙ୍ଗମ ହୋଇପାରେ ନାହିଁ । ପ୍ରାଥମିକ ଉପାସକ ପ୍ରଥମେ ନିରାକାର, ତା ପରେ ସାକାର ଉପାସନା କରି ପୁଣି ନିରାକାର-ତତ୍ତ୍ୱରେ ଉପନୀତ ହୋଇଥାନ୍ତି । ପୃଥିବୀରେ ସମସ୍ତେ ସାକାର

ଉପସନା କରୁଛନ୍ତି । ଜଗତ୍‌ରେ ଯେତେ ସାକାର ବସ୍ତୁ ଅଛି, ସମସ୍ତ ହିଁ ନିରାକାର ବା ନିର୍ଗୁଣ ବ୍ରହ୍ମ ଏବଂ ସେହି ନିରାକାର ପୁଣି ସଚ୍ଚିଦାନନ୍ଦ ଘନବିଗ୍ରହ ରୂପ ଧାରଣ କରିଛନ୍ତି । ଏହାହିଁ ସାକାର ଉପାସନା । ତେଣୁ ସାକାର ଉପାସନା ଶ୍ରେଷ୍ଠ । ଯେଉଁମାନେ ପିତୁଳା ପୂଜା କରନ୍ତି, ସେମାନେ ମଧ୍ୟ ନିରାକାରଙ୍କ ଉପାସକ । ସେମାନେ ଯାହାଙ୍କୁ ପୂଜା କରନ୍ତି, ତାଙ୍କୁ ପିତୁଳା ମଧ୍ୟରେ ଉପସ୍ଥିତ ରହି ପୂଜା ଗ୍ରହଣ କରିବାକୁ ଆହ୍ୱାନ କରିଥାନ୍ତି ମାତ୍ର । ପୂଜାଶେଷରେ ସେହି ପ୍ରତିମାର ବିସର୍ଜ୍ଜନ ହୋଇଥାଏ । ତେଣୁ ହିନ୍ଦୁମାନେ ସାକାର ଉପାସନା କରି ମଧ୍ୟ ନିରାକାରଙ୍କର ପୂଜା କରିଥାନ୍ତି । ଏଥିପାଇଁ ଶାସ୍ତ୍ରରେ ଉପାସନା ପଦ୍ଧତି ଲିପିବଦ୍ଧ ଅଛି । ଅଜ୍ଞାତ ବସ୍ତୁକୁ ଯେ ଜଣାଇଦିଏ, ତାହାକୁ ଶାସ୍ତ୍ର କୁହାଯାଏ ।

ଶ୍ରୀକୃଷ୍ଣଙ୍କ ଉପାସନାରେ ଭକ୍ତ ତତ୍‌ସାରୂପ୍ୟ ଲାଭ କରନ୍ତି । ଶ୍ରୀକୃଷ୍ଣଙ୍କୁ ପାଇବାକୁ ହେଲେ ଶ୍ରୀରାଧାଙ୍କ ଉପାସନା କରିବାକୁ ହେବ ।

ବର୍ତ୍ତମାନ ଯୁଗରେ ହିନ୍ଦୁଧର୍ମ କହିଲେ କେତେଗୁଡ଼ିଏ ବିଭିନ୍ନ ସଂପ୍ରଦାୟର ବିଚ୍ଛିନ୍ନ ଭାବ ସମଷ୍ଟିକୁ ବୁଝାଇଥାଏ । ଯେଉଁ ସତ୍ୟ ଉପରେ ନିର୍ଭର କରି ବିଭିନ୍ନ ସଂପ୍ରଦାୟ ସେମାନଙ୍କ ସ୍ୱତନ୍ତ୍ରଭାବ ସଂରକ୍ଷିତ କରି ପରସ୍ପର ଅବିରୁଦ୍ଧଭାବରେ କ୍ରମୋନ୍ନତି ଦିଗକୁ ଅଗ୍ରସର ହେଉଥିଲେ, ସେ ସତ୍ୟବସ୍ତୁ ଯେପରି ମେଘାଚ୍ଛନ୍ନ ସୂର୍ଯ୍ୟଙ୍କ ପରି କେତେଗୁଡ଼ିଏ କୁସଂସ୍କାରପୂର୍ଣ୍ଣ ଆବର୍ଜନାର ଅନ୍ତରାଳରେ ଅନ୍ତର୍ହିତ ହୋଇଯାଇଛି । ବର୍ତ୍ତମାନ ହିନ୍ଦୁଧର୍ମ ବିଭିନ୍ନ ସଂପ୍ରଦାୟରେ ବିଭକ୍ତ ହେଲେ ମଧ୍ୟ ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ—ଗୋଟିଏ ଶାକ୍ତ ବା ଶକ୍ତି-ଉପାସକ, ଅନ୍ୟଟି ଶକ୍ତିମାନ୍‌ର ଉପାସକ ।

ସାଧକଙ୍କ ପ୍ରକୃତି ଅନୁସାରେ ଦ୍ୱୈତଭାବରେ ଆନନ୍ଦ ଉପଲବ୍ଧି କରିବା ପରେ ଅଦ୍ୱୈତ ବ୍ରହ୍ମାନନ୍ଦରସ ଭୋଗ କରନ୍ତି । ଶକ୍ତି, ଶକ୍ତିମାନଙ୍କ ଠାରେ ଅଭେଦଭାବରେ ବିରାଜମାନ କରେ । ସେତେବେଳେ ଚରମ ତତ୍ତ୍ୱଜ୍ଞାନ ଲାଭ ହୋଇଥାଏ ।

ଶ୍ରୀରାଧାକୃଷ୍ଣଙ୍କ ଯୁଗଳ ଉପାସନା ଉନ୍ନତ ସ୍ତରର ସାଧନା । ଏହି ଉପାସନା ସମୟରେ ସାଧକ ଗୋପୀଭାବ ଅବଲମ୍ବନ କରି ଯୁଗଳ-ମିଳନଜନିତ ଆନନ୍ଦ

ଉପଭୋଗ କରିବାବେଳେ ଅନ୍ତରର ଆନନ୍ଦରସର ଆତିଶଯ୍ୟରେ ତାଙ୍କର କୁଣ୍ଡଳିନୀ ଶକ୍ତି ସହସା ଜାଗ୍ରତ ହୋଇ ସ୍ୱ-ସ୍ଥାନକୁ ଗମନ କରିଥାଏ । ତେଣୁ ଯୁଗଳ ଉପାସନା ସର୍ବଶ୍ରେଷ୍ଠ । ଏଥିରେ ଆତ୍ମସୁଖ-ବାଞ୍ଛା ଲେଶ ମାତ୍ର ନାହିଁ; ସମସ୍ତ ଭଗବାନ୍ଙ୍କ ଉଦ୍ଦେଶ୍ୟରେ । ତେଣୁ ଏହି ଭାବ ନିକଟରେ ଭଗବାନ୍ ଚିରଦିନ ଋଣୀ ।

ଉପାସନା ହୁଏ ସଗୁଣ ବ୍ରହ୍ମଙ୍କର । ସେ ବୃହତ୍ ବୋଲି ତାଙ୍କୁ ବ୍ରହ୍ମ କୁହାଯାଏ । ଆମେ ଅଣୁ, ସେ ବୃହତ୍—ଏହି ତାରତମ୍ୟ ହିଁ ଉପାସନାର ମୂଳତତ୍ତ୍ୱ । କ୍ଷୁଦ୍ରର ଯେ ବୃହତ୍ ପ୍ରତି ଲାଳସା, ତାହାହିଁ ଉପାସନାର ପ୍ରାଣ । ଉପାସନା ପ୍ରଭାବରେ କ୍ଷୁଦ୍ର ମନ-ବୁଦ୍ଧି ବୃହତ୍‌ର ଧାରଣା କରିପାରେ ।



# ସୋଽହଂ-ତତ୍ତ୍ୱ

## ଧର୍ମ ସ୍ୱଭାବର ଅନୁରୂପ

ଧର୍ମଜଗତ୍‌ର ସୂକ୍ଷ୍ମ ତତ୍ତ୍ୱଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କଲେ ଦେଖାଯାଏ ଯେ, ସ୍ୱଭାବଗତ ଭାବରେ ପୁଷ୍ଟିବିଧାନ ହିଁ ଧର୍ମର ଭିତ୍ତି । ଏହି ଭିତ୍ତିକୁ ଅବଲମ୍ବନ କରି ବହୁ ଶାଖାସମନ୍ୱିତ, ବହୁଧା ବିଭକ୍ତ ଧର୍ମାନୁଶାସନ ଶ୍ରୀଭଗବାନ୍‌ଙ୍କ ଅବତାରମାନଙ୍କ ଦ୍ୱାରା ଓ ତାଙ୍କ ଆଦିଷ୍ଟ ପୁରୁଷଙ୍କ କର୍ତ୍ତୃକ ପ୍ରତିଷ୍ଠିତ ହୋଇଅଛି । ଯାଗ, ଯଜ୍ଞ, ତପସ୍ୟାଦି ସମନ୍ୱିତ ତନ୍ତ୍ର, ମନ୍ତ୍ର, ବେଦ, ପୁରାଣ, କୋରାନ୍, ବାଇବେଲ ପ୍ରଭୃତି ଗ୍ରନ୍ଥରେ ଭିନ୍ନ ଭିନ୍ନ ଦେଶର ଭିନ୍ନ ଭିନ୍ନ ପ୍ରକାର ସମର୍ଥନରେ ଧର୍ମ-ତତ୍ତ୍ୱ ବିକାଶର ଚେଷ୍ଟା କରାଯାଇଅଛି । ପ୍ରତ୍ୟେକ ଚେଷ୍ଟା ଫଳବତୀ ହୋଇ ଗୋଟିଏ ବିଶାଳ ବିରାଟ ଊର୍ଦ୍ଧ୍ୱମୂଳ, ଅଧଃଶାଖା ମହୀରୁହର ସୃଷ୍ଟି କରିଅଛି । ପ୍ରତ୍ୟେକ ଶାଖାରେ ସ୍ୱଭାବ-ଅନୁସରଣରେ ଧର୍ମବୀଜ ସଂସ୍ଥାପିତ ହୋଇଅଛି । ତେଣୁ ଭାରତରେ ସନାତନ ଧର୍ମ, ଆରବଦେଶରେ ଇସ୍‌ଲାମ୍ ଧର୍ମ ଏବଂ ଇଉରୋପ ଖଣ୍ଡରେ ଖ୍ରୀଷ୍ଟଧର୍ମ ଦେଶ-କାଳ-ପାତ୍ର ବିବେଚନାରେ ପ୍ରଚାରିତ ହୋଇଅଛି । ମୂଳ ଲକ୍ଷ୍ୟସ୍ଥଳରେ ଅନାଦି ଅନନ୍ତ ସର୍ବଶକ୍ତିମାନ୍ ଭଗବାନ୍‌ଙ୍କୁ ରଖି ଏହି ଧର୍ମବୃକ୍ଷ ସଂପ୍ରଦାୟ, ବିଭାଗ ଓ ମତବାଦରେ ବହୁ ଶାଖା-ପ୍ରଶାଖାରେ ଦିଗ୍‌ଦିଗନ୍ତ ଆଚ୍ଛନ୍ନ କରିଅଛି । ମାନବର ଅନନ୍ତ ସ୍ୱଭାବ ଭଗବାନ୍‌ଙ୍କର ଅନନ୍ତ ଭାବ । ତେଣୁ ମନୁଷ୍ୟ ଯେଉଁଭାବରେ ପରିଚାଳିତ ହେଲେ ମଧ୍ୟ ସୁନିୟମ ଦ୍ୱାରା ଶୃଙ୍ଖଳିତ ହୋଇ କ୍ରମେ ଭଗବାନ୍‌ଙ୍କ ଭାବରେ ପହଞ୍ଚିପାରିବ ।

### ଜ୍ଞାନଯୋଗ

ଏହି ସ୍ୱଭାବ-ଅନୁସରଣରେ ଭାରତୀୟ ଧର୍ମ-ଗଗନରେ ଦୁଇଟି ବିଶେଷ ମତର ପ୍ରଭାବ ଦେଖିବାକୁ ମିଳେ । ଏହି ଦୁଇ ମତ ବିଶେଷ ଭାବରେ ବିସ୍ତାର ଲାଭ କରିଅଛି । ପ୍ରଥମଟି ଜ୍ଞାନଭାବ, ଅପରଟି ଭକ୍ତିଭାବ । ଜ୍ଞାନଭାବର ତତ୍ତ୍ୱ 'ସୋଽହ' ଭକ୍ତି ଭାବର ତତ୍ତ୍ୱ 'ଦାସୋଽହଂ' ।

'ମୁଁ ବଡ଼' ଏ ଭାବଟି ମାନବର ସ୍ୱଭାବଗତ। ଜଣେ ଶତ ବାର ବ୍ୟର୍ଥମନୋରଥ ହୋଇ ଆଶା-ଦୁଆରରେ ପ୍ରତିହତ ହୋଇ ସୁଦ୍ଧା ସେ ବଡ଼, ସେ କର୍ତ୍ତା, ଏକଥା ସେ ଛାଡ଼ିପାରନ୍ତି ନାହିଁ। ସେ ତାଙ୍କ ଜୋତା-ମୋଜାର କର୍ତ୍ତା, ତାଙ୍କ ଭଙ୍ଗାକଳସୀର ମଧ୍ୟ ସେ କର୍ତ୍ତା। କଠିନ ଆଘାତରେ ତାଙ୍କର କର୍ତ୍ତୃତ୍ୱଜ୍ଞାନ ଶତଧା ବିଭକ୍ତ ହେଲେ ମଧ୍ୟ ପୁଣି ସେଗୁଡ଼ିକ ସେ ଧୀରେ ଧୀରେ ଗୋଟାଇନିଅନ୍ତି, ପୁଣି ଧୀରେ ଧୀରେ କର୍ତ୍ତୃତ୍ୱଜ୍ଞାନ ଗଢ଼ିଧରନ୍ତି। ଏହି ସ୍ୱଭାବଗତ କର୍ତ୍ତୃତ୍ୱଜ୍ଞାନକୁ ସୁନିୟମରେ ପରିବର୍ଦ୍ଧିତ କରିବା ହିଁ ଜ୍ଞାନଯୋଗ। ଯଦି କର୍ତ୍ତା ଅଭିମାନ ଛାଡ଼ି ନ ପାରୁଛ, ତେବେ କେବଳ ନିଜ ଗୃହରକର୍ତ୍ତା ହୋଇ ବସିବ କାହିଁକି? କାହିଁକି ଭୁଲିଯାଉଛ ଯେ ତୁମେ ଦେଶର କର୍ତ୍ତା, ଦଶର କର୍ତ୍ତା; ପୃଥିବୀର କର୍ତ୍ତା ତୁମେ; ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ରାଦିର କର୍ତ୍ତା ମଧ୍ୟ ତୁମେ। ତୁମରି ଇଚ୍ଛାରେ ଦନି ଯାଏ ରାତି ଆସେ; ଷଡ଼ଋତୁ ଆବିର୍ଭୂତ ହୁଅନ୍ତି; ବାୟୁ ପ୍ରଭାବିତ ହୁଏ; ସବୁ ହୁଏ। ଏହି ଭାବରେ ଆତ୍ମପ୍ରତିଷ୍ଠା ହେଲେ ଦେଖିବ, ଜଗତ୍‌ର ପ୍ରତ୍ୟେକ ଅଣୁପରମାଣୁର କର୍ତ୍ତା ତୁମେ। ସେତେବେଳେ ଅନୁଭବ କରିବ ଯେ ତୁମେ ପ୍ରତ୍ୟେକର କର୍ତ୍ତା ହୋଇ ପ୍ରତ୍ୟେକ ବସ୍ତୁରେ ବିରାଜିତ। ତୁମର ଜନ୍ମ ନାହିଁ, ମୃତ୍ୟୁ ନାହିଁ—ତୁମେ ଅଜର, ଅମର, ନିତ୍ୟ। ତୁମକୁ ଅସ୍ତ୍ର କାଟିପାରିବ ନାହିଁ, ଅଗ୍ନି ଦଗ୍ଧ କରିପାରିବ ନାହିଁ, ଜଳ ନିମଜ୍ଜନ କରିପାରିବ ନାହିଁ, ବାୟୁ ଶୁଷ୍କ କରିପାରିବ ନାହିଁ। ତୁମେ ଅଚ୍ଛେଦ୍ୟ, ଅଦାହ୍ୟ, ଅକ୍ଳେଦ୍ୟ, ଅଶୋଷ୍ୟ, ନିତ୍ୟ, ସର୍ବବ୍ୟାପୀ, ସ୍ଥିର ଏବଂ ସଦା ଏକରୂପ। ଏହା ଜ୍ଞାନର ଚରମ ଅବସ୍ଥା।

ଜ୍ଞାନର ଅବତାର ଭଗବାନ ଶଙ୍କରାଚାର୍ଯ୍ୟ ଆତ୍ମତତ୍ତ୍ୱର ବିଜୟ-ଦୁନ୍ଦୁଭି ଧ୍ୱନିରେ ତୁଷାରଶୁଭ୍ର ହିମାଳୟର ଉଚ୍ଚଶୃଙ୍ଗରୁ ଆରମ୍ଭ କରି କନ୍ୟାକୁମାରୀ ପର୍ଯ୍ୟନ୍ତ ଆଲୋଡ଼ିତ କରିଥିଲେ। ଏହି ଜ୍ଞାନାମୃତ ପାନ କରାଇ ସକାମ, କର୍ମନିଷ୍ଠ, ନିରୀଶ୍ୱରବାଦୀ ବୌଦ୍ଧଭାରତକୁ ସେ ଆତ୍ମଜ୍ଞାନର ମୋହନ ତାନରେ ଜାଗରିତ କରିଥିଲେ।

## ଭକ୍ତିଭାବ

ମାନବର ଆକାଂକ୍ଷା ଅତୀବ ଦୁଷ୍ପୂରଣୀୟ। ମାନବ ଯେତେ ଲୋଡ଼େ, ସେତେ ପାଇଲେ ମଧ୍ୟ ଆହୁରି ସେତିକି ଲୋଡୁଥାଏ। ପ୍ରତିଦିନ ତା'ର ଅଦମ୍ୟ ଆଶା ବଢ଼ିଚାଲିଥାଏ। ଏ ବୃଦ୍ଧିର ସୀମା ନାହିଁ। ଏହି ଆଶା ପଛରେ ହାହାକାର

ଧ୍ୱନି କରି ସେ ଅସୀମ ଅନନ୍ତ କୋଳକୁ ଧାଏଁ। ଦୀନ କୁଟୀରବାସୀ ଯେଉଁ ଆଶା-ତାଡ଼ନାରେ ଉତ୍ପୀଡ଼ିତ, ସେହି ଏକ ଆଶାକୁହେଳିକାରେ ମହାରାଜାଧିରାଜ ଆତ୍ମହରା। କୁଟୀରବାସୀ କାଙ୍ଗାଳ ଗୋଟିଏ ପଇସାର ଭିକାରି ହେଲେ, ରାଜା ରାଜ୍ୟର ଭିକାରି। ଉଭୟେ ଏକା ଭିକାରି। ଉଭୟେ ଆଶା-ଦୁଆରେ ହାତ ପ୍ରସାରି ଦଣ୍ଡାୟମାନ। ଭକ୍ତିଯୋଗରେ ଭକ୍ତଭାବରେ ଏହି ଆଶାର କ୍ରମବିକାଶ ଦେଖାଯାଏ; କେବଳ ଭିନ୍ନ ପଥରେ ଚାଳିତ ହୋଇଥାଏ ମାତ୍ର।

ଭକ୍ତମାନେ କୃପାଭିଖାରି ହୋଇ ତାଙ୍କର ଚରଣଆଡ଼କୁ ଚାହି ରହିଥାନ୍ତି। ଭଗବାନ୍ ତାଙ୍କୁ ପ୍ରଥମେ ଦାସ୍ୟଭାବ ପ୍ରଦାନ କରନ୍ତି। ଭକ୍ତମାନେ ଦାସ ଭାବରେ ଭଗବାନ୍‌ଙ୍କର ସେବା କରି ତୃପ୍ତ ହୁଅନ୍ତି ନାହିଁ। ଅନ୍ୟ ଭାବରେ ତାଙ୍କୁ ଲାଭ କରିବା ନିମିତ୍ତ ଲାଳାୟିତ ହୁଅନ୍ତି। ଭଗବତ୍ କୃପାରୁ କ୍ରମେ ସଖ୍ୟ, ବାତ୍ସଲ୍ୟ ଓ ମଧୁର ଭାବରେ ଭକ୍ତ ବିଭୋର ହୁଅନ୍ତି। ମଧୁର ଭାବରେ ଭକ୍ତ ଭଗବାନ୍‌ଙ୍କ ନିମିତ୍ତ ପାଗଳ ହୋଇଉଠନ୍ତି। ପ୍ରେମମୟଙ୍କ ନିମିତ୍ତ ପ୍ରେମଭିକ୍ଷୁ ଭକ୍ତ ପାଗଳ ହୋଇ ଅହର୍ନିଶ ଅନାହାର ଓ ଅନିଦ୍ରାରେ କାଳଯାପନ କରନ୍ତି। ଏହି ଆଶା ମୋହରେ ପ୍ରେମମୟ ଭଗବାନ୍‌ଙ୍କ ପ୍ରେମର ମୋହନ ମନ୍ତ୍ରରେ ଭକ୍ତ ଆତ୍ମହରା ହୋଇଯାଆନ୍ତି। ଯେଉଁ ଆଶା କ୍ଷୁଦ୍ର ବିଷୟ ମୋହରେ ବୁଡ଼ାଇ ରଖିଥିଲା, ତାହା କ୍ରମେ ତୃପ୍ତି ଓ ଅତୃପ୍ତି ମଧ୍ୟରେ ଯାଇ ଅନନ୍ତପ୍ରତି ପ୍ରବାହିତ ହୋଇ ସେହି ବିଶ୍ୱତୋମୁଖ ଭଗବାନ୍‌ଙ୍କ ସହିତ ଭକ୍ତଙ୍କୁ ମିଳାଇଦେଲା। ସେତେବେଳେ ଆଶାର ପୂର୍ଣ୍ଣତା। ଭକ୍ତିଯୋଗରେ ଏହା ଭକ୍ତଙ୍କର ଚରମ ଅବସ୍ଥା। ପ୍ରେମାବତାର ଶ୍ରୀମନ୍ ମହାପ୍ରଭୁ ଚୈତନ୍ୟଦେବ ଏହି ପ୍ରେମପିପାସାର ଅନନ୍ତ ହାହାକାରର ଜ୍ୱଳନ୍ତ ଦୃଷ୍ଟାନ୍ତ। ତାଙ୍କ ଜୀବନଟା କେବଳ ହାହାକାରର ସମଷ୍ଟି। ତାଙ୍କ ଜୀବନରେ ସେ ଜୀବମାନଙ୍କୁ କେବଳ ଭଗବାନ୍‌ଙ୍କ କୃପା-ଆଶାରେ ଜୀବନ କଟାଇବାକୁ ଶିକ୍ଷା ଦେଇଯାଇଛନ୍ତି। ସେ ଲୀଳାଶେଷ ପର୍ଯ୍ୟନ୍ତ ପ୍ରେମମୟଙ୍କ ନିମିତ୍ତି ହାହାକାର କରି କାନ୍ଦି କାନ୍ଦି କାଳ କଟାଇଛନ୍ତି।

ଏହି ପ୍ରେମର ଫଳ ସେହି ପରମ ପ୍ରେମସ୍ୱରୂପଙ୍କ ସହିତ ମିଳନ, ଏକାନ୍ତବୋଧ, ଅଭିନ୍ନ ଭାବରେ ସୃଷ୍ଟି। ଅଣୁ ଅଣୁରେ, ବୃକ୍ଷ ବୃକ୍ଷରେ, ପର୍ବତ ଶିଖରରେ, ନୀଳିମଗଗନରେ ସେହି ପ୍ରେମମୟଙ୍କ ପ୍ରେମବୈଚିତ୍ର୍ୟ ଦର୍ଶନ କରି

ପ୍ରେମମୟଙ୍କ ପ୍ରେମସ୍ପନ୍ଦନ-ଅନୁଭୂତିରେ ଭକ୍ତ ଆତ୍ମହରା ହୋଇଯାନ୍ତି । ସେ ତାଙ୍କୁ ଜଗନ୍ମୟ ଦେଖନ୍ତି ଏବଂ ପ୍ରତି ଅଣୁ ପରମାଣୁରେ ତାଙ୍କ ବିକାଶ ଦେଖିବାକୁ ପାଆନ୍ତି ।

## ଜ୍ଞାନୀ ଓ ଭକ୍ତଙ୍କର ଚରମ ଗତି

ଜ୍ଞାନୀ ଓ ଭକ୍ତ ଏକ ତତ୍ତ୍ୱରେ ଉପନୀତ ହୁଅନ୍ତି । ପ୍ରଥମ ଅବସ୍ଥାରେ ଭାବର ବିଭିନ୍ନତା ହେତୁ କେତେବେଳେ ଭାବର ବିରୋଧୀ ବୋଲି ବୋଧହୁଏ; ମାତ୍ର ପ୍ରକୃତରେ ତାହା ନୁହେଁ । ପ୍ରକୃତ ଜ୍ଞାନୀ ଓ ପ୍ରକୃତ ଭକ୍ତଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଜ୍ଞାନ ଭିନ୍ନ ଭକ୍ତି ଅଗ୍ରସର ହୋଇପାରେ ନାହିଁ ଏବଂ ଭକ୍ତି ଭିନ୍ନ ଜ୍ଞାନ ଅଗ୍ରସର ହୋଇ ନପାରେ । ଜ୍ଞାନବିଚାରରେ ଯେ 'ମୁଁ ମୁଁ' କହନ୍ତି, ସେ ପାଳଗ । ସେ 'ମୁଁ' କିଏ ? 'ମୁଁ' କ'ଣ ଦେହ ? ଦେଖାଯାଏ, ମୃତ୍ୟୁପରେ ଦେହ ନିଷ୍ପନ୍ଦ ଅବସ୍ଥାରେ ପଡ଼ିରହିଥାଏ । ତେଣୁ 'ମୁଁ' ଦେହାତିରିକ୍ତ କୌଣସି ବସ୍ତୁ । ତେବେ 'ମୁଁ' ମନ ନା ବୁଦ୍ଧି ? ଏହି ପ୍ରକାରରେ କ୍ରମେ ବିଚାର କରି ଜ୍ଞାନଯୋଗୀ ଯେତେବେଳେ ତାଙ୍କ ନିଜ ସତ୍ତାର ସନ୍ଧାନପ୍ରାପ୍ତ ହୁଅନ୍ତି, ସେତେବେଳେ ଦେଖନ୍ତି, ତାଙ୍କର 'ମୁଁ' ସତ୍ତା ଜଗତ୍‌ପରିବ୍ୟାପ୍ତ । ଅଣୁଠାରୁ ଶିବପର୍ଯ୍ୟନ୍ତ ସେହି ଗୋଟିଏ ବସ୍ତୁ ମୋଠାରେ ରହି 'ମୁଁ ମୁଁ' ବୋଲି କହୁଛନ୍ତି ।

ପୁଣି ଦେଖ, ଭକ୍ତ ପ୍ରଥମେ ଦୀନଦୟାଳୁ ଅନାଥଶରଣ ପତିତପାବନ ଭଗବାନଙ୍କୁ ପ୍ରାଣପଣେ ଡାକିବାକୁ ଆରମ୍ଭ କରନ୍ତି, ତାଙ୍କ ଗୁଣାନୁକୀର୍ତ୍ତନ କରନ୍ତି, ତାଙ୍କ ସେବାରେ ରତ ହୁଅନ୍ତି, ଦାସ ଭାବରେ ତାଙ୍କ ସେବା ଓ ତାଙ୍କ ଭକ୍ତଙ୍କ ସେବା କରନ୍ତି । କ୍ରମେ ସାଧନଗୁଣରେ ଦୟାଳୁ ପ୍ରଭୁଙ୍କର ଦୟା ହୁଏ । ଭକ୍ତ ସେତେବେଳେ ଭଗବାନଙ୍କର ସଖା ହୁଅନ୍ତି, କାନ୍ଧ ଉପରେ ଚଢ଼ନ୍ତି, ଏକତ୍ର ଖେଳନ୍ତି । ପରେ ମାତା ହୁଅନ୍ତି । ମାତୃଭାବରେ ବିଭୋର ହୋଇ ଭଗବାନ୍‌ଙ୍କୁ ସନ୍ତାନ ରୂପେ ଗ୍ରହଣ କରି ତାଙ୍କ ସେବା କରନ୍ତି । ତତ୍ପରେ ମଧୁର ଭାବରେ ତାଙ୍କ ସଙ୍ଗିନୀରୂପରେ ପରିଣତ ହୁଅନ୍ତି । ସେତେବେଳେ ଭଗବାନ୍ ପ୍ରେମିକ ରସିକ ନଟବର; ଭକ୍ତ ସେତେବେଳେ ପ୍ରେମିକା, ରସିକା, ପ୍ରେମ ଲୋଲୁପା । କ୍ରମେ ଭକ୍ତ ଦେଖନ୍ତି, ସେ ଯାହା, ତାଙ୍କର ପ୍ରେମିକ ମଧ୍ୟ ତାହା । କେତେବେଳେ ସେ ନିଜକୁ ପ୍ରେମିକ ମନେ କରି ନିଜର ପୂଜା କରନ୍ତି । ପ୍ରେମମୟଙ୍କୁ ଜଗନ୍ମୟ ଦେଖନ୍ତି । ଦେଖିଲେ ପ୍ରେମପାଗଳିନୀ ହୁଅନ୍ତି । ଏହିପରି ଭାବରେ ଭକ୍ତ ନିଜକୁ

ଭୁଲିଯାଆନ୍ତି; 'ଅହଂ' ଛାଡ଼ି 'ସୋଽହଂ' ହୁଅନ୍ତି । ତାଙ୍କ ରୂପଭିନ୍ନ ଭକ୍ତ ଅନ୍ୟ କିଛି ଦେଖନ୍ତି ନାହିଁ ।

ଅତଏବ ଦେଖାଯାଉଛି, ସୋଽହଂ ସଂପ୍ରଦାୟାନ୍ଧମାନଙ୍କର ତଥାକଥିତ ନାସ୍ତିକତା ବାସ୍ତବିକ ନାସ୍ତିକତା ନୁହେଁ; ଏହା ଆସ୍ତିକତା ଅର୍ଥାତ୍ ଭଗବତ୍ ଉପଲବ୍ଧି ନିମିତ୍ତ ସାଧକଙ୍କର ଅବଲମ୍ବନୀୟ ଗୋଟିଏ ଭାବବିଶେଷ ।

## ଆଚାର୍ଯ୍ୟ ଶଙ୍କରଙ୍କ ବ୍ରହ୍ମଜ୍ଞାନ

ବୌଦ୍ଧମାନଙ୍କର ନିରୀଶ୍ୱର କର୍ମକାଣ୍ଡ ଆଶ୍ରୟ କରି ତାନ୍ତ୍ରିକସାଧନାର ଆବରଣରେ ଯେତେବେଳେ ପାଶବିକ ଅତ୍ୟାଚାର ଇନ୍ଦ୍ରିୟ-ଲାଳସାପରିତୃପ୍ତ ଦେଶବାସୀଙ୍କୁ ଅନନ୍ତ ପାପପଙ୍କରେ ନିମଜ୍ଜିତ କରିଥିଲା, ଭଗବାନ୍‌ଙ୍କ ଆସନ ସେତେବେଳେ ତାଙ୍କର ଅତି ଆଦରର ଭାରତୀୟ ସନ୍ତାନମାନଙ୍କ ଦୁର୍ଦ୍ଦଶାରେ କମ୍ପି ଉଠିଥିଲା । ତେଣୁ ଶଙ୍କରାବତାର ଭଗବାନ୍ ଶଙ୍କରାଚାର୍ଯ୍ୟ ଦାକ୍ଷିଣାତ୍ୟରେ ଆବିର୍ଭୂତ ହୋଇ ସୋଽହ, ତତ୍ତ୍ୱମସି ଆଦି ପ୍ରତିପାଦ୍ୟ ଜ୍ଞାନଘନ ପ୍ରେମମୟ ସନାତନ ସତ୍ୟର ଅନାଦି ଅନନ୍ତ ଅସ୍ତିତ୍ୱ ପ୍ରତିଷ୍ଠା କରି ଭଗବତ୍‌ବିମୁଖୀ ଧ୍ୱଂସମୁଖୀ ଭାରତବାସୀଙ୍କ ଲୁପ୍ତଗୌରବର ପୁନଃପ୍ରତିଷ୍ଠାପୂର୍ବକ ସନାତନ ଧର୍ମର ବିଜୟବୈଜୟନ୍ତୀ ଉଡ଼ାଇଲେ । ବେଦ-ବେଦାନ୍ତ ଶାସ୍ତ୍ର ପୁନଃପ୍ରଚାର ଦ୍ୱାରା କର୍ମକାଣ୍ଡର ଅନିତ୍ୟତା, ଜଗତ୍‌ର ଅସତ୍ୟତା, ସଂସାରର କ୍ଷଣଭଙ୍ଗୁରତା ଏବଂ ବ୍ରହ୍ମ ହିଁ ସତ୍ୟ, ଜଗତ୍ ମିଥ୍ୟା—ଏହି ତତ୍ତ୍ୱ ଲୋକମାନଙ୍କୁ ଶିକ୍ଷା ଦେଲେ । ସେ ବୁଝାଇଲେ ଯେ ଜୀବ ମଧ୍ୟ ବ୍ରହ୍ମ, ଜଗତ୍ ମଧ୍ୟ ବ୍ରହ୍ମ, ସମସ୍ତ ବ୍ରହ୍ମ । ତାଙ୍କ ପ୍ରତିଭା, ତପଃ, ତେଜବୀର୍ଯ୍ୟ ସହ୍ୟ କରି ନ ପାରି ପଥଭ୍ରଷ୍ଟ ବୌଦ୍ଧମାନେ ବ୍ରହ୍ମଦେଶ, ଚୀନ, ତିବ୍‌ବତ, ଲଙ୍କା, ସିଂହଳ ପ୍ରଭୃତି ଦେଶରେ ଆଧିପତ୍ୟ ବିସ୍ତାର କଲେ । ଆପାମର ଜନସାଧାରଣ ତାଙ୍କ ଚରଣତଳେ ଆଶ୍ରୟ ଗ୍ରହଣ କଲେ । ସେ ଲୋକଗୁରୁ, ଜଗତ୍‌ଗୁରୁ ଭାବରେ ସର୍ବତ୍ର ଶାନ୍ତିର ଅମିୟଧାରା ବର୍ଷଣ କରିବାକୁ ଲାଗିଲେ । ସମସ୍ତେ ବେଦବେଦାନ୍ତୋକ୍ତ ବ୍ରାହ୍ମଣ୍ୟ ଧର୍ମର ସୁଶୀତଳ ଛାୟାରେ ଆଶ୍ରୟ ଲାଭ କରି ନବଜୀବନ ଲାଭ ପୂର୍ବକ ସଂଜୀବିତ ହୋଇଉଠିଲେ । ଅପୂର୍ଣ୍ଣ ଜୀବନର ପୂର୍ଣ୍ଣତ୍ୱ ସାଧନ କରି ସେ ମର୍ତ୍ତ୍ୟଧାମରେ ଅମରତ୍ୱ ଲାଭ କଲେ ।

ଜଗତର ଧର୍ମମତ-ପ୍ରତିଷ୍ଠାତାମାନେ ଭଗବାନ୍‌ଙ୍କର କୌଣସି ଗୋଟିଏ ବିଶେଷ ଲକ୍ଷଣ ନିରୂପଣ କରି ତାହା ପାଇବାର ଉପାୟ ପ୍ରଚାର କରନ୍ତି । ତେଣୁ ଯାବତୀୟ ଧର୍ମ ସଂପ୍ରଦାୟରେ ବିଦ୍ୱେଷ-କୋଳାହଳ ଉତ୍‌ଥିତ ହୁଏ; କିନ୍ତୁ ଭଗବାନ୍

ଶଙ୍କରାଚାର୍ଯ୍ୟ ବ୍ରହ୍ମଙ୍କ ସ୍ୱରୂପଲକ୍ଷଣ ନିରୂପଣ କରି ଯେଉଁ ବିଶ୍ୱବ୍ୟାପୀ ଉଦାରମତ ପ୍ରଚାର କଲେ, ସେଥିରେ ସବୁ ପ୍ରକାର ଅଧିକାରୀ ଜନଗଣ ସ୍ଥାନ ଲାଭ କରି କୃତାର୍ଥ ହୋଇଥିଲେ । ତେଣୁ ଆଜି ହିନ୍ଦୁ, ବୌଦ୍ଧ, ଜୈନ, ଖ୍ରୀଷ୍ଟିୟାନ୍, ମୁସଲମାନ୍ ପ୍ରଭୃତି ଜଗତ୍‌ର ଯାବତୀୟ ସଂପ୍ରଦାୟ ବୈଦାନ୍ତିକ ଧର୍ମର ବିଶାଳ ଗର୍ଭରେ ପଡ଼ିଥିବାର ଦେଖାଯାଏ । ଏପରି ସର୍ବମତସମନ୍ୱୟୀ ସର୍ବଧର୍ମ ସାମଞ୍ଜସ୍ୟ ଉଦାର ମତ ବା ଧର୍ମ ଆଉ କେବେ କାହାଦ୍ୱାରା ପ୍ରଚାରିତ ହୋଇନାହିଁ । ବତ୍ରିଶ ବର୍ଷ ମାତ୍ର ତାଙ୍କ ପରମାୟୁ । ଏଥିମଧ୍ୟରେ ସେ ସର୍ବବିଦ୍ୟା ବିଶାରଦ ପଣ୍ଡିତ ହୋଇ ସାଧନା ଦ୍ୱାରା ବ୍ରହ୍ମସାକ୍ଷାତ୍ ଲାଭ କରି ପଦବଜ୍ରରେ ଉପଧର୍ମ ପରିପ୍ଲାବିତ ଭାରତବର୍ଷ ପର୍ଯ୍ୟଟନପୂର୍ବକ ସତ୍ୟ ସନାତନ ଧର୍ମ ପ୍ରଚାର କରିଥିଲେ । ଏତଦ୍‌ବ୍ୟତୀତ ସେ ଶ୍ରୀମଦ୍‌ଭଗବଦ୍ ଗୀତାର ଭାଷ୍ୟ, ଦଶୋପନିଷଦ୍‌ର ଭାଷ୍ୟ, ଯୋଗଶାସ୍ତ୍ର -ଟୀକା, ଷାଠିଏଗୋଟି ବୈଦିକ ଗ୍ରନ୍ଥ ଓ ଭକ୍ତିଗଦ୍‌ଗଦ ଚିତ୍ତରେ ଦେବଦେବୀମାନଙ୍କର ସ୍ତବ-ସ୍ତୋତ୍ରାଦି ରଚନା କରିଥିଲେ । ଜଣକର ବତ୍ରିଶ ବର୍ଷ ଆୟୁଷ୍କାଳ ମଧ୍ୟରେ ଏପରି କର୍ମମୟ ଜୀବନ ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ ।

ଭଗବାନ୍ ସର୍ବଭୂତରେ ବିରାଜମାନ—ଏ କଥା କୌଣସି ସଂପ୍ରଦାୟ ଅସ୍ୱୀକାର କରନ୍ତି ନାହିଁ । 'ଯତ୍ର ଜୀବ, ତତ୍ର ଶିବ' 'ଘଟ୍ ଘଟ୍‌ମେଁ ବିରାଜେ ରାମ୍', 'ଘଟେ ଘଟେ ବିରାଜ୍ କରେନ୍ ଇଚ୍ଛାମୟୀର୍ ଇଚ୍ଛା ଯେମନ୍' ଇତ୍ୟାଦି ସଦାପ୍ରଚଳିତ ସାଧକମୁଖବିନିସୃତ ବାକ୍ୟାଦି ଦ୍ୱାରା ବୁଝାଯାଏ ଯେ ସୋଽହଂଭାବ ସବୁ ସଂପ୍ରଦାୟରେ କୌଣସି-ନା-କୌଣସି ପ୍ରକାରରେ ବିଦ୍ୟମାନ ।

'ସୋଽହଂ' କହିଲେ, 'ମୁଁ' ଜଡ଼ଦେହରେ ଅବସ୍ଥିତ ଭଗବାନଙ୍କୁ ବୁଝାଇଲେ ମଧ୍ୟ ଏଥିରୁ ନାସ୍ତିକତାର କୌଣସି ଆଭାସ ମିଳେ ନାହିଁ । ବେଦାନ୍ତ-ପ୍ରତିପାଦ୍ୟ 'ତତ୍ତ୍ୱମସି' ଦ୍ୱାରା ଏହି ଭାବ ପ୍ରକାଶିତ ହୋଇଥାଏ । ତତ୍-ତ୍ୱଂ-ଅସି ଅର୍ଥାତ୍ ତୁମେ ହିଁ ସେହି ପରମାତ୍ମା ଭଗବାନ୍ । କିନ୍ତୁ ସେ ଅପୂର୍ଣ୍ଣ; କାରଣ ସେ ମାୟା-ଆବରଣରେ ଆଚ୍ଛାଦିତ । ତୁମେ ଅଂଶ, ସେ ପୂର୍ଣ୍ଣ । 'ସେ' ଓ 'ତୁମେ' ଏକବସ୍ତୁ, କିନ୍ତୁ ସେ ତୁମ ଭିତରେ ଅବ୍ୟକ୍ତ; କାରଣ, ତୁମେ କିଏ, ତାହା ତୁମେ ଜାଣ ନାହିଁ । ଜାଣିପାରିଲେ ତୁମର ଆଉ ଏ ଭାବ ରହିବ ନାହିଁ । ସେତେବେଳେ ଜାଣିବ, ତୁମେ ଅଂଶ ନୁହଁ—ତୁମେ ପୂର୍ଣ୍ଣ, ଅଭେଦ; କାରଣ, ଅନନ୍ତ ଅସୀମର ଅଂଶ ନାହିଁ ।

## ସ୍ୱରୂପବୋଧ

ରାଧାକୃଷ୍ଣଙ୍କର ମଧୁର ଭାବର ଚରମ ପରଣତି ସୋଽହଂ । କୃଷ୍ଣପ୍ରେମ ପାଗଳିନୀ ଗୋପାଙ୍ଗନାମାନଙ୍କୁ ଯେତେବେଳେ ରାସରସିକ ନଟବର ରାସବିହାରୀ ଶ୍ରୀକୃଷ୍ଣ ପୂର୍ଣ୍ଣିମା ନିଶୀଥିନୀର ପୂର୍ଣ୍ଣାଲୋକରେ ପୂର୍ଣ୍ଣପ୍ରେମ-ବିକାଶର ଅବସରରେ ଛାଡ଼ିଦେଇ ଚାଲିଗଲେ, ସେତେବେଳେ କୃଷ୍ଣପ୍ରେମବିଧୂରା ପାଗଳିନୀ ଗୋପିକାମାନେ କଅଣ କଲେ ? ସେମାନଙ୍କ ଭିତରୁ କେହି କହିବାକୁ ଲାଗିଲେ, "ମୁଁ କୃଷ୍ଣ, ତୁମେ ରାଧା" ଇତ୍ୟାଦି । ସେତେବେଳେ ସେମାନେ କୃଷ୍ଣପ୍ରେମଭିଖାରୁଣୀ ନୁହଁନ୍ତି, ସେମାନେ 'ସୋଽହଂ', 'ମୁଁ କୃଷ୍ଣ' ।

ତେଣୁ 'ସୋଽହଂ' କହ ବା 'ତୁମେ ପ୍ରଭୁ, ମୁଁ ଦାସ' କହ, ଫଳ ଏକ; ମତ ପଥ ମାତ୍ର । ମତ ତ ଭଗବାନ୍ ନୁହନ୍ତି । ଭଗବାନ୍‌ଙ୍କ ଚରଣର ଦାସ ହେବାକୁ ହେଲେ, ତାଙ୍କ ସନ୍ତାନ ହେବାକୁ ହେଲେ ପ୍ରଥମରୁ ଏହି ଅହଂତ୍ୱକୁ ବିସର୍ଜ୍ଜନ ଦେବାକୁ ହେବ । ଏହି ପ୍ରତିଷ୍ଠା ପ୍ରଭୁ ଭାବରେ କଲେ କିଛି ଅଭିମାନ ରହିଯାଏ; କିନ୍ତୁ ଯେଉଁଠାରେ ଅହଂଭାବର କିଛି କର୍ତ୍ତୃତ୍ୱ ନାହିଁ, ସେଠାରେ ଅହଂଭାବର କିଛି ଆବଶ୍ୟକତା ନାହିଁ । ସେଠାରେ 'ସୋଽହଂ', ପୁଣି 'ତୁମେ ପ୍ରଭୁ, ମୁଁ ଦାସ' ଭାବ ନେଇ କଳହ କରିବା ପାଇଁ କିଛି ନାହିଁ । ଭଗବାନ କହିଛନ୍ତି—

"ଯେ ଯଥା ମାଂ ପ୍ରପଦ୍ୟନ୍ତେ, ତାଂ ତଥୈବ ଭଜାମ୍ୟହଂ ।"

—ଶ୍ରୀମଦ୍‌ଭଗବଦ୍‌ଗୀତା

ତୁମେ ସେହି ପ୍ରେମମୟଙ୍କ ସନ୍ତାନ, ସେହି ଅନନ୍ତ ପ୍ରେମାଧାରର ତୁମେ କଣାବିଶେଷ । ତାହା ତୁମର ମନେ ନାହିଁ । ଜନ୍ମଜନ୍ମାନ୍ତରର ବିଷୟ-ବାସନା, କାମ-କାମନାର ଦାସତ୍ୱ କରି ସେହି ଜଗତ୍ ପ୍ରଭୁଙ୍କର ଯେ ତୁମେ ଦାସ, ଏକଥା ଭୁଲିଯାଇଛ । ଯେଉଁମାନେ ତାଙ୍କୁ ଜାଣିଛ, ସମୟ ଥାଉ ଥାଉ ତାଙ୍କର ଶରଣାପନ୍ନ ହୁଅ; ଅନ୍ୟଥା ଏହି ମୋହ ଦୂର ହେବ ନାହିଁ । ଏସମ୍ବନ୍ଧରେ ଗୋଟିଏ ଗଳ୍ପ କହୁଛି, ଶୁଣ । ସେଥିରୁ ବ୍ୟକ୍ତିତ୍ୱ ପ୍ରତିଷ୍ଠାର ଭ୍ରମ ସମ୍ୟକ୍ ଭାବରେ ବୁଝିପାରିବ ।

ଏକଦା କୌଣସି ଏକ ପ୍ରାନ୍ତରରେ ଦଳେ ମେଷ ଚରୁଥିଲେ । ନିକଟବର୍ତ୍ତୀ ବନରୁ ଗୋଟିଏ ବାଘୁଣୀ କ୍ଷୁଧାର୍ତ୍ତ ହୋଇ ମେଷପଲ ଭିତରେ ପଶିଲା । ବାଘୁଣୀ ଗର୍ଭବତୀ । ସେ ମେଷମାନଙ୍କ ମଧ୍ୟକୁ ଡେଇଁପଡ଼ିବା ମାତ୍ରେ ଗୋଟିଏ ଶାବକ ପ୍ରସବ କରିପକାଇଲା । ହଠାତ୍ ପ୍ରସବ କରିବାରୁ ବାଘୁଣୀ ଶିକାର ତ୍ୟାଗ କରି

ବନକୁ ପଳାଇଯାଇ ଛଟପଟ ହୋଇ ପ୍ରାଣତ୍ୟାଗ କଲା । ବାଘୁଣୀର ସେହି ଶାବକଟି କ୍ରମେ ମେଷ ଶାବକମାନଙ୍କ ସହିତ ରହି ଘାସ ଖାଇଲା, ମେଷପରି ଶବ୍ଦ କରିବାକୁ ଲାଗିଲା । ଦିନେ ଗୋଟିଏ ବାଘ ସେଠାକୁ ଶିକାର କରିବା ପାଇଁ ଆସିଲା । ବ୍ୟାଘ୍ର ଦେଖି ମେଷମାନେ ପ୍ରାଣଭୟରେ ପଳାୟନ କଲେ; କିନ୍ତୁ ମେଷଭାବପ୍ରାପ୍ତ ବ୍ୟାଘ୍ର-ଶାବକଟି ପଳାଇପାରିଲା ନାହିଁ । ବ୍ୟାଘ ନିକଟକୁ ଆସି ଦେଖିଲା, ଏ ମେଷ ନୁହେଁ । ସେ କହିଲା, ''ତୁ ଏଠାରେ କାହିଁକି ଅଛୁ ?'' ଶାବକଟି ଭୀତ ହୋଇ କହିଲା, ''ମୋତେ ଖାଅ ନାହିଁ; ମୁଁ ଅତି ଛୋଟ ଛୁଆଟିଏ ।'' ବ୍ୟାଘ୍ର ତାର ଭୟର କାରଣ ବୁଝିପାରିଲା । ତାକୁ ଗୋଟିଏ ଜଳାଶୟ ନିକଟକୁ ନେଇ କହିଲା, ''ତୋ ମୁହଁକୁ ଚାହିଁ ଦେଖ୍, ତୁ ମେଷ ନା କଅଣ ?'' ଜଳରେ ନିଜ ଛାଇ ଦେଖି ଶାବକଟି ବୁଝିଲା ଯେ ସେ ମେଷ ନୁହେଁ, ବ୍ୟାଘ୍ର ଶାବକ । ତହୁଁ ବ୍ୟାଘ୍ର କହିଲା, ''ଦେଖିଲୁ, ତୁ ମେଷ ନୋହୁଁ; ମୁଁ ଯାହା, ତୁ ମଧ୍ୟ ତାହା । ଚାଲ୍, ସାଙ୍ଗ ହୋଇ ମେଷ ଶିକାର କରିବା ।''

ଆମମାନଙ୍କ ଅବସ୍ଥା ଠିକ୍ ଏହିପରି । ଆମେ ଚିଦାନନ୍ଦରୂପ ଶିବ, ତତ୍‌ପଦବାଚ୍ୟ ଅନାଦି, ଅନନ୍ତ, ସର୍ବଶକ୍ତିମାନଙ୍କର ଅଂଶବିଶେଷ । ଏକଥା ଆମେ ଭୁଲିଯାଇଅଛୁ । ବ୍ରହ୍ମଜ୍ଞାନୀ ସିଦ୍ଧ ମହାପୁରୁଷମାନେ ଆମମାନଙ୍କର ମେଷତ୍ୱ ଘୁଞ୍ଚାଇଦେବା ନିମିତ୍ତ ସ୍ନେହ-ବାହୁ ଉତ୍ତୋଳନ କରି ସବୁବେଳେ ଆମକୁ କୋଳକୁ ଟାଣିନେବାକୁ ଡାକୁଛନ୍ତି । ସେମାନଙ୍କର କରୁଣା-କଣା ଲାଭ କଲାମାତ୍ରେ ଆମର ମେଷତ୍ୱ ଘୁଞ୍ଚିଯିବ; ଆମେ କଅଣ, ତାହା ବୁଝି ପାରିବା ? ପ୍ରକୃତ ମନୁଷ୍ୟ ସ୍ଥିର ରହି ଆତ୍ମରୂପ ଉପଲବ୍ଧି କରେ ।

## ଆଦର୍ଶ ପଥ

ଆଚାର୍ଯ୍ୟ ଶଙ୍କରଙ୍କ ମତ ଏବଂ ମହାପ୍ରଭୁ ଗୌରାଙ୍ଗଦେବଙ୍କ ପଥ ତୁମମାନଙ୍କର ଆଦର୍ଶ । ଭକ୍ତିପଥରେ ଚିତ୍ତଶୁଦ୍ଧି କରି ଜ୍ଞାନ ଲାଭ କରିବା ଗୌରାଙ୍ଗଦେବଙ୍କ ପଥ । ଶଙ୍କରଙ୍କ ମତରେ, ଜ୍ଞାନ-ପଥରେ ମଧ୍ୟ କର୍ମ, ଜ୍ଞାନ ଓ ଭକ୍ତି ସମ୍ମିଳନ କରି ଯିବାକୁ ହୁଏ । ଭକ୍ତି-ପଥରେ ମଧ୍ୟ ଜ୍ଞାନ ଓ ଭକ୍ତିର ସମନ୍ୱୟ କରିବାକୁ ହୁଏ । ଉଭୟ ପଥରେ ଗମନର ଉପାୟ ଏକପ୍ରକାର; କିନ୍ତୁ ପଥର ବିଭିନ୍ନତା ଅଛି । ଜ୍ଞାନମାର୍ଗର ନାମ ବିଶ୍ଳେଷଣ-ପଥ; ଭକ୍ତି-ମାର୍ଗର ନାମ ସଂଶ୍ଳେଷଣ-ପଥ । କାର୍ଯ୍ୟ ଧରି କାରଣକୁ ଯିବାର ନାମ ବିଶ୍ଳେଷଣ ବିଚାର । ପୁଣି କାରଣ

ଲାଭ କରି କାର୍ଯ୍ୟ-ରହସ୍ୟ ଅବଗତ ହେବାର ନାମ ସଂଶ୍ଲେଷଣ ବିଚାର । ଯେଉଁମାନେ ଜଡ଼ଜଗତ୍‌କୁ ଧରି, ନେତି ନେତି କରି ସ୍ଥୂଳ-ସୂକ୍ଷ୍ମ ଅତିକ୍ରମପୂର୍ବକ ବ୍ରହ୍ମାନନ୍ଦରେ ବିଶ୍ରାମ ଲାଭ କରନ୍ତି, ସେମାନେ ଜ୍ଞାନମାର୍ଗୀ । ଆଉ ଯେଉଁମାନେ ବ୍ରହ୍ମକୁ ଜ୍ଞାତ ହୋଇ ଏହି କ୍ଲୀବଜଗତ୍ ତାଙ୍କରି ବିକାଶ ମନେ କରି ଲୀଳାନନ୍ଦରେ ବିଶ୍ରାମ କରନ୍ତି, ସେମାନେ ଭକ୍ତିମାର୍ଗୀ ।

ଭଗବାନ୍ ଶଙ୍କରାଚାର୍ଯ୍ୟ ଯେଉଁ ଉପାୟରେ ବ୍ରହ୍ମସ୍ୱରୂପ ଲାଭର ପନ୍ଥା ପ୍ରକଟିତ କରିଅଛନ୍ତି, ତାହା ବିଶ୍ଳେଷଣ-ପଥ, ଜ୍ଞାନମାର୍ଗ । ମହାପ୍ରଭୁ ଗୌରାଙ୍ଗଦେବ ତାହା ଲାଭ କରିବାର ଯେଉଁ ଉପାୟ ପ୍ରଚାର କରିଛନ୍ତି, ତାହା ଭକ୍ତିମାର୍ଗ । ତେଣୁ ଆଚାର୍ଯ୍ୟ ଶଙ୍କର ଜ୍ଞାନାବତାର ଏବଂ ଗୌରାଙ୍ଗଦେବ ଭକ୍ତାବତାର ବୋଲି ଅଭିହିତ ।

ଭଗବାନ୍ ହିଁ ଅବତାର । ସୁତରାଂ, ଅବତାର ମାତ୍ରେ ମୂଳତଃ ଏକ । ଜଣେ ଅବତାର ଅପର ମତକୁ ବିନଷ୍ଟ କରି ନିଜ ମତ ପ୍ରତିଷ୍ଠା କରନ୍ତି ନାହିଁ । ଏକ ଅବତାରଙ୍କ କର୍ତ୍ତୃକ ଅନ୍ୟ ଅବତାରଙ୍କ ମତ ପରିଣତି ଓ ପୁଷ୍ଟିଲାଭ କରିଥାଏ । ତେବେ ସମାଜର ସଂସ୍କାର ନଷ୍ଟ କରିବା ନିମିତ୍ତ ପରବର୍ତ୍ତୀ ଅବତାର ପୂର୍ବବର୍ତ୍ତୀ ଅବତାରଙ୍କ ମତକୁ ନୂତନ ସଂସ୍କାରରେ ସଂସ୍କୃତ କରିଦିଅନ୍ତି । ତେଣୁ ବୁଦ୍ଧଦେବଙ୍କୁ କାମନାମୂଳକ କର୍ମର ଅସାରତା ପ୍ରତିପନ୍ନ କରିବାକୁ ସମୟ ସମୟରେ ବେଦର ନିନ୍ଦା କରିବାକୁ ପଡ଼ିଥିଲା । ଶଙ୍କରାଚାର୍ଯ୍ୟଙ୍କ ବହୁକାଳ ପରେ ହିନ୍ଦୁ ସମାଜ କେବଳ ଜ୍ଞାନର ଶୁଷ୍କ କଥାରେ ପୂର୍ଣ୍ଣ ହୋଇଗଲା । ଆତ୍ମସମାଧି, ଆତ୍ମଜ୍ଞାନ ପରିବର୍ତ୍ତରେ ହିନ୍ଦୁମାନେ ମୁଖରେ ବ୍ରହ୍ମବିଦ୍ ଏବଂ କାର୍ଯ୍ୟରେ ନାସ୍ତିକତା ଓ ଲୋଲୁପତା ପ୍ରକଟ କରିବାହେତୁ ଉନ୍ମାର୍ଗଗାମୀ ହୋଇପଡ଼ିଲେ । ସେତେବେଳେ ଗୌରାଙ୍ଗଦେବ ଆବିର୍ଭୂତ ହୋଇ ଭକ୍ତିଦ୍ୱାର ଉଦ୍‌ଘାଟନ କଲେ । ଅହଂବୁଦ୍ଧି ବିଶିଷ୍ଟ ସୋଽହଂ ଜ୍ଞାନୀମାନଙ୍କର ସଂସ୍କାର ନଷ୍ଟ କରିବା ନିମିତ୍ତ ତାଙ୍କୁ ଜ୍ଞାନମାର୍ଗର ନିନ୍ଦା ମଧ କରିବାକୁ ପଡ଼ିଥିଲା । କିନ୍ତୁ ମନେ ରଖିବାକୁ ହେବ ଗୌରାଙ୍ଗଦେବ ଆଚାର୍ଯ୍ୟ ଶଙ୍କରଙ୍କ ପ୍ରତିଷ୍ଠିତ ସନ୍ନ୍ୟାସଧର୍ମାଶ୍ରିତ ଭାରତୀ ସମ୍ପ୍ରଦାୟଭୁକ୍ତ ଶ୍ରୀମତ୍ କେଶବ ଭାରତୀଙ୍କ ନିକଟରୁ ସନ୍ନ୍ୟାସ ଗ୍ରହଣ କରିଥିଲେ । ସେ ବିଶ୍ଳେଷଣ-ପଥରେ ଜ୍ଞାନ ଲାଭ କରି ସଂଶ୍ଲେଷଣ-ପଥ ଅବଲମ୍ବନପୂର୍ବକ ସେହି ପଥରେ ହିନ୍ଦୁ ସମାଜକୁ ପରିଚାଳିତ କରିବାକୁ ଚେଷ୍ଟା କରିଥିଲେ ।

## ଜ୍ଞାନ-ଭକ୍ତି ସମନ୍ୱୟ

ଜ୍ଞାନ ପଥର ସାଧକମାନେ ବ୍ରହ୍ମ ସତ୍ତାରେ ନିମଗ୍ନ ହୋଇଯାଇ ଲୀଳାନନ୍ଦ ଉପଭୋଗ କରିପାରନ୍ତି ନାହିଁ। ପୁଣି ଭକ୍ତିପଥର ସାଧକମାନେ ଲୀଳାନନ୍ଦରେ ବୁଡ଼ିରହି ସ୍ୱରୂପାନନ୍ଦରୁ ବଞ୍ଚିତ ହୁଅନ୍ତି। କିନ୍ତ ଯେଉଁମାନେ ଜ୍ଞାନ ପଥରେ ଗମନ କରି ଭକ୍ତିପଥରେ ଫେରିଆସନ୍ତି, ସେହିମାନେ କେବଳ ସଚ୍ଚିଦାନନ୍ଦ-ସାଗରରେ ନିମଜ୍ଜିତ ହୋଇ ଆତ୍ମସ୍ୱରୂପରେ ଲୀଳାନନ୍ଦ ଉପଭୋଗ କରନ୍ତି। ଯେଉଁମାନେ ଲୀଳାନନ୍ଦରେ ମାତିଯାଆନ୍ତି, ସେମାନେ ନିତ୍ୟାନନ୍ଦର ଆସ୍ୱାଦ ନ ପାଇ ନିତ୍ୟାବସ୍ଥା କଠୋର ଓ ଶୁଷ୍କଜ୍ଞାନ ବୋଲି ନିଜର ବିଜ୍ଞତା ପ୍ରକାଶ କରନ୍ତି। ପୁଣି ଯେଉଁମାନେ କେବଳ ନିତ୍ୟାନନ୍ଦରେ ଉନ୍ମତ୍ତ, ସେମାନେ ଅନିତ୍ୟଜ୍ଞାନରେ ଲୀଳାନନ୍ଦ ପ୍ରତି ଅଶ୍ରଦ୍ଧା ପ୍ରକାଶ କରନ୍ତି; କିନ୍ତୁ ଭଗବାନ୍ ଯେପରି ନିତ୍ୟ ଅର୍ଥାତ୍ ଅନାଦି ଓ ଅନନ୍ତ, ଭଗବାନ୍‌ଙ୍କର ଲୀଳା ମଧ୍ୟ ସେହିପରି ଅନାଦି ଓ ଅନନ୍ତ। ସୁତରାଂ ଭଗବାନ୍‌ଙ୍କର ନିତ୍ୟଭାବ ଓ ଲୀଳାଭାବ––ଏ ଉଭୟବିଧ ଭାବ ଯେ ଉପଲବ୍ଧି କରନ୍ତି, ସେହି କେବଳ ବ୍ରହ୍ମବିଦ୍ ଓ ପ୍ରେମିକ ଶିରୋମଣି। ଭକ୍ତି ଓ ଜ୍ଞାନରୁ ଗୋଟିଏ ପଥ ଅବଲମ୍ବନ କଲେ ପୂର୍ଣ୍ଣସଚ୍ଚିଦାନନ୍ଦ ଉପଲବ୍ଧି ହୁଏ ନାହିଁ। ଜ୍ଞାନ-ଭକ୍ତିସମନ୍ୱୟ ମାର୍ଗରେ ଗମନ କରି ନ ପାରିଲେ କେହି ପୂର୍ଣ୍ଣାନନ୍ଦର ଅଧିକାରୀ ହୋଇପାରିବେ ନାହିଁ ଏବଂ ହୃଦୟର ସଂକୀର୍ଣ୍ଣତା ଦୂର ହୋଇ ସାର୍ବଭୌମ ଉଦାରତା ଜାତ ହେବ ନାହିଁ।

ଯାହାଙ୍କ ହୃଦୟରେ ଜ୍ଞାନ ଭକ୍ତିର ମିଳନ ହୋଇଛି, ସେ ସବୁ ସମ୍ପ୍ରଦାୟରେ ମିଶି, ସବୁ ରସରେ ରସି, ସମସ୍ତଙ୍କ ନିକଟରେ ବସି ଆନନ୍ଦ ଲାଭ କରିଥାନ୍ତି। ହନୁମାନ, ପ୍ରହ୍ଲାଦ ପ୍ରଭୃତି ମହାତ୍ମାମାନେ ଜ୍ଞାନ ଓ ଭକ୍ତି ମିଳନରେ କୃତାର୍ଥ ହୋଇଥିଲେ। ରାମପ୍ରସାଦ, ତୁଳସୀଦାସ, ଗୁରୁ ନାନକ ପ୍ରଭୃତି ମହାପୁରୁଷମାନେ ଜ୍ଞାନ ଓ ଭକ୍ତି ମିଳନାନନ୍ଦର ଆସ୍ୱାଦ ପାଇ ଧନ୍ୟ ହୋଇଥିଲେ। ଶଙ୍କରାଚାର୍ଯ୍ୟ ଓ ଗୌରାଙ୍ଗଦେବଙ୍କ ମିଳନ ହିଁ ଜ୍ଞାନ ଭକ୍ତିର ସମନ୍ୱୟ। ଭଗବାନ୍ ରାମକୃଷ୍ଣ ପରମହଂସ ଦେବଙ୍କ ଜୀବନରେ ମଧ୍ୟ ଜ୍ଞାନଭକ୍ତିର ଅପୂର୍ବ ମିଳନ ଦେଖାଯାଇଥିଲା। ତାଙ୍କ ଆଦର୍ଶ ବର୍ତ୍ତମାନର ଧର୍ମବିପ୍ଳବ ଯୁଗରେ ଏକାନ୍ତ ପ୍ରୟୋଜନ। ଆଚାର୍ଯ୍ୟ

ଶଙ୍କର ଓ ଗୌରାଙ୍ଗଦେବଙ୍କ ମିଳନ ହିଁ ପୂର୍ଣ୍ଣ ସତ୍ୟ । ଏହି ମିଳନ ଜୀବନରେ ଘଟାଇପାରିଲେ ଜଗତ୍‌ର ଯାବତୀୟ ଭେଦଭାବ ଦୂର ହୋଇ ପ୍ରେମରାଜ୍ୟ ସଂସ୍ଥାପିତ ହେବ । ଯାହାଙ୍କ ହୃଦୟରେ ଭକ୍ତି-ଗଙ୍ଗା ଜ୍ଞାନ-ସମୁଦ୍ର ସହିତ ମିଳିତ ହୋଇଅଛି, ସେହି ବ୍ୟକ୍ତି କେବଳ ଜୀବନ୍ମୁକ୍ତ ।

## ବ୍ରହ୍ମଜ୍ଞାନ

ଶଙ୍କରାଚାର୍ଯ୍ୟ ବ୍ରହ୍ମଜ୍ଞାନର ପୂର୍ଣ୍ଣ ରୂପ ପ୍ରଚାର କରି ନାହାନ୍ତି । ବ୍ରହ୍ମଜ୍ଞାନର ଅର୍ଥ ସଚରାଚର ଜ୍ଞାନ । ଆବ୍ରହ୍ମ ସମ୍ପର୍ଯ୍ୟନ୍ତ ସମସ୍ତ ଚର ଏବଂ ତାହାର ଅତୀତ ଅଚର—ଏହି ଜ୍ଞାନ ହିଁ ବ୍ରହ୍ମଜ୍ଞାନ । ଜ୍ଞାନର ପୂର୍ଣ୍ଣ ବିକାଶ ଦେଖାଇ ନ ପାରି ଉଭୟ ଭାରତୀଙ୍କ ନିକଟରେ ତାଙ୍କୁ ଶିକ୍ଷା କରିବାକୁ ପଡ଼ିଥିଲା । ସେ ଯୋଗୀ ଥିଲେ ବୋଲି ସବୁଆଡୁ ରକ୍ଷା ପାଇଥିଲେ । ସେ ବ୍ରହ୍ମଜ୍ଞାନର ସଂଶ୍ଳେଷଣ ଦିଗଟି ଛାଡିଦେଇ ପ୍ରଚାର କରିଥିଲେ ।

ଯେ ଜ୍ଞାନ ଲାଭ କରନ୍ତି, ସେ ଶଙ୍କର । ଜଣେ ଶଙ୍କର ଯାଇଛନ୍ତି ବୋଲି ଆଉ ଯେ ଶଙ୍କର ହେବେ ନାହିଁ, ଏ କଥାର ତାତ୍ପର୍ଯ୍ୟ କିଛି ନାହିଁ । ଜ୍ଞାନକୁ ପରିପକ୍ୱ କରି ଏହି ସ୍ଥୂଳଜଗତ୍‌ରେ ସଖ୍ୟ, ଦାସ୍ୟ, ବାତ୍ସଲ୍ୟ ଇତ୍ୟାଦି ନିତ୍ୟଭାବ ଅବଲମ୍ବନ ପୂର୍ବକ ଯେଉଁମାନେ ଜୀବନ ଅତିବାହିତ କରନ୍ତି, ସେମାନେ ବହୁ ଉର୍ଦ୍ଧ୍ୱରେ ଅଧିଷ୍ଠିତ । ଶଙ୍କରଙ୍କ ପରି ଆଉ କେହି ହୋଇପାରିବେ ନାହିଁ, ଏ ଧାରଣା ଭ୍ରମାତ୍ମକ । ଶଙ୍କର ହିଁ ଚରମ ନୁହନ୍ତି । ଶଙ୍କର ଓ ଗୌରାଙ୍ଗ ଦେବଙ୍କର ସମ୍ମିଳିତ ଆଦର୍ଶ ହିଁ ଅବଲମ୍ବନୀୟ ।

ଜ୍ଞାନ ଓ ଭକ୍ତି ଦୁଇଟି ଡେଣା । କେବଳ ଜ୍ଞାନ କିମ୍ବା କେବଳ ଭକ୍ତିରେ ଆଧ୍ୟାତ୍ମିକ ଉନ୍ନତି ହୋଇପାରିବ ନାହିଁ । ଜ୍ଞାନ-ପଥରେ ସାଧକଙ୍କୁ ବ୍ରହ୍ମଜ୍ଞାନ ଲାଭ କରିବାକୁ ହେଲେ ପ୍ରଥମେ ତାହା ଗୁରୁମୁଖରୁ ଶୁଣିବାକୁ ହୁଏ । ଶୁଣି ଶୁଣି ସେଥିରେ ସଂସ୍କାର ଲାଭ କଲେ ଉପଲବ୍ଧି ପାଇଁ ବ୍ରହ୍ମବିଦ୍ ଗୁରୁ କିମ୍ବା ଭଗବାନଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ପଡ଼େ । ସେ କୃପା କଲେ ଜ୍ଞାନ ଲାଭ ହୁଏ, ନ ହେଲେ ହୁଏ ନାହିଁ । ଭକ୍ତମାନେ ମଧ୍ୟ ଦେବତା-ତତ୍ତ୍ୱ ଜାଣିବା ଆବଶ୍ୟକ । ଉପାସ୍ୟ ଦେବତାଙ୍କ ସହିତ ବ୍ରହ୍ମତ୍ୱର କିପରି ମିଳନ ହୁଏ ଏହା ହୃଦୟଙ୍ଗମ କରି ଆତ୍ମସମର୍ପଣ କଲେ ଯାଇ ଭକ୍ତି ଲାଭ ହୁଏ । ସୁତରାଂ, ଜ୍ଞାନମିଶା ଭକ୍ତି ହିଁ ସମସ୍ତଙ୍କର ସାଧ୍ୟ । ମୁଁ ଦେହଭିତରେ ନାହିଁ, ମୋ ଭିତରେ ମୋ ଦେହଟା ମୋତେ ଆଶ୍ରୟ କରି

ରହିଛି, ତାହା ଚଲାବୁଲା କରୁଛି, ଏପରି ଧାରଣା ଅଭ୍ୟାସ କଲେ ଜ୍ଞାନପଥରେ ତାହା କାର୍ଯ୍ୟକାରୀ ହୁଏ। ଅହଂତ୍ୱକୁ ଖୁବ୍ ପ୍ରସାରିତ କରିବାକୁ ହେବ। ମୋ ଭିତରେ ଏହି ଦେହ, ଜଗତ୍, ବ୍ରହ୍ମାଣ୍ଡ, ଗୁଣ ସବୁ ରହିଛି—ଏ ଧାରଣା କ୍ରମେ ଦୃଢ଼ କରିବାକୁ ହେବ।

## ଅଦ୍ୱୈତଭାବ

ଜ୍ଞାନ ଆବଶ୍ୟକ। କିନ୍ତୁ ସେହି ଜ୍ଞାନର ପ୍ରୟୋଗ ମଧ କରିବାକୁ ହେବ। ଆଚାର୍ଯ୍ୟ ଶଙ୍କରଙ୍କ ଜ୍ଞାନକୁ ପରିପକ୍ୱ କଲେ ଏହି ଜଗତ୍‌ମୂଳରେ ବିଦ୍ୟମାନ ଥିବା ନିତ୍ୟଭାବର ପରିଚୟ ପାଇବ। ଆଚାର୍ଯ୍ୟ ଶଙ୍କରଙ୍କର ଜ୍ଞାନର ଅତୀତ ସେହି ନିତ୍ୟଭାବଲୋକର ତତ୍ତ୍ୱ ବୁଝିବାକୁ ହେବ। ସେହି ଭାବକୁ ଏହି ଜଗତ୍‌ମଧରେ ପ୍ରତ୍ୟେକେ ନିଜ ଜୀବନରେ ମୂର୍ତ୍ତ କରି ପ୍ରକାଶ କରିବା ଆବଶ୍ୟକ। ଜ୍ଞାନ ଉତ୍ତମ; ମାତ୍ର ସେ ଜ୍ଞାନଦ୍ୱାରା ଜଗତ୍‌କୁ ପ୍ରାଣ ପୂରାଇ ସୁଖ ନ ପାଇଲେ ତାର ସ୍ୱାର୍ଥକତା କେଉଁଠି ?

ଜ୍ଞାନଲାଭ ପରେ ମଧ ଜୀବନରେ ନିତ୍ୟଲୋକର ଭାବ ବିକଶିତ ହେବା ଦରକାର। କୌଣସି ମାନସିକ କ୍ରିୟା ଜ୍ଞାନ ନୁହେଁ। ଯାହା ପ୍ରାଣକୁ ଶୀତଳ କରି ପରିପୂର୍ଣ୍ଣ ଆନନ୍ଦରେ ବିହ୍ୱଳ କରେ, ତାହା ଜ୍ଞାନ।

ପ୍ରାର୍ଥନା କରୁଥିବା ପର୍ଯ୍ୟନ୍ତ ଅଦ୍ୱୈତ ଜ୍ଞାନ ଲାଭ ହେବ ନାହିଁ। ତାହା ଦ୍ୱୈତଭାବ; କିନ୍ତୁ ଚୈତନ୍ୟଦେବଙ୍କ ପ୍ରବର୍ତ୍ତିତ ଭାବସାଧନା ଅଦ୍ୱୈତମୂଳକ। ଭାବସାଧନା ବେଦାନ୍ତଉପରେ ପ୍ରତିଷ୍ଠିତ। ସେଥିରେ ଅହଂତ୍ୱର ସଂକୀର୍ଣ୍ଣ ଅସ୍ତିତ୍ୱ ଲୋପ ପାଇ ଭାବ ଆକାରରେ ତାର ପ୍ରତିଷ୍ଠା ହୁଏ। ସର୍ବଦା ବିଚାର ଦ୍ୱାରା ଜ୍ଞାନ-ପଥରେ ଗତି କରିବାକୁ ହୁଏ। ତେଣୁ ଦୈବାତ୍ ପତନ ହେଲେ ମଧ ଜ୍ଞାନୀଙ୍କର ପୁଣି ସହଜରେ ଉତ୍‌ଥାନ ହୁଏ। ପତନ ସଙ୍ଗେ ସଙ୍ଗେ ତାଙ୍କର ବିଚାର ଆସିଥାଏ। ସେ ଭୀଷଣ ଅନୁତାପ-ଅନଳରେ ଦଗ୍ଧ ହୁଅନ୍ତି। ଫଳରେ ସହଜରେ ନିଜର ଅବସ୍ଥା ଫେରିଆସେ; କିନ୍ତୁ ଭକ୍ତଙ୍କର ପତନ ହେଲେ ଆଉ ଉଠିବା କଠିନ। ଭଗବାନ୍‌ଙ୍କ ଇଚ୍ଛାରେ ପତନ ହେଲା ବୋଲି ସେ କହନ୍ତି। ଫଳରେ ଉଠିବା ନିମିତ୍ତ ତାଙ୍କର ଉଦ୍ୟମ ରହେ ନାହିଁ। ଭଗବାନ୍ କୃପା କରି ଉଠାଇଲେ ସେ ଉଠିବେ; ତା ନ ହେଲେ ଉଠିବା କଠିନ। ଜ୍ଞାନ ସହିତ ଭକ୍ତିର ତୁଳନା ହୋଇପାରେ ନାହିଁ। ଜ୍ଞାନ ବ୍ରହ୍ମ ବା ସ୍ୱରୂପାବସ୍ଥା–ଭକ୍ତି ସାଧନା ମାତ୍ର।

ଜ୍ଞାନପଥ ଅପେକ୍ଷା ଭକ୍ତିପଥ ଶ୍ରେଷ୍ଠ । ଭକ୍ତିପଥ ସହଜ ଓ ସ୍ୱାଭାବିକ ଏବଂ ଜ୍ଞାନପଥ କଠିନ । ଭକ୍ତିପଥରେ ଜ୍ଞାନ ଓ ଭକ୍ତି ଉଭୟ ଲାଭ କରାଯାଏ । ଜ୍ଞାନର ପ୍ରତିଷ୍ଠାତା ଆଚାର୍ଯ୍ୟ ଶଙ୍କର ମଧ୍ୟ ଭକ୍ତିପଥକୁ ଅବହେଳା କରିନାହାନ୍ତି । ସେ ଗୁରୁଭକ୍ତ; ଗୁରୁଙ୍କ ମହିମା କୀର୍ତ୍ତନ କରି ସେ ବହୁ ସ୍ତୋତ୍ର ରଚନା କରିଯାଇଛନ୍ତି ।

ପୋଥିପଢ଼ା ଜ୍ଞାନୀଙ୍କର ଅଭାବ ନାହିଁ । ଅବିଦ୍ୟା-ମାଳିନ୍ୟ ଦୂର କରିବାକୁ ସେମାନେ କ'ଣ ସମର୍ଥ ? ଜ୍ଞାନ ଅନ୍ତରର ଦୁର୍ଲ୍ଲଭ ବସ୍ତୁ । ତାହା ପାଇବା ପାଇଁ ବହିର୍ଜଗତ୍‌ର କଥା ଭୁଲିଗଲେ ମଧ୍ୟ କ୍ଷତି ନାହିଁ । ଏକାନ୍ତ ଜ୍ଞାନୀ ହେଲେ ଭିତରେ ବିରୋଧ ଜାତ ହୁଏ । ଜ୍ଞାନଲାଭ କରି ଯେଉଁ ସ୍ଥାନରେ ଉପନୀତ ହେବ, ସେଠାରୁ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିହୁଏ । ସେହି ଚରମ ଜ୍ଞାନ କେହି ହେଲେ ପାଆନ୍ତି ନାହିଁ ବୋଲି ବିରୋଧ ଅତିକ୍ରମ କରି ନିର୍ବିରୋଧ ଅବସ୍ଥା ଲାଭ କରିପାରନ୍ତି ନାହିଁ । ସେହି ଚରମ ଜ୍ଞାନ ଲାଭ କଲେ ତୁମ ସହିତ ଜଗତ୍‌ର ସର୍ବବିଧ ସାମଞ୍ଜସ୍ୟସୂତ୍ର ବୁଝିପାରିବ ।

ଆଚାର୍ଯ୍ୟ ଶଙ୍କରଙ୍କ ପରି ଜ୍ଞାନ ଲାଭ କର; କିନ୍ତୁ ତାଙ୍କ ପ୍ରାଣ, ମନର ବଳ ଓ ସାହସଲାଭ ହେଉଛି ଅସଲ କଥା । ଜ୍ଞାନ ଲାଭ କଲାପରେ ଏହି ଦୈବୀଗୁଣଗୁଡ଼ିକ ନିଷ୍ପ୍ରଭ ହୋଇଯାଏ । ତାହାହେଲେ ଜୀବନର କୌଣସି ସାର୍ଥକତା ରହେ ନାହିଁ । ଆଚାର୍ଯ୍ୟ ଶଙ୍କରଙ୍କ ପରି ଜ୍ଞାନୀ ଏବଂ ଗୌରାଙ୍ଗଦେବଙ୍କ ପରି ହୃଦୟବାନ୍ ହେବାକୁ ପଡ଼ିବ ।

## ସବୁଭାବର ଆଧାର

**ଶଙ୍କରାଚାର୍ଯ୍ୟଙ୍କ ଜ୍ଞାନ ଓ ଗୌରାଙ୍ଗଦେବଙ୍କ ଭାବ ସବୁ ଗୁରୁଙ୍କ ନିକଟରେ ଅଛି । ଶ୍ରୀଗୁରୁଦେବଙ୍କ ଠାରେ ଆତ୍ମାହୁତି ଦେଲେ ନିଜ ନିଜ ଭାବ ଅନାୟାସରେ ଫୁଟିଉଠିବ, ଯାହାଙ୍କର ଯାହା ଲକ୍ଷ୍ୟ, ଶ୍ରୀଗୁରୁଦେବଙ୍କ ଠାରେ ଆତ୍ମସମର୍ପଣ ଦ୍ୱାରା ସେ ତାହା ପାଇପାରିବେ । ଏହା ସାର୍ବଭୌମ ଓ ଅତି ମଧୁର ତତ୍ତ୍ୱ ।** କେବଳ ଏହି ଦିଗରେ ପରିଚାଳିତ ହେଲେ ଜଗତ୍‌ରେ ସର୍ବଧର୍ମସମନ୍ୱୟ ହୋଇପାରିବ । ଜ୍ଞାନ-ବିଚାରଦ୍ୱାରା କିଂବା ବ୍ରହ୍ମବିଦ୍‌ଗୁରୁଙ୍କ ସେବା ଦ୍ୱାରା କେବଳ ସାକ୍ଷୀଚେତା ନିର୍ଗୁଣପୁରୁଷଙ୍କ ଅନୁଭୂତି ଲାଭ ହିଁ ମାନବର କାମ୍ୟ । ଶ୍ରୀଗୁରୁଦେବଙ୍କୁ ସୁଖ ପାଇପାରିଲେ ସର୍ବେନ୍ଦ୍ରିୟ ତର୍ପଣ ହେବ ।

ଶଙ୍କରାଚାର୍ଯ୍ୟଙ୍କ ମତ ଉଦାର; କିନ୍ତୁ ପଥ ସଂକୀର୍ଣ୍ଣ। ତାଙ୍କ ସାଧନ-ଜଗତ୍‌ରେ ବ୍ରାହ୍ମଣ ବ୍ୟତୀତ ବ୍ରହ୍ମଜ୍ଞାନର ଅଧିକାର ଅନ୍ୟ କାହାରି ନାହିଁ। ଚୈତନ୍ୟଦେବଙ୍କ ପଥ ଉଦାର; କିନ୍ତୁ ମତ ସଂକୀର୍ଣ୍ଣ। ସ୍ୱଧର୍ମନିଷ୍ଠ ହେଲେ ଅତି ନିମ୍ନାଧିକାରୀଙ୍କ ଠାରୁ ଆରମ୍ଭ କରି ସାକ୍ଷୀଭାବ ବା ଗୋପୀଭାବର ଅଧିକାରୀପର୍ଯ୍ୟନ୍ତ ସମସ୍ତଙ୍କ ପଥ ସେ ନିର୍ଦ୍ଦେଶ କରିଦେଇଛନ୍ତି, କାହାକୁ ଛାଡ଼ି ନାହାନ୍ତି; କିନ୍ତୁ ତାଙ୍କ ମତ ସଂକୀର୍ଣ୍ଣ। କେବଳ ଶ୍ରୀକୃଷ୍ଣଙ୍କ ଭଜନ ବ୍ୟତୀତ ଅନ୍ୟ ମାର୍ଗ ସେ ଦେଖାଇନାହାନ୍ତି। ଏକମାତ୍ର ହରିନାମକୁ ଛାଡ଼ିଦେଲେ ଜୀବପକ୍ଷରେ ଅନ୍ୟ ଉପାୟ ନାହିଁ। ଏଠାରେ ହରି ଅର୍ଥରେ ଭଗବାନଙ୍କୁ ଗ୍ରହଣ କଲେ ଉଦାରଭାବ ହେବ। ଖ୍ରୀଷ୍ଟିୟାନ୍‌ମାନେ ଯୀଶୁ ନାମ ଜପ କରନ୍ତୁ, ମୁସଲମାନ୍‌ମାନେ ଆଲ୍ଲାଙ୍କ ନାମ ଗ୍ରହଣ କରନ୍ତୁ—ଭଗବାନଙ୍କୁ ଯେ ଯେଉଁ ରୂପରେ ଲୋଡ଼ନ୍ତି, ସେ ସେହିଭାବରେ ଭାବନା କରନ୍ତୁ। ଯୁଗାବତାର ଚୈତନ୍ୟଦେବଙ୍କ ଠାରୁ ହିଁ ନାମମାହାତ୍ମ୍ୟ ପ୍ରଚାର ହୋଇଅଛି। ଖ୍ରୀଷ୍ଟିୟାନ୍, ମୁସଲମାନ୍, ବ୍ରାହ୍ମ—ସମସ୍ତେ ନାମ ଗାନ କରିବା ବର୍ତ୍ତମାନ ଦେଖାଗଲାଣି।

ଭକ୍ତି ପ୍ରତିଷ୍ଠିତ ହେବା ପର୍ଯ୍ୟନ୍ତ ଜ୍ଞାନର ପ୍ରୟୋଜନ। ପୁସ୍ତକ ମୁଦ୍ରିତ ହେବାପରେ ପାଣ୍ଡୁଲିପିର ଆଉ ଆବଶ୍ୟକତା ରହେ ନାହିଁ। ଭକ୍ତି-ପ୍ରତିଷ୍ଠା ପର୍ଯ୍ୟନ୍ତ ଜ୍ଞାନ ଆବଶ୍ୟକ।

## ଜ୍ଞାନ-ଭକ୍ତିସାଧନ

ଦୁଃଖର କାରଣ ଦୂର କରିବାକୁ ହେଲେ ଦୁଇଟି ମୂଳ କଥା ସ୍ମରଣ ରଖିବାକୁ ହେବ।

**(୧) ବ୍ରହ୍ମଭାବ**—ଏହା ଜ୍ଞାନୀଙ୍କର ଭାବ। ମୁଁ ସବୁ କରେ, ମୋତେ ଛାଡ଼ି ଜଗତ୍‌ରେ ଆଉ କିଛି ନାହିଁ; ତେଣୁ ମୋର ଦୁଃଖ, ଅଶାନ୍ତି, ପାପ, ପୁଣ୍ୟ କିଛି ନାହିଁ। ମୁଁ ନିଶ୍ଚିତ, ମୁଁ ମହାନ୍, ମୁଁ ଆଉ କାହାକୁ ବା ହିଂସା ଦ୍ୱେଷ କରିବି ?

**(୨) ଭକ୍ତଙ୍କର ଭାବ**—ସବୁ କଥା ଭଗବାନ୍ କରନ୍ତି, ମୁଁ କିଛି କରୁନାହିଁ। ତାଙ୍କ ଇଚ୍ଛାରେ ଚାଳିତ ହୋଇ ଆଖିର ପତାଟିପର୍ଯ୍ୟନ୍ତ ପଡ଼େ। ଯାହାଙ୍କ ଦ୍ୱାରା ଭଗବାନ୍ ଯେଉଁ କାର୍ଯ୍ୟ କରାଇନିଅନ୍ତି, ସେ ଯୁକ୍ତି କାରଣ ଧରି ଚାଲିଲେ ମଧ୍ୟ ତାହା କରିଥାନ୍ତି। ସବୁଠାରୁ ବଡ଼ କଥା ହେଲା, ତାଙ୍କ ଉପରେ ନିର୍ଭରତା। ଶୃଙ୍ଖଳା

ପତ୍ରପରି ରହିଥିବା ଭଲ; କାରଣ, ଯେତେବେଳେ ଯେଉଁଆଡ଼େ ପବନ ବହିବ, ତାହା ସେହିଆଡ଼କୁ ଉଡ଼ିଯିବ । ପୁଣି ସେ ଯେତେବେଳେ ସବୁ କଥା କରନ୍ତି, ମୋର ଆଉ କେଉଁ କଥାରେ ବା ନିରାନନ୍ଦ ? ଦୁଃଖ, ଅଶାନ୍ତି ପାଇଁ ମୋର ଆଉ କି କାରଣ ରହିପାରେ ? ସବୁ ତ ତାଙ୍କ ଇଚ୍ଛାରେ ସଂଘଟିତ ହେଉଅଛି ।

ବ୍ୟଷ୍ଟିମନ ଅହଂତ୍ୱର ସ୍ୱାମୀ, ବୁଦ୍ଧି ତାର ଦୁର୍ମୁଖା ସ୍ତ୍ରୀ । ବୁଦ୍ଧି ମନକୁ ଚଳାଏ । ମନ ବୁଦ୍ଧିର ଇଚ୍ଛାନୁଯାୟୀ ଚଳେ । ଏହାର ବିପର୍ଯ୍ୟୟ ସଂଘଟନ କରିବା ଆବଶ୍ୟକ । ତାହା ଦୁଇ ପ୍ରକାରେ ସମ୍ଭବ । ପ୍ରଥମେ ମନଦ୍ୱାରା ବୁଦ୍ଧିକୁ ଆୟତ୍ତ କରିବା ଦ୍ୱାରା; ପୁରୁଷକାର ସାହାଯ୍ୟରେ ତାହା ହୋଇପାରେ—ଏହା ଜ୍ଞାନମାର୍ଗ । ଦ୍ୱିତୀୟ ହେଲା ବୁଦ୍ଧିକୁ ଆୟତ କରିବା ପାଇଁ ତାଙ୍କଠାରେ ପ୍ରାର୍ଥନା କରିବାକୁ ହେବ; ତାଙ୍କ ଉପରେ ନିର୍ଭର କରିବାକୁ ପଡ଼ିବ—ଏହା ଭକ୍ତିପଥ ।

ଜ୍ଞାନୀ ନ ହେଲେ କେହି ସତ୍ୟ-ଦର୍ଶନ ଭାବ ସହ୍ୟ କରିପାରିବେ ନାହିଁ । ସୁତରାଂ ଦୁଇ ଚାରିଗୋଟି ବିଭୂତି ଦେଖିବା ପରିବର୍ତ୍ତରେ ଜ୍ଞାନ-ସଂସ୍କାର-ଲାଭର ମୂଲ୍ୟ ବହୁ ଅଧିକ. ତାହାର ଶକ୍ତି ମଧ ଖୁବ୍ ଅଧିକ । ଜଣେ ଗୃହସ୍ଥ ଅତି ମୂଲ୍ୟବାନ୍ ବିଭୂତି ଗୋଟିଏ ଦୁଇଟି ଲାଭ କରିପାରନ୍ତି; ତଥାପି ସେ ଜ୍ଞାନୀ ଓ ତ୍ୟାଗୀ ସାଧକଙ୍କର ବହୁ ନିମ୍ନରେ ।

## ଜ୍ଞାନର ସ୍ୱରୂପ

ଜଣେ ଭକ୍ତ ଏକ ଅନନ୍ତସଚ୍ଚିଦାନନ୍ଦ-ସାଗର କଳ୍ପନା କରିଥିଲେ । ନିଜକୁ ସେହି ସଚ୍ଚିଦାନନ୍ଦ-ସାଗରଭିତରେ ମୀନ ବୋଲି ଭାବିଲେ । ଏହି ଉପଲବ୍ଧି ପରେ ସେ ଯେତେବେଳେ ବାହ୍ୟ ଚୈତନ୍ୟ ଲାଭ କଲେ, ସେତେବେଳେ କହିଲେ—ମୁଁ ଦେଖିଛି ଯେ ମୁଁ ଗୋଟିଏ ମାଛ । ଜ୍ଞାନୀ ଆସି ତା'ର ମୀମାଂସା କରି ଦେଇ କହିଲେ, ''ତୁମେ ମାଛ, ସତ; କିନ୍ତୁ ସେ ମାଛ ମିଥ୍ୟା, ସାଗର ମଧ ମିଥ୍ୟା ।'' ସଚ୍ଚିଦାନନ୍ଦଙ୍କୁ ସାଗର ରୂପରେ ଦେଖିଛନ୍ତି ବୋଲି ଭକ୍ତ ନିଜକୁ ମୀନରୂପରେ ଉପଲବ୍ଧ କରିଛନ୍ତି, ଏହା ସବିକଳ୍ପ ଭାବ । ସେ ଯଦି ଉପଲବ୍ଧି କରନ୍ତେ ଯେ ସେ ନିଜେ ସଚ୍ଚିଦାନନ୍ଦ-ସାଗର, ତାହା ହେଲେ ତାଙ୍କର ନିର୍ବିକଳ୍ପ ସମାଧିଲାଭ ହୋଇଥାନ୍ତା—ଏହା ହିଁ ଜ୍ଞାନୀଙ୍କ ନିର୍ବାଣମୁକ୍ତି ।

ନିର୍ବିକଳ୍ପ ସମାଧି ପରେ ଜ୍ଞାନୀ ପୁଣି ଦେହସ୍ଥ ହେଲେ ଭକ୍ତଭାବ ଅଥବା ପ୍ରେମଭାବ ଗ୍ରହଣ କରନ୍ତି । ସାଧନ-ଅବସ୍ଥାରେ ଯେଉଁ ପଥରେ ତାଙ୍କର ଜ୍ଞାନ

ହୋଇଛି, ସେହି ଭାବ ପ୍ରବଳ ହୋଇ ରହେ। ଯେଉଁମାନଙ୍କର ସାଂଖ୍ୟଜ୍ଞାନ ପ୍ରବଳ, ସେମାନେ କେତେକାଂଶରେ ଭକ୍ତିଭାବ ଗ୍ରହଣ କରନ୍ତି। ଯେଉଁମାନଙ୍କର ଜ୍ଞାନ ପକ୍ୱ ନୁହେଁ, ସେମାନେ କେତେକ ପରିମାଣରେ ଦାସ୍ୟଭାବ ଅବଲମ୍ବନ କରନ୍ତି। ଯେଉଁମାନଙ୍କର ବେଦାନ୍ତଜ୍ଞାନ ପ୍ରବଳ, ସେମାନେ ପ୍ରେମିକ ଭାବରେ ଜଗତ୍‌କୁ ଆଲିଙ୍ଗନ କରି ଧରନ୍ତି। ସେମାନେ କେତେବେଳେ ସଖ୍ୟଭାବରେ, କେତେବେଳେ ବାତ୍ସଲ୍ୟ ଭାବରେ, ଆଉ କେତେବେଳେ ବା ମଧୁର ଭାବରେ ଆପଣା ସହିତ ଅଭେଦ ଜ୍ଞାନରେ ଜଗତ୍‌କୁ ଆଲିଙ୍ଗନ କରନ୍ତି।

ପୁରୁଷ ଅଖଣ୍ଡ ଜ୍ଞାନ ସ୍ୱରୂପ; କିନ୍ତୁ ମାୟା ବା ଅଜ୍ଞାନ ଦ୍ୱାରା ଆବୃତ ହେବାରୁ କ୍ରମେ ଖଣ୍ଡଜ୍ଞାନର ଉଦ୍ଭବ ହୋଇଅଛି। ପ୍ରକୃତି ଅନନ୍ତରୂପରେ ବିକଶିତ। ଅଖଣ୍ଡ ଜ୍ଞାନ ମଧ ଅନନ୍ତ ଘଟରେ ଅନନ୍ତ ଖଣ୍ଡଜ୍ଞାନରେ ନିଜକୁ ଖଣ୍ଡିତ ଓ ଆବୃତ ଜ୍ଞାନ କରନ୍ତି। ଏକମାତ୍ର ଏହି ମୋହ ଆବରଣ ଘୁଞ୍ଚିଗଲେ ଅଖଣ୍ଡଜ୍ଞାନ-ସତ୍ତା ମାତ୍ର ବିଦ୍ୟମାନ ରହେ।

ଅଖଣ୍ଡଜ୍ଞାନକୁ ଆଂଶିକ ଭାବ଼ରେ ଅଜ୍ଞାନ ଆବୃତ କଲେ ସେହି ଅଜ୍ଞାନର ଚତୁର୍ଦ୍ଦିଗରେ କେବଳ ମାତ୍ର ଜ୍ଞାନ ରହେ ଅର୍ଥାତ୍ ସେତେବେଳେ ଅଜ୍ଞାନକୁ ପ୍ରକାଶ କଲେ ଅଖଣ୍ଡଜ୍ଞାନ।

ନିଜକୁ ସତ୍ ରୂପରେ ଖେଳାଇଦିଅ; ତଥାପି 'ମୁଁ' ବା 'ଅହଂ' ବୋଧ ନଷ୍ଟ ହେବ ନାହିଁ। ସେତେବେଳେ ସେହି ଜ୍ଞାନ-କେନ୍ଦ୍ରରେ 'ମୁ' ଅଛି—ଏହି ଅବବୋଧ ସତ୍ତା ଯେଉଁଠାରେ ବିଦ୍ୟମାନ, ସେଠାରେ ଶ୍ରୀଗୁରୁବ୍ରହ୍ମଙ୍କୁ ଆତ୍ମସ୍ୱରୂପ ଜ୍ଞାନରେ, ସାକ୍ଷୀ ଭାବରେ ପ୍ରତିଷ୍ଠା କର।

ଯେଉଁ ଜ୍ଞାନରେ 'ମୁଁ କିଏ', 'ସତ୍ୟବସ୍ତୁ କାହାକୁ କହନ୍ତି', 'ଯଦି ସତ୍ୟବସ୍ତୁ ବୋଲି କିଛି ଥାଏ, ତେବେ ତାହାର ସ୍ୱରୂପ କଅଣ' ଆଦି ନିଗୂଢ଼ ବିଷୟ ଜାଣି ହୁଏ, ତାହାକୁ ଆତ୍ମଜ୍ଞାନ କୁହାଯାଏ। ତେଣୁ ଆତ୍ମଜ୍ଞାନ ଲାଭ କରିବା ହିଁ ଆମର ପ୍ରଧାନ କର୍ତ୍ତବ୍ୟ। ଯେ ଆତ୍ମଜ୍ଞାନ ଲାଭ କରିଛନ୍ତି ଓ ଶିଷ୍ୟକୁ ଆତ୍ମଜ୍ଞାନ ପ୍ରଦାନ କରିବାକୁ ସମର୍ଥ, ତାଙ୍କୁ ସଦ୍‌ଗୁରୁ କୁହାଯାଏ।



# ଜୀବେ ଦୟା

## ସର୍ବ ସଂପ୍ରଦାୟଙ୍କ ଧର୍ମ

'ଜୀବେ ଦୟା' ଧର୍ମର ଅସ୍ଥିମଜ୍ଜାରେ ଜଡ଼ିତ। ପୃଥିବୀର ଯାବତୀୟ ଧର୍ମସଂପ୍ରଦାୟ ମଧ୍ୟରେ ଏ କଥାଟି ଦେଖିବାକୁ ମିଳେ; କିନ୍ତୁ ସଂପ୍ରଦାୟ ଭେଦରେ ଏହା ଭିନ୍ନ ଭିନ୍ନ ଭାବରେ ପ୍ରଯୁକ୍ତ ହୋଇଥାଏ। ଯେଉଁ ସଂପ୍ରଦାୟ ଲୋକେ ଏହି କଥାର ମର୍ମ ଭୁଲିଯାଇଛନ୍ତି, ସେମାନେ ଆତ୍ମପ୍ରତାରକ ମାତ୍ର। ପୁଣି ଯେଉଁବ୍ୟକ୍ତି ସାଧନ-ଭଜନ ଭୁଲି କେବଳ ଏହି ବାକ୍ୟାନୁସାରେ କାର୍ଯ୍ୟ କରିବା ନିମିତ୍ତ ଜୀବନ ଉତ୍ସର୍ଗ କରିଥାନ୍ତି, ମୁକ୍ତ କଣ୍ଠରେ ସମସ୍ତେ ତାଙ୍କୁ ମହାପୁରୁଷ ବୋଲି ଆଦର କରିବେ। ଭାରତବର୍ଷରେ ଏହି ବାକ୍ୟର ଯେପରି ପରିଣତି ଓ ପରିପୁଷ୍ଟି ହୋଇଅଛି ଅନ୍ୟତ୍ର ସେପରି ଦୃଷ୍ଟ ହୁଏ ନାହିଁ। ତେବେ ଏହା ଯେ ଅନ୍ୟ ଧର୍ମସଂପ୍ରଦାୟରେ ପ୍ରଚଳିତ ନାହିଁ, ତାହା ନୁହେଁ। ମହାତ୍ମା ଯୀଶୁଖ୍ରୀଷ୍ଟ କ୍ରୁଶରେ ବିଦ୍ଧ ହୋଇ ମଧ୍ୟ ଅଜ୍ଞାନାନ୍ଧ ଜୀବଙ୍କ ନିମିତ୍ତି ପରମପିତା ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିଥିଲେ। ମାଧାଇ କର୍ତ୍ତୃକ ନିତ୍ୟାନନ୍ଦ ମହାପ୍ରଭୁ ପ୍ରହୃତ ହୋଇ ମଧ୍ୟ ତାହାର ମଙ୍ଗଳ ନିମିତ୍ତି ଚୈତନ୍ୟଦେବଙ୍କୁ ଅନୁରୋଧ କରିଥିଲେ। ମହାପୁରୁଷ ହରିଦାସ କାଜୀଙ୍କ ଦୁର୍ବୃତ୍ତ ଭୃତ୍ୟମାନଙ୍କ କର୍ତ୍ତୃକ ନିଦାରୁଣ ଭାବରେ ବେତ୍ରାହତ ହୋଇ ମଧ୍ୟ ସେମାନଙ୍କ ମଙ୍ଗଳ ପାଇଁ ଇଷ୍ଟଦେବତାଙ୍କ ନିକଟରେ ପ୍ରାର୍ଥନା କରିଥିଲେ।

ଭାରତୀୟ ହିନ୍ଦୁମାନେ ଯାଗ, ଯଜ୍ଞ, ପୂଜା, ଅର୍ଚ୍ଚନା, ଶ୍ରାଦ୍ଧ, ବିବାହାଦିରେ ଦୁଃଖୀ-ଦରିଦ୍ରଙ୍କୁ ଅନ୍ନବସ୍ତ୍ର ଦାନ କରନ୍ତି। ବୁଦ୍ଧଦେବ ଅହିଂସା ପରମ ଧର୍ମ ବୋଲି ଉକ୍ତ କଥାର ପରିପୁଷ୍ଟି କରିଛନ୍ତି; କାରଣ ହିଂସାର ବିପରୀତ ବୃତ୍ତି ଦୟା। ସୁତରାଂ ହିଂସା ନ କଲେ ପ୍ରକାରାନ୍ତରେ ଦୟା କରାଯାଏ। ଏହି ମହାତ୍ମା ପଶୁଠାରୁ କୀଟ-ପତଙ୍ଗପର୍ଯ୍ୟନ୍ତ ସମସ୍ତଙ୍କୁ ଦୟା କରିବାକୁ ଶିକ୍ଷା ଦେଇଥିଲେ। ଜୀବ-ଦୁଃଖରେ ପ୍ରକୃତରେ ତାଙ୍କ ପ୍ରାଣ କାନ୍ଦୁଥିଲା। ମହାରାଜା ଅଶୋକଙ୍କ ଶିଳାଲିପି ଓ ତାମ୍ରଶାସନ

ପାଠ କଲେ ଭୂରି ଭୂରି ପ୍ରମାଣ ମିଳିବ। ଜୈନସଂପ୍ରଦାୟ ଜୀବ-ଦୁଃଖ ଦୂର କରିବାରେ ବଦ୍ଧପରିକର। ସର୍ବଶେଷରେ ବଙ୍ଗଦେଶର ଗୌରବରବି ଶ୍ରୀମନ୍ ମହାପ୍ରଭୁ ଚୈତନ୍ୟଦେବ ଧର୍ମର କୁଟିଳତା ଓ ଜଟିଳତା ଉଚ୍ଛେଦ କରି 'ନାମେ ରୁଚି' ଓ 'ଜୀବେ ଦୟା' ଏହି ମହାନ୍ ଶିକ୍ଷା ପ୍ରଦାନ କଲେ। ବହୁ ପୁରାକାଳରୁ ହିନ୍ଦୁମାନେ ଏହାର ସଦ୍‌ବ୍ୟବହାର କରିଆସୁଛନ୍ତି। ପୃଥିବୀର ସବୁ ଧର୍ମସଂପ୍ରଦାୟରେ ଅଳ୍ପାଧିକ ପରିମାଣରେ ଏହାର ବ୍ୟବହାର ଦେଖାଯାଏ। ସୁତରାଂ, ଏହା ସର୍ବବାଦୀସମ୍ମତ ବାକ୍ୟ—'ଜୀବେ ଦୟା' ସାର୍ବଭୌମ ଧର୍ମ।

## ଆଚରଣବେଳେ ସାବଧାନତା

'ଜୀବେ ଦୟା' ସାର୍ବଭୌମ ଧର୍ମ ହେଲେ ସୁଦ୍ଧା ଏହାର ବ୍ୟବହାର ଦ୍ୱାରା ଧାର୍ମିକମାନଙ୍କର ଭବିଷ୍ୟତ ଅନ୍ଧକାର ହୋଇଯାଇପାରେ। ଜୀବକୁ ଦୟା କରିବାକୁ ଯାଇ ଅହଂକାର ଅନଳରେ ଦଗ୍ଧ ନ ହେଲେ ରକ୍ଷା। ପରୋପକାର କରିବି, ପରଦୁଃଖ ଦୂର କରିବି, ଏହା ଭାବିଲେ ଅହଂକାର ସୃଷ୍ଟି ହୁଏ। ମହତ୍ ନ ହେଲେ କେହି ପରର ଉପକାର କରିପାରନ୍ତି ନାହିଁ; ପୁଣି ମହତ୍ କେବେ ମହତ୍‌ଙ୍କର ଉପକାର କରିପାରନ୍ତି ନାହିଁ। ଗରିବ, ଦୁଃଖୀଙ୍କୁ ଦୟା ମାତ୍ର କରାଯାଏ; ସୁତରାଂ ଜୀବକୁ ଦୟା କରିବାକୁ ଗଲେ ନିଜର ମହତ୍ତ୍ୱ ଓ ଜୀବର କ୍ଷୁଦ୍ରତ୍ୱ ମନେ ହେବା ଆଶଙ୍କା ଅଛି। ଯେଉଁ ବୈଷ୍ଣବସଂପ୍ରଦାୟର ଏହି ବାକ୍ୟ, ତାର ପ୍ରଧାନ ଶିକ୍ଷା—

''ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁତା।''

ନିଜକୁ ତୃଣଠାରୁ ଲଘୁଜ୍ଞାନ କରିବାକୁ ହେବ। ତାହାହେଲେ ଉକ୍ତ ବାକ୍ୟ ସହିତ ବିରୋଧ ଘଟେ। ଯେ ନିଜକୁ ତୃଣଠାରୁ ଛୋଟ ମନେ କରନ୍ତି, ସେ ଅପରକୁ ଦୟା କରିବେ ବା କିପରି? ମୁଷ୍ଟିଭିକ୍ଷୁକ ରାଜରାଜେଶ୍ୱରଙ୍କୁ କିପରି ବା ଦୟା କରିବ?—ବଡ଼ ହାସ୍ୟଜନକ କଥା; କିନ୍ତୁ ଏହାର ସଦର୍ଥ ଅଛି। ଜୀବକୁ ଦୟା କର ଅର୍ଥ ଜୀବର ସେବା କର। ଦୟାର ଅର୍ଥ ସେବା ଭିନ୍ନ ଆଉ କିଛି ନୁହେଁ। ତୃଣ ଅପେକ୍ଷା ଲଘୁ ହେଲେ ମଧ୍ୟ ଜୀବର ସେବା କରିବାରେ ବାଧା ନାହିଁ। ମହାରାଜାଙ୍କ ବେତନଭୋଗୀ ଭୃତ୍ୟ ମହାରାଜାଙ୍କ ସେବା କରେ। ଦୟା କଥାଟି ଅହଂକାରପୂର୍ଣ୍ଣ। ପୁଣି ସେବା କଥାଟି ପରମ ସାତ୍ତ୍ୱିକ ଭାବରେ ପରିପୂର୍ଣ୍ଣ, ପରମ ପବିତ୍ରତା ଅନୁଲିପ୍ତ। ତାହା ମନେ ହେଲା ମାତ୍ରେ ହୃଦୟ ସାତ୍ତ୍ୱିକ ଭାବରେ ପୂର୍ଣ୍ଣ

ହୋଇଯାଏ । ସୁତରାଂ ଜନସେବାରେ ଅହଂକାର-ଅଭିମାନ ଚୂର୍ଣ୍ଣ ହୋଇ ଚିତ୍ତ ଶୁଦ୍ଧ ହୁଏ । ଦୟାରେ ଅଂହକାର ବୃଦ୍ଧି ପାଏ ।

''ବିସ୍ତାର ସର୍ବଭୂତସ୍ୟ ବିଷ୍ଣୋର୍ବିଶ୍ୱମିଦଂ ଜଗତ୍''—ବିଶ୍ୱଜଗତ୍ ଓ ସର୍ବଭୂତ ବିଷ୍ଣୁଙ୍କ ବିସ୍ତାର ମାତ୍ର । ତେବେ ତୁମେ ବ୍ୟଷ୍ଟିଜୀବକୁ ଦୟା କରି ସମଷ୍ଟି ଭଗବାନ୍‌ଙ୍କୁ ଦୟା କରିବାକୁ ଇଚ୍ଛା କରୁନାହଁ କି ? କଥାଟା କିନ୍ତୁ ଶ୍ରୁତିକଟୁ; ମାତ୍ର ସେବା କହିଲେ କୌଣସି ଗୋଳମାଳ ଘଟେ ନାହିଁ । ଜଗତ୍‌ର ସେବା କରି ଜଗତ୍‌ରୂପ ଜନାର୍ଦ୍ଦନଙ୍କର ସେବା କରିଯାଅ । ଯେତେ କ୍ଷୁଦ୍ର ହେଲେ ମଧ୍ୟ ସେବା-ଅଧିକାର ସମସ୍ତଙ୍କର ଅଛି । ଅନ୍ୟ କୌଣସି ଧର୍ମଲାଭ ଯଦି କରି ନପାରିଲ, ସେବାଧର୍ମରେ ଆତ୍ମନିୟୋଗ କର । ଭକ୍ତିରେ ବିଶ୍ୱସେବା କରି, ସମଗ୍ର ବିଶ୍ୱକୁ ପ୍ରେମ କରି ବିଶ୍ୱର କାରଣ ସହିତ ମିଳିମିଶି ଜୀବନର ମୁକ୍ତିଲାଭ କରିପାରିବ ।

## ନିଷ୍କାମ ସେବା

ଜୀବସେବା ଦ୍ୱାରା ଭଗବାନ୍‌ଙ୍କ ସେବା ହୁଏ । ସେବା-ରୂପ ନିଷ୍କାମ କର୍ମାନୁଷ୍ଠାନରେ ଚିତ୍ତ ଶୁଦ୍ଧ ହୁଏ, ମନ ପବିତ୍ର ଓ ନିର୍ମଳ ହୁଏ; ଜଗନ୍ମୟ ବିଭୁଙ୍କ ବିକାଶ ଦେଖି ସେବକ ଧନ୍ୟ ହୁଅନ୍ତି । କଳିର ଅନ୍ନଗତପ୍ରାଣ ଜୀବପକ୍ଷରେ ସେବା ଧର୍ମ ସହଜ ବୋଲି ସ୍ୱାମୀ ବିବେକାନନ୍ଦ ସାଧନ-ଭଜନ ପରିବର୍ତ୍ତରେ ନାରାୟଣ ଜ୍ଞାନରେ ଜୀବସେବା କରିବାକୁ ତାଙ୍କ ପ୍ରତିଷ୍ଠିତ ମଠରେ ପ୍ରବର୍ତ୍ତନ କରାଇଥିଲେ । ଆଜି ସେହି ସେବାଧର୍ମ ଜଗତ୍‌ରେ ପ୍ରତିଷ୍ଠା ଲାଭ କରିଅଛି । ଏହି ସେବାଧର୍ମ ହିଁ ମାନବର ସହଜଧର୍ମ । ଧର୍ମଶବ୍ଦ ସ୍ୱଭାବର ଅନୁକୂଳ କର୍ମର ଅନୁଷ୍ଠାନକୁ ବୁଝାଇଥାଏ । ଯେଉଁ କର୍ମ ଯାହାଙ୍କର ସ୍ୱଭାବର ଯେତେ ଅନୁକୂଳ, ସେ ତାହା ସେତେ ସୁଖକର ମଣନ୍ତି ଏବଂ ତାହା ଆଚରଣ କରିବାକୁ ତେତେ ପ୍ରୟାସୀ ହୁଅନ୍ତି । ଆମେମାନେ ନାନା ଭାବରେ ଏହି ସେବାଧର୍ମକୁ ଆଚରଣ କରିପାରିବା । ଜଗତର ମଙ୍ଗଳନିମିତ୍ତ ଭଗବାନ୍‌ଙ୍କ ନିକଟରେ କାୟ-ମନୋ-ବାକ୍ୟରେ ପ୍ରାର୍ଥନା କରିବା ଏହି ସେବାର ଅନ୍ତର୍ଗତ । ପରଦୁଃଖରେ ପ୍ରାଣ ଆକୁଳ ହେଲେ ସେବାର ଅନୁଷ୍ଠାନ କରିବାକୁ ହୁଏ । ଭାବ ଐକାନ୍ତିକ ହେଲେ କୌଣସି କାର୍ଯ୍ୟ ଅର୍ଥ ଅଭାବରୁ ବା ଲୋକ ଅଭାବହେତୁ ପଡ଼ିରହେ ନାହିଁ ।

ସେବାର ପ୍ରଥମ ସୋପାନ ଗୃହସ୍ଥମାନଙ୍କର ଘରଭିତରେ । ଗୃହିଣୀ ଆହାର-ନିଦ୍ରା ତ୍ୟାଗ କରି ନିବିଷ୍ଟ ଚିତ୍ତରେ ସନ୍ତାନ-ସନ୍ତତିଙ୍କ ସେବାରେ ନିରତ ଥାଆନ୍ତି ।

ପିତା ସେବାର ପୂର୍ଣ୍ଣ ବିଗ୍ରହ । ବୟସ୍କ ପୁତ୍ର ବୃଦ୍ଧ ପିତାମାତାଙ୍କ ସେବାରେ ନିଯୁକ୍ତ ରହନ୍ତି । ଗୃହସଂସାର ସେବା ଧର୍ମ ସାଧନର ପ୍ରଧାନ ସାଧନ । ଅଜ୍ଞାନଙ୍କୁ ଜ୍ଞାନଦାନ, ନିରକ୍ଷରଙ୍କୁ ବିଦ୍ୟାଦାନ ସେବାର ଅନ୍ତର୍ଗତ । ଏହା ଗୃହସ୍ଥମାନଙ୍କର ଅବଶ୍ୟପାଳନୀୟ କର୍ତ୍ତବ୍ୟ । ଏହା ପ୍ରତିବେଶୀଙ୍କ ଭିତରେ ଏବଂ କ୍ରମେ କ୍ରମେ ଦେଶସେବା ରୂପରେ ବିସ୍ତୃତ ହୁଏ । ସ୍ୱାମୀ, ସ୍ତ୍ରୀ ଉଭୟଙ୍କୁ ପ୍ରତିବେଶୀଙ୍କ ରୋଗଶଯ୍ୟାରେ ସେବାନିରତ ଦେଖିବା କି ସୁନ୍ଦର ଦୃଶ୍ୟ! ଏ ଦୃଶ୍ୟ ଚିନ୍ତା କଲା ମାତ୍ରେ ପ୍ରାଣ ଆନନ୍ଦରେ ନାଚି ଉଠେ । ଏହି ସ୍ୱଭାବଜାତ ଧର୍ମ ଜାତିଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ସେବାରେ ବ୍ରତୀ କରାଇଥାଏ । ସେବା ସାହାଯ୍ୟରେ ନିଷ୍କାମଜାତ କର୍ମ-ଆଚରଣ ଶିକ୍ଷା କରାଯାଇଥାଏ ।

## ଜ୍ଞାନୀମାନେ ପ୍ରକୃତ ସେବକ

ଜ୍ଞାନୀମାନେ ଜଗତ୍‌ର ପ୍ରକୃତ ସେବକ । ସେମାନେ କୌଣସିଥିରେ ଆବଦ୍ଧ ନୁହନ୍ତି ବୋଲି ସଂସ୍କାର ଓ ବଳ ତାଙ୍କର ଅଛି । ତେଣୁ ଜ୍ଞାନୀମାନେ ଅକୁଣ୍ଠିତ ଭାବରେ ସମସ୍ତଙ୍କର ସେବା କରିପାରନ୍ତି । ଜ୍ଞାନ ଲାଭ କରିଛନ୍ତି ବୋଲି କେତେବେଳେ ବୁଝାଯିବ ?—ଯେତେବେଳେ ଅନ୍ୟର ଦୁଃଖ-ଦୈନ୍ୟରେ ବିଚଳିତ ନ ହୋଇ ସେ ରହିପାରିବେ ନାହିଁ । ଜଗତ୍‌ର ଅବିଦ୍ୟା ଦୂର କରିବା ପାଇଁ ଆଚାର୍ଯ୍ୟ ଶଙ୍କରଙ୍କ ପରି ଯେତେବେଳେ ତାଙ୍କ ପ୍ରାଣରେ ଆକୁଳତା ଜାତ ହେବ, ସେତେବେଳେ ଶଙ୍କରଙ୍କ ଜ୍ଞାନ ଲାଭ ହୋଇଛି ବୋଲି ବୁଝାଯିବ ।

ଗୁରୁସେବା, ସାଧୁସଙ୍ଗ ଓ ଶାସ୍ତ୍ରପାଠ ଏହି ତିନିଗୋଟି ଅମୂଲ୍ୟ ସମ୍ପଦ ମନୁଷ୍ୟକୁ ଶ୍ରେୟଃପଥରେ ଉନ୍ନୀତ କରେ । ତନ୍ମଧ୍ୟରେ ଗୁରୁସେବା ସର୍ବଶ୍ରେଷ୍ଠ; କାରଣ, କେବଳ ମାତ୍ର ସଦ୍‌ଗୁରୁଙ୍କ ସେବାରେ ସାଧୁସଙ୍ଗ ଓ ଶାସ୍ତ୍ରପାଠର ଫଳ ଲାଭ ହୋଇଥାଏ । ଶ୍ରୀଗୁରୁଦେବ ଶ୍ରେଷ୍ଠ ସାଧୁ । ତେଣୁ ତାଙ୍କ ସେବା କଲେ ସାଧୁସଙ୍ଗ ହୁଏ । ତାଙ୍କ ଶ୍ରୀମୁଖନିଃସୃତ ବାଣୀ ଶାସ୍ତ୍ରବାଣୀ ଠାରୁ ଅଧିକ ମୂଲ୍ୟବାନ୍ । ଏଥିପାଇଁ ଆଦର୍ଶ ସେବକମାନେ ଶ୍ରୀଗୁରୁଦେବଙ୍କ ସେବାରେ ନିୟତ ନିଯୁକ୍ତ ଥାଆନ୍ତି ।

ସେବକ ହେବା ପିଲାଖେଳ ନୁହେଁ । ଏ ଜଗତ୍‌ରେ ସେବକଙ୍କର ଆଦର୍ଶ ଏକମାତ୍ର ଭଗବାନ୍; ସୁତରାଂ, ସେବକତ୍ୱ ଲାଭ କରିବାକୁ ହେଲେ ମାନ, ଅପମାନ, ହିଂସା-ଦ୍ୱେଷ, ଆତ୍ମୀୟ-ସ୍ୱଜନ, ଏପରି କି ଅହଂତ୍ୱ ପର୍ଯ୍ୟନ୍ତ ଭୁଲି ପରାର୍ଥରେ

ଜୀବନ ଉତ୍ସର୍ଗ କରିବାକୁ ହେବ। ଜୀବସେବା ପରୋପକାର। ଏହି କର୍ମତ୍ୟାଗ କଲେ ଆଧ୍ୟାତ୍ମିକ ଶକ୍ତି ଲାଭ ହୁଏ ନାହିଁ। ଅପରର ସନ୍ତୋଷବିଧାନ ହିଁ ଦାୟୀ।

ଭଗବାନ୍‌ଙ୍କ ପରି ସେବକ ଆଉ କେହି ନାହାନ୍ତି। ଭଗବାନ୍ ସମସ୍ତଙ୍କର ସେବା କରନ୍ତି। ଯେତେବେଳେ ଯେଉଁଠାରେ ଯାହା ଆବଶ୍ୟକ, ସେ ପୂର୍ବରୁ ସମସ୍ତ ସଂଘଟନ କରି ରଖିଛନ୍ତି। ତାହା ଅତିକ୍ରମ କରିବା ଜୀବପକ୍ଷରେ ଅସାଧ୍ୟ। ସୁତରାଂ, ଅନର୍ଥକ ଭବିଷ୍ୟତ ଚିନ୍ତା କଲେ କିଛି ଲାଭ ହେବ ନାହିଁ।

ଫୁଲକୁ ଆଦର୍ଶ କର। ପରକୁ ଆନନ୍ଦ ଦେବା ଫୁଲର ସ୍ୱଭାବ। ଫୁଲର ନିଜର କିଛି ନାହିଁ। ନୀରବରେ ଫୁଟୁଛି, ପୁଣି ନୀରବରେ ଝଡ଼ିପଡୁଛି। ତାକୁ ଦେବସେବାରେ ଲଗାଇଲେ ଆପତ୍ତି ନାହିଁ; ପୁଣି ବିଳାସୀ ବକ୍ଷରେ ରହିଲେ ଅସନ୍ତୋଷ ନାହିଁ। ଫୁଲର ଧର୍ମ ସେବା। ଦେହ, ମନ, ପ୍ରାଣ ପର ନିମିତ୍ତ ଉତ୍ସର୍ଗ କର। ଆତ୍ମସୁଖ ପାଇଁ ଯେ ଯତ୍ନ କରନ୍ତି, ସେ ସ୍ୱାର୍ଥପର। ତାଙ୍କର ମୁକ୍ତି-ଆଶା ସୁଦୂରପରାହତ। ମନରେ ଶୁଭଇଚ୍ଛା ଉଦିତ ହେଲେ ତାହା ଭଗବାନ୍‌ଙ୍କ ସେବା ଉଦ୍ଦେଶ୍ୟରେ ପ୍ରୟୋଗ କରିପାରିଲେ ବନ୍ଧନ କଟିଯାଏ।

## ସେବା ଆତ୍ମପ୍ରସାର ମାତ୍ର

ଉପଲବ୍ଧି ଅପେକ୍ଷା ଉପଲବ୍ଧିର ଫଳ ଯହିଁରେ ବିକଶିତ ହେବ, ତାହା ହିଁ ଶ୍ରେଷ୍ଠ। ଉପଲବ୍ଧିର ଫଳ; (୧) **ଅହଂତ୍ୱର ପ୍ରସାର**—ନିଜ ପାଇଁ କୌଣସି ଚିନ୍ତା ନାହିଁ। ସ୍ୱାର୍ଥପରତା ବା କୌଣସି ପ୍ରକାର ସଂକୀର୍ଣ୍ଣତା ନାହିଁ। ମୋର ସୁଖ ନାହିଁ। ମୁଁ ଏହି ବିଶ୍ୱମୟ ବ୍ୟାପ୍ତ। **ଜୀବସେବା**—ମୋର ଅହଂତ୍ୱ ବିଶ୍ୱମୟ ବ୍ୟାପ୍ତ ହୋଇଗଲେ ଜଗତ୍‌ରେ ସମସ୍ତେ ମୋର ପ୍ରିୟ, ସମସ୍ତେ ମୋ ପ୍ରେମର ପାତ୍ର। ସୁତରାଂ ନିଜକୁ ଭୁଲି ଜୀବକୁ ଯେ ଶିବଜ୍ଞାନରେ ସେବା କରିପାରନ୍ତି, ଅପରୋପକାର କରିପାରନ୍ତି, ସେ ଶ୍ରେଷ୍ଠ। ଏ ଦୁଇଟି ଭାବର ବିକାଶ ଯେତେଦିନଯାଏ ନ ହୋଇଛି, ହଜାର ଉପଲବ୍ଧି ହେଉ ପଛକେ, ସେତେଦିନ ପର୍ଯ୍ୟନ୍ତ ତାଙ୍କୁ ଉନ୍ନତ ବୋଲି କୁହାଯାଇପାରିବ ନାହିଁ। ପୁଣି ଯାହାଙ୍କର କୌଣସି ଅଲୌକିକ ଦର୍ଶନ ନ ହୋଇ ଏ ଦୁଇଟି ଭାବର ବିକାଶ ହୋଇଛି, ତାଙ୍କୁ ଉନ୍ନତ ବୋଲି ଗ୍ରହଣ କରାଯିବ।

ସେବକ ହୋଇ ଆତ୍ମପ୍ରତିଷ୍ଠା ନିମିତ୍ତ ଲାଳାୟିତ ହେବା ଉଚିତ୍ ନୁହେଁ। ତୁମ ପ୍ରାଣର ପରିମାଣ ବା କେତେ ? ପୁଣି ସେହିଟିକକ ପ୍ରାଣ ଛଟପଟ ହେଲେ

ତୁମେ ଅସ୍ଥିର ହୋଇପଡ଼ । ସେବକଙ୍କର ସେବକପରି ଦୀନଠାରୁ ଦୀନ ହୋଇ ରହ । ତାହାହେଲେ ତୁମ ଉପରେ ଆଉ କୌଣସି ପରୀକ୍ଷା ହେବ ନାହିଁ । ନ ହେଲେ ମୁଣ୍ଡ ଉପରେ ଏପରି ବୋଝ ପଡ଼ିବ ଯେ ମୁଣ୍ଡ ଚୂନା ହୋଇଯିବ ।

ଜଗତ୍‌ର ସମସ୍ତ ଜୀବ ହିଁ ଭଗବାନ୍ । ସେମାନଙ୍କ ପାଇଁ ପ୍ରାଣ ଢାଳିଦେଇ ପାରିଲେ, ସେମାନଙ୍କ ସେବା କରି ମହତ୍ ହୋଇପାରିଲେ, ଭଗବନ୍ ନିଜେ ତୁମ କାମ କରିଦେବେ । ତୁମକୁ କିଛି ହେଲେ କରିବାକୁ ପଡ଼ିବ ନାହିଁ ।

କୁକୁରକୁ ଆଦର କର, ସେ ଦେହ ଚାଟିବ । ଦେହକୁ ଯେତେ ସୁଖ ଦେବ, ସେ ତୁମଙ୍କୁ ସେତେ ସାଉଁଟି ଧରିବ । ଦେହ ତୁମର ନୁହେଁ । ଦେହ ପାଇଛ ତ, ଯେତେ ପାର ପରସେବାରେ ଏ ଦେହକୁ ନିଯୁକ୍ତ କର । ସାଧନ-ଭଜନରେ ବ୍ୟସ୍ତ ହୋଇ ଜଗତ୍‌କୁ ଉପେକ୍ଷା କରିବା ଧର୍ମ ନୁହେଁ; କିନ୍ତୁ ଦୟାମୟଙ୍କ ପ୍ରେମର ଆଦର୍ଶରେ ଯଦି ଜଗତ୍‌କୁ ସୁଖ ପାଇପାର, ତାହା ହେବ ପ୍ରକୃତ ଧର୍ମ । ସଂସାରତ୍ୟାଗ ଧର୍ମ ନୁହେଁ; ଆତ୍ମତ୍ୟାଗ ହିଁ ଧର୍ମ ।

## ସେବାରେ ଉନ୍ନତି ନିଶ୍ଚୟ

ଯେଉଁମାନେ ସଦ୍‌ଗୁରୁଙ୍କ ସେବା କରିବାର ଅଧିକାର ପାଇଛନ୍ତି, ଆଧ୍ୟାତ୍ମିକ ଜଗତ୍‌ରେ ସେମାନଙ୍କର ଉନ୍ନତି ଅବଧାରିତ । ସେମାନଙ୍କ ପାଇଁ ସବୁ ଆୟୋଜନ ହୋଇରହିଛି; କେବଳ ସମୟର ପ୍ରତୀକ୍ଷା କରିବାକୁ ହେବ । ଚିତ୍ତଶୁଦ୍ଧି ହେଲାମାତ୍ରେ ସେମାନଙ୍କ ଦୃଷ୍ଟି ଫିଟିଯିବ ।

ଅଜ୍ଞାନଙ୍କ ଦ୍ୱାରା ସେବା ହୁଏ ନାହିଁ; ସୁତରାଂ, ସେବକମାନେ ଜ୍ଞାନୀ ନ ହେଲେ ପ୍ରକୃତ ସେବା କରିପାରିବେ ନାହିଁ । ନିଜ ମନ ଜାଣିଲେ ହେଲା ନାହିଁ; ତା ସଙ୍ଗେ ସଙ୍ଗେ ଅପରର ମନ ମଧ୍ୟ ଜାଣିବାକୁ ହେବ । ତାହା ହେଲେ ଯାଇ ଅପରର ସେବା କରିପାରିବ । ଭଗବାନ ପ୍ରତ୍ୟେକଙ୍କର ମନକଥା ଜାଣନ୍ତି, ତେଣୁ ସେ ପ୍ରତ୍ୟେକଙ୍କର ମନୋମତ ହେବା ସମ୍ଭବପର ।

ଯେଉଁମାନେ ସେବକ ବୋଲି ପରିଚିତ, ସେମାନେ ସମସ୍ତେ ଆତ୍ମଜ୍ଞାନୀ ଥିଲେ । ଜୀବର ସାଂସାରିକ ଅଭାବ-ଅନଟନ ଦୂର କରି ପ୍ରାଣରେ ଶାନ୍ତିଦାନ କରିବା ସେବାର ଉଦ୍ଦେଶ୍ୟ; କିନ୍ତୁ ଏପ୍ରକାରେ ସ୍ଥାୟୀ ଭାବରେ କାର୍ଯ୍ୟ ହୁଏ ନାହିଁ । ଅନିତ୍ୟ ଜଗତ୍‌ରେ ସବୁ ଅନିତ୍ୟ; ସୁତରାଂ, ଅନିତ୍ୟ ବସ୍ତୁ ଦ୍ୱାରା ସ୍ଥାୟୀ ଭାବରେ କାହାର କିଛି କରିହୁଏ ନାହିଁ । ଅତଏବ ନିତ୍ୟଜ୍ଞାନ ଦ୍ୱାରା ପ୍ରକୃତ ସେବା

କରାଯାଇପାରିବ । ନିଜେ ଜ୍ଞାନ ଲାଭ ନ କଲେ ସେହି ଜ୍ଞାନ ଅପରକୁ ଦେଇହେବ ନାହିଁ । ସୁତରାଂ, ପ୍ରାଣେପ୍ରାଣେ ସେବକ ହେବାକୁ ଇଚ୍ଛା କଲେ ଆତ୍ମଜ୍ଞାନ ଲାଭ କରିବାକୁ ହେବ । ଏଣୁ କାମ୍ୟ କର୍ମ ତ୍ୟାଗ କର; ନିଷ୍କାମ ଭାବରେ ଜନହିତ ନିମିତ୍ତ କର୍ମାନୁଷ୍ଠାନକୁ କର୍ତ୍ତବ୍ୟ ବୋଲି ଗ୍ରହଣ କର ।

**ସେବାର ଅର୍ଥ** — ନିଜର ପ୍ରୟୋଜନ ହେଲେ ତାହା ପୂରଣ କରିବାକୁ ଯେପରି ଇଚ୍ଛା ହୁଏ, ଅନ୍ୟର ପ୍ରୟୋଜନ ମନରେ ଜାଗିଲା ମାତ୍ରେ ତାହା ପୂରଣ କରିବାକୁ ସେହିପରି ବ୍ୟାକୁଳତା ଜାତ ହୁଏ । ଏହି ଭାବରେ ମା ଶିଶୁର ସେବା କରନ୍ତି, ଅନ୍ୟଥା ଭିତରେ ଅନୁରାଗ ନାହିଁ, ଦେଖାଦେଖି କାହାକୁ ମୁଠିଏ ଖାଇବାକୁ ଦେଲେ କିମ୍ବା ଅନ୍ୟ କେଉଁ ପ୍ରକାରେ ଟିକିଏ ସାହାଯ୍ୟ କଲେ, ତାକୁ ସେବା କୁହାଯାଏ ନାହିଁ ।

## ଅଧିକାରୀଭେଦରେ ସେବା

ହିନ୍ଦୁମାନଙ୍କର ଅଧିକାରୀଭେଦରେ ସେବା ମାହାତ୍ମ୍ୟ ପ୍ରକଟିତ । ପ୍ରଥମେ ସମାଜରେ ରହି ଜନହିତକର ଅନୁଷ୍ଠାନରେ ବ୍ରତୀ ହେବାକୁ ପଡ଼େ । ଦରିଦ୍ରକୁ ଧନ ବିତରଣ, ବ୍ରାହ୍ମଣମାନଙ୍କୁ ଭୋଜନ, ଦୀନ-ଅତିଥିଙ୍କ ସେବା, ସମାଜର ହିତସାଧନ ଇତ୍ୟାଦି ଗୃହସ୍ଥର କର୍ତ୍ତବ୍ୟ । ଗାର୍ହସ୍ଥ୍ୟ ଧର୍ମ ପରିପକ୍ୱ ହେଲେ ସନ୍ନ୍ୟାସଧର୍ମ ଗ୍ରହଣ କରିବା ବିଧି । ସେତେବେଳେ ଆତ୍ମଜ୍ଞାନ ଲାଭ କରି ସେହି ଜ୍ଞାନ ବିତରଣ କରିବା ଜୀବର ଏକମାତ୍ର କର୍ତ୍ତବ୍ୟ ହେବ । ଏହି ଭାବରେ ସନ୍ୟାସୀମାନେ ପ୍ରକୃତ ସେବା କରନ୍ତି ବୋଲି ସମାଜ ସେମାନଙ୍କୁ ଉଚ୍ଚସ୍ଥାନ ଦେଇଛି । ତେଣୁ ଦୀନହୀନ ଭିଖାରିଙ୍କ ଠାରୁ ରାଜାଧିରାଜ ପର୍ଯ୍ୟନ୍ତ ସମସ୍ତଙ୍କ ଶିର ସେମାନଙ୍କ ଚରଣରେ ଲୁଣ୍ଠିତ ହୁଏ । ସେମାନଙ୍କ ବାକ୍ୟ ବେଦବାକ୍ୟ, ସେମାନଙ୍କ ଇଚ୍ଛା ଭଗବତ୍ ଇଚ୍ଛା । ଯଦି ସେବକନାମର ସାର୍ଥକତା ଅଛି, ତେବେ ସେମାନେ ସେବାର ମୂର୍ତ୍ତିମାନ୍ ଆଦର୍ଶ ।

ଯେଉଁମାନେ ସେବା କରିବାର ସୁଯୋଗ ପାଇଛନ୍ତି, ସେବାଦ୍ୱାରା ଚିତ୍ତଶୁଦ୍ଧିର ବିମଳ ଆନନ୍ଦ ସେମାନେ ଅନୁଭବ କରିପାରନ୍ତି । ସେବକ ହେବାକୁ ଇଚ୍ଛା କଲେ ଫୁଲପରି ଆଚରଣ ଶିକ୍ଷା କର । ଯେ ଯେଉଁ ଭାବରେ ତୁମକୁ ବ୍ୟବହାର କରନ୍ତୁ ପଛକେ, ତୁମେ ନିଜକୁ ଜଗତ୍‌ନିମିତ୍ତ ବିତରଣ କରିଦିଅ, ମନୁଷ୍ୟ-ଜୀବନର ସାର୍ଥକତା ସମ୍ପାଦନ କର ।

'ସେବାୟାଂ ଗୁରୋର୍ଗରୀୟାନ୍'—ସେବା ମଧ୍ୟରେ ଗୁରୁସେବା ହିଁ ଶ୍ରେଷ୍ଠ । ଜଗତ୍‌ରେ ସେବାର ବିଷୟ ଓ ପ୍ରଣାଳୀ ଅନନ୍ତ ହେଲେ ମଧ୍ୟ ଗୁରୁସେବା ଅତୁଳନୀୟ । ଯଦି ଆତ୍ମତ୍ୟାଗ କରିବାକୁ କାହାର ଇଚ୍ଛା ଥାଏ, ତେବେ ସଦ୍‌ଗୁରୁଙ୍କ ଚରଣ ସେବାରେ ବ୍ରତୀ ହେବା ଏକାନ୍ତ କର୍ତ୍ତବ୍ୟ । ଅଭିମାନ, ଏପରିକି ସାଧନ-ଭଜନର ଅଭିମାନ ମନବକୁ କ୍ଷୁଦ୍ର କରିପକାଏ । ଏହା ହିଁ ହିରଣ୍ମୟ ଯବନିକା । ଗୁରୁସେବାର ଐକାନ୍ତିକତା ଦ୍ୱାରା ଏହି ଯବନିକାକୁ ଛିନ୍ନ କରିବାକୁ ହେବ । ଗୁରୁବାକ୍ୟରେ ଅକପଟ ବିଶ୍ୱାସ ହେଲେ ସେବାର ସାର୍ଥକତା ମିଳେ । ସେତେବେଳେ ସାଧ୍ୟ-ସାଧନର ପ୍ରବୃତ୍ତି ଏକ ହୋଇ ଗୁରୁସେବାରେ ଚିତ୍ତ ସ୍ଥିର ରହେ । ସେତେବେଳେ ହିଁ ଜୀବନରେ ପୂର୍ଣ୍ଣତା ଆସେ ।

ସେବକ ହେବା ଅତିଶୟ କଠିନ ସାଧନା । ନିଜର ଅହଂତ୍ୱ ଥିଲେ ଅର୍ଥାତ୍ 'ମୁଁ ବଡ଼' ଏହି ଭାବ ଥିଲେ ସେବକ-ଜୀବନଯାପନ ବୃଥା । ସେବକ ହେବାକୁ ହେଲେ ଦୀନଭାବ ଅବଲମ୍ବନ କରିବାକୁ ପଡ଼ିବ । ସମସ୍ତଙ୍କଠାରୁ ନିଜକୁ ଛୋଟ ମନେକଲେ ତେବେ ଯାଇ ତାଙ୍କ ଦ୍ୱାରା ସେବା ହୋଇପାରିବ । 'ତୃଣାଦପି ସୁନୀଚେନ'–ତୃଣଠାରୁ ଛୋଟ ହୋଇଯିବାକୁ ପଡ଼ିବ । ଯଦି ବ୍ରହ୍ମଜ୍ଞାନ ଲାଭ କରି ନିଜକୁ ଶ୍ରେଷ୍ଠ ବୋଲି ଭାବୁଥାଅ, ତାହାହେଲେ ମଧ୍ୟ କାହାକୁ ଅବଜ୍ଞା ଚକ୍ଷୁରେ ଦେଖିବା ଉଚିତ୍ ନୁହେଁ; କାରଣ ସମସ୍ତଙ୍କ ଠାରେ ବ୍ରହ୍ମ ସମାନ ଭାବରେ ବିଦ୍ୟମାନ । ପିତାମାତା ଯେପରି ପୁତ୍ର କନ୍ୟାଙ୍କର ସେବା କରନ୍ତି, ସେହିଭଳି ସନ୍ତାନବୋଧରେ ସେବା କରିଯିବା ଦରକାର । ଅତିଥିଙ୍କୁ ଗୁରୁ ବୋଲି ଜ୍ଞାନ କରିବାକୁ ହେବ । ଭଗବାନ୍ ଜ୍ଞାନରେ କିମ୍ବା ଗୁରୁ ଜ୍ଞାନରେ ଅତିଥି ସେବାକଲେ ମନରେ ଘୃଣାଭାବର ସ୍ଥାନ ରହିବ ନାହିଁ । ସେବକଙ୍କୁ ଜାତି-ଅଭିମାନ, ଜ୍ଞାନ-ଅଭିମାନ ତ୍ୟାଗ କରିବାକୁ ହେବ । ଯାହାଙ୍କୁ ଯେଉଁ ଭାବରେ ସେବା କଲେ ସେ ସୁଖୀ ହେବେ, ତାଙ୍କୁ ସେହି ଭାବର ସେବା କରିବାକୁ ହେବ । ଧନୀ କିମ୍ବା ଦରିଦ୍ର ଉଭୟଙ୍କୁ ଯଥୋପଯୁକ୍ତ ସେବା କରିବା କର୍ତ୍ତବ୍ୟ । ଯେ ଦୁଧ-ଭାତରେ ସୁଖୀ ହେବେ, ତାଙ୍କୁ ଯଦି ତାହା ଦେଇ ସେବା କରିପାରିବ, ତେବେ ଅତି ଉତ୍ତମ କଥା; କିନ୍ତୁ ଯେ ଶାଗଭାତରେ ଖୁସି ହେବେ, ତାଙ୍କୁ ତାହା ପ୍ରଦାନ କରି ସେବା କରିବାକୁ ହେବ । ଅକ୍ଷମ ହେଲେ ବିନୀତ ଭାବରେ ଅକ୍ଷମତା ଜଣାଇ କ୍ଷମାପ୍ରାର୍ଥନା କରିବା ଆବଶ୍ୟକ । ଭଗବାନ୍ ସାନ-ବଡ଼ ସମସ୍ତଙ୍କ ଭିତରେ ଅଛନ୍ତି । ସେ ଯାହାକୁ ଯେଉଁଭାବରେ ପ୍ରବୃତ୍ତି

ପ୍ରଦାନ କରିଛନ୍ତି, ସେ ସେହିଭାବରେ ଚଳିଥାଆନ୍ତି । ସେଥିରେ କାହାରି ଦୋଷ ନାହିଁ । ସେପରି କ୍ଷେତ୍ରରେ ସେବ୍ୟଙ୍କର ପ୍ରବୃତ୍ତି ଅନୁଯାୟୀ ସେବା କରିବାକୁ ହେବ । ପ୍ରବୃତ୍ତି ଅନୁଯାୟୀ ସେବା ନ କଲେ ସେ ସେବାରେ କେହି ସୁଖୀ ହୋଇପାରିବେ ନାହିଁ ।

ଅଦ୍ୱୈତବୋଧରେ ସେବ୍ୟ-ସେବକଭାବ ନ ଥାଏ, କିନ୍ତୁ ପ୍ରେମଭକ୍ତିପଥରେ ସେବ୍ୟ-ସେବକଭାବ ଚିରଦିନ ଥାଏ । ଏହା ହିଁ ଏହି ପଥର ବୈଶିଷ୍ଟ୍ୟ । ସେବାନନ୍ଦନିମିତ୍ତ ଭକ୍ତମାନେ ଦ୍ୱୈତବାଦୀ ହେବାକୁ ଇଚ୍ଛା କରନ୍ତି । ସେବା କରିବା ସମୟରେ ମଧ୍ୟ ଅଦ୍ୱୈଭାବ ଆସିଯାଏ; କିନ୍ତୁ ଭକ୍ତମାନେ ଜ୍ଞାନପୂର୍ବକ ଦ୍ୱୈତଭାବ ଧରି ରହନ୍ତି । ଭଗବାନଙ୍କୁ ଯେ ପ୍ରକୃତ ଭାବରେ ସୁଖ ପାଆନ୍ତି, ତାଙ୍କ ମଧ୍ୟରେ ଭଗବାନ ହିଁ ଫୁଟି ଉଠନ୍ତି । ତେଣୁ ସେବାପଥରେ ମଧ୍ୟ ଅଦ୍ୱୈତବାଦ ସହଜରେ ଲାଭ ହୋଇଥାଏ ।



# ଅବତାର

## ଅଂଶକଳା ଓ ଅବତାର

ଧର୍ମ ଗ୍ଲାନି ଓ ଅଧର୍ମର ଅଭ୍ୟୁତ୍‌ଥାନ ହେଲେ ଦୁଷ୍କୃତି ବିନାଶ ଓ ଧର୍ମ ସଂସ୍ଥାପନ ନିମିତ୍ତ ଭଗବାନ୍ ଧରାଧାମରେ ନରଦେହ ଧାରଣ କରି ଅବତୀର୍ଣ୍ଣ ହୁଅନ୍ତି । ହିନ୍ଦୁମାତ୍ରେ ଏଥିରେ ନିଃସନ୍ଦେହରେ ବିଶ୍ୱାସ କରନ୍ତି । ତେଣୁ ଭାରତର ସର୍ବତ୍ର ଶ୍ରୀରାମଚନ୍ଦ୍ର, ଶ୍ରୀକୃଷ୍ଣ, ଶ୍ରୀଗୌରାଙ୍ଗ ପ୍ରଭୃତି ଅବତାରମାନେ ଶ୍ରୀବିଗ୍ରହ ରୂପେ ପୂଜିତ ହୋଇଥାନ୍ତି । କି ଉଦ୍ଦେଶ୍ୟ ସାଧନ ନିମିତ୍ତ ଅବତାର ଗ୍ରହଣ, ଏ କଥା ତତ୍ତ୍ୱ ଅନଭିଜ୍ଞ ଅନେକ ହିନ୍ଦୁ ଜାଣନ୍ତି ନାହିଁ । ଅବତାରମାନଙ୍କର ଧର୍ମ ସଂସ୍ଥାପନ-ରୂପ ପ୍ରଧାନ ଉଦ୍ଦେଶ୍ୟ ପଶୁଯୋନିରେ ଯେତେବେଳେ ସିଦ୍ଧ ହେଉ ନାହିଁ, ସେତେବେଳେ ମତ୍ସ୍ୟ-କୂର୍ମାଦି ଅବତାରଙ୍କୁ ଭଗବାନଙ୍କର ଅବତାର ବୋଲି କୁହାଯିବ କିପରି ? ଏପରି ପ୍ରଶ୍ନ ସ୍ୱାଭାବିକ ।

ସୁପରିଚିତ ଦଶ ଅବତାର ହିନ୍ଦୁମାନଙ୍କର ଅବତାର ନୁହନ୍ତି । ତେଣୁ ବ୍ୟାସଦେବ ଏମାନଙ୍କୁ ଅଂଶକଳା ବୋଲି କହି "କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ" ଅର୍ଥାତ୍ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ବୋଲି ବ୍ୟାଖ୍ୟା କରିଛନ୍ତି । ଧର୍ମ ସଂସ୍ଥାପନ କରିବା ପାଇଁ ଭଗବାନ ସ୍ୱୟଂ ଅବତୀର୍ଣ୍ଣ ହୁଅନ୍ତି, କିନ୍ତୁ ପାଳନକର୍ତ୍ତା ବିଷ୍ଣୁ ଭୂଭାର ହରଣ କରିବାକୁ ପୁନଃ ପୁନଃ ଅବତୀର୍ଣ୍ଣ ହୋଇଥାନ୍ତି । ଶ୍ରୀମଦ୍‌ଭାଗବତ ଆଦି ଶାସ୍ତ୍ରରେ ଏହି ପ୍ରକାର ଦ୍ୱାବିଂଶତି ଅବତାରର ବିବରଣ ଦେଖିବାକୁ ମିଳେ । ତନ୍ମଧ୍ୟରେ ହୟଗ୍ରୀବ, ମତ୍ସ୍ୟ, କୂର୍ମ, ବରାହ ପଶୁ ଯୋନିର ଅନ୍ତର୍ଗତ ।

### କର୍ମବାଦର କ୍ରମବିକାଶ

ଅବତାର-ତତ୍ତ୍ୱର ଆଲୋଚନା ପୂର୍ବରୁ ବିଷ୍ଣୁ କିଏ ଜାଣି ନ ପାରିଲେ ଅବତାରବାଦ ବୁଝିହେବ ନାହିଁ । ପ୍ରଳୟକାଳରେ ବ୍ରହ୍ମାଣ୍ଡ ଯେତେବେଳେ କାରଣାର୍ଣ୍ଣବରେ ପ୍ଲାବିତ ହେଲା, ଭଗବାନ୍ ସେତେବେଳେ ସମସ୍ତ ପଦାର୍ଥର

କର୍ମବୀଜ ନିଜ ଅଙ୍ଗରେ ସଂହୃତ କରି ସେହି କାରଣବାରିରେ ଶାୟିତ ହୋଇରହିଲେ । ସେତେବେଳେ ପ୍ରକୃତି ନିଶ୍ଚେଷ୍ଟ ଥିଲା ଏବଂ ତାହାର ଗୁଣବିକ୍ଷୋଭ ନଥିଲା । ସେହି ସମୟରେ ଗୁଣସମୂହ ସ୍ପନ୍ଦନରହିତ ମୃତବତ୍ ଥିଲା । ସୃଷ୍ଟି ଆରମ୍ଭ ସମୟରେ ପୁରୁଷଙ୍କ ତେଜ ମୂଳା ପ୍ରକୃତିଠାରେ ସଂକ୍ରମିତ ହେବାରୁ ଏହାର ଗୁଣକ୍ରିୟା ଆରମ୍ଭ ହୋଇ କ୍ରମବିବର୍ତ୍ତିତ ଅବସ୍ଥା ପ୍ରାପ୍ତ ହେଲା । ଏହି ମୂଳା ପ୍ରକୃତିଠାରୁ ସତ୍ତ୍ୱ, ରଜଃ, ତମଃ ଗୁଣର ଉତ୍ପତ୍ତି ହେଲା । ମୂଳା ପ୍ରକୃତି ଅବ୍ୟକ୍ତ ଓ ସୂକ୍ଷ୍ମାତିସୂକ୍ଷ୍ମ; ମନୁଷ୍ୟ ଏହାର ଧାରଣା କରିପାରିବ ନାହିଁ । ମନୁଷ୍ୟ ନିକଟରେ ଏହା ସଂପୂର୍ଣ୍ଣ ଅବ୍ୟକ୍ତ । ସ୍ତ୍ରୀ-ଅଣୁ ଯେପରି ପୁଂ-ଅଣୁ ସଂଯୋଗରେ ପରିଣାମ ପ୍ରାପ୍ତ ହୁଏ, ସେହିପରି ପୁରୁଷ ସଂଯୋଗରେ ପ୍ରକୃତି ପରିଣାମପ୍ରାପ୍ତ ଓ କ୍ରମବିବର୍ତ୍ତିତ ହୋଇ ମୂଳା ପ୍ରକୃତିରେ ପରିଣତ ହେଲେ । ଜଡ଼ବିଜ୍ଞାନର ମତ ଅନୁସାରେ ଜଡ଼ପଦାର୍ଥର ପରମାଣୁପୁଞ୍ଜ ଯେଉଁପରି ଜଡ଼ଶକ୍ତି ସଂଯୋଗରେ କ୍ଷୋଭିତ ଓ ପରିଣତ ହେଲେ, ସେହିପରି ମୂଳା ପ୍ରକୃତି ମଧ୍ୟ ପୁରୁଷ ସଂଯୋଗରେ କ୍ଷୋଭିତ ହୋଇ ବୈଷମ୍ୟ ପ୍ରାପ୍ତ ହେଲା ।

ପୁରୁଷ ସଂଯୋଗରେ ପ୍ରକୃତିର ସାମ୍ୟ ଅବସ୍ଥା ଭଙ୍ଗ ହେବାରୁ ଗୁଣର ଉତ୍ପତ୍ତି ହେଲା । ଏହି ତ୍ରିଗୁଣର ଦେବତା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର । ଗୋଟିଏ କଥାରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଈଶ୍ୱରଙ୍କର ତିନିଗୋଟି ଗୁଣବିଭାଗ । ଈଶ୍ୱରଙ୍କୁ ଜାଣିବାକୁ ହେଲେ ଏହି ଦେବତାତ୍ରୟଙ୍କୁ ଜାଣିବାକୁ ହେବ । ପୃଥିବୀର ସମସ୍ତ ଧର୍ମସଂପ୍ରଦାୟ ତ୍ରିଗୁଣର ତ୍ରିମୂର୍ତ୍ତି ସ୍ୱୀକାର ଓ ସାଧନ କରିଥାନ୍ତି । ଦର୍ଶନ, ବିଜ୍ଞାନ ନିକଟରେ ଅନ୍ୟାନ୍ୟ ଧର୍ମ ଯୁକ୍ତି ଦେଖାଇଲେ ମଧ୍ୟ ଏହି ଗୁଣତ୍ରୟର ତ୍ରିମୂର୍ତ୍ତି ସେମାନଙ୍କ ଧର୍ମଗ୍ରନ୍ଥରେ ପ୍ରକାରାନ୍ତରେ ସ୍ୱୀକୃତ ହୋଇଅଛି ।

## ଭଗବାନଙ୍କର ତିନି ବିଭାବ

ଖ୍ରୀଷ୍ଟିୟାନ୍‌ମାନେ ପିତା ପରମେଶ୍ୱର (Father God), ପୁତ୍ର ପରମେଶ୍ୱର (God the Son) ଏବଂ କପୋତ ପରମେଶ୍ୱର (Holy Ghost) ବୋଲି, ମୁସଲମାନ୍‌ମାନେ ଖୋଦା, ରସୁଲ ଓ ନବି; ବୌଦ୍ଧମାନେ ବୋଧିସତ୍ତ୍ୱ, ଗୌତମ ବୁଦ୍ଧ ଓ ପ୍ରତ୍ୟକ ବୁଦ୍ଧ ବୋଲି ଈଶ୍ୱରଙ୍କ ତ୍ରିମୂର୍ତ୍ତିର ଆଭାସ ପ୍ରକାଶ କରିଥାନ୍ତି । ଈଶ୍ୱରଙ୍କ ବାସନା ଚୈତନ୍ୟ ମିଶ୍ରଣରେ ଯେଉଁ ଭାବରେ କ୍ରିୟାଶୀଳ ହୁଏ, ତାହାକୁ ଶକ୍ତି କୁହାଯାଏ । ସ୍ୱତଃ ବାସନା ଚୈତନ୍ୟାଦି କାଳ ଓ ସତ୍ୟ ସହିତ ମିଳିତ ହେଲେ ଯେଉଁ ଅବସ୍ଥାପ୍ରାପ୍ତ ହୁଏ, ତାହାକୁ ବସ୍ତୁ କୁହାଯାଏ । ଏକ ବ୍ରହ୍ମ ହିଁ

ଅବସ୍ଥାଭେଦରେ ବସ୍ତୁ ଓ ଶକ୍ତି; ଏହି ଦ୍ୱିବିଧ ବ୍ୟକ୍ତ ଭାବରେ ପରିଣତ । ଶକ୍ତି ଉପାୟ ନିର୍ଦ୍ଧାରଣ କରି ବସ୍ତୁକୁ ଧରି ଯେଉଁ ଭାବରେ ଜଗତ୍ ପ୍ରକାଶ କରେ, ସେହି ମିଶ୍ର ଚୈତନ୍ୟ ଭାବକୁ ମାୟା କୁହାଯାଏ । ଏହି ମାୟା ଦୁଇ ଭାଗରେ ବିଭକ୍ତ—ଗୋଟିଏ ଅଂଶ ଶକ୍ତିଗତ ମାୟା, ଅପର ଅଂଶଟି ବସ୍ତୁଗତ ମାୟା । ବସ୍ତୁଗତ ମାୟା ପୁରୁଷ ଓ ଶକ୍ତିଗତ ମାୟା ପ୍ରକୃତି । ପ୍ରକୃତି ସହଯୋଗରେ ପୁରୁଷ କାର୍ଯ୍ୟଶୀଳ ହୋଇ ଜଗତ୍‌ରୂପରେ ପରିବର୍ତ୍ତିତ ହୁଅନ୍ତି ।

ସୃଷ୍ଟି, ସ୍ଥିତି ଓ ସଂହାର କାର୍ଯ୍ୟନିମିତ୍ତ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର-ରୂପ ଈଶ୍ୱରଙ୍କ ତିନୋଟି ଗୁଣ, ତିନୋଟି ଶକ୍ତି ନେଇ କାର୍ଯ୍ୟ କରୁଅଛି । ପୁରୁଷ ଓ ପ୍ରକୃତି ଠାରୁ ଯେଉଁ ଚୈତନ୍ୟ ପ୍ରବାହ ବସ୍ତୁ ସଂଗ୍ରହ କରି ଜଗତ୍ ପ୍ରକାଶର ଉପଯୋଗୀ କରୁଛନ୍ତି, ସେ ବ୍ରହ୍ମା । ଯେ ପରମ ଚୈତନ୍ୟ ଅବସ୍ଥାରୁ ଜୀବ ବା ଆତ୍ମାରୂପରେ ମାୟା ଅଧିଗତ ହୋଇ ମାୟାର ସକଳ ବିଭୂତିକୁ ଅର୍ଥାତ୍ ଭୂତ, ଇନ୍ଦ୍ରିୟ, ମନାଦିକୁ ସଜୀବ ରଖିଛନ୍ତି, ସେ ବିଷ୍ଣୁ । ଈଶ୍ୱରଙ୍କ ବାସନାଜାତ ଉଦ୍ଦେଶ୍ୟରୂପୀ ଜୀବ ଓ ଜଗତ୍ ପ୍ରକାଶ କରିବା ନିମିତ୍ତ ଯେ ଚୈତନ୍ୟ ଓ ସତ୍‌କୁ ପ୍ରୟୋଜନ ଅନୁସାରେ ରୂପାନ୍ତରିତ କରୁଛନ୍ତି, ସେ ହର ବା ଈଶ୍ୱର । ଶ୍ରୀମଦ୍‌ଭାଗବତରେ ଅଛି, "ହେ ନାରଦ ! ସେହି ଈଶ୍ୱର ତ୍ରିଶକ୍ତିଧାରୀ, ତାଙ୍କକର୍ତ୍ତୃକ ନିୟୋଜିତ ହୋଇ ମୁଁ (ବ୍ରହ୍ମା) ସୃଜନ କରୁଅଛି । ତାଙ୍କର ବଶୀଭୂତ ହୋଇ ହର ସକଳ ବସ୍ତୁ ହରଣ କରନ୍ତି ଓ ବିଷ୍ଣୁ ପାଳନ କରନ୍ତି ।"

## ଶକ୍ତିଙ୍କର ରୂପଭେଦ

ସର୍ବତୋଭାବରେ ଆତ୍ମବଶ କରିବାର ନାମ ପାଳନ । ବିଷ୍ଣୁ ପାଳନକର୍ତ୍ତା ବା ସତ୍ତ୍ୱଗୁଣ । ସେହି ଗୁଣଶକ୍ତି ତ୍ରିଭୁବନ ପାଳନକର୍ତ୍ତ୍ରୀ ଦେବୀ ଲକ୍ଷ୍ମୀ । ଲକ୍ଷ୍ମୀଦେବୀ ମହାମାୟା ବା ଆଦ୍ୟାଶକ୍ତିଙ୍କର ବିକ୍ଷେପଶକ୍ତି । ମହାମାୟାଙ୍କର ଶକ୍ତି ଦ୍ୱିବିଧ—ଆବରଣ ଶକ୍ତି ଓ ବିକ୍ଷେପ ଶକ୍ତି । ଯେଉଁ ଶକ୍ତିଦ୍ୱାରା ଆତ୍ମା କ'ଣ, ମୁଁ କିଏ ଜଣାଯାଏ ନାହିଁ, ତାହା ଆବରଣ ଶକ୍ତି । ଯେଉଁ ଶକ୍ତିରେ ସୃଷ୍ଟିସାମର୍ଥ୍ୟ ବିଦ୍ୟମାନ, ତାହା ବିକ୍ଷେପ ଶକ୍ତି । ଅଜ୍ଞାନବଶରୁ ରଜ୍ଜୁ ଦେଖିଲେ ଯେପରି ସର୍ପଭ୍ରମ ହୁଏ, ସେହିପରି ଅଜ୍ଞାନ ଆବୃତ ଆତ୍ମାରେ ଭ୍ରମମୟ ଆକାଶାଦିର ସୃଷ୍ଟି ହୋଇଅଛି । ଅଜ୍ଞାନର ଯେଉଁ ଶକ୍ତିଦ୍ୱାରା ଭ୍ରମ ସୃଷ୍ଟି ହୁଏ, ତାହା ବିକ୍ଷେପ ଶକ୍ତି । ଏହି ବିକ୍ଷେପ ଶକ୍ତି ହିଁ ନଶ୍ୱର ବ୍ରହ୍ମାଣ୍ଡର ସ୍ଥିତିର କାରଣ ।

ଲକ୍ଷ୍ମୀ ହିଁ ଶ୍ରୀ । ଜଗତ୍‌ରେ ଭୋଗ ଓ ଐଶ୍ୱର୍ଯ୍ୟର ଯାହା କିଛି ପଦାର୍ଥ ଅଛି, ତାହା ଲକ୍ଷ୍ମୀ । ସେହି ଶୋଭାମୟ ପଦାର୍ଥ ଆମମାନଙ୍କୁ ମିଥ୍ୟାଜ୍ଞାନରେ ଭୁଲାଇରଖିଛି । ଲକ୍ଷ୍ମୀ ସ୍ଥିତିକାରିଣୀ । ସେ ଭଗବାନ୍ ବିଷ୍ଣୁଙ୍କ ସହିତ ବିହାରରତ ଥାଇ ଆମମାନଙ୍କୁ ଧନାଦି ପ୍ରଦାନ କରି ଲୌହଶୃଙ୍ଖଳରେ ବାନ୍ଧି ରଖିଛନ୍ତି, ଜଗତ୍‌ରେ ଐଶ୍ୱର୍ଯ୍ୟ ଢାଳିଦେଉଛନ୍ତି । ତେଣୁ ଭଗବାନ୍ ଲକ୍ଷ୍ମୀବନ୍ତ । ସେଥିପାଇଁ ଯେଉଁମାନଙ୍କର ବିଷୟ-ବିଭବ ଅଛି, ଯାହାଙ୍କର ବିକ୍ଷେପ ଶକ୍ତିର ଅଧିକ ବନ୍ଧନ ଅଛି, ଲୋକେ ତାଙ୍କୁ ଲକ୍ଷ୍ମୀବନ୍ତ କହିଥାନ୍ତି ।

## ତତ୍ତ୍ୱ ଓ ରୂପକଭାବ

ବ୍ରହ୍ମା, ବିଷ୍ଣୁ ଓ ଶିବ ସୃଷ୍ଟିବିଜ୍ଞାନର ବ୍ରହ୍ମଗୁଣ ଏବଂ ସେମାନଙ୍କ ଠାରୁ ପ୍ରାଥମିକ ସୂକ୍ଷ୍ମଜଗତର ସୃଷ୍ଟି । ଏହା ପାଶ୍ଚାତ୍ୟ ବିଜ୍ଞାନସମର୍ଥିତ । ମତ୍ସ୍ୟ, କୂର୍ମାଦି ଏହି ଗୁଣମୟ ବିଷ୍ଣୁଙ୍କର ଅବତାର । ସୁତରାଂ, ଏମାନେ ଭଗବାନଙ୍କର ପୂର୍ଣ୍ଣ ଅବତାର ନୁହନ୍ତି, ଗୁଣାବତାର ମାତ୍ର । ଏଣୁ ଏମାନଙ୍କ ଦ୍ୱାରା ଧର୍ମସଂସ୍ଥାପନାଦି କାର୍ଯ୍ୟ ହୋଇପାରେ ନାହିଁ । ଏମାନେ ଗୁଣମୟ ସୃଷ୍ଟିର ଉତ୍କର୍ଷ ବିଧାନ କରିଥାନ୍ତି । ମତ୍ସ୍ୟାଦି ଅବତାର ସୂକ୍ଷ୍ମସୃଷ୍ଟିର କ୍ରମବିକାଶ ଅବସ୍ଥାର ତତ୍ତ୍ୱ ମାତ୍ର । ବିଷ୍ଣୁଙ୍କର ଏହି ମତ୍ସ୍ୟାଦି ମୂର୍ତ୍ତିର ରୂପକଭେଦ ଅଛି । ସୃଷ୍ଟିତତ୍ତ୍ୱର ସୂକ୍ଷ୍ମ ବିଜ୍ଞାନଗୁଡ଼ିକ ପୁରାଣର ରୂପକ । ଏହି ସମସ୍ତ ରୂପକ ଅସମ୍ଭବ ଘଟଣା ନୁହେଁ । ରଙ୍ଗମଞ୍ଚରେ ଅଭିନେତା ଯେପରି ବିଷ୍ଣୁଙ୍କ କାର୍ଯ୍ୟାବଳୀ ବୁଝାଇବା ନିମିତ୍ତ ବିଷ୍ଣୁବେଶରେ ତାଙ୍କ ଲୀଳା ଅଭିନୟ କରନ୍ତି, ସେହିପରି ଶକ୍ତିଗୁଡ଼ିକ ମଧ୍ୟ ମହିମାଜ୍ଞାପନ ନିମିତ୍ତ ରୂପ ଓ ଆକାର ଧାରଣ କରନ୍ତି । ସେହିସବୁ ରୂପ ଓ ଆକାରର ଭାବ ବିଶ୍ଳେଷଣ କଲେ ପ୍ରକୃତ ତଥ୍ୟ ବୁଝାଯିବ । ଯେଉଁମାନଙ୍କ ବୁଦ୍ଧିରେ ଦର୍ଶନ ବିଜ୍ଞାନର ସୂକ୍ଷ୍ମତତ୍ତ୍ୱର ଧାରଣା ହୁଏ ନାହିଁ, ସେମାନଙ୍କ ପାଇଁ ଗଳ୍ପ ଓ ଉଦାହରଣ ସାହାଯ୍ୟରେ ପୁରାଣ ଆଖ୍ୟାନର ସୃଷ୍ଟି ହୋଇଅଛି । ଅଦୂରଦର୍ଶୀ ଅଜ୍ଞାନୀ ବ୍ୟକ୍ତିଙ୍କ ନିକଟରେ ପୁରାଣକଥା ଗଳ୍ପ ବୋଲି ବୋଧହୁଏ । ହିନ୍ଦୁମାନଙ୍କର ଶାସ୍ତ୍ର-ଉପଦେଶ ଅଧିକାରୀଭେଦରେ ନିର୍ଦ୍ଦିଷ୍ଟ ହୋଇଥିବାରୁ ତାହା ବିଭିନ୍ନ ଅଧିକାରୀଙ୍କ ଦ୍ୱାରା ଆଦୃତ । ଯେ ଯେଉଁ ବିଷୟର ଅଧିକାରୀ, ସେ ସେଥିର ମର୍ମଗ୍ରହଣରେ କ୍ଷମ । ଶ୍ରୁତି, ସ୍ମୃତି ଓ ଦର୍ଶନାଦିରେ ସୂକ୍ଷ୍ମତତ୍ତ୍ୱର ପ୍ରସଙ୍ଗ, ପୁରାଣାଦିରେ ସ୍ଥୂଳକଥାର ପ୍ରସଙ୍ଗ ଦୃଷ୍ଟ ହୁଏ ।

## ସୃଷ୍ଟିର କ୍ରମବିକାଶ

ବିଷ୍ଣୁଙ୍କର ମତ୍ସ୍ୟ, କୂର୍ମ, ବରାହ ପ୍ରଭୃତି ଅବତାର ପୁରାଣର ରୂପକ । ଏହା ବିଶ୍ଳେଷଣ କଲେ ସୃଷ୍ଟିର କ୍ରମବିକାଶ ଅବସ୍ଥାର ପ୍ରକୃତ ତତ୍ତ୍ୱ ଆମେ ଅବଗତ ହୋଇପାରିବା ।

**ହୟଶୀର୍ଷ–** ହୟ ଶବ୍ଦର ଅର୍ଥ ଇନ୍ଦ୍ରିୟ । କଠୋପନିଷଦ୍‌ରେ ଇନ୍ଦ୍ରିୟମାନଙ୍କୁ ହୟ ବା ଅଶ୍ୱ ବୋଲି ନିର୍ଦ୍ଦେଶ କରାଯାଇଛି । ଅନେକ ସ୍ଥଳରେ ପଣ୍ଡିତମାନେ ଇନ୍ଦ୍ରିୟବର୍ଗଙ୍କୁ ଅଶ୍ୱ ସହ ତୁଳନା କରିଛନ୍ତି; କାରଣ, ଇନ୍ଦ୍ରିୟମାନଙ୍କର ଶକ୍ତିର ଗତି ଅଶ୍ୱପରି ଉଦ୍ଦାମ ଓ ଦ୍ରୁତ । ଅଶ୍ୱର ଗତିକୁ ବଲ୍‌ଗା ଦ୍ୱାରା ନିୟନ୍ତ୍ରିତ କଲାଭଳି ଏହି ଇନ୍ଦ୍ରିୟମାନଙ୍କ ଗତିକୁ ଆୟତ୍ତ କଲେ ତଦ୍ଦ୍ୱାରା ଅନେକ ଶୁଭ କାର୍ଯ୍ୟ ସମ୍ପାଦିତ ହୋଇପାରେ । ଶୀର୍ଷ ଅର୍ଥ ଅଗ୍ରଭାଗ । ବ୍ରହ୍ମାଙ୍କ ଯଜ୍ଞ ହିଁ ସୃଷ୍ଟିର ବିକାଶ । ଯଜ୍ଞ ସମାପ୍ତ ହେଲେ ବିଷ୍ଣୁ ପ୍ରକାଶିତ ହୁଅନ୍ତି । ବ୍ରହ୍ମାଙ୍କ ସୃଷ୍ଟି ସ୍ଥୁଳ । ସେଥିରେ ଆତ୍ମାରୂପୀ ବିଷ୍ଣୁ ପ୍ରବିଷ୍ଟ ନ ହେଲେ ସୃଷ୍ଟି କ୍ରିୟାଶୀଳ ହୋଇପାରନ୍ତି ନାହିଁ; ପଦାର୍ଥ ଚୈତନ୍ୟମୟ ହୋଇପାରନ୍ତା ନାହିଁ । ତେଣୁ ବ୍ରହ୍ମାଙ୍କ ସୃଷ୍ଟିରୂପ ଯଜ୍ଞ ସମାପ୍ତ ହେବାର ଉପଯୋଗୀ ହେଲେ ଭଗବାନ ବିଷ୍ଣୁ ଆତ୍ମା ରୂପରେ ସୃଷ୍ଟିମଧ୍ୟଗତ ହୋଇ ମନ ଓ ଇନ୍ଦ୍ରିୟଗୁଡ଼ିକୁ ସଜୀବ ରଖି ସୃଷ୍ଟିର ସାଫଲ୍ୟ କରିଥାଆନ୍ତି । ଏହି ଅବତାରମାନଙ୍କର ଭାବାର୍ଥ, ସ୍ଥିତିର ଦେବତା ବିଷ୍ଣୁ ଭୂତାଦିଙ୍କ ସହିତ ଇନ୍ଦ୍ରିୟଧାରୀ ହୋଇ ଜୀବ ହୁଅନ୍ତି । ତେଣୁ ଶ୍ରୀମଦ୍ଭାଗବତର ଦ୍ୱିତୀୟ ସ୍କନ୍ଦରେ ଭଗବାନ କହିଛନ୍ତି—"ହେ ନାରଦ! ମୁଁ (ବ୍ରହ୍ମା) ଯେତେବେଳେ ଯଜ୍ଞ କରୁଥିଲି, ସେହି ଯଜ୍ଞରେ ବିଷ୍ଣୁ ହୟଶୀର୍ଷ ନାମରେ ଯଜ୍ଞପୁରୁଷ ରୂପରେ ଆବିର୍ଭୂତ ହୋଇଥିଲେ ।"

**ମତ୍ସ୍ୟ–** ପ୍ରଥମେ ପୃଥିବୀ ଜଳରେ ପରିପୂର୍ଣ୍ଣ ଥିଲା । ସେତେବେଳେ ଯେଉଁସବୁ ଜୀବ ପ୍ରଥମେ ଜାତ ହେଲେ, ସେସବୁ ଜଳଚର ହେଲେ । ତେଣୁ ଭଗବାନଙ୍କର ପ୍ରଥମ ଅବତାର ମତ୍ସ୍ୟ । ଭଗବାନ୍ ପ୍ରଳୟକାଳୀନ କାରଣ ବାରିଧିରୁ ଜୀବପ୍ରକାଶିକା ଶକ୍ତି ଗ୍ରହଣପୂର୍ବକ ବେଦ ବା ସ୍ୱାଭାବିକ ଜ୍ଞାନ ସେଥିରେ ଅର୍ପଣ କରି ସୃଷ୍ଟିର ବିକାଶ କଲେ । ଭଗବାନ ବିଷ୍ଣୁଙ୍କର ସେତେବେଳେ ମତ୍ସ୍ୟ ଅବତାର; କାରଣ ସେ ମତ୍ ସ୍ୱ ଅର୍ଥାତ୍ ସମଭାବାପନ୍ନ ।

**କୂର୍ମ–** ପୃଥିବୀ କ୍ରମୋନ୍ନତି ପଥରେ ଚାଳିତ ହେବାରୁ ମତ୍ସ୍ୟଠାରୁ ଉନ୍ନତ ପ୍ରାଣୀ ଜାତ ହେଲେ । ସେସବୁ ପ୍ରାଣୀ ଜଳରେ ରହିପାରନ୍ତି, ପୁଣି ସ୍ଥଳଭାଗରେ

ମଧ୍ୟ ରହିପାରନ୍ତି । ଏପରି ଜୀବ କୂର୍ମ । ତେଣୁ ଭଗବାନଙ୍କ ଦ୍ୱିତୀୟ ଅବତାର ହେଲା କୂର୍ମ । ମତ୍ସ୍ୟ ଅବତାର ପୂର୍ବଜୀବର ଅବ୍ୟକ୍ତ ବୀଜଭାବ ଜ୍ଞାନାନ୍ୱିତ ହୋଇ ଜଡ଼ରେ ଅନ୍ୱିତ ହେଲା । ଦେବୀ ଓ ଦାନବକୂଳ ଅମୃତ ନିମିତ୍ତ ଉନ୍ମତ୍ତ ହେଲେ; କିନ୍ତୁ ଅମୃତ ବା ପ୍ରକୃତ ସୁଖର ତତ୍ତ୍ୱ କଅଣ, ତାହା ଆଦିଦେବ ବିଷ୍ଣୁ କଚ୍ଛପାକୃତି ଧାରଣ କରି ସଂହରଣ ଓ ବିକାଶ ଦେଖାଇ ବୁଝାଇଦେଇଗଲେ । ଏହା ସୃଷ୍ଟି ଓ ଲୟର କଥା ।

**ବରାହ**—ଏହାପରେ ଜୀବ କୂର୍ମଠାରୁ ଅଧିକ ଉନ୍ନତି ଲାଭ କଲା, ଜଳ ଛାଡ଼ି କେବଳ ସ୍ଥଳଭାଗରେ ବାସ କରିବାକୁ ଲାଗିଲା, ବଣ-ଜଙ୍ଗଲରେ ପଶୁ ଭାବରେ ବିଚରଣ କଲା । ତେଣୁ ବିଷ୍ଣୁଙ୍କର ତୃତୀୟ ଅବତାର ହେଲେ ବରାହ । ବିଷ୍ଣୁ ବରାହ ଅବତାର ହୋଇ କାରଣ ବାରିଧିମଗ୍ନା ବସୁନ୍ଧରାକୁ ଦଂଷ୍ଟ୍ରାଦ୍ୱାରା ଉଦ୍ଧାର କଲେ । ଜୀବ ନିଜର କର୍ମ ଫଳର ବୀଜ ଧରି ପ୍ରଳୟକାଳରେ କାରଣ-ବାରିରେ ନିମଜ୍ଜମାନ ଥିଲା । ବରାହ ଏ ସ୍ଥଳରେ କ୍ଷୀୟମାନ କାଳ ।

**ନୃସିଂହ**—ଏହାର ଭାବାର୍ଥ କାରଣ ଜଗତ୍‌ର ବାହାର କଥା । ଏହା ବୈଦିକ ଦେହତତ୍ତ୍ୱ । ହିରଣାକ୍ଷ ଓ ହିରଣ୍ୟ କଶିପୁ ଦୁଇ ଭାଇ । ଅବିଦ୍ୟାଗର୍ଭଜାତ ରିପୁ ଭଗବାନଙ୍କର ଶତ୍ରୁ; କିନ୍ତୁ ଭଗବାନଙ୍କର କେହି ଶତ୍ରୁ ନୁହଁନ୍ତି । ହିରଣାକ୍ଷ ଓ ହିରଣ୍ୟ କଶିପୁ ଦୁହେଁ ଭଗବାନ ବିଷ୍ଣୁଙ୍କର ଦ୍ୱାରୀ ଥିଲେ । ଲୋକେ ସହଜରେ ଯେପରି ଭଗବାନଙ୍କ ଦେଖା ପାଇ ନ ପାରିବେ, ସେଥିପାଇଁ ଦ୍ୱାରୀ ଆବଶ୍ୟକ । କିନ୍ତୁ ବ୍ରାହ୍ମଣଙ୍କ (ବ୍ରହ୍ମଙ୍କ) ଭଗବତ୍ ଦର୍ଶନରେ ଦ୍ୱାରୀ ବିଘ୍ନ ଉତ୍ପାଦନ କରିଥିବାରୁ ଏ ଦୁଇ ଭାଇଙ୍କ ଜନ୍ମ । ସାଧକଙ୍କ ବିଶ୍ୱାସ, ପ୍ରହ୍ଲାଦ ନାମରେ ଆଖ୍ୟାତ । ଆତ୍ମଦର୍ଶନରେ ଅଜ୍ଞାନ ବାଧା ଦେଇଥାଏ । ତେଣୁ ହିରଣ୍ୟକଶିପୁର ସାଧୁଭକ୍ତପୀଡ଼ନ । ଅଜ୍ଞାନନାଶ ହିଁ ହିରଣ୍ୟକଶିପୁର ବିକାଶ ।

ଉପରିଲିଖିତ ଜୀବ ପଶୁଠାରୁ ଉନ୍ନତ ହେଲା ଓ ଅଧେ ପଶୁ ଅଧେ ମନୁଷ୍ୟ ସ୍ୱଭାବ ଧାରଣ କଲା । ତେଣୁ ବିଷ୍ଣୁ ନରସିଂହ ଅବତାର ହୋଇ ପଶୁପ୍ରକୃତି ରୂପ ଅଜ୍ଞାନ ନାଶ କଲେ ।

**ବାମନ**– ଜୀବ ପଶୁଠାରୁ କ୍ରମେ ଉନ୍ନତ ହେଲା; ମାତ୍ର ସଂପୂର୍ଣ୍ଣ ମନୁଷ୍ୟ ନ ହୋଇ ଖର୍ବାକୃତି ଧାରଣ କଲା; ତେଣୁ ବିଷ୍ଣୁଙ୍କର ଅବତାର ବାମନ ।

**ପରଶୁରାମ**– ମନୁଷ୍ୟ ତମୋଗୁଣ ବିଶିଷ୍ଟ ଥିଲା । ଭଗବାନ ନରସିଂହ

ଅବତାରରେ ପଶୁ ପ୍ରକୃତି ବା ତମୋଗୁଣ ନାଶ କଲେ । କିନ୍ତୁ ବଳିଠାରୁ ରଜୋଗୁଣର ଆରମ୍ଭ ହେଲା । ପରଶୁରାମଙ୍କ ସମୟରେ ରଜୋଗୁଣ ପ୍ରବଳ ହୋଇଉଠିଲା । ସେହି ଗୁଣକୁ ନାଶ କରି ସତ୍ତ୍ୱଗୁଣ ପ୍ରତିଷ୍ଠା କରିବା ନିମିତ୍ତ ବିଷ୍ଣୁଙ୍କୁ ରଜୋଗୁଣରୂପୀ ପରଶୁରାମ ଆକାର ଧାରଣ କରିବାକୁ ପଡ଼ିଥିଲା ।

ଶ୍ରୀରାମ– ଶ୍ରୀରାମଚନ୍ଦ୍ରଙ୍କ ଠାରୁ ସତ୍ତ୍ୱଗୁଣର ଆରମ୍ଭ । ଶ୍ରୀରାମଚନ୍ଦ୍ରଙ୍କ ସମୟରୁ ଆଦର୍ଶ ସମାଜ ସ୍ଥାପିତ ହେଲା ।

ବଳରାମ– ରଜୋଗୁଣର ଧ୍ୱଂସ ହୋଇ ସତ୍ତ୍ୱଗୁଣ ଆରମ୍ଭ ହୋଇଛି; ମାତ୍ର ତା'ର ଉତ୍କର୍ଷ ହୋଇ ନାହିଁ । ବିଷ୍ଣୁ ସତ୍ତ୍ୱଗୁଣର ଉତ୍କର୍ଷ ସାଧନ ନିମିତ୍ତ ହଳଧର ରୂପ ଧାରଣ କଲେ; ତେଣୁ ତାଙ୍କର ଆୟୁଧ ହେଲା କର୍ଷଣଯନ୍ତ୍ର ।

ବୁଦ୍ଧଦେବ– ବୁଦ୍ଧଦେବ୍‌ଙ୍କ ଠାରୁ ତପସ୍ୟାର ଆରମ୍ଭ । ସତ୍ତ୍ୱଗୁଣର ଉତ୍କର୍ଷ ହେଲାପରେ ତପସ୍ୟାର ସୃଷ୍ଟି । ଜୀବ କିପରି ଅହିଂସା ଓ ତପସ୍ୟା ଦ୍ୱାରା ଭଗବାନଙ୍କ ଆଡ଼କୁ ଅଗ୍ରସର ହୋଇପାରିବ, ସେହି ଶିକ୍ଷା ଦେବା ଉଦ୍ଦେଶ୍ୟରେ ଭଗବାନ୍ ବୁଦ୍ଧ ଅବତାର ହେଲେ ।

କଲ୍‌କି– କଲ୍‌କି ଧ୍ୱଂସାବତାର ।

ଗୁଣାବତାର ଓ ସୃଷ୍ଟି-ତତ୍ତ୍ୱର ଏତେ ବୈଜ୍ଞାନିକ ଓ ସୂକ୍ଷ୍ମ ଯୁକ୍ତି ଅନ୍ୟ କେଉଁଠାରେ ନାହିଁ । ଭାରତର ସୁବର୍ଣ୍ଣ ଯୁଗରେ ଯୋଗବଳଶାଳୀ ଋଷିମାନଙ୍କ କର୍ତ୍ତୃକ ଏହିସବୁ ସୂକ୍ଷ୍ମ ସୃଷ୍ଟିବିଜ୍ଞାନ ଆବିଷ୍କୃତ ହୋଇଅଛି । ଅନଧିକାରୀ ତାହା ପାଠ କଲେ ବିକୃତ, ବିଶୃଙ୍ଖଳ ବୋଲି ଜ୍ଞାନ କରିବା ସ୍ୱାଭାବିକ୍ । ଶାସ୍ତ୍ର ଅଧ୍ୟୟନରେ ଜ୍ଞାନ ହୁଏ ନାହିଁ; ଜ୍ଞାନ ହୁଏ ସାଧନାରେ । ପ୍ରଥମେ ସାଧନବଳ ସଂଗ୍ରହ କର, ବୁଝିପାରିବ, ହିନ୍ଦୁଧର୍ମ ଅଲଙ୍ଘ୍ୟ ପ୍ରମାଣର ସୁଦୃଢ଼ ଭିତ୍ତିରେ ବଦ୍ଧମୂଳ ହୋଇ ସ୍ୱୟଂସିଦ୍ଧ ବ୍ରହ୍ମବିଦ୍ୟାରୂପରେ ଚିରକାଳ ବିଦ୍ୟମାନ ରହିଛି ।

## ପୂର୍ଣ୍ଣାବତାର ଓ ଗୁଣାବତାର

କର୍ମସମଷ୍ଟିକୁ ଆଶ୍ରୟ କରି ଭଗବାନଙ୍କର ଅବତାର ହୁଏ । ସେ ନିଜେ ଦେହ ଧାରଣ କରନ୍ତି ନାହିଁ । ଜଗତର କୌଣସି ମହାପୁରୁଷଙ୍କ ଦେହରେ ସେ ଜନ୍ମଗ୍ରହଣ କରନ୍ତି । ଜଗତର ହିତକାମନା କରି ଯେଉଁମାନେ ଜଗତର କୌଣସି ବିଶେଷ ଅଧିକାର ପାଇଛନ୍ତି, ଯେଉଁମାନେ ଆଧିକାରିକ ପୁରୁଷ, ସେମାନଙ୍କ ଦେହରେ ସେ ଆବିର୍ଭୂତ ହୁଅନ୍ତି । ଗୋଟିଏ ଦେହକୁ ଆଶ୍ରୟ କରିବାକୁ ହେଲେ

ତାହାର କାରଣ ବା ବୀଜ ଥିବା ଆବଶ୍ୟକ । ସେଥିରୁ ସୂକ୍ଷ୍ମର ସୃଷ୍ଟି ହୁଏ; ପରେ ସ୍ଥୂଳ । କିନ୍ତୁ ଭଗବାନଙ୍କର ତ କାମନା କିମ୍ବା ବାସନା ନାହିଁ, ଯେଉଁଥିରେ ତାଙ୍କର କାରଣ-ଦେହ ରହିବ । ତେଣୁ ମହାପୁରୁଷମାନଙ୍କର ଜଗତହିତକର କାମନାକୁ ଅବଲମ୍ବନ କରି ଭଗବାନଙ୍କ ଇଚ୍ଛାର ଉଦ୍ଭବ ହୁଏ । ଏହି କାରଣରୁ ତାଙ୍କ ଆବିର୍ଭାବ ସମ୍ଭବ ହୁଏ ।

ଶ୍ରୀକୃଷ୍ଣ ପୂର୍ଣ୍ଣ ଅବତାର । ନାରାୟଣ ଋଷିଙ୍କ ଦେହରେ ତାଙ୍କର ଆବିର୍ଭାବ ହୋଇଥିଲା । ଅନ୍ୟାନ୍ୟ ଅବତାର ଗୁଣାବତାର । ଶ୍ରୀକୃଷ୍ଣଙ୍କର ଲୀଳା ଦୁଇ ଭାବରେ ଦେଖାଯାଏ—ଐଶ୍ୱର୍ଯ୍ୟ ଭାବରେ ଓ ମାଧୁର୍ଯ୍ୟ ଭାବରେ । ଭଗବାନଙ୍କଠାରେ ଏ ଦୁଇ ଭାବର ସାମଞ୍ଜସ୍ୟ ବିଦ୍ୟମାନ । ସେ ଉଭୟ ଷଡ଼ୈଶ୍ୱର୍ଯ୍ୟଶାଳୀ ଓ ପ୍ରେମସ୍ୱରୂପ । ଜଣେ ଜଣେ ଭକ୍ତ ତାଙ୍କର ଗୋଟିଏ ଗୋଟିଏ ଭାବର ଉପାସନା କରିଥାନ୍ତି । ଶାକ୍ତମାନେ ଏଶ୍ୱର୍ଯ୍ୟଭାବର ଓ ବୈଷ୍ଣବମାନେ ମାଧୁର୍ଯ୍ୟଭାବର ଉପାସକ । ଶକ୍ତି ଅନନ୍ତ—ତାର ପ୍ରକାଶ ମଧ୍ୟ ଅନନ୍ତ ଓ ବିଚିତ୍ର; କିନ୍ତୁ ଭାବ ଏକ ଓ ଅଖଣ୍ଡ ଅଥଚ ଶକ୍ତି ଓ ଭାବ ଉଭୟେ ଓତଃପ୍ରୋତ ଭାବରେ ବିଦ୍ୟମାନ ।

ଅବତାର ଓ ଗୁରୁଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି ଯେ ଗୁରୁ ବ୍ୟଷ୍ଟିଙ୍କ ନିମିତ୍ତ ଆସନ୍ତି ଆଉ ଅବତାର ସମଷ୍ଟି କର୍ମ ନିମିତ୍ତ ଆସନ୍ତି । ଗୁରୁ ଅଳ୍ପ ଲୋକଙ୍କୁ କୃପା କରନ୍ତି; ମାତ୍ର ଅବତାର ଅଳ୍ପ ଲୋକଙ୍କୁ କୃପା କରିବା ନିମିତ୍ତ କେବେହେଲେ ଆସନ୍ତି ନାହିଁ । ସେ ଅନନ୍ତ ଜଗତର ଅଧୋଗତିର ସ୍ରୋତ ରୋଧ କରିବାକୁ ସାର୍ବଭୌମ ଭାବରେ ଆସନ୍ତି । ତେବେ ଦେଶଭେଦରେ ତାଙ୍କର ପ୍ରଭେଦ ଦୃଷ୍ଟ ହୁଏ । ଗୋଟିଏ ଦେଶର ପ୍ରୟୋଜନ ଅନୁସାରେ ସେ ଆସନ୍ତି । ସେ ମହମ୍ମଦ ହୋଇ ଆରବ ଦେଶକୁ ଆସିଥିଲେ; ଯୀଶୁ ହୋଇ ଇଉରୋପକୁ ଆସିଥିଲେ, ଇରାଥ୍ରୁସ୍ ହୋଇ ପାରସ୍ୟକୁ ଆସିଥିଲେ; ପୁଣି କେତେ ରୂପ ଧରି ଆମର ଏ ଦେଶକୁ ଆସିଛନ୍ତି ।

## ଜ୍ଞାନାବତାର ଓ ଲୀଳାବତାର

କପିଳ, ଦତ୍ତାତ୍ରେୟ, କୁମାର ଚତୁଷ୍ଟୟ, ନରନାରାୟଣ, ଋଷଭ, ଧ୍ରୁବ, ମନୁଗଣ, ବ୍ୟାସ, ଗୌତମ, ମୈତ୍ରେୟ ପ୍ରଭୃତି ଋଷିଗଣ ମନ୍ୱନ୍ତର ଅବତାର । ଜୀବ-ଜଗତର ଉତ୍କର୍ଷ ସାଧନା କରିବାକୁ ଏମାନେ ସମସ୍ତେ ଅବତୀର୍ଣ୍ଣ ହୋଇଥିଲେ । ଲୀଳାବତାର ଓ ଜ୍ଞାନାବତାରମାନେ ଏହି ସକଳ ମନ୍ୱନ୍ତରାଧିପତି ଋଷିମାନଙ୍କୁ

ଆଶ୍ରୟ କରି ଅବତୀର୍ଣ୍ଣ ହୁଅନ୍ତି । ନାରାୟଣଋଷିଙ୍କୁ ଆଶ୍ରୟ କରି ଲୀଳାବତାର ଶ୍ରୀକୃଷ୍ଣ ଏବଂ ଗୌତମଋଷିଙ୍କୁ ଆଶ୍ରୟକରି ଜ୍ଞାନାବତାରମାନେ ଅବତୀର୍ଣ୍ଣ ହୋଇଥିଲେ ।

କୌଣସି ବିଶେଷ କାର୍ଯ୍ୟସାଧନ ନିମିତ୍ତ କୌଣସି ବିଶେଷ ବ୍ୟକ୍ତିଙ୍କ ଠାରେ ଭଗବାନଙ୍କର ଯେଉଁ ବିକ୍ଷେପ ଶକ୍ତିର ଆବେଶ ହୋଇଥାଏ, ତାହାକୁ ଆବେଶାବତାର କୁହାଯାଏ । ପୃଥୁ ଆଦି ଆବେଶାବତାର । ଭଗବାନ ସ୍ୱକୀୟ ଲୀଳାରସ ଜୀବମାନଙ୍କୁ ଆସ୍ୱାଦନ କରାଇବାକୁ ଯେଉଁ ନରଦେହ ଧାରଣ କରନ୍ତି, ତାହା ଲୀଳାବତାର । ବୃନ୍ଦାବନଚନ୍ଦ୍ର ଶ୍ରୀକୃଷ୍ଣ ହିଁ ଏକମାତ୍ର ଲୀଳାବତାର ।

ଭଗବତ୍-ତତ୍ତ୍ୱ ଓ ତତ୍ପ୍ରାପ୍ତିର ଉପାୟ ଜଣାଇବାକୁ ଏବଂ ନିଜେ ଆଚରଣ କରି ଶିକ୍ଷା ଦେବାକୁ ଭଗବାନ ଗୁରୁରୂପରେ ଯେଉଁ ଅବତାର ହୁଅନ୍ତି, ତାହାକୁ ଜ୍ଞାନାବତାର କୁହାଯାଏ । ଶଙ୍କର, ରାମାନନ୍ଦ, ରାମାନୁଜ, ଗୋରକ୍ଷନାଥ ପ୍ରଭୃତି ଯୋଗୀମାନେ ଏବଂ ଗୌରାଙ୍ଗଦେବ ପ୍ରଭୃତି ଜ୍ଞାନାବତାର ।

ଅବତାରଙ୍କର ଆଦି ନାହିଁ- ଅନ୍ତ ନାହିଁ । ପୁରୁଷାବତାର, ଗୁଣାବତାର, ଯୁଗାବତାର, ମନ୍ୱନ୍ତରାବତାର, ଆବେଶାବତାର ପ୍ରଭୃତି ମଧ୍ୟରୁ କେହି ଭଗବାନଙ୍କର ଅଂଶ, କେହି ବା କଳା ଏବଂ ଆଉ କେହି ବା ଭଗବାନଙ୍କର ବିଭୂତି । ଏକମାତ୍ର ଲୀଳାବତାର ଶ୍ରୀକୃଷ୍ଣ ସ୍ୱୟଂ ଭଗବାନଙ୍କର ଅବତାର ।

## ନିତ୍ୟ ଓ ନୈମିତ୍ତିକ ଅବତାର

ସତ୍ୱ, ରଜଃ ଓ ତମଃ ଏହି ତିନି ଗୁଣ ଦ୍ୱାରା ସ୍ୱରୂପ ବିଚ୍ଛିନ୍ନ ହୋଇ ଭଗବାନ ବ୍ରହ୍ମା, ବିଷ୍ଣୁ ଓ ଶିବ ରୂପରେ ପ୍ରକାଶିତ ହୁଅନ୍ତି । ଅତଏବ ଏମାନେ ଗୁଣାବତାର । ଗୁଣର କ୍ଷୋଭ ନ ହେଲେ ତତ୍ତ୍ୱଗୁଡ଼ିକ କ୍ରିୟାଶୀଳ ହୁଅନ୍ତି ନାହିଁ । ତେଣୁ ପ୍ରଥମ ପୁରୁଷରେ ଏମାନେ ମହାବ୍ରହ୍ମା, ମହାବିଷ୍ଣୁ ଓ ମହାଶିବ; ଦ୍ୱିତୀୟ ପୁରୁଷରେ ବ୍ରହ୍ମା, ବିଷ୍ଣୁ, ଶିବ; ତୃତୀୟ ପୁରୁଷରେ ମନ, ବୁଦ୍ଧି ଓ ଅହଙ୍କାର ରୂପରେ ଅବତୀର୍ଣ୍ଣ ହୁଅନ୍ତି । ସୁତରାଂ, ଏମାନେ ଗୁଣାବତାର । ବ୍ରହ୍ମାଦି କୀଟ-ପତଙ୍ଗ-ତୃଣପର୍ଯ୍ୟନ୍ତ ଭଗବାନଙ୍କର ଅବତାର । ତନ୍ମଧ୍ୟରେ ଏହି ପୁରୁଷାବତାର ଓ ଗୁଣାବତାର ନିତ୍ୟ, ଯୁଗାବତାର ଓ ଅନ୍ୟାନ୍ୟ ଅବତାର ନୈମିତ୍ତିକ ଅର୍ଥାତ୍ ଏମାନେ ବିଶେଷ କାର୍ଯ୍ୟ ସାଧନା ନିମିତ୍ତ ଅବତୀର୍ଣ୍ଣ ହୁଅନ୍ତି ।

ଜୀବଜଗତରେ ଧର୍ମ-ବିପ୍ଳବର ଗୋଟିଏ ଧାରାବାହିକ କ୍ରମ ଅଛି । ଏହି ଧର୍ମଗ୍ଲାନି ଓ ଅଧର୍ମର ପ୍ରାଦୁର୍ଭାବ ବ୍ୟକ୍ତିବିଶେଷଙ୍କ କୃତ ନୁହେଁ । ରଜଃ ଓ ତମୋଗୁଣର ବୃଦ୍ଧିଦ୍ୱାରା ଜୀବଜଗତର ଅଧୋଗତି ଉପସ୍ଥିତ ହୁଏ । ପ୍ରକୃତିର ସ୍ଥୂଳ ପରିଣାମଶୀଳତା ହିଁ ଅଧୋଗତିର କାରଣ । ତତ୍ତ୍ୱସବୁ ଉଦ୍ଭୂତ ହେଲେ ଜୀବଦେହ ପ୍ରଥମେ ସୂକ୍ଷ୍ମତତ୍ତ୍ୱ ଦ୍ୱାରା ନିର୍ମିତ ହୁଏ । କାଳକ୍ରମେ ଦେହର ସ୍ଥୁଳତା ଘଟେ ଏବଂ ତତ୍ତ୍ୱସବୁ ସ୍ଥୁଳରୁ ସ୍ଥୁଳତର ହୁଅନ୍ତି । ଜୀବନିବାସ ଭୂମି ପୃଥିବୀ ମଧ୍ୟ କ୍ରମେ ଜଡ଼ତାର ଶେଷ ସୀମାରେ ଉପନୀତ ହୁଏ । ରଜଃ ଓ ତମୋଗୁଣ ବୃଦ୍ଧିଦ୍ୱାରା ମାନବଗଣ ଦାନବଭାବାପନ୍ନ ହୁଅନ୍ତି । ଏହିପରି ଯେତେବେଳେ ଆସୁରିକ ଭାବ ପ୍ରବଳ ହୁଏ, ଭଗବାନ ପ୍ରକୃତ ସତ୍ତ୍ୱଗୁଣ ଜଗତରେ ବ୍ୟାପ୍ତ କରନ୍ତି । ଯୁଗ, ମନ୍ୱନ୍ତର, ଆବେଶ, ଲୀଳା ଓ ଜ୍ଞାନ ପ୍ରଭୃତି ଅବତାର ଯୁଗାବତାର ଶ୍ରେଣୀର ଅନ୍ତର୍ଗତ ।

ଯେଉଁମାନେ ଈଶ୍ୱରଙ୍କ ସ୍ତରର, ସେମାନେ ନିର୍ଦ୍ଦିଷ୍ଟ କେତେଗୁଡ଼ିଏ କାର୍ଯ୍ୟ କରିବା ପାଇଁ ଅବତରଣ କରନ୍ତି । ସେ କାର୍ଯ୍ୟ ସେମାନଙ୍କୁ କରିବାକୁ ହୁଏ । ସୁତରାଂ, ସେମାନେ ଏକପ୍ରକାର ପ୍ରକୃତିର ଅଧୀନ । ଯେ ଅବତାର, ସେ ସ୍ୱେଚ୍ଛାଧୀନ । ନିର୍ଦ୍ଦିଷ୍ଟ କୌଣସି କାର୍ଯ୍ୟରେ ସେ ବାଧ୍ୟ ନୁହଁନ୍ତି । ପ୍ରକୃତି ତାଙ୍କ ଅଧୀନ । ଇଚ୍ଛାନୁରୂପେ ସେ ପ୍ରକୃତିକୁ ବ୍ୟବହାର କରି କାର୍ଯ୍ୟ କରିଯାଆନ୍ତି ।

ଜ୍ଞାନସହିତ ନାଟ୍ୟାଭିନୟ କରାଯାଏ । ଆଉ ସଂସାରାଭିନୟ ଅଜ୍ଞାନଭାବରେ କରାଯାଏ ବୋଲି ମନ ସେଥିରେ ଲାଗିରହେ । ଜଣେ ଅଭିନୟ କର୍ତ୍ତା ଓ ରଚୟିତା ଉଭୟ ହୋଇପାରନ୍ତି । ଭଗବାନ ମଧ୍ୟ ସେହିପରି । ରାମ ହୋଇ ସେ ସୀତାଙ୍କ ପାଇଁ କାନ୍ଦିଛନ୍ତି । ଶ୍ରୀକୃଷ୍ଣ ଅବତାରରେ ସେ ଅବତରଣ କରିଆସି କେତେ କୀର୍ତ୍ତି କରି ଅଭିନୟକୁ ମନୋମୁଗ୍ଧକର କରିପାରିଛନ୍ତି । ଅଭିନୟ କରୁଛି ବୋଲି ଜ୍ଞାନ ଥାଇ ଆସିବାରେ ହିଁ ଆମୋଦ ଅଛି ।

## ଶ୍ରୀକୃଷ୍ଣ ଓ ଗୌରାଙ୍ଗ

ଭଗବାନ ସଚ୍ଚିଦାନନ୍ଦ ଘନବିଗ୍ରହ । ସେ ଗୁଣମୟ ଶ୍ରୀକୃଷ୍ଣଙ୍କ ଦେହରେ ଆବିଷ୍ଟ ହୋଇଥିଲେ । ବ୍ରଜ ଲୀଳାରେ ତାଙ୍କର ପୂର୍ଣ୍ଣ ଆବେଶ, ମଥୁରାରେ ଗୁଣମୟ ଦେହର କ୍ରିୟା । ଯେପରି ଜଡ଼ଜଗତର ବିକାଶନିମିତ୍ତ ସୂର୍ଯ୍ୟ ନିଜେ ଆସିବା ପ୍ରୟୋଜନ ନାହିଁ, ତାଙ୍କ କିରଣ ଆସିଲେ ହେଲା, ସେହିପରି ବୃନ୍ଦାବନ ଲୀଳାରେ

ତାଙ୍କ କିରଣ ମାତ୍ର ଆସିଥିଲା । ନିତ୍ୟଜଗତ ନଷ୍ଟ କିମ୍ବା ଶୂନ୍ୟ କରି ସେ ଭୁବନାନନ୍ଦକୁ ଆସିପାରନ୍ତି ନାହିଁ । ତାହା ହେଲେ ନିତ୍ୟ ବୃନ୍ଦାବନର ମାହାତ୍ମ୍ୟ ରହିବ ନାହିଁ ।

ଅବତାରମାନେ ଆଦର୍ଶ ସ୍ୱରୂପ । ଏମାନଙ୍କୁ ଆଦର୍ଶ ବା ଲକ୍ଷ୍ୟ କରି କର୍ମ କଲେ ସେହି କର୍ମ ସହଜରେ ସିଦ୍ଧ ହୁଏ । ଏମାନଙ୍କୁ ଲକ୍ଷ୍ୟ କରି କର୍ମ କଲେ ଏମାନେ ଯେଉଁ ଶାନ୍ତିରେ ବିରାଜମାନ ଥିଲେ, ଆମମାନଙ୍କର ମଧ୍ୟ ସେହି ଶାନ୍ତି ଲାଭ ହୁଏ ।

ଭଗବାନ ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇ କେତେବେଳେ ଶୁକ୍ଳବର୍ଣ୍ଣ, କେତେବେଳେ କୃଷ୍ଣବର୍ଣ୍ଣ, କେବେ ରକ୍ତବର୍ଣ୍ଣ, କେତେବେଳେ ବା ପୀତବର୍ଣ୍ଣ ହୋଇଥାନ୍ତି । ଶ୍ରୀଗୌରାଙ୍ଗଦେବ ପୀତବର୍ଣ୍ଣ । ଚୈତନ୍ୟଦେବଙ୍କର ତତ୍କାଳୀନ ଆକୃତି ଦେଖି ସମସ୍ତେ ସ୍ତମ୍ଭିତ ହୋଇଯାଉଥିଲେ । ତାଙ୍କ ଚକ୍ଷୁ ସର୍ବଦ ଊର୍ଦ୍ଧ୍ୱ ଦୃଷ୍ଟିରେ ଅପ୍ରାକୃତ ପଦାର୍ଥର ଅନୁସନ୍ଧାନରେ ରତ ଥିଲା । ସେତେବେଳେ ଲୋକେ କାପାଳିକମାନଙ୍କ ପ୍ରରୋଚନାରେ କେବଳ ଛାଗବଳିରେ ତୃପ୍ତି ଲାଭ ନ କରି ନରବଳି ପ୍ରଦାନ କରୁଥିଲେ । ଶ୍ରମଣମାନେ ପଲ୍ଲୀ ଭ୍ରମଣ କରି ସତ୍ୟଧର୍ମରେ ଜଳାଞ୍ଜଳି ଦେଉଥିଲେ । ସେମାନଙ୍କ ପରିତ୍ରାଣ ନିମିତ୍ତ ଭଗବାନ ଅବତୀର୍ଣ୍ଣ ହୋଇଥିଲେ ।

ଅସୁର-ସଂହାର ଭଗବାନଙ୍କର ମୁଖ୍ୟ କାର୍ଯ୍ୟ ନୁହେଁ । ସେ ପ୍ରେମମୟ । ପ୍ରେମରସାସ୍ୱାଦନ ତାଙ୍କର ଲୀଳା । ଅସୁର-ସଂହାର ତାଙ୍କ କାର୍ଯ୍ୟ ନୁହେଁ । ଅସୁରମାନଙ୍କୁ ସଦ୍‌ଗତି ଓ ପ୍ରେମଦାନ କରିବା ତାଙ୍କର କାର୍ଯ୍ୟ । ପୂର୍ଣ୍ଣ ଅବତାରରେ ପ୍ରେମଦାନ ପ୍ରୟୋଜନ । ଭଗବାନ ଶ୍ରୀକୃଷ୍ଣରୂପରେ ଅବତୀର୍ଣ୍ଣ ହୋଇ ପ୍ରେମଲୀଳା କରିଥିଲେ; କିନ୍ତୁ ସେ ଲୀଳାରେ ଯାହା ଅସ୍ଫୁଟ ଥିଲା, ତାହା ପ୍ରସ୍ଫୁଟ କରିବା ନିମିତ୍ତ ଗୌରାଙ୍ଗଦେବ ଆସିଥିଲେ । ସ୍ୱୟଂ ଭଗବାନଙ୍କ ବ୍ୟତୀତ ଭଗବତ୍-ତତ୍ତ୍ୱ କେହି ବୁଝାଇପାରନ୍ତି ନାହିଁ ।

ଚୈତନ୍ୟଦେବଙ୍କ ପୂର୍ବରୁ ପଣ୍ଡିତ, ମୂର୍ଖ, ଧନୀ, ଦରିଦ୍ର, ରସିକ, ବୈଷୟିକ କେହି କାହାସହିତ ମିଳିମିଶି ପାରୁ ନଥିଲେ । କରୁଣା ବରୁଣାଳୟ ଶ୍ରୀଗୌରାଙ୍ଗବେଦ ପଣ୍ଡିତମାନଙ୍କର ପାଣ୍ଡିତ୍ୟ ଅଭିମାନ, ମୂର୍ଖମାନଙ୍କର ଶୂନ୍ୟଗର୍ଭ ଗର୍ବ, ଧନୀମାନଙ୍କର ଆତ୍ମମ୍ଭରୀତା, ଦରିଦ୍ରମାନଙ୍କର ସଂକୋଚଭାବ, ରସିକମାନଙ୍କର ଏକଦେଶଦର୍ଶିତା,

ବିଷୟୀଲୋକଙ୍କ ବିଷୟରାଗ—ସମସ୍ତ ଅପସାରିତ କଲେ । ସମସ୍ତେ ଦ୍ରବୀଭୂତ ହୋଇ ମିଶ୍ରିତ ହେଲେ । ତାଙ୍କ ରାସଲୀଳାତତ୍ତ୍ୱ କଳିକଳୁଷିତ ଜୀବକୁଳ ବୁଝି ନ ପାରି ତାହାର କଦର୍ଥ କରିବାରୁ ସେ ହରିନାମ ସଂକୀର୍ତ୍ତନ କରି ସେମାନଙ୍କୁ ରାସଲୀଳା-ତତ୍ତ୍ୱ ବୁଝାଇଥିଲେ ।

## ଆଦର୍ଶ ଶିକ୍ଷା

ଆଦର୍ଶ ଶିକ୍ଷା ଦେବାପାଇଁ ମନୁଷ୍ୟ ରୂପରେ ଭଗବାନଙ୍କୁ ଆସିବାକୁ ହୁଏ । ଭଗବାନ ଗୋଲୋକରେ ରହି ଇଚ୍ଛାକଲାମାତ୍ରେ ଜୀବମାନେ ଯଦି ପ୍ରେମରେ ନାଚି ଉଠନ୍ତେ, ତାଙ୍କୁ ଏଠାକୁ ଆସିବାକୁ ପଡ଼ନ୍ତା ନାହିଁ; କିନ୍ତୁ ତଦ୍ୱାରା ତାଙ୍କ ଲୀଳା ଅକ୍ଷୁଣ୍ଣ ରହନ୍ତା ନାହିଁ । ସୁତରାଂ, ସେ ମନୁଷ୍ୟ ରୂପରେ ମନୁଷ୍ୟ ସମାଜକୁ ଆସନ୍ତି । ଅଲୌକିକ ଭାବରେ ଆସିଲେ ମନୁଷ୍ୟ ତାଙ୍କ ଆଦର୍ଶ ଧରିପାରିବେ ନାହିଁ । ଏଣୁ ଅବତାରମାନେ କୌଣସି ଅଲୌକିକ କାର୍ଯ୍ୟ କରନ୍ତି ନାହିଁ । ସେମାନେ ସାଧାରଣ ମନୁଷ୍ୟପରି ପ୍ରଥମେ ବିକଶିତ ହୁଅନ୍ତି । ତେବେ ପାର୍ଥକ୍ୟ ଏତିକି ଯେ ସାଧାରଣ ମନୁଷ୍ୟ ଅନେକ ଦିନରେ ଯାହା କରନ୍ତି, ଭଗବାନ ତାହା ଦିନକ ଭିତରେ କରିପାରନ୍ତି । ତେଣୁ ଶ୍ରୀଚୈତନ୍ୟଦେବ ବର୍ଷକର ପାଠ ଦିନକରେ ଆୟତ୍ତ କରିପାରୁଥିଲେ; କିନ୍ତୁ ଯୀଶୁଖ୍ରୀଷ୍ଟ ବା ଶ୍ରୀଗୌରାଙ୍ଗଦେବଙ୍କୁ ସାଧାରଣ ମନୁଷ୍ୟଙ୍କ ପରି ଆଚରଣ କରିବାକୁ ହୋଇଥିଲା । ତେଣୁ ଶଙ୍କରାଚାର୍ଯ୍ୟ ପରମଯୋଗୀ ଶଙ୍କରଙ୍କ ଅବତାର ହୋଇ ସୁଦ୍ଧା ଯୋଗସାଧନ କରିଥିଲେ । ଏମାନଙ୍କ ସିଦ୍ଧି ଅନାୟାସରେ ହୋଇଥାଏ । ରାମକୃଷ୍ଣ ପରମହଂସଦେବ ମାତ୍ର ତିନି ଦିନରେ ନିର୍ବିକଳ୍ପ ସମାଧି ଲାଭ କରିଥିଲେ । ଶଙ୍କର ଓ ବୁଦ୍ଧଦେବଙ୍କ ପ୍ରଚାର ରାଜଶକ୍ତି ସାହାଯ୍ୟରେ ହୋଇଥିଲା । ଜ୍ଞାନ ପ୍ରଚାର ପାଇଁ ରାଜଶକ୍ତିର ସାହାଯ୍ୟ ଆବଶ୍ୟକ ହୋଇପାରେ; କିନ୍ତୁ ପ୍ରେମପ୍ରଚାର ନିମିତ୍ତ କାହାର ସାହାଯ୍ୟ ଦରକାର ହୁଏ ନାହିଁ । ଶ୍ରୀଗୌରାଙ୍ଗଦେବ ଓ ମହାତ୍ମା ଯୀଶୁଖ୍ରୀଷ୍ଟ ପ୍ରବଳ ରାଜଶକ୍ତି ବିରୁଦ୍ଧରେ ରହି ସୁଦ୍ଧା ପ୍ରଚାର କରିଥିଲେ ।

ଯେତେବେଳେ ଯାଗଯଜ୍ଞାଦିର ପ୍ରବର୍ତ୍ତନ ଥିଲା, ସୂକ୍ଷ୍ମଜଗତ ସହିତ ସ୍ଥୁଳଜଗତରେ ସମ୍ବନ୍ଧ ସ୍ଥାପିତ ହୋଇଥିଲା; ତେଣୁ କାମ୍ୟ କର୍ମଦ୍ୱାରା ଦେବତାମାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରାଯାଇପାରୁଥିଲା । ବୁଦ୍ଧଦେବ କର୍ମ ଅପେକ୍ଷା ଆହୁରି ଉନ୍ନତ ଆଦର୍ଶ ସ୍ଥାପନ କଲେ । ସେତେବେଳେ କାରଣ ଜଗତର ତତ୍ତ୍ୱ ଆବିଷ୍କୃତ ହେଲା । ଏ ଅବସ୍ଥା ସୁଷୁପ୍ତିପରି । ଏହାଛଡ଼ା ଯେ ଆହୁରି କିଛି ଅଛି, ଲୋକେ

ତାହାର ସମ୍ବାଦ ପାଇପାରି ନଥିଲେ। ତୁରୀୟାନନ୍ଦ କଳା ସେତେବେଳେ ଜନସାଧାରଣଙ୍କର ଅଜ୍ଞାତ ଥିଲା। ତାହାପରେ ଆଚାର୍ଯ୍ୟ ଶଙ୍କରଙ୍କର ଆବିର୍ଭାବ। ସେ ଜୀବସମ୍ମୁଖରେ ଆହୁରି ଉଚ୍ଚ ଆଦର୍ଶ ସ୍ଥାପନ କରିଗଲେ। ସେତେବେଳେ ତୁରୀୟଲୋକ ବିଷୟ ସାଧାରଣରେ ପ୍ରଚାରିତ ହେଲା। ପ୍ରତ୍ୟେକ ଅବତାରଙ୍କ କାର୍ଯ୍ୟ ନିଶୁଣିର ସୋପାନ ସଦୃଶ; କେଉଁଟି କାହାଠାରୁ ଅଲଗା ନୁହେଁ। ଭଗବାନ ସ୍ୱୟଂ ଅବତୀର୍ଣ୍ଣ ହୋଇ ଧର୍ମର ଦୃଷ୍ଟାନ୍ତ ହୋଇଛନ୍ତି। ରାମଚନ୍ଦ୍ର ସତ୍ୟ ଓ ନିଷ୍ଠାର ଆଦର୍ଶ।

ଶ୍ରୀଗୌରାଙ୍ଗଦେବ ଶେଷ ଅବତାର। ତାଙ୍କ ମତର ସାଧନା ମଧ୍ୟ ଅଦ୍ୱୈତ ମାର୍ଗର ସାଧନା। ତାଙ୍କ ମତରେ ଯେଉଁ ସାଧନା, ତାହା ସାର୍ବଭୌମ। ତାଙ୍କ ମତ ଅନୁସାରେ ସମସ୍ତେ ସାଧନା କରୁଛନ୍ତି। ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍ ସମସ୍ତେ ତାଙ୍କ ମତରେ ସାଧନା କରୁଛନ୍ତି। ଅବତାରଙ୍କ ପ୍ରବର୍ତ୍ତିତ ସାଧନା ହିଁ ଶ୍ରେଷ୍ଠ ସାଧନା।

ଶ୍ରୀଗୌରାଙ୍ଗଦେବ ହିଁ ପୂର୍ଣ୍ଣ ଅବତାର। ତାଙ୍କଭଳି ନିର୍ମଳ ଓ ପବିତ୍ର ଚରିତ୍ର ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ। ଅବତାରମାନେ ଦେଶକାଳ ବିଚାର କରି ଅବତୀର୍ଣ୍ଣ ହୁଅନ୍ତି। ବୁଦ୍ଧଦେବଙ୍କ ପୂର୍ବରୁ ଦେଶ ଅନ୍ଧ, କର୍ମବାଦୀ, ଅଜ୍ଞାନ, ଦୟାମାୟା ରହିତ ଥିଲା। ବୁଦ୍ଧଦେବ ବେଦର ନିନ୍ଦା କରି କର୍ମର ଅସାରତା ପ୍ରତିପାଦନ କଲେ; ସେ ଜ୍ଞାନଲାଭ ନିମିତ୍ତ ସମସ୍ତଙ୍କୁ ଉଦ୍‌ବୁଦ୍ଧ କଲେ। ବୁଦ୍ଧଦେବଙ୍କ ପରେ ସେହି ଧର୍ମରେ ବ୍ୟଭିଚାର ପ୍ରବେଶ କଲା। ଆଚାର୍ଯ୍ୟ ଶଙ୍କର ଆବିର୍ଭୂତ ହୋଇ ବୈଦାନ୍ତିକ ଧର୍ମ ପ୍ରଚାର କରି ହିନ୍ଦୁ ଧର୍ମର ପୁନଃପ୍ରତିଷ୍ଠା କଲେ। ଆଚାର୍ଯ୍ୟ ଶଙ୍କରଙ୍କ ପରେ ସାଧାରଣଙ୍କ ମୁଖରେ ସୋଽହଂଧ୍ୱନି ଶୁଣାଗଲେ ମଧ୍ୟ କାର୍ଯ୍ୟରେ ଅହଂତ୍ୱ ପରିପୂର୍ଣ୍ଣ ହେଲା। ସେତେବେଳେ ଶ୍ରୀଗୌରାଙ୍ଗଦେବ ଆବିର୍ଭୂତ ହୋଇ ଶୁଷ୍କ ଜ୍ଞାନୀମାନଙ୍କ ମଧ୍ୟରେ ପ୍ରେମଭକ୍ତି ସଞ୍ଚାର କରି ଦେଶ ଓ ଜାତିର ଗୌରବ ବୃଦ୍ଧି କରିଥିଲେ ଏବଂ ସାର୍ବଭୌମ ଧର୍ମ ପ୍ରଚାର କରିଥିଲେ। ହରିନାମ ବା ଗୁରୁନାମ ସାର୍ବଭୌମ ଧର୍ମ।

ବର୍ତ୍ତମାନ ଦେଶରେ ଜାଗରଣର କାଳ ଉପସ୍ଥିତ। ତେଣୁ ଏ ସମୟ ଅତିଶୟ ଭଲ ଓ ଅତିଶୟ ମନ୍ଦ ମଧ୍ୟ; କାରଣ, ପ୍ରତ୍ୟେକଙ୍କ ଭିତରେ କ୍ଷୁଧାପିପାସା ଜାଗ୍ରତ ହୋଇଉଠୁଛି। ଲୋକମାନେ ଭଲମନ୍ଦ ବିଚାର ନ କରି ଯାହା ସମ୍ମୁଖରେ

ପାଇବେ, ତାହା ଗ୍ରହଣ କଲେ ଶେଷରେ ମୃତ୍ୟୁମୁଖରେ ପଡ଼ିଯିବେ । ଏହି ସମୟରେ ଯଦି କେହି ଭୁଲ୍ ପଥରେ ପରିଚାଳିତ ହୁଅନ୍ତି, ତେବେ ସେମାନଙ୍କୁ ପ୍ରତ୍ୟାବର୍ତ୍ତନ କରାଇବା ଅତିଶୟ କଠିନ ବୋଧ ହେବ । ତେଣୁ ଦେଶର ଆଚାର୍ଯ୍ୟମାନେ ସତର୍କ ହୋଇ କାର୍ଯ୍ୟ କରିଯିବା ଦରକାର, ଏମାନେ କାହାକୁ ଯେପରି ବିପଥରେ ପରିଚାଳିତ ନ କରନ୍ତି । ଯେଉଁମାନେ ଚତୁର ଓ ସ୍ୱାର୍ଥପର, ସେମାନେ ଏହି ସମୟରେ ନିଜ ନିଜ ସ୍ୱାର୍ଥସାଧନ କରିନେବେ । ତେଣୁ ଉନ୍ନତି ସମୟରେ ନାନାବିଧ ବିଶୃଙ୍ଖଳା ଦେଖାଦେଇଥାଏ । ଅବତାରମାନେ ଏହି ବିଶୃଙ୍ଖଳାକୁ ସାମଞ୍ଜସ୍ୟ କରି ଶୃଙ୍ଖଳା ରକ୍ଷା କରିଥାନ୍ତି । ଅବତାର ଆସିବା ପୂର୍ବରୁ ନାନାପ୍ରକାର ଧର୍ମମତର ପ୍ରଚାର ହୋଇ ଦେଶରେ ନାନାବିଧ ବିଶୃଙ୍ଖଳା ଦେଖାଦେଇଥାଏ । ଅବତାର ଆସିବାମାତ୍ରେ ସମସ୍ତେ ଏକାକାର ହୋଇ ଧର୍ମର ପ୍ଲାବନରେ ନିଜକୁ ଭସାଇଦିଅନ୍ତି । ଏହା ହିଁ ଅବତାରମାନଙ୍କର ବିଶେଷତ୍ୱ । ଭାରତରେ ଧର୍ମର ଚରମ ବିକାଶ ହୋଇସାରିଛି । ବର୍ତ୍ତମାନ ଧର୍ମର ସମନ୍ୱୟୀ ଅବତାରଙ୍କର ପ୍ରୟୋଜନ ।

ଶ୍ରୀଗୌରାଙ୍ଗଦେବ ଭକ୍ତାବତାର । ସେ ଭଗବାନ ହୋଇ ମଧ୍ୟ ଭକ୍ତର ଭାବ ଧରି ଆବିର୍ଭୂତ ହୋଇଥିଲେ । ଶ୍ରୀକୃଷ୍ଣ ହିଁ ଭଗବାନଙ୍କର ଅବତାର । ଶ୍ରୀଗୌରାଙ୍ଗଦେବଙ୍କୁ ଭକ୍ତାବତାର ବୋଲି ପ୍ରଚାର କଲେ ପୃଥିବୀରେ ଦିନେ ସମସ୍ତେ ଗୌରାଙ୍ଗଦେବଙ୍କୁ ଗ୍ରହଣ କରିପାରିବେ ।

ଅବତାରମାନେ ଋଷି ଦେହକୁ ଅବଲମ୍ବନ କରି ଅବତୀର୍ଣ୍ଣ ହୁଅନ୍ତି । ଶ୍ରୀକୃଷ୍ଣ ନାରାୟଣଋଷିଙ୍କ ଦେହରେ ଅବତୀର୍ଣ୍ଣ ହୋଇଥିଲେ । ଗୌତମଋଷିଙ୍କ ଦେହରେ ବୁଦ୍ଧଦେବ, ଯୀଶୁଖ୍ରୀଷ୍ଟ, ମହମ୍ମଦ ଓ ମହାପୁରୁଷ ଶ୍ରୀଗୌରାଙ୍ଗଦେବ ପ୍ରକଟ ହୋଇଥିଲେ । ବର୍ତ୍ତମାନ ମୈତ୍ରେୟଋଷିଙ୍କ ଅଧିକାର ସମୟ ଆସିଛି । ଜଣେ ଋଷିଙ୍କ ଅଧିକାର ସମୟରେ ଭଗବାନ ଯେତେଥର ଏହି ପୃଥବୀକୁ ଆସିବାର ପ୍ରୟୋଜନ ହେବ, ସେହି ଋଷିଙ୍କ ଦେହକୁ ଅବଲମ୍ବନ କରି ଅବତୀର୍ଣ୍ଣ ହେବେ । ଏସିଆର ଜଳବାୟୁ ଅବତାର ଗ୍ରହଣର ଅନୁକୂଳ । ମୃତ୍ତିକାଭିତରେ ମଧ୍ୟ ତ୍ରିଗୁଣ ବେଦ ବିଦ୍ୟମାନ । ପୃଥିବୀ ମଧ୍ୟରେ ଭାରତବର୍ଷର ପରମାଣୁରେ ସାତ୍ତ୍ୱିକ ଗୁଣ ପ୍ରବଳ ।

ଅବତାରମାନଙ୍କ ଜୀବନ ଭୂତାବିଷ୍ଟ ଭଳି । କାହା ଭିତରେ ଭୂତ ପ୍ରବେଶ କଲେ ସେହି ଭୂତ ଯେପରି ସେ ଦେହକୁ ନେଇ ଯଥେଚ୍ଛା ବ୍ୟବହାର କରେ,

ସେତେବେଳେ ସେ ବ୍ୟକ୍ତିର ସ୍ୱତନ୍ତ୍ର ଅସ୍ତିତ୍ୱ ଲୋପପାଇଯାଏ, ସେହିପରି ଅବତାରମାନଙ୍କ ମଧ୍ୟରେ ଭଗବାନଙ୍କ ଶକ୍ତି ଆବିଷ୍ଟ ହୋଇ କର୍ମ କରାଇନିଏ । ସାଧାରଣଙ୍କ ଠାରେ ଭୂତ ଲାଗିଲେ ପୁଣି ଭୂତ ଛାଡ଼ିଯାଏ; କିନ୍ତୁ ଅବତାରମାନଙ୍କ ଦେହରେ ଚିତ୍‌ଶକ୍ତିର କ୍ରିୟା କେବେ ଲୋପ ହୁଏ ନାହିଁ । ଅବତାରମାନଙ୍କ ଆବିର୍ଭାବ ସମୟରେ ଯେଉଁ ଋଷିଙ୍କ ଦେହର ଜନ୍ମ ହୁଏ, ସେହି ଋଷିଙ୍କ ଦେହକୁ ଯନ୍ତ୍ରବତ୍ ବ୍ୟବହାର କରି ଭଗବାନ କର୍ମ କରିଥାନ୍ତି । ତାଙ୍କର ସ୍ୱାତନ୍ତ୍ର୍ୟ ଜ୍ଞାନ ନଥାଏ ।

ଜଗତର ଜୀବମାତ୍ରକେ ଅବତାର । ଯେଉଁମାନେ ଜଗତର ଭାବଧାରା ପରିବର୍ତ୍ତନ କରିବାକୁ ଅବତୀର୍ଣ୍ଣ ହୁଅନ୍ତି, ସେମାନେ ଅବତାର ବୋଲି ନିଜକୁ ଜାଣିପାରନ୍ତି ନାହିଁ । ସେମାନେ ଜ୍ଞାନୀଗୁରୁଙ୍କ ପଦାଶ୍ରୟ ଗ୍ରହଣ କରି ଆତ୍ମଜ୍ଞାନ ଲାଭ କରିଥାନ୍ତି । ସେମାନେ ମଧ୍ୟ ଆତ୍ମ-ଜ୍ଞାନଲାଭ ନିମିତ୍ତ ସାଧନା କରିଥାନ୍ତି । ପଞ୍ଚଭୂତ ମଧ୍ୟରେ ପଡ଼ିବାରୁ ସେମାନଙ୍କର ଜ୍ଞାନ ଲୋପ ହୋଇଯାଏ । ତଥାପି ଲୋକମାନେ ଅବଶ ହୋଇ ସେମାନଙ୍କର ଅନୁସ୍ମରଣ କରନ୍ତି । ଅବତାର ଅଜ୍ଞାନ ହୋଇ ଅବତରଣକରନ୍ତି ଏବଂ ଗୁରୁଜ୍ଞାନ ଲାଭ କରି ଅପରକୁ ଆତ୍ମଜ୍ଞାନ ପ୍ରଦାନ କରନ୍ତି । ତତ୍ତ୍ୱଦିଗରୁ ଉଭୟେ ସମାନ ହେଲେ ମଧ୍ୟ ଅବତାରମାନେ ଲୋକଶିକ୍ଷା ଉଦ୍ଦେଶ୍ୟରେ ଶ୍ରୀଗୁରୁଦେବଙ୍କ ପଦାଶ୍ରୟ ଲାଭ କରି ଶ୍ରୀଗୁରୁଦେବଙ୍କ ପଦସେବା କରିଥାନ୍ତି । ତେଣୁ ଅବତାରଙ୍କ ଠାରୁ ଗୁରୁ ଶ୍ରେଷ୍ଠ ।



# ବ୍ରହ୍ମତତ୍ତ୍ୱଜ୍ଞାନ

ଏହି ଦୃଶ୍ୟମାନ ଅସୀମ ଅନନ୍ତ ଜଗତ ତୁଳନାରେ ମନୁଷ୍ୟ କେତେ କ୍ଷୁଦ୍ର, କେତେ ତୁଚ୍ଛ ! କିନ୍ତୁ ମନୁଷ୍ୟର ଜ୍ଞାନଭଣ୍ଡାରରେ ତାର ମହାଭାବମୟ ମାନସକ୍ଷେତ୍ରରେ ଏପରି ଗୋଟିଏ ଅପୂର୍ବ ଶକ୍ତି ନିହିତ ଅଛି, ଯାହାର ସ୍ଫୁର୍ତ୍ତିରେ ଅସୀମର ଅସୀମତ୍ୱ, ଅନନ୍ତର ଅନନ୍ତତ୍ୱ ଆସି ଧରାଦେଉଅଛି । ତାହା ଅନୁଭବ କରି ସେଥିରେ ମନପ୍ରାଣ ଢାଳିଦେଇ ମାନବ ବ୍ରହ୍ମତ୍ୱ ଲାଭ କରିବା ପାଇଁ ସମର୍ଥ ହେଉଅଛି । ଅନ୍ୟ ସମସ୍ତ ଜୀବଙ୍କ ଅପେକ୍ଷା ମାନବର ଏହା ବିଶେଷ ଶକ୍ତି; ଏହାର ନାମ ଜ୍ଞାନ । ଜ୍ଞାନ ହିଁ ମନୁଷ୍ୟକୁ ମହତ୍‌ରୁ ମହୀୟାନରେ ପରିଣତ କରେ । ଜ୍ଞାନରୁ ଚେତନାର ଅନନ୍ତ ବିସ୍ତୃତି ହୁଏ ।

ଜ୍ଞାନ ବିସ୍ତୃତ ହେବା ପାଇଁ ପ୍ରବୃତ୍ତି ହେଲାମାତ୍ରେ ତାହା ଇଚ୍ଛା ରୂପରେ ପ୍ରକାଶ ପାଏ । ଇଚ୍ଛା ଉତ୍ପନ୍ନ ହେବାକ୍ଷଣି ସେଥିରେ ସତ୍ ଓ ଅସତ୍ ଦୁଇ ମୂର୍ତ୍ତି ଆସି ଠିଆହୁଅ । ସେତେବେଳେ ମନୁଷ୍ୟ ଭାବନା କରେ, 'କରିବି କି କରିବି ନାହିଁ ?' ଏହାର ନାମ ବିଚାରଣା । ଏହି ସତ୍-ଅସତ୍ ଦୁଇ ସ୍ୱଭାବପୂର୍ଣ୍ଣ କର୍ମର ସତ୍‌ପ୍ରବୃତ୍ତିରୁ ଭକ୍ତି ଓ ଅସତ୍‌ରୁ କ୍ରମେ ନୂତନ ନୂତନ ବିଷୟ ରଚିତ ହୁଏ । ସତ୍ ପ୍ରବୃତ୍ତିରୁ ଭକ୍ତି ପୁଣି ଅସତ୍ ପ୍ରବୃତ୍ତିରୁ ବନ୍ଧନାତ୍ମକ କର୍ମ ଜାତ ହୁଏ । ସେଥିରେ ଅଭିମାନ ଉତ୍ତମ ରୂପେ ପ୍ରସ୍ଫୁଟ ରହିଥାଏ । ପ୍ରବୃତ୍ତିର ଯେଉଁଠାରେ ଶେଷ, ଇଚ୍ଛାର ଯେଉଁଠାରେ ଲୟ, ଜ୍ଞାନ ସେଠାରେ ଅନ୍ତର୍ମୁଖୀ । ଭକ୍ତିର ଯେଉଁଠାରେ ପୂର୍ଣ୍ଣତା, ସେହିଠାରେ ଆନନ୍ଦ ।

## ଗତିଶକ୍ତି

ଆମମାନଙ୍କ ଦେହରେ ନିର୍ଦ୍ଦିଷ୍ଟ ପରିମାଣ ତାପ ସର୍ବଦା ବିଦ୍ୟମାନ । ସମସ୍ତ ରୌଦ୍ରର କେନ୍ଦ୍ର ଯେପରି ସୂର୍ଯ୍ୟ, ଗୃହପୂର୍ଣ୍ଣ ଆଲୋକର କେନ୍ଦ୍ର ଯେପରି ପ୍ରଦୀପ, ସେହିପରି ଦୈହିକ ତାପସମଷ୍ଟିର କେନ୍ଦ୍ର ଆମମାନଙ୍କର ଆତ୍ମା । ତାପ ଥିଲେ ଜ୍ୟୋତିଃ ରହିବାକୁ ବାଧ, ଏହା ସ୍ୱତଃସିଦ୍ଧ କଥା । ଦୈହିକ ଜ୍ୟୋତିଶକ୍ତିରେ ଚକ୍ଷୁର

ଦର୍ଶନ ଶକ୍ତି । ଜ୍ୟୋତିଃ ଚକ୍ଷୁ ସାହାଯ୍ୟରେ ବାହ୍ୟଜଗତରେ ଜ୍ୟୋତିଃସଙ୍ଗରେ ମିଶି ପଦାର୍ଥର ସ୍ୱରୂପ ସ୍ଥିର କରି ତାହା ଗ୍ରହଣ କରେ । ପୁଣି ତାପ ଓ ତଡ଼ିତ୍ ଏକ ବସ୍ତୁ । ଏହି ଦେହସ୍ଥ ତାପ ହୃଦୟ ଅଭ୍ୟନ୍ତରସ୍ଥ ମହାକେନ୍ଦ୍ରରୁ ବିକୀର୍ଣ୍ଣ ହେବାଦ୍ୱାରା ଯେଉଁ ଗତିର ଉତ୍ପତ୍ତି ହେଉଅଛି, ତାହା ସୂକ୍ଷ୍ମ ଅଥଚ ଏହା ମହା ଶକ୍ତିଶାଳୀ ତଡ଼ିତ୍‌ଶକ୍ତି । ଏହି ଶକ୍ତିବଳରେ ଦେହର କୌଣସି ସ୍ଥାନରେ କିଛି ସ୍ପର୍ଶ ହେଲାମାତ୍ରେ ତାହାର ସମ୍ବାଦ ତଡ଼ିତ୍-କୋଷ ମସ୍ତିଷ୍କରେ ଆସି ପହଞ୍ଚିଯାଏ । ଦେହର ସବୁ ସ୍ଥାନରେ ତଡ଼ିତ୍ ଚଳାଚଳ କରେ ବୋଲି ସମଗ୍ର ଦେହ ସର୍ବଦା ସଚେତନ ଥାଏ ଏବଂ ରକ୍ତର ବହମାନ ଗତି ଓ ତାପ ବିଦ୍ୟମାନ ଥାଏ ।

ବାହ୍ୟଜଗତରେ କୌଣସି ପଦାର୍ଥ ଇନ୍ଦ୍ରିୟଗୋଚର ହେଲେ ଯେପରି ତାହାର ଗୋଟିଏ ପ୍ରତିଛବି ଆସି ସେହି ପଦାର୍ଥର ଅସ୍ତିତ୍ୱବୋଧ ଜାତ କରାଏ, ମନ ମଧ୍ୟରେ ସେହିପରି କୌଣସି ବିଷୟ ଚିନ୍ତା କଲେ ତାହାର ଗୋଟିଏ ଛବି ଆସି ମନ-ସମୁଦ୍ରରେ ଉତ୍ତାଳ ତରଙ୍ଗ ଖେଳାଇଦିଏ । ଜ୍ଞାନର ସାହାଯ୍ୟ ବ୍ୟତୀତ କୌଣସି ବିଷୟ ମାନବଠାରେ ନିଜ ମୂର୍ତ୍ତି ଆଙ୍କିବାକୁ କ୍ଷମ ହୁଏ ନାହିଁ । ସମସ୍ତ ବିଷୟରେ ଏକ ପ୍ରାନ୍ତରେ ଜ୍ଞାନ, ଅପର ପ୍ରାନ୍ତରେ ତାର ନିଜ ସ୍ୱରୂପ—ମଧ୍ୟରେ ମନ କେବଳ ଗ୍ରହଣ ଓ ପ୍ରେରଣ କରେ; ମାତ୍ର ଏସବୁ କାର୍ଯ୍ୟରେ ପ୍ରଧାନ ବାହାନ ହେଉଛି ତଡ଼ିତ୍‌ଶକ୍ତି । ଏଥିରେ ବିଷୟର ଆଘାତ ଲାଗିବାମାତ୍ର ଗୋଟିଏ କମ୍ପନ ସୃଷ୍ଟି ହୁଏ । ସେହି କମ୍ପନ ବିଷୟରୁ ଗତି କରି ଜ୍ଞାନରେ ଆସି ବିଶ୍ରାମ ଲାଭ କରେ ।

ଯାହାକୁ ଧରି ଜ୍ଞାନ ଅଭିନୟ କରିବାକୁ ଇଚ୍ଛା କରେ, ତାହାର ଗତି ଏକାବେଳକେ ବନ୍ଦ ହୋଇଯାଏ ନାହିଁ । ତାହା ଜ୍ଞାନଭିତରୁ ଇଚ୍ଛା ରୂପରେ ବାହାରି ଇନ୍ଦ୍ରିୟ-ପଥରେ ବିଷୟକୁ ଧରିବାକୁ ଧାବିତ ହୁଏ । ବିଷୟର ଜ୍ଞାନରେ ପହଞ୍ଚିବା ବାହନକୁ ତଡ଼ିତ୍ ଶକ୍ତି କହିବାର କାରଣ ହେଉଛି ଯେ ତାହା ଗୋଟିଏ ଭୀଷଣ ଗତିଶକ୍ତି । ଦେହ ଭିତରେ ତାହାର କେନ୍ଦ୍ର ହେଉଛି ଆତ୍ମା । ଆତ୍ମାର ଗୁଣ-ଚେତନକୁ ବିସ୍ତାର କରିବା ତାହାର କାର୍ଯ୍ୟ । ଏହି ଶକ୍ତିଟି ଦେହ ଭିତରେ ଅବିରାମ ଚାଲୁଛି ବୋଲି ରକ୍ତସ୍ରୋତ ପ୍ରବାହିତ ହେଉଅଛି, ଉତ୍ତାପ ବିଦ୍ୟମାନ ରହୁଅଛି । ସୁତରାଂ, ଦେହ ଅଭ୍ୟନ୍ତରରେ ଯେଉଁସବୁ କାର୍ଯ୍ୟ ହେଉଅଛି, ସେ ସମସ୍ତ ଗୋଟିଏ ମହାଶକ୍ତିଙ୍କ ଆଶ୍ରୟରେ ସମ୍ପନ୍ନ ହେଉଅଛି ।

## ଗତିକେନ୍ଦ୍ର

ଦେହଗତିର ଯେପରି ଗୋଟିଏ କେନ୍ଦ୍ର ଅଛି, ଅନନ୍ତ ବିଶ୍ୱର ଅନନ୍ତ ଗତିର ସେହିପରି ଗୋଟିଏ କେନ୍ଦ୍ର ଅଛି—ଜୀବର ତାହା ଆତ୍ମା, ବିଶ୍ୱର ତାହା ବ୍ରହ୍ମ। ଦେହ-କେନ୍ଦ୍ରରୁ ଗତିର ବିକାଶ; ସେହି ବିକାଶକୁ ଜ୍ଞାନ, ଜ୍ଞାନରୁ ଇଚ୍ଛା, ଇଚ୍ଛାରୁ ପ୍ରବୃତ୍ତି, ପ୍ରବୃତ୍ତିରୁ କର୍ମ ଓ ଭକ୍ତି ଏବଂ କର୍ମ ଓ ଭକ୍ତିରୁ ଆନନ୍ଦ। ସେହିପରି ବିଶ୍ୱକେନ୍ଦ୍ରରୁ ଗୁଣ ଅର୍ଥାତ୍ ପ୍ରକୃତିର କ୍ରିୟଶୀଳତା। ସ୍ୱଭାବରୁ ଚେତନା, ତାଠାରୁ ବିଶ୍ୱର ଶକ୍ତି, ଶକ୍ତିର ବିକାଶରୁ ଗତି। ଗତି ଘନୀଭୂତ ହେଲେ ପରମାଣୁର ସୃଷ୍ଟି ହୁଏ। ଏପର୍ଯ୍ୟନ୍ତ ଜଗତର ପ୍ରାୟ ସମସ୍ତ ବୈଜ୍ଞାନିକ ପରମାଣୁକୁ ଜଗତର ବସ୍ତୁ-ରଚନାର ମୂଳ ଉପାଦାନ ବୋଲି ମନେ କରୁଥିଲେ; କିନ୍ତୁ ବର୍ତ୍ତମାନ ଇଲେକ୍‌ଟ୍ରୋନ୍ ବା ବିଦ୍ୟୁତ୍‌କଣା ଆବିଷ୍କୃତହେବା ଦିନରୁ ଦେଖାଯାଉଛି ଯେ ପ୍ରତ୍ୟେକ ପରମାଣୁ ଅସଂଖ୍ୟ ବିଦ୍ୟୁତ୍‌କଣାର ସମଷ୍ଟି ମାତ୍ର। ଏହି ବିଦ୍ୟୁତକଣାର ସମଷ୍ଟି ହିଁ ବସ୍ତୁ ଏବଂ ବିଦ୍ୟୁତ୍ କଣାଗୁଡ଼ିକ ମହାବେଗରେ ଧାବମାନ। ଆମ୍ଭେମାନେ ଯାହାକୁ ଶୂନ୍ୟ ମନେ କରୁ, ତାହା ଅସଂଖ୍ୟ ବିଦ୍ୟୁତ୍‌କଣାପୂର୍ଣ୍ଣ ବିନ୍ଦୁସମଷ୍ଟି। ଏହି ବିନ୍ଦୁର ବ୍ୟାସ ଏକ ଇଞ୍ଚର ୪୯୦୦,୦୦,୦୦,୦୦,୦୦,୦୦,୦୦୦ ଭାଗରୁ ଏକ ଭାଗ। ପାଶ୍ଚାତ୍ୟ ପଣ୍ଡିତମାନେ ସ୍ଥିର କରିଛନ୍ତି ଯେ ଏହା ହିଁ ଜଗତର କ୍ଷୁଦ୍ରତମ ବସ୍ତୁ ଏବଂ ଏହାର ନିଜସ୍ୱ ଗତିବେଗ ହିଁ ଜଗତର ଗତିଶକ୍ତିର ନିନାଦ।

ଆମେମାନେ ହିନ୍ଦୁଦର୍ଶନ ଓ ଉପନିଷଦର ଦାର୍ଶନିକ କୂଟତତ୍ତ୍ୱ ଉଦ୍ଧାର କରିବାକୁ କ୍ଷମ ହେଲେ ଜଗତ-ରଚନାର ଉପାଦାନ ସ୍ୱରୂପ ପରମାଣୁର ପୂର୍ବବର୍ତ୍ତୀ ଅନେକ ଅତି ସୂକ୍ଷ୍ମ ବିଷୟ ପ୍ରତ୍ୟକ୍ଷ କରିପାରିବା। ଅନନ୍ତ ବ୍ରହ୍ମାଣ୍ଡର ଅସୀମ ଶକ୍ତି, ଯାହା ଭୂମାରୂପରେ ବିଦ୍ୟମାନ; ମନୁଷ୍ୟ ଭିତରେ ଖଣ୍ଡ ରୂପରେ ସୀମାବଦ୍ଧ ଭାବରେ ତାହା ହିଁ ବିରାଜିତ। ମନୁଷ୍ୟ ଭିନ୍ନ କୌଣସି ଜୀବ ନିଜର ସସୀମ ଶକ୍ତିକୁ ଅସୀମ କରିବାକୁ କ୍ଷମ ହୁଏ ନାହିଁ। ମନୁଷ୍ୟ ତାର ଇଚ୍ଛାଶକ୍ତିକୁ ଯଦି ବିଷୟାବଦ୍ଧ ନ ରଖି ଅସୀମଙ୍କ ଆଡ଼କୁ ପରିଚାଳନା କରେ, କିନ୍ତୁ କିଛିଦିନ ପରେ ତାହା ଅସୀମ ହୋଇଯାଏ। ଏହା ମନୁଷ୍ୟର ବିଶେଷ ଶକ୍ତି।

## ଇଚ୍ଛାର କାର୍ଯ୍ୟ

କେନ୍ଦ୍ରଠାରୁ ବିଷୟ ପର୍ଯ୍ୟନ୍ତ ଯେଉଁ ସମୂହ ଗତି ଆମେମାନେ ଲକ୍ଷ୍ୟକରୁ, ତାହା ହିଁ ଇଚ୍ଛା। ଜ୍ଞାନକୁ ବିଷୟ ସହିତ ଯୋଗ କରି ସଚେତନ ରଖିବା ଇଚ୍ଛାର

କାର୍ଯ୍ୟ; ତେଣୁ ଇଚ୍ଛାଶକ୍ତିକୁ ଆମେ ସର୍ବଦା ସଚେତନ ଦେଖିବାକୁ ପାଉ। ନିଦ୍ରିତାବସ୍ଥାରେ ସବୁ ଇନ୍ଦ୍ରିୟ ଯେତେବେଳେ ନିସ୍ତବ୍ଧ ହୋଇଯାନ୍ତି, ସେତେବେଳେ ମଧ୍ୟ ଇଚ୍ଛା ଜ୍ଞାନାନ୍ତର୍ଗତ ସଂସ୍କାରବୀଜକୁ ଫୁଟାଇଥାଏ। ତାହାକୁ ସ୍ୱପ୍ନ କୁହାଯାଏ। କେବଳ ଆନନ୍ଦକାଳ ବ୍ୟତୀତ ଇଚ୍ଛା ନିସ୍ତବ୍ଧ ରହିବାକୁ ଚାହେଁ ନାହିଁ। ଇଚ୍ଛା ଯେତେକାଳଯାଏ ଜ୍ଞାନକେନ୍ଦ୍ର ଭେଦ କରି ଚେତନାରେ ବିଶ୍ରାମ ଲାଭ ନ କରେ, ସେତେବେଳଯାଏ ଆନନ୍ଦ ଉତ୍ପନ୍ନ ହୋଇପାରେ ନାହିଁ। ପ୍ରକୃତ ଆନନ୍ଦ ଯାହା, ସକଳ ଚିନ୍ତାର ଅନ୍ତର୍ମୁଖୀ ପଥରେ ବିଶ୍ରାମ ମଧ୍ୟ ତାହା।

## କେନ୍ଦ୍ରର ସ୍ୱରୂପ

ଜ୍ଞାନ ସୂର୍ଯ୍ୟପରି ଜ୍ୟୋତିର୍ମୟ। ଇଚ୍ଛା ତାହାର ବାହନ। କର୍ମ ଓ ଭକ୍ତି ଆଲୋକ ଓ ତାପ। କର୍ମ ଧ୍ୱଂସ ହେଲେ ଆନନ୍ଦ। ବ୍ରହ୍ମ କିମ୍ବା ଆତ୍ମା ଜ୍ୟୋତିର୍ମୟ ଓ ସଚ୍ଚିଦାନନ୍ଦ। ତାହା ଅନ୍ଧକାର ନ ହୋଇ ଜ୍ୟୋତିର୍ମୟ ହେଲେ କାହିଁକି ? ଆମେମାନେ ଯେତେବେଳେ ବ୍ରହ୍ମ କିମ୍ବା ଆତ୍ମାର ଅନୁସନ୍ଧାନ କରୁ, ସେତେବେଳେ ତାଙ୍କୁ ବିଷୟ ଭିତର ଦେଇ ଖୋଜୁ ଖୋଜୁ ଗୋଟିଏ କେନ୍ଦ୍ର ସ୍ୱରୂପରେ ଉପଲବ୍ଧି କରିଥାଉଁ; ତେଣୁ ବିଷୟ ପ୍ରକାଶ ନିମିତ୍ତ ଯେଉଁ ଜ୍ୟୋତିଃର ପ୍ରକାଶ, ତାହା କେନ୍ଦ୍ର ଉପରେ ଅଧ୍ୟାସିତ ଅବସ୍ଥାରେ ଥାଏ। ବିଷୟକୁ ବାଦ୍‌ଦେଇ ତାହାର ସନ୍ଧାନ ସମ୍ଭବପର ନୁହେଁ। ସୁତରାଂ, ତାହା କେନ୍ଦ୍ର ଜ୍ୟୋତିସଂହିତା ମିଶି ରହିଥିବାର ଦେଖିବାକୁ ମିଳେ। ସ୍ଫଟିକପାତ୍ରରେ ଲାଲ ଜଳ ରଖି ଦୂରରୁ ଦେଖିଲେ ଯେପରି ଅବିଚ୍ଛିନ୍ନ ଦେଖାଯାଏ, ଏହି ଅଧ୍ୟାସିତ କାର୍ଯ୍ୟ ସେହିପରି। ବ୍ରହ୍ମ ଅନ୍ଧକାର ନୁହଁନ୍ତି କିମ୍ବା ଜ୍ୟୋତିର୍ମୟ ମଧ୍ୟ ନୁହଁନ୍ତି; ଅସୀମ ନୁହନ୍ତି କି ସସୀମ ମଧ୍ୟ ନୁହନ୍ତି; ପରନ୍ତୁ ଉଭୟର ମଧ୍ୟବର୍ତ୍ତୀ କେନ୍ଦ୍ର। ଏଣୁ ବ୍ରହ୍ମଙ୍କ ସ୍ୱରୂପକୁ କେହି- ମୁଖରେ କହି ପ୍ରକାଶ କରିପାରନ୍ତି ନାହିଁ। ସାଧକ ଗାଇଅଛନ୍ତି—

'ନାହିଁ ଜ୍ୟୋତି, ନାହିଁ ସୂର୍ଯ୍ୟ, ନାହିଁ ଶଶାଙ୍କଶେଖର,
ଭାସେ ବ୍ୟୋମେ ଛାୟାସମ ଛବି ବିଶ୍ୱଚରାଚର।୧।
ଅସ୍ପଷ୍ଟ ମନ-ଆକାଶେ ଜଗତ୍‌ସଂସାର ଭାସେ,
ଉଠେ ପଡ଼େ ବୁଡ଼େ ପୁନଃ ଅହଂ-ସ୍ରୋତେ ନିରନ୍ତର।୨।

ଏହାପରେ ସାଧକ ନୀରବ। ଜ୍ଞାନର ସ୍ଫୁର୍ତ୍ତି ଆଉ ନାହିଁ, ଭାବ ସ୍ଫୁର୍ତ୍ତି ଆଉ ନାହିଁ। ଖଣ୍ଡଭାବ ମହାଭାବରେ ପରିଣତ ହେଲାକ୍ଷଣି ଏହିଠାରେ ତାଙ୍କର ବ୍ରହ୍ମତ୍ୱଲାଭ;

ଏଠାରେ ସାଧକଙ୍କର ମହାନନ୍ଦ ।

ଏକମାତ୍ର ନିର୍ଗୁଣ ବ୍ରହ୍ମ ଲକ୍ଷ୍ୟ ହେବା ଉଚିତ୍ ନୁହେଁ । ସେ ଅବସ୍ଥାରେ ସେତେ ଆନନ୍ଦ ମିଳେ ନାହିଁ । ସେଥିରେ କଅଣ ଉପଲବ୍ଧି ହୁଏ ? ସଗୁଣଙ୍କୁ ବୁଝିପାରିଲେ ପୂର୍ଣ୍ଣତ୍ୱ ଆସେ । ସେତେବେଳେ ବ୍ରହ୍ମଜ୍ଞାନ ଲାଭ ହୁଏ । ସଗୁଣଙ୍କୁ ଛାଡ଼ିଦେଲେ ବ୍ରହ୍ମଜ୍ଞାନ ଲାଭ ହୋଇପାରେ ନାହିଁ । ଶତ ବଜ୍ରାଘାତରେ ମଧ୍ୟ ଯେଉଁମାନଙ୍କର ଚୈତନ୍ୟ ହୁଏ ନାହିଁ, ସେହିସବୁ ଜଡ଼ ମଧ୍ୟ ବ୍ରହ୍ମଙ୍କର ଅଂଶ । ପୁଣି ତ୍ରିଗୁଣର ଯେଉଁ ସାମ୍ୟାବସ୍ଥାରୁ ମହ-ତତ୍ତ୍ୱ ଉଦ୍ଭୂତ, ସେହି ସ୍ୱପ୍ରକାଶ ଅବସ୍ଥା ମଧ୍ୟ ବ୍ରହ୍ମ । ସୁତରାଂ, ବ୍ରହ୍ମଜ୍ଞାନରେ କିଛି ବାଦ ଯାଏ ନାହିଁ ।

## ବ୍ରହ୍ମଜ୍ଞାନ

ବ୍ରହ୍ମଜ୍ଞାନରେ କୌଣସି ନୂତନ ସ୍ତରକୁ ଯିବାକୁ ହୁଏ ନାହିଁ । ତୁମ ଭିତରେ ରହି ତୁମେ ଯେଉଁ ଆନନ୍ଦ ପାଅ, ସେହି ଆନନ୍ଦ କ୍ରମେ ବୃଦ୍ଧିପ୍ରାପ୍ତ ହେବ । ଜଣକ ଆନନ୍ଦରୁ ଦଶ ଜଣଙ୍କ ଆନନ୍ଦ । ଏହି ଭାବରେ ଜଗତର ସମସ୍ତ ଆନନ୍ଦ କ୍ରମେ ତୁମ ଉପଲବ୍ଧି ଭିତରକୁ ଆସିଯିବ । ତାହା ହିଁ ବ୍ରହ୍ମାନନ୍ଦ । ତେଣୁ କହୁଛି, ସଗୁଣଙ୍କୁ ଛାଡ଼ି ଦେଇ ବ୍ରହ୍ମାନନ୍ଦ ତିଷ୍ଠିପାରିବ ନାହିଁ । ସମସ୍ତେ ଆନନ୍ଦ ଲୋଡ଼ନ୍ତି । ଆନନ୍ଦ ପାଇବାକୁ ମନୁଷ୍ୟ ସବୁ କରିଥାଏ । ବ୍ରହ୍ମାନନ୍ଦ ହିଁ ପୂର୍ଣ୍ଣାନନ୍ଦ ।

ଅଧିକାଂଶ ସ୍ଥଳରେ ହିନ୍ଦୁମାନଙ୍କର ଲକ୍ଷ୍ୟ ବ୍ରହ୍ମ । ବେଦ ବା ଉପନିଷଦରେ ବହୁ ଦେବତାଙ୍କ ବିଷୟ ଉଲ୍ଲେଖ ଅଛି; କିନ୍ତୁ ସମସ୍ତଙ୍କ ପର୍ଯ୍ୟବସାନ ବ୍ରହ୍ମରେ । ଆଖି ବୁଜିଲାମାତ୍ରେ ଜଗତ ଲୋପ ପାଇଯାଏ । ସେତେବେଳେ କେହି ଆସି ସ୍ପର୍ଶ କଲେ ଅନୁଭୂତ ହୁଏ । ପାଞ୍ଚଟିଯାକ ଇନ୍ଦ୍ରିୟ ଯଦି ବନ୍ଦ କରିଦେଇପାର, ଜଗତ ଆଉ ରହିବ ନାହିଁ, କାରଣ ବହିର୍ଜଗତଟା ଇନ୍ଦ୍ରିୟଗ୍ରାହ୍ୟ ମାତ୍ର । ଇନ୍ଦ୍ରିୟଗୁଡ଼ିକ ବିକାର ବୋଲି ଜଗତ ମଧ୍ୟ ବିକାର; କିନ୍ତୁ ମିଥ୍ୟା ନୁହେଁ । ଏଥିରେ ମଧ୍ୟ ସତ୍ୟ ଉପଲବ୍ଧ ହେବ । ଜଗତ୍‌ମୂଳରେ ବ୍ରହ୍ମ ବା ସତ୍ୟ ବିଦ୍ୟମାନ ।

ମୁଁ ଦେହସ୍ଥ, ଗୁହାସ୍ଥିତ—ଏହି ତତ୍ତ୍ୱର ସମ୍ୟକ୍ ଜ୍ଞାନ ହିଁ ଆତ୍ମଜ୍ଞାନ । ମୁଁ ଦେହ୍‌ବାହାରେ ମଧ୍ୟ ଚରାଚର ବ୍ୟାପ୍ତ—ଏହି ତତ୍ତ୍ୱର ଜ୍ଞାନ ବୈଦାନ୍ତିକ ବ୍ରହ୍ମଜ୍ଞାନ । ଯୋଗପଥରେ—ମୁଁ ଅତି କ୍ଷୁଦ୍ର, କାରଣରେ ଆହୁରି କ୍ଷୁଦ୍ର—ଖୁବ୍ ଛୋଟ ପୁଣି ଖୁବ୍ ବଡ଼ । ଉଭୟ ଏକ ଅବସ୍ଥା । ନିଜକୁ ଅତି ବଡ଼ କିମ୍ବା ଅତି କ୍ଷୁଦ୍ର ମନେ କଲେ କାରଣ ବା ବ୍ରହ୍ମଜ୍ଞାନରେ ପହଞ୍ଚିପାରିବ । ବ୍ରହ୍ମଜ୍ଞାନ ଅତି ବିରାଟ, ସତ୍ୟ;

ମାତ୍ର ମୁହଁରେ କହିଦେଲେ ସେ ଜ୍ଞାନ ଲାଭ ହେବ ନାହିଁ। ମୁଁ ବ୍ରହ୍ମ ବୋଲି କହିଦେଲା ମାତ୍ରକେ ଜ୍ଞାନ ହୁଏ ନାହିଁ। ବ୍ରହ୍ମଜ୍ଞାନରେ ଅବାକ୍ ହୋଇଯିବାକୁ ହୁଏ।

ବ୍ରହ୍ମଜ୍ଞାନରେ ଅହଂ ଜ୍ଞାତା, ମାୟା ଜ୍ଞେୟ। ଜ୍ଞାତା ଓ ଜ୍ଞେୟ ଲୀନ ହୋଇଗଲେ କେବଳ ଜ୍ଞାନ ରହିଯିବ। ସେହି ଜ୍ଞାନ ହିଁ ବ୍ରହ୍ମ। ଉପନିଷଦରେ ବ୍ରହ୍ମଙ୍କୁ ଋଷି, ସିଦ୍ଧି, ଅଣୋରଣୀୟାନ୍, ମହତୋମହୀୟାନ୍ ଇତ୍ୟାଦି ବିଶେଷଣରେ ବିଶେଷିତ କରାଯାଇଅଛି। ସୁତରାଂ, ଉପନିଷଦ କେବଳ ନିର୍ଗୁଣ ବ୍ରହ୍ମଙ୍କ ପ୍ରତିପାଦନ କରି ନାହିଁ; ତାହା ହୋଇଥିଲେ ଜ୍ଞାତା, ଜ୍ଞାନ ଓ ଜ୍ଞେୟର ଭେଦ ନଥାନ୍ତା। ବ୍ରହ୍ମ ନିଜେ ଜ୍ଞାନ, ନିଜେ ଜ୍ଞେୟ, ନିଜେ ଜ୍ଞାତା ହୋଇ ନିଜକୁ ଉପଲବ୍ଧି କରନ୍ତି। ବ୍ରହ୍ମଙ୍କୁ ଜ୍ଞେୟ କହିଲେ ଭୁଲ ହେବ; କାରଣ, ବ୍ରହ୍ମଙ୍କୁ ଜାଣିବ କିଏ ? ବ୍ରହ୍ମାତିରିକ୍ତ ଅନ୍ୟ କୌଣସି ସତ୍ତା ନଥିବାସ୍ଥଳେ ସେପରି କହିଲେ ଚଳିବ ନାହିଁ। ଏକମାତ୍ର ମାୟା ହିଁ ଜ୍ଞେୟ। ମାୟାକୁ ଯେ ଜାଣିଛନ୍ତି, ସେ ବ୍ରହ୍ମ। ମୁଁ ବ୍ରହ୍ମ—'ମୁଁ'ତ୍ୱର ସଂକୀର୍ଣ୍ଣାବସ୍ଥାରେ ଏକଥା ପ୍ରୟୋଗ କରାଯାଇ ନପାରେ। ସାଧନାର ଇଚ୍ଛାବସ୍ଥାରେ ଏ ଭାବ ଆପେ ଆପେ ଉପଲବ୍ଧ ହେବ। କୌଣସି ସ୍ଥାନକୁ ଯିବା ପାଇଁ ହେବ ନାହିଁ—ମୋ ଭିତରେ ବ୍ରହ୍ମଜ୍ଞାନର ସଂପୂରଣ ହେବ। ଯେଉଁମାନେ ବ୍ରହ୍ମଙ୍କୁ ନିର୍ଗୁଣ, ନିରାକାର ବୋଲି ଘୋଷଣା କରନ୍ତି, ସେମାନେ ମଧ ଭୁଲ କରନ୍ତି; କାରଣ, ତାହା ହେଲେ ବ୍ରହ୍ମଙ୍କର ନିର୍ବିଶେଷ ଭାବ ଆଉ ରହେନାହିଁ। ତାଙ୍କୁ ବିଶେଷ ଭାବରେ ଗଣ୍ଡି ଭିତରକୁ ନେଇ ଆସିବାକୁ ହୁଏ। ବ୍ରହ୍ମ ସାକାର, ନିରାକାର, ପୁଣି କେତେ ଯେ କଣ, ତାହା କେହି କହିପାରିବେ ନାହିଁ।

## ବ୍ରହ୍ମ ସଗୁଣ ଓ ନିର୍ଗୁଣ

ବ୍ରହ୍ମ ସାଗର—ଜୀବ ତାହାର ଏକ ବିନ୍ଦୁ ଜଳ। ବ୍ରହ୍ମ ସେହି ବିନ୍ଦୁ—ଏପରି କହିପାର; କିନ୍ତୁ ବିନ୍ଦୁ ହିଁ ବ୍ରହ୍ମ—ଏପରି କହିବା ଭୁଲ। ଯେତେବେଳେ ଜ୍ଞାନ ହେବ, ସେତେବେଳେ ବିନ୍ଦୁରେ ହିଁ ସିନ୍ଧୁର ଉପଲବ୍ଧି ହେବ। ବିନ୍ଦୁ ଓ ସିନ୍ଧୁ ମଧରେ କୌଣସି ପାର୍ଥକ୍ୟ ରହିବ ନାହିଁ; ଏଥିପାଇଁ ସର୍ବପ୍ରଥମେ ମୁଁ ବ୍ରହ୍ମ—ଏହି ଜ୍ଞାନ ହୁଏ ନାହିଁ। ଏହି ଉପଲବ୍ଧି କ୍ରମେ କ୍ରମେ ଆସିଥାଏ।

ବେଦର ପ୍ରଣବ, ବେଦାନ୍ତର ବ୍ରହ୍ମ, ତନ୍ତ୍ରର ମହାଶକ୍ତି, ଯୋଗର ଆତ୍ମା, ପୁରାଣର ଭଗବାନ—ଏସବୁ ମୂଳରେ ଏକମାତ୍ର ବ୍ରହ୍ମଙ୍କୁ ଲକ୍ଷ୍ୟ କରାଯାଇଛି। ବାହାରେ ପାର୍ଥକ୍ୟ ରହିଲେ ମଧ ମୂଳରେ ସମସ୍ତେ ଏକ। ମୁଁ ବ୍ରହ୍ମ—ଏ କଥା

କହିଲେ ଭୁଲ୍ ହେବ; କାରଣ, ତାହା ସଂକୀର୍ଣ୍ଣ ଭାବକୁ ବୁଝାଏ । ବ୍ରହ୍ମରେ ମୁଁ—ପ୍ରଥମେ ପ୍ରଥମେ ଏହିଭାବ ଠିକ୍ ହେବ । କ୍ରମେ ଉଚ୍ଚ ଅବସ୍ଥାକୁ ଗଲେ ସବୁ ଏକ ହୋଇଯିବ ।

ପୂର୍ଣ୍ଣବ୍ରହ୍ମ, ପରାବର ବ୍ରହ୍ମ, ପରବ୍ରହ୍ମ—ନିର୍ଗୁଣ ବ୍ରହ୍ମ; ଅବର ବ୍ରହ୍ମ—ସଗୁଣ ବ୍ରହ୍ମ । କେବଳ ନିର୍ଗୁଣ ବ୍ରହ୍ମ କିମ୍ବା କେବଳ ସଗୁଣ ବ୍ରହ୍ମଙ୍କୁ ଜାଣିଲେ ଯଥେଷ୍ଟ ହେବ ନାହିଁ; ଉଭୟଙ୍କୁ ଉତ୍ତମ ରୂପେ ବୁଝିପାରିଲେ ପୂର୍ଣ୍ଣତ୍ୱ ଆସିଯିବ; ସେତେବେଳେ ଠିକ୍ ବ୍ରହ୍ମଦର୍ଶନ ହେବ ।

ବ୍ରହ୍ମ ବହୁ ହେବାପାଇଁ ଇଚ୍ଛା କରନ୍ତି ନାହିଁ । ବହୁ ହେବା ସଗୁଣ ବ୍ରହ୍ମ ବା ମହାଶକ୍ତିଙ୍କର କାର୍ଯ୍ୟ । ମା ଇଚ୍ଛାମୟୀ—ଇଚ୍ଛା ତାଙ୍କର ସ୍ୱରୂପ । ଏଠାରେ ମା ଓ ଇଚ୍ଛା ପୃଥକ୍ ନୁହଁନ୍ତି । ସେ ମଧ ଇଚ୍ଛା, କ୍ରିୟା ଓ ଜ୍ଞାନମୟୀ ଆଦ୍ୟାଶକ୍ତି । ସେ ଗୋଟିଏ ଗୋଟିଏ ବ୍ରହ୍ମାଣ୍ଡର କର୍ତ୍ତା ସୃଷ୍ଟି କରିଛନ୍ତି । ବ୍ରହ୍ମ ନିର୍ଲିପ୍ତ ।

ବ୍ରହ୍ମଙ୍କର ସ୍ୱରୂପ ଲକ୍ଷଣ ନିର୍ବିକାର । ତାହାର କିଛି ହେଲେ ଧାରଣା କରିହୁଏ ନାହିଁ । ବାଦ୍ ଦେଇ କିଛି ଯଦି ଅବଶିଷ୍ଟ ଥାଏ, ତାହା ମଧ ଅବ୍ୟକ୍ତ । ତାହାର ମଧ ଧାରଣା କରାଯାଇପାରେ ନାହିଁ । ପୁଣି ତାଙ୍କର ତଟସ୍ଥ ଲକ୍ଷଣ—ସେ ଦୟାମୟ, ଜ୍ଞାନମୟ, ଶକ୍ତିମୟ, ପ୍ରେମମୟ, ବିଶ୍ୱରୂପ, ସଚ୍ଚିଦାନନ୍ଦଘନ ଇତ୍ୟାଦି । ଏସବୁ ଭାବିଲେ କେତେକ ପରିମାଣରେ ତାଙ୍କର ଧାରଣା କରିହୁଏ । ବ୍ରହ୍ମଙ୍କର ଅଂଶ ହୁଏ ନାହିଁ—ବ୍ୟଷ୍ଟି ଯାହା, ତାହା ସମଷ୍ଟିର ପୃଥକ୍ ଅଂଶ ବିଶେଷ ନୁହେଁ । ସମଷ୍ଟିରେ ତାହା ଲୀନ ହୋଇ ରହିଛି—ଏହା ଅଦ୍ୱୈତଭାବ । ଅଦ୍ୱୈତ ମତରେ ନାମ ରୂପ ଭିନ୍ନ ହୋଇ ମଧ ମୂଳରେ ସବୁ ଏକ, କିନ୍ତୁ ଦ୍ୱୈତମତରେ ମୂଳରେ ଭିନ୍ନ ଭାବ । କାରଣ, ମୁକ୍ତ ଅବସ୍ଥାରେ ହିଁ ଭକ୍ତ ତାଙ୍କୁ ପୃଥକ୍ ସତ୍ତାରେ ଦେଖିବାକୁ ଇଚ୍ଛା କରନ୍ତି ।

## ସତ୍ତାର ନାମ-ରୂପ

ଅଭିମାନ ନାଶ ହେଲେ ମୁକ୍ତି ମିଳେ । ସୁତରାଂ, ଯେ ମୁକ୍ତ ହୁଅନ୍ତି, ତାଙ୍କର ଆଉ କେବେହେଲେ ବନ୍ଧନ ହୋଇପାରେ ନାହିଁ । ଜଳବିମ୍ବ ଯଦି ବିମ୍ବର ଅଭିମାନ ତ୍ୟାଗ କରି ସମୁଦ୍ରରେ ମିଶି ସମୁଦ୍ର ଜ୍ଞାନରେ ଜ୍ଞାନବାନ୍ ହୁଏ, ପୁଣି ସେ ପୂର୍ବର ବିମ୍ବାବସ୍ଥାକୁ ଫେରିଯିବାର କୌଣସି ତାତ୍ପର୍ଯ୍ୟ ନାହିଁ, ସେତେବେଳେ ସେ ସମୁଦ୍ରରୂପୀ । ସେହି ସମୁଦ୍ରରେ ପୁଣି କେତେ ଶତ ଶତ ବିମ୍ବର ଉତ୍ଥାନ ଓ

ବିଳୟ ସଂଘଟିତ ହେଉଅଛି । ସେଥିରେ ସମୁଦ୍ରର କିଛି ଯାଆସେ ନାହିଁ । ଯମରୂପ ମିଥ୍ୟା ଓ ମାୟିକ; କିନ୍ତୁ ସତ୍ତା ସତ୍ୟ । ରଜ୍ଜୁରେ ସର୍ପଭ୍ରମ ହୁଏ ମାତ୍ର, ଶୂନ୍ୟରେ ହୁଏ ନାହିଁ । ସୁତରାଂ ସତ୍ତାର ସ୍ୱରୂପ ବୁଝି ନ ପାରି ଗୋଟିଏ ମିଥ୍ୟାର ଆରୋପ କରାଯାଇଥିଲା । ଏହା ମାୟାର ପ୍ରଭାବ । ଜଗତ ମିଥ୍ୟା—ଏହାର ଅର୍ଥ, ବର୍ତ୍ତମାନ ଯେଉଁଭାବରେ ନାମରୂପ ଭିତରେ ଜଗତକୁ ଦେଖୁଛି; ତାହା ମିଥ୍ୟା । ମାୟାପ୍ରଭାବରେ ଏହି ଭାବରେ ବ୍ରହ୍ମଙ୍କ ଠାରେ ହିଁ ଜଗତ-ଭ୍ରମ ହୋଇଛ । ସତ୍ୟ ଦୃଷ୍ଟିରେ ସବୁ ବ୍ରହ୍ମମୟ ।

ଅଦ୍ୱୈତ ଜ୍ଞାନର ପରିଣତି ନ ହେଲେ ମୁକ୍ତି ହୁଏ ନାହିଁ । ଏ ଜଗତରେ ଅଣୁ ପରମାଣୁ ସୁଦ୍ଧା ବ୍ରହ୍ମ; ସୁତରାଂ ଜଗତର ଗୋଟିଏ ହେଲେ ପରମାଣକୁ ବାଦ୍ ଦେଲେ ବ୍ରହ୍ମଜ୍ଞାନ ହେବ ନାହିଁ ।

ଚୋର ଚୋରି କଲେ ସେଥିରେ ସୁଦ୍ଧା ଭଗବାନଙ୍କର ତୃପ୍ତି, କାରଣ, ବ୍ରହ୍ମ ଭିନ୍ନ ପୃଥକ୍ ସତ୍ତା ନାହିଁ । ଲମ୍ପଟ ଲାମ୍ପଟ୍ୟ କରୁଛି, ସାଧୁ ପତିବ୍ରତା ସ୍ତ୍ରୀକୁ ତ୍ୟାଗ କରୁଛନ୍ତି—ଉଭୟେ ସେହି ଅନନ୍ତ ପଥର ପଥିକ । ଏହି ସାଧୁ ମଧ୍ୟ କୌଣସି ଜନ୍ମରେ ସେସବୁ ବିଷୟ ଭୋଗ କରି ବର୍ତ୍ତମାନ ବୀତଶ୍ରଦ୍ଧ ହୋଇଛନ୍ତି । ସେହି ଲମ୍ପଟ ମଧ୍ୟ ଦିନେ କାମିନୀ-କାଞ୍ଚମୋହ ଛାଡ଼ି ସାଧୁ ହେବ । ସମସ୍ତେ ବ୍ରହ୍ମଙ୍କ ପରିଣତିର ସ୍ତର । ନିମ୍ନସ୍ତରର ଭାବ ଗୁଡ଼ିକୁ ଅଧର୍ମ, ପାପ ଇତ୍ୟାଦି ଆଖ୍ୟା ଦିଆଯାଇଛି, କିନ୍ତୁ ଜ୍ଞାନୀଙ୍କ ନିକଟରେ ସବୁ ସମାନ । ସେ ସାକ୍ଷୀ ସ୍ୱରୂପ । ନାଟକାଭିନୟରେ ଲୋକେ ରାଜାବେଶ ହୁଅନ୍ତି, ଭୂତବେଶ ମଧ୍ୟ ହୁଅନ୍ତି, ମୂଳରେ କିନ୍ତୁ କୌଣସିଟି ସତ୍ୟ ନୁହେଁ ।

ଏକ ଆତ୍ମା ହିଁ ଗୁଣଭେଦରେ ଆତ୍ମା ଓ ପରମାତ୍ମା ଉପାଧି ଲାଭ କରନ୍ତି । ଆତ୍ମା ତ୍ରିଗୁଣଦ୍ୱାରା ଯେତେବେଳେ ଇଚ୍ଛାନୁରୂପ କାର୍ଯ୍ୟ କରନ୍ତି, ସେତେବେଳେ ସେ ପରମାତ୍ମା । ଆଉ ଯେତେବେଳେ ଗୁଣ ସହିତ ଖସିଆସି ଗୁଣଦ୍ୱାରା ପରିଚାଳିତ ହୁଅନ୍ତି, ସେତେବେଳେ ସେ ଆତ୍ମା ।

ଯେପରି ବହୁ ଦିନର ଅନ୍ଧକାର ଗୃହରେ ଆଲୋକ ଜାଳିଦେବା ମାତ୍ରେ ସମସ୍ତ ଅନ୍ଧକାର ଦୂର ହୋଇଥାଏ, ସେହିପରି ବ୍ରହ୍ମଙ୍କ ବିକାଶରେ ଅନ୍ଧକାର ଆପେ ଆପେ ଦୂର ହୋଇଯାଏ । ସାଧକ ସେତେବେଳେ ଆତ୍ମହରା ହୋଇ ସମସ୍ତ ବସ୍ତୁ ଆଲୋକରେ ଉଦ୍ଭାସିତ ଦେଖନ୍ତି ଏବଂ ଅବାକ୍ ହୋଇଯାନ୍ତି, ସେତେବେଳେ ତାଙ୍କୁ

ଆଉ ଚେଷ୍ଟା କରି ରିପୁ ବା ପ୍ରବୃତ୍ତିକୁ ଦମନ କରିବାକୁ ପଡ଼େ ନାହିଁ, ସବୁଥିର ଦମନ ଆପେ ଆପେ ହୋଇଯାଏ । ସ୍ତ୍ରୀ, ପୁରୁଷ, ଭାଇ, ବନ୍ଧୁ ଏସବୁ ବ୍ୟାବହାରିକ ଜଗତର କଥା । ମୂଳରେ ସମସ୍ତେ ଏକ ଆତ୍ମା । କୌଣସି ଲିଙ୍ଗଭେଦ ବା ସେ ସମ୍ବନ୍ଧ ନାହିଁ । ଆଧ୍ୟାତ୍ମିକ ଜଗତରେ ସ୍ୱାମୀ-ସ୍ତ୍ରୀ, ପିତା-ମାତା, ଭାଇ-ଭଉଣୀ ସମ୍ପର୍କ ହୋଇ ଆଦୌ କିଛି ନାହିଁ ।

## ବନ୍ଧନ ଓ ମୁକ୍ତି

ବ୍ରହ୍ମଙ୍କର ତ୍ରିବିଧ ବିକାଶ—ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନି ।

ଜାଗରଣ ଯେପରି ସ୍ୱପ୍ନାବସ୍ଥା ନିବାରଣର ଏକମାତ୍ର ଉପାୟ; ସେହିପରି ବ୍ରହ୍ମ-ତତ୍ତ୍ୱଜ୍ଞାନ ଲାଭ ହିଁ ମୁକ୍ତିଲାଭର ଏକମାତ୍ର ଉପାୟ । ପରାଶକ୍ତି ବ୍ୟତୀତ ବ୍ରହ୍ମତତ୍ତ୍ୱଜ୍ଞାନ ଲାଭ ହୁଏ ନାହିଁ । ଯେତେବେଳେ ଜୀବ ଆତ୍ମସ୍ୱରୂପ ଲାଭ କରି ବୁଝିପାରେ ଯେ ଦ୍ୱାଦଶ ସୂର୍ଯ୍ୟ ପୃଥିବୀ ଦଗ୍ଧ କରନ୍ତୁ, ଉନପଞ୍ଚାଶତ୍ ବାୟୁ ପ୍ରବଳ ବେଗରେ ପ୍ରବାହିତ ହେଉନ୍ତୁ, ସପ୍ତ ସମୁଦ୍ର ପୃଥିବୀ ଗ୍ରାସ କରନ୍ତୁ, କାହିଁରେ ତାଙ୍କର କୌଣସି କ୍ଷତି-ବୃଦ୍ଧି ନାହିଁ—ସେ ଅଚଳ, ଅଟଳ, ସେତେବେଳେ ସେ ପୂର୍ଣ୍ଣ ଶାନ୍ତିର ଅଧିକାରୀ ।

ଅଭାବ ହେଲାମାତ୍ରେ ଇଚ୍ଛା ଜନ୍ମେ । ଯାହାଙ୍କର କୌଣସି ଅଭାବ ନାହିଁ, ତାଙ୍କର କୌଣସି ଇଚ୍ଛା ଜନ୍ମି ନ ପାରେ; କିନ୍ତୁ ଏକଥା ବ୍ରହ୍ମଙ୍କ ସମ୍ବନ୍ଧରେ ପ୍ରଯୁଜ୍ୟ ନୁହେଁ; କାରଣ, ପୂର୍ଣ୍ଣବ୍ରହ୍ମ ସନାତନ, ତାଙ୍କର ଇଚ୍ଛାଟା ମଧ୍ୟ ଅଭାବ ନୁହେଁ; ତାହା ବ୍ରହ୍ମଙ୍କର ସ୍ୱଭାବ । କାରଣ ଇଚ୍ଛା, କ୍ରିୟା, ଜ୍ଞାନ—ଏହି ତ୍ରିବିଧ ଶକ୍ତି ବ୍ରହ୍ମଙ୍କର ହିଁ ପରିଣତି । ଏସବୁ ବ୍ରହ୍ମଙ୍କ ଠାରେ ଅଧିଷ୍ଠିତ ରହିଅଛି ।

ଆଶା ହିଁ ବନ୍ଧନର କାରଣ । ଯେତେବେଳେ ଆଶା ଜାତ ହୋଇଛି, ସେତେବେଳେ ବୁଝିବାକୁ ହେବ ଯେ ବନ୍ଧନର କାରଣ ଉପସ୍ଥିତ ହୋଇଛି । କେବଳ ବର୍ତ୍ତମାନକୁ ଧରି ରହିବା ହିଁ ଜୀବନ୍ମୁକ୍ତିର ଲକ୍ଷଣ । ଗତ ବିଷୟ ଆଲୋଚନାରେ କୌଣସି ଫଳ ନାହିଁ । ଭବିଷ୍ୟତରେ କଅଣ ହେବ, ତାହା ଚିନ୍ତା କଲେ ମଧ୍ୟ କୌଣସି ଫଳ ନାହିଁ । ଯାହା ହେବାର, ତାହା ନିଶ୍ଚୟ ହେବ ।

ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ଅବସ୍ଥାରେ ସୁଖ-ଦୁଃଖ, ସମ୍ପଦ-ବିପଦ, ରୋଗ-ଶୋକ ଭୋଗ କରିଥାନ୍ତି । ଏ ଅବସ୍ଥା ଅତିକ୍ରମ କରିଗଲେ ବ୍ରହ୍ମଜ୍ଞାନରେ ପହଞ୍ଚିବାକୁ ହୁଏ । ବ୍ରହ୍ମଜ୍ଞାନ ଲାଭ ନ କଲେ ମୁକ୍ତି ଲାଭ ହୁଏ ନାହିଁ ।

ବନ୍ଧନ ଭିତରେ ସୁଦ୍ଧା ମୁକ୍ତିଭାବ ଅଛି । ସୁଖ-ଦୁଃଖ ବୋଧ ହେଉଥିବାଯାଏ ସୁଖ-ଦୁଃଖର ବନ୍ଧନ; ସୁଖ-ଦୁଃଖବୋଧ ନ ରହିଲେ ନିଶ୍ଚିନ୍ତ ହୋଇ ରହିପାରିଲେ ମାନବ ମୁକ୍ତ ।

## ବ୍ରହ୍ମ ଓ ଈଶ୍ୱର

ବେଦ ହେଉଛି ଶବ୍ଦବ୍ରହ୍ମ; ପରମାତ୍ମା ହେଉଛନ୍ତି ପରଂବ୍ରହ୍ମ ।

ବାହ୍ୟଜଗତ୍‌ରେ ମର୍ମେ ମର୍ମେ ଯେଉଁ ମହତୀ ଶକ୍ତି ନିହିତ ରହିଅଛି, ତାହାର ନାମ ପ୍ରକୃତି । ସେହି ବାହ୍ୟଜଗତରେ ଯେଉଁ ଚୈତନ୍ୟମୟ ସ୍ଫୁର୍ତ୍ତି ସ୍ୱ-ପ୍ରକାଶ ହୋଇ ରହିଛନ୍ତି, ତାଙ୍କ ନାମ ଶିବ ବା ପୁରୁଷ । ଏହି ଚୈତନ୍ୟ ଓ ମହତୀ ଶକ୍ତିକୁ ସମଷ୍ଟି କରି ଯେତେବେଳ ଏକାସନରେ ଉଭୟେ ଜଡ଼ିତ ବୋଲି ଅନୁଭବ କରିବେ, ଅର୍ଥାତ୍ ଦୁଇଟିରୁ ଗୋଟିଏ ସ୍ୱତନ୍ତ୍ର କରିବାକୁ ଗଲେ ଯେତେବେଳେ ଦୁଇଟିଯାକ ଅଦୃଶ୍ୟ ହେବାର ବୋଧଗମ୍ୟ ହେବ, ସେତେବେଳ ବ୍ରହ୍ମଙ୍କୁ ଚିହ୍ନିପାରିବ ।

ପ୍ରଥମେ ଅନନ୍ତ ନିର୍ଗୁଣ ସତ୍ତା, ତାହାପରେ ଏକ ଅନନ୍ତ ଗୁଣମାତ୍ର ବ୍ୟଞ୍ଜକ ସଗୁଣ ସତ୍ତାରୂପରେ ଦେଖାଦିଏ । ତାହାର ନାମ ମହ-ତତ୍ତ୍ୱ । କ୍ରମଶଃ ବିଶ୍ୱବିକାଶିନୀ ବା ସୃଷ୍ଟିକାରିଣୀ ସୂକ୍ଷ୍ମ ଶକ୍ତିସମୂହର ବିକୃତି ହେଲା । ସୁତରାଂ, ନିର୍ଗୁଣ ବ୍ରହ୍ମସତ୍ତାର ସାତ୍ତ୍ୱିକ କ୍ରିୟାଶୀଳତାର ନାମ ହିଁ ସଗୁଣ ମହ-ତତ୍ତ୍ୱ । ଏହି ଶୁଦ୍ଧ, ସତ୍ତ୍ୱ, ସଗୁଣ ମହ-ତତ୍ତ୍ୱ ହିଁ ଈଶ୍ୱର ନାମରେ ଅଭିହିତ; କିନ୍ତୁ ଏହା ସଗୁଣ ହୋଇ ସୁଦ୍ଧା ଗୁଣାତୀତ । କାରଣ, ଗୁଣଦ୍ୱାରା ସେ କ୍ରିୟାଶୀଳ ନୁହଁନ୍ତି । ଗୁଣ ତାଙ୍କ ଠାରେ ରହି ସ୍ୱକାର୍ଯ୍ୟ ସାଧନ କରୁଅଛି ମାତ୍ର । ନିର୍ଗୁଣ ବ୍ରହ୍ମଙ୍କ ଠାରୁ ସଗୁଣ ଈଶ୍ୱର ଅଗ୍ନିଠାରୁ ଅଗ୍ନ୍ୟନ୍ତର ସଦୃଶ । ଦୀପଶଳାକାରେ ଯେପରି ଅବ୍ୟକ୍ତ ଆଲୋକ ନିହିତ ଥାଏ, ତାକୁ ଜାଳିଦେଲେ ତାହା ଯେପରି ଆଲୋକ ପ୍ରକାଶ କରେ, ସେହିପରି ବ୍ରହ୍ମ ଅବ୍ୟକ୍ତ ଏବଂ ଈଶ୍ୱର ବ୍ୟକ୍ତ; କିନ୍ତୁ ଦୀପଶଳାକାସ୍ଥ ଅବ୍ୟକ୍ତ ଆଲୋକ ଆପେ ବ୍ୟକ୍ତ ଆଲୋକରୂପରେ ପ୍ରକାଶ ପାଏ ଅର୍ଥାତ୍ ତାହା ଜଳିଲେ ଆଲୋକ ହୁଏ । ବ୍ରହ୍ମ ନିତ୍ୟବସ୍ତୁ, ସେ ଥାଆନ୍ତି; ତାଙ୍କରିଠାରୁ ଈଶ୍ୱର ହୁଅନ୍ତି ।

ସୃଷ୍ଟିର ଅତୀତ ଅବସ୍ଥାକୁ ନିର୍ଗୁଣ କୁହାଯାଏ । ଏହି ନିର୍ଗୁଣ, ନିରାକାର,

ବାକ୍ୟ-ମନର ଅତୀତ ବ୍ରହ୍ମ ଯେତେବେଳେ ସିସୃକ୍ଷ ହେଲେ ଅର୍ଥାତ୍ ସୃଷ୍ଟି କରିବାକୁ ଇଚ୍ଛା କଲେ, ସେତେବେଳେ ସେ ବିକାରବାନ୍ ବା ସଗୁଣ ହେଲେ। କାରଣ, ଇଚ୍ଛା ହେଲେ ଗୁଣ ହେଲା। ସେ ଯେଉଁ ଅବସ୍ଥାରେ ଥିଲେ, ତାହାର ବିକୃତି ହେଲା। ଏହି ଯେଉଁ ଅବସ୍ଥା, ଏହା ହିଁ ଈଶ୍ୱର। ସୃଷ୍ଟିର ଅତୀତ ହୋଇ ଯେ ନିର୍ଗୁଣ ଓ ନିରାକାର ଭାବରେ ଅବସ୍ଥିତ ଥିଲେ, ସୃଷ୍ଟିକରଣେଚ୍ଛା ଯୁକ୍ତ ହୋଇ ସେ ସଗୁଣ, ସାକାର ହେଲେ। ତଥାପି ସେ ନିତ୍ୟ। ଏହି ଅବସ୍ଥାଟି ଭାବଜ୍ଞେୟ। ପୁଣି ନିର୍ଗୁଣ ହିଁ ସଗୁଣ ହେଲେ, ଏହା ମଧ୍ୟ ଭାବଜ୍ଞେୟ।

## ଜୀବ ଓ ବ୍ରହ୍ମ

ଜୀବ ଓ ବ୍ରହ୍ମ ଏକ ପଦାର୍ଥ। ତେବେ ପ୍ରଭେଦ ଏତିକି ଯେ ଜୀବ ଭେଲମିଶା ସୁନା ଆଉ ବ୍ରହ୍ମ ଖାଣ୍ଟି ସୁନା। କିଏ ଅଳ୍ପ ଭେଲମିଶା, କିଏବା ବେଶୀ ଭେଲମିଶା ବୋଲି ଜୀବ-ଜୀବ ଭିତରେ ଭେଦ ପରିଦୃଷ୍ଟ ହୁଏ। ସ୍ୱର୍ଣ୍ଣକାର ଯେପରି ଅଗ୍ନିରେ ତରଳାଇ ପଦାର୍ଥ ବିଶେଷ ସାହାଯ୍ୟରେ ଭେଲମିଶା ସୁନାକୁ ଖାଣ୍ଟିସୁନାରେ ପରିଣତ କରିପାରେ, ସେହିପରି ସଦ୍‌ଗୁରୁଙ୍କ କୃପା ହେଲେ ଜୀବ ଜ୍ଞାନ-ଅଗ୍ନିରେ ତରଳି କାମନା, ବାସନା ବା ଅବିଦ୍ୟାମଳ ଦୂରୀଭୂତ କରିପାରିଲେ ଯେଉଁ ବ୍ରହ୍ମଙ୍କୁ ସେହି ବ୍ରହ୍ମ ହୋଇଯିବ। ଏହା ମୋକ୍ଷଲାଭ।

ଯେପର୍ଯ୍ୟନ୍ତ ସମୁଦ୍ରଜଳ ମେଘ ହୋଇ ବୃଷ୍ଟି ରୂପରେ ପତିତ ନ ହୋଇଛି, ସେପର୍ଯ୍ୟନ୍ତ ତାହାକୁ କୌଣସି ପ୍ରକାର କାର୍ଯ୍ୟରେ ଲଗାଇ ହୁଏ ନାହିଁ। ସେହିପରି ବ୍ରହ୍ମ ଯେତେବେଳଯାଏ ଜୀବରୂପରେ ପରିଣତ ନ ହୋଇଛନ୍ତି, ସେପର୍ଯ୍ୟନ୍ତ ବ୍ରହ୍ମଙ୍କଦ୍ୱାରା ଜଗତର କୌଣସି କାର୍ଯ୍ୟ ସାଧନ ସମ୍ଭବପର ହୁଏ ନାହିଁ।

କୂଟସ୍ଥ-ଚୈତନ୍ୟ ଜୀବଦେହରେ ଓ ବ୍ରହ୍ମାଣ୍ଡରେ ଅଖଣ୍ଡ ଭାବରେ ବିଭାଜିତ। ତାଙ୍କ ଆଭାସରେ ବା ଅଧ୍ୟାସଦ୍ୱାରା ଜୀବର ପ୍ରାଣଶକ୍ତିର ବିକାଶ। ଚୈତନ୍ୟାଧ୍ୟାସିତ ଜଡ଼ ସୁଖ-ଦୁଃଖର ଭୋକ୍ତା। ସେ ଜୀବାତ୍ମା।

ମୁକ୍ତାବସ୍ଥା ଜୀବର ସ୍ୱାଭାବିକ। ଏହା ଲାଭ କରିବା ବିଶେଷ ଆୟାସସାଧ୍ୟ ନୁହେଁ। କେବଳ ଶ୍ରୀଗୁରୁଦେବଙ୍କ ବାକ୍ୟରେ ବିଶ୍ୱାସ, ଶ୍ରୀଗୁରୁଦେବଙ୍କ ଠାରେ ଆତ୍ମସମର୍ପଣ କରିପାରିଲେ ପ୍ରତ୍ୟେକ ବ୍ୟକ୍ତି ବୁଝିପାରିବେ ଯେ ସେ ଜୀବନ୍ମୁକ୍ତ।

## ତତ୍ତ୍ୱଜ୍ଞାନ

ଜ୍ଞାନ ଓ ଭକ୍ତିର ପରାକାଷ୍ଠାର ନାମ ହିଁ ତତ୍ତ୍ୱଜ୍ଞାନ । ମନୁଷ୍ୟ-ଜନ୍ମରେ ଯେ ଏହି ଜ୍ଞାନ ଲାଭ କରିଛନ୍ତି, ଯାହାଙ୍କର ଚିତ୍ତ ଅଦ୍ୱିତୀୟ ଚୈତନ୍ୟ ସ୍ୱରୂପ ବ୍ରହ୍ମତତ୍ତ୍ୱରେ ବିଲୀନ ହୋଇଛି, ସେହି କେବଳ ସାର୍ଥକଜନ୍ମା । ଯାହାଙ୍କର ଶ୍ରୀଗୁରୁଦେବଙ୍କ କୃପାରେ ବ୍ରହ୍ମତତ୍ତ୍ୱ ଜ୍ଞାନ ହୋଇଛି, ବେଦାଦି ଶାସ୍ତ୍ରଦ୍ୱାରା ତାଙ୍କର ଆଉ ବନ୍ଧନ ହୁଏ ନାହିଁ । ସେ ସର୍ବଦା ବ୍ରହ୍ମଙ୍କ ସହିତ ଅଭିନ୍ନ ଭାବରେ ବିଭାଜିତ ଥାଆନ୍ତି । ଏହି ପ୍ରକାର ତତ୍ତ୍ୱଜ୍ଞାନୀ ବ୍ୟକ୍ତିମାନେ ଶାନ୍ତ, ସଦାନନ୍ଦ ଓ ଜୀବନ୍ମୁକ୍ତରୂପରେ ଜଗତ୍‌ରେ ଅବସ୍ଥାନ କରି ପ୍ରାରବ୍ଧ କ୍ଷୟପରେ ବ୍ରହ୍ମସ୍ୱରୂପରେ ଲୀନ ହୋଇଯାନ୍ତି । ଏହି "ବ୍ରହ୍ମସ୍ୱରୂପ" ଜ୍ଞାନ ବ୍ୟତୀତ ମୋକ୍ଷ ଲାଭ ହୋଇପାରେ ନାହିଁ । ଅତଏବ ଜ୍ଞାନଲାଭ ହିଁ ମନୁଷ୍ୟ-ଜୀବନର ଚରମ ଲକ୍ଷ୍ୟ ।

ବ୍ରହ୍ମ ଏବଂ ଭଗବାନଙ୍କ ଭିତରେ ଭେଦାବେଦ ସମ୍ବନ୍ଧ ବିଦ୍ୟମାନ । ସୂର୍ଯ୍ୟ ଓ ସୂର୍ଯ୍ୟ-କିରଣ ମଧ୍ୟରେ ଯେତିକି ପ୍ରଭେଦ, ବ୍ରହ୍ମ ଓ ଭଗବାନଙ୍କ ମଧ୍ୟରେ ସେତିକି ପ୍ରଭେଦ ବିଦ୍ୟମାନ । ଉଭୟେ ଆଦି-ଅନ୍ତଶୂନ୍ୟ ଓ ଅନାଦି । ଯେପରି ସୂର୍ଯ୍ୟଙ୍କୁ ଛାଡ଼ି କିରଣ ରହିପାରେ ନାହିଁ କିମ୍ବା କିରଣ ବ୍ୟତୀତ ସୂର୍ଯ୍ୟ ନିରର୍ଥକ, ସେହିପରି ବ୍ରହ୍ମ ଓ ଭଗବାନଙ୍କ ମଧ୍ୟରେ ଭେଦ ଓ ଅଭେଦ ସମ୍ବନ୍ଧ ବିଦ୍ୟମାନ । ତେଣୁ ବେଦାନ୍ତରେ ବ୍ରହ୍ମଜ୍ଞାନର ଶ୍ରେଷ୍ଠତ୍ୱ ଏବଂ ଭାଗବତରେ ଭଗବାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଯାଇଛି । ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି, ମୁଁ ଅମୃତ ଅବ୍ୟୟ ବ୍ରହ୍ମଙ୍କ ପ୍ରତିଷ୍ଠାତା । ବେଦାନ୍ତ, ଦର୍ଶନ ଓ ଭାଗବତର ପ୍ରଣେତା ଏକ ବ୍ୟାସଦେବ; ତେଣୁ ସେ ଜଗଦ୍‌ଗୁରୁ । ବେଦାନ୍ତଜ୍ଞାନ ଲାଭପରେ ଭକ୍ତଙ୍କର ଯେଉଁ ଅବସ୍ଥା ହୁଏ, ତାହା ହିଁ ଭାଗବତକାର ଲିପିବଦ୍ଧ କରିଛନ୍ତି । ଏହି ଅବସ୍ଥା ହିଁ ଶ୍ରୀଗୌରାଙ୍ଗଦେବ ଗମ୍ଭୀରା ଲୀଳାରେ ନିଜେ ଆଚରଣ ଦ୍ୱାରା ପ୍ରଦର୍ଶନ କରିଯାଇଛନ୍ତି । ସାଧାରଣ ଜୀବ କିଭଳି ଏହି ଅବସ୍ଥା ଲାଭ କରି ଭଗବାନଙ୍କ ନିମିତ୍ତ ବ୍ୟାକୁଳ ହୋଇଉଠିବ, ସେହି ଅବସ୍ଥା ପ୍ରଦର୍ଶନ ନିମିତ୍ତ ତାଙ୍କର ଅବତାର, କିନ୍ତୁ ସାଧାରଣଙ୍କ ଧାରଣା, ଶ୍ରୀଗୌରାଙ୍ଗଦେବ ନାମ ପ୍ରଚାର ନିମିତ୍ତ ଆସିଥିଲେ ।

ଶ୍ରୀଗୁରୁଦେବ ହିଁ ପରଂବ୍ରହ୍ମଙ୍କର ସାକ୍ଷାତ୍ ମୂର୍ତ୍ତି । ବ୍ରହ୍ମ-ଚୈତନ୍ୟରୁ କୂଟସ୍ଥ-ଚୈନତ୍ୟଙ୍କର ଏବଂ କୂଟସ୍ଥ-ଚୈତନ୍ୟରୁ ଜୀବ-ଚୈତନ୍ୟଙ୍କର ଉଦ୍ଭବ । ଯେପରି

ସୂର୍ଯ୍ୟଙ୍କ କିରଣ ଦର୍ପଣ ଉପରେ ପତିତ ହେଲା ଏବଂ ଦର୍ପଣରୁ ଆଉ ଗୋଟିଏ ଛାୟା ବା ପ୍ରତିବିମ୍ବ କାନ୍ଥରେ କିମ୍ବା ଅନ୍ୟ ସ୍ଥାନରେ ପତିତ ହେଲା, ସେହିପରି ବ୍ରହ୍ମ-ଚୈତନ୍ୟ ଏକଭାବରେ ରହନ୍ତି । କୂଟସ୍ଥ-ଚୈତନ୍ୟ ପ୍ରକୃତିଯୁକ୍ତ ହୋଇ ଯେଉଁ ଭାବରେ କ୍ରିୟାଶୀଳ, ଜୀବ ମଧ୍ୟ ସେହିଭାବରେ କ୍ରିୟାଶୀଳ । ଜଗତରେ କୌଣସି ବସ୍ତୁର ଅଭାବ ନାହିଁ । ଯେ ଯେଉଁ ଭାବରେ ପ୍ରତିବିମ୍ବକୁ ଯେଉଁ ବସ୍ତୁ ନିକଟରେ ଧରିବେ, ସେ ତଦାକାରାକାରିତ ହୋଇଯିବେ ।

ବ୍ରହ୍ମଙ୍କୁ କେବେ କେହି ଜାଣିପାରିନ୍ତି ନାହିଁ; କାରଣ, ବ୍ରହ୍ମ ସବୁଠାରୁ ବଡ଼ । ବ୍ରହ୍ମଙ୍କୁ ଯେ ଜାଣନ୍ତି, ସେ ପରଂବ୍ରହ୍ମ । ବ୍ରହ୍ମବିଦ ଗୁରୁଙ୍କ ସେବାରେ ବ୍ରହ୍ମଜ୍ଞାନ ଲାଭ ହୋଇଥାଏ ।



# ଭଗବାନ

## ସଗୁଣ ଓ ଗୁଣାତୀତ

ବିଶ୍ୱସୃଷ୍ଟି ପୂର୍ବରୁ ବ୍ରହ୍ମଙ୍କ ଅବସ୍ଥା ନିର୍ଗୁଣ । ତାହା ବାକ୍ୟ ଓ ମନର ଅଗୋଚର । ସେହି ବ୍ରହ୍ମ ଯେତେବେଳେ ସୃଷ୍ଟି କରିବାକୁ ଇଚ୍ଛା କଲେ, ସେ ବିକାରବାନ ବା ସଗୁଣ ହେଲେ; କାରଣ, ଇଚ୍ଛା ହେଲାମାତ୍ରେ ଗୁଣ ହେଲା । ସୃଷ୍ଟିର ଅତୀତ ହୋଇ ସେ ନିର୍ଗୁଣ ଓ ନିରାକାର ଭାବରେ ଅବସ୍ଥିତ ଥିଲେ, ସୃଷ୍ଟି କରଣେଚ୍ଛାଯୁକ୍ତ ହେବାରୁ ସେ ସଗୁଣ, ସାକାର ହେଲେ । ତଥାପି ସେ ନିତ୍ୟବ୍ରହ୍ମ ହୋଇ ରହିଲେ । ଏ ଅବସ୍ଥା ଭାବଜ୍ଞେୟ । ଅବସ୍ଥା ଭେଦରେ ସଗୁଣ ବ୍ରହ୍ମ ଆର୍ଯ୍ୟଶାସ୍ତ୍ରରେ ବ୍ରହ୍ମ, ଆତ୍ମା, ଭଗବାନ, ଏ ତିନି ନାମରେ କଥିତ । ଜ୍ଞାନସାଧନାରେ ବ୍ରହ୍ମ, ଯୋଗସାଧନାରେ ଆତ୍ମା ଓ ଭକ୍ତିସାଧନାରେ ଭଗବତ୍-ତତ୍ତ୍ୱର ସ୍ଫୂର୍ତ୍ତି ହୁଏ । ବ୍ରହ୍ମ ସଚ୍ଚିଦାନନ୍ଦମୟ, ଆତ୍ମା ସଚ୍ଚିଦାନନ୍ଦଘନ ଏବଂ ଭଗବାନ ସଚ୍ଚିଦାନନ୍ଦଘନ ବିଗ୍ରହ । ଭଗବାନ ସଗୁଣ ବ୍ରହ୍ମଙ୍କ ଘନବିଗ୍ରହ ।

ଭଗବାନ ସଗୁଣ, ତଥାପି ଗୁଣାତୀତ । ସେ ଗୁଣର ଅଧୀନ ନୁହନ୍ତି । ଯେ ସମସୁଖ-ଦୁଃଖ, ଆତ୍ମନିଷ୍ଠ, ଯାହାଙ୍କର ପ୍ରିୟ-ଅପ୍ରିୟ ଏକା ପ୍ରକାର, ଯେ ଆତ୍ମନିନ୍ଦା ଓ ଆତ୍ମପ୍ରଶଂସାକୁ ତୁଲ୍ୟ ରୂପରେ ଗ୍ରହଣ କରନ୍ତି, ଯେ ସର୍ବତ୍ୟାଗୀ, ତାହାଙ୍କୁ ଗୁଣାତୀତ ପୁରୁଷ କୁହାଯାଏ । ଅତଏବ ଭଗବାନ ହିଁ ଗୁଣାତୀତ ପୁରୁଷ । ଗୁଣଦ୍ୱାରା ସେ କ୍ରିୟାଶୀଳ ନୁହନ୍ତି; ଗୁଣ ତାଙ୍କଠାରେ ରହି ସ୍ୱକାର୍ଯ୍ୟ ସାଧନ କରୁଅଛି ମାତ୍ର ।

## ଜୀବ ଓ ଭଗବାନ୍

କ୍ଲେଶ, କର୍ମ, ବିପାକ ଓ ଆଶ୍ରୟ ଯାହାଙ୍କୁ ସ୍ପର୍ଶ କରିପାରେ ନାହିଁ, ଯେ ସମସ୍ତ ସଂସାରୀ ଆତ୍ମା ଓ ମୁକ୍ତାତ୍ମାଙ୍କଠାରୁ ସ୍ୱତନ୍ତ୍ର ବା ପୃଥକ୍, ତାଙ୍କୁ ଭଗବାନ କୁହାଯାଏ । କ୍ଲେଶ କର୍ମାଦି ଜୀବଠାରେ ବିଦ୍ୟମାନ; ଭଗବାନଙ୍କ ଠାରେ ନାହିଁ । ସେ ସର୍ବକ୍ଲେଶମୁକ୍ତ । ତାଙ୍କର ସୁଖ-ଦୁଃଖ, ଜନ୍ମ ଓ ଆୟୁଭୋଗ ହୁଏ ନାହିଁ ।

ସଂସାରୀ ଯେପରି ବାସନା ନାମକ ସଂସ୍କାରର ଅଧୀନ, ସେ ସେପରି ନୁହଁନ୍ତି, ସେଥିପାଇଁ ସେ ବାସନାରହିତ । ସେ ଭକ୍ତ-ସାଧକଙ୍କର ହୃଦୟରେ ସ୍ୱତଃପ୍ରକାଶିତ ହୁଅନ୍ତି । ତାଙ୍କ ସ୍ୱରୂପ କାହାର ବୋଧଗମ୍ୟ କରାଇବାକୁ ହେଲେ ଅନୁମାନର ସାହାଯ୍ୟ ନେବାକୁ ହୁଏ । ଅନୁମାନ ଏହିପରି—ସବୁ ଆତ୍ମାର କିଛି ନା କିଛି ଜ୍ଞାନ ଅଛି । ସବୁ ଆତ୍ମା ଟିକିଏ ହେଲେ ଅତୀତ, ଅନାଗତ ଓ ବର୍ତ୍ତମାନ ବୁଝିପାରନ୍ତି—କେହି ଅଳ୍ପ କେହି ବା ଅଧିକ । ଯାହାଙ୍କ ଅପେକ୍ଷା ଅଧିକଙ୍କ ଆତ୍ମା ଆଉ ନାହିଁ ସେ ପରମଗୁରୁ ଭଗବାନ । ଯେପରି କ୍ଷୁଦ୍ରତାର ଶେଷସୀମା ପରମାଣୁ ଓ ବୃହତ୍ତ୍ୱର ଚରମ ଆକାଶ, ସେହିପରି ଜ୍ଞାନ ଓ କ୍ରିୟା ଶକ୍ତିର ସ୍ୱଳ୍ପତାର ପରାକାଷ୍ଠା ଜୀବ ଏବଂ ତାର ଆତିଶଯ୍ୟର ପରାକାଷ୍ଠା ଭଗବାନ ।

ଭଗବାନ ପୂର୍ବ-ପୂର୍ବସୃଷ୍ଟିକର୍ତ୍ତା ମାନଙ୍କର ଗୁରୁ ଅର୍ଥାତ୍ ଉପଦେଷ୍ଟା । ସବୁ କାଳରେ ତାଙ୍କ ଅସ୍ତିତ୍ୱ ବିଦ୍ୟମାନ ରହେ । ବ୍ରହ୍ମାଦି ଦେବତାଙ୍କୁ ସୃଷ୍ଟିକର୍ତ୍ତା ବୋଲାଯାଏ; କିନ୍ତୁ ଭଗବାନ ସେମାନଙ୍କର ଉପଦେଷ୍ଟା । ବ୍ରହ୍ମାଦି ଦେବତାଙ୍କର ଜନ୍ମ ଓ ବିକାଶ ଅଛି; କିନ୍ତୁ ଭଗବାନଙ୍କର ଜନ୍ମ ବା ବିକାଶ ନାହିଁ—ସେ ଅନାଦି, ଅନନ୍ତ । ସେହି ଅନାଦି ଅନନ୍ତ ଆଦିପିତା ପରମେଶ୍ୱର ବ୍ରହ୍ମାଙ୍କୁ ସୃଜନ କରି ତାଙ୍କୁ ବେଦ ଅର୍ଥାତ୍ ସୃଜନଜ୍ଞାନ ଉପଦେଶ ଦେଇଛନ୍ତି । ଅତଏବ ଭଗବାନ ସର୍ବସ୍ରଷ୍ଟା, ସର୍ବନିୟନ୍ତା ଓ ସର୍ବପାତା ।

ସମଗ୍ର ଐଶ୍ୱର୍ଯ୍ୟ, ସମଗ୍ର ଯଶ, ସମଗ୍ର ଶ୍ରୀ, ସମଗ୍ର ଜ୍ଞାନ, ସମସ୍ତ ବୈରାଗ୍ୟ ଭଗଶବ୍ଦବାଚ୍ୟ । ଏହି ଷଡ଼୍‌ବିଧ ଗୁଣ ସଂପୂର୍ଣ୍ଣରୂପେ ଓ ଅପ୍ରତିହତ ଭାବରେ ଯେଉଁଠାରେ ନିତ୍ୟବର୍ତ୍ତମାନ, ତାହା ହେଲେ ଭଗବାନ । ସେହି ଭଗବାନ ଜନ୍ମରହିତ ହୋଇ ମଧ୍ୟ ସ୍ୱୟଂ ସ୍ୱନିର୍ମିତ ପ୍ରତ୍ୟେକ ଜୀବଙ୍କ ହୃଦୟରେ ଅଧିଷ୍ଠାନ କରନ୍ତି । ମୃତ୍ୟୁଞ୍ଜୟ ମହାକାଳ ସର୍ବଦା ତାଙ୍କର ଧ୍ୟାନ କରନ୍ତି । ସାଧୁ ଭକ୍ତମାନେ ତାଙ୍କ ନାମ ଜପ ଓ ଗୁଣ ଗାନ କରନ୍ତି । କେହି କେହି ତାଙ୍କୁ ଭକ୍ତଙ୍କ ଅନୁଗ୍ରହ ନିମିତ୍ତ ସ୍ୱେଚ୍ଛାମୟ ରୂପଧାରୀ, କେହି କେହି ତାଙ୍କୁ ଶ୍ୟାମସୁନ୍ଦର ପରମାନନ୍ଦ ଗୋବିନ୍ଦ କହନ୍ତି । ସେ ସର୍ବଦା ନିତ୍ୟଭାବଲୋକରେ ବିରାଜମାନ । ଭଗବାନଙ୍କୁ ଜ୍ଞାନମୟ କହିଲେ ଭଗବାନ ଓ ଜ୍ଞାନ ପୃଥକ ବୋଲି ବୁଝାଯାଏ ନାହିଁ । ଜ୍ଞାନ ତାଙ୍କର ସ୍ୱରୂପ; ତେଣୁ ସେ ଜ୍ଞାନମୟ । ଭଗବାନଙ୍କର ଦେହ ଚିନ୍ମୟ ଅର୍ଥାତ୍ ତାଙ୍କର ଦେହ ଦେହୀ ଅଭିନ୍ନ । ସେ ସଚ୍ଚିଦାନନ୍ଦଘନବିଗ୍ରହ । ପୁଣି ସେ ସ୍ୱଗତ

ସ୍ୱଜାତୀୟ ଓ ବିଜାତୀୟ ଭେଦବର୍ଜ୍ଜିତ । ସେ ଅଖଣ୍ଡ; ସୁତରାଂ, ତାଙ୍କର ଖଣ୍ଡଦେହ ନାହିଁ; କିନ୍ତୁ ଆବଶ୍ୟକାନୁଯାୟୀ ସେ ଜ୍ଞାନମୟ, ତତ୍ତ୍ୱମୟ ବା ଭାବମୟ ଦେହ ଧାରଣ କରନ୍ତି ।

## ସ୍ଥୁଳ ଓ ସୂକ୍ଷ୍ମ ଦର୍ଶନ

କାହାର ଆଧ୍ୟାତ୍ମିକ ଉନ୍ନତି ହେଲେ ବୈକୁଣ୍ଠରୁ ଭଗବାନ ଆସି ତାଙ୍କୁ ଦେଖାଦିଅନ୍ତି ନାହିଁ । ଭଗବାନ ଚିନ୍ମୟ । ସମସ୍ତଙ୍କ ଅନ୍ତରରେ ଓ ବାହାରେ ସେ ନିତ୍ୟବିରାଜିତ; ସୁତରାଂ, ଚିତ୍ତ ସ୍ଥିର ହେଲାମାତ୍ରେ ତାଙ୍କୁ ସହଜରେ ଦେଖିହୁଏ ।

ଯୋଗଦ୍ୱାରା ଭଗବାନ ସୂକ୍ଷ୍ମ ଭାବରେ ଦେଖାଯାଆନ୍ତି । ତନ୍ତ୍ରସାଧନାରେ ସେ ସ୍ଥୁଳ ରୂପରେ ଦେଖାଦିଅନ୍ତି । ତେବେ ଯେଉଁ ଭାବରେ ହେଉ ପଛକେ, ଥରେ ମାତ୍ର ତାଙ୍କର ଦର୍ଶନ ପାଇଲେ ତାଙ୍କ ନିକଟରେ ଅଳି କରିପାରିବ । ସୂକ୍ଷ୍ମ ଦର୍ଶନରେ ନିଜକୁ ସୂକ୍ଷ୍ମ ଭାବାପନ୍ନ କରିନେବାକୁ ହୁଏ; ସ୍ଥୁଳଦର୍ଶନବେଳେ ତାଙ୍କୁ ହିଁ ସ୍ଥୁଳ-ଭାବ ଗ୍ରହଣ କରାଇବାକୁ ପଡ଼େ । ତେବେ ତାଙ୍କ କୃପା ବ୍ୟତୀତ କିଛି ହୁଏ ନାହିଁ ।

ଭଗବାନ ବିଶ୍ୱପତି ହୋଇ ସୁଦ୍ଧା ଡାକିଲେ ଆସନ୍ତି କାହିଁକି ?—ଜୀବକୁ ସୁଖ ଦେବା ନିମିତ୍ତ ସେ ଆସନ୍ତି । କାରଣ, ଜୀବ ଅତି ଦୁଃଖୀ, ଅତି ଦୀନ । ତେଣୁ ଦୟା କରିବା ପାଇଁ ସେ ଆସନ୍ତି । ନ ହେଲେ, ସେ ଯଦି ଦଣ୍ଡବିଧାନର କର୍ତ୍ତା ହୋଇ ନିର୍ବିକାର ହୋଇ ଆସନ୍ତେ, ତାଙ୍କ ପାଇଁ ଜୀବର ପ୍ରାଣ ବ୍ୟାକୁଳ ହୁଅନ୍ତା ନାହିଁ ।

ଭଗବାନ ସର୍ବଦା ଡାକନ୍ତି; କିନ୍ତୁ ଜୀବ ଶୁଣେ ନାହିଁ । ଯୁଧିଷ୍ଠିରଙ୍କୁ ଏହି ତତ୍ତ୍ୱ ବୁଝାଇବା ପାଇଁ ଶ୍ରୀକୃଷ୍ଣ ଗୋଟିଏ ଘଟଣା ଦେଖାଇଥିଲେ । ଗୋଟିଏ ମହୁଫେଣା ତଳେ ମଧୁଲୋଭରେ ଜଣେ ଲୋକ ପାଟି ଆଁ କରି ଛିଡ଼ାହୋଇଥିଲା, ତା ପଛରେ ଗୋଟିଏ ବିଷଧର ସର୍ପ ଫଣା ଟେକି ତାକୁ ମାରିବାକୁ ଉଦ୍ୟତ । ଲୋକଟିର କିନ୍ତୁ ସେ ଦିଗକୁ ଦୃଷ୍ଟି ନାହିଁ । ଏହା ଦେଖି ଯୁଧିଷ୍ଠିର ଚିତ୍କାର କରି ସେ ଲୋକଟିକୁ ଡାକି କହିଲେ, "ସାପ ସାପ, ଦୂରକୁ ଯାଅ ।" କିନ୍ତୁ ଲୋକଟି ସେହିପରି ଆଁ କରି ରହିଛି । ସେ ହାତଦ୍ୱାରା ଇଙ୍ଗିତ କରି କହୁଛି, 'ଆଉ ଟୋପାଏ ।' କିନ୍ତୁ ସେ ଟୋପାକ ଖାଇବାମାତ୍ରେ ସଙ୍ଗେ ସଙ୍ଗେ ସେ ସର୍ପ ଦଂଶନରେ ମୃତ୍ୟୁକୋଳରେ ଢଳିପଡ଼ିଲା ।

ଏ ସଂସାରରେ ଭଗଭାନଙ୍କ ଦାନରେ ଏକ ସାର୍ବଭୌମ ଅଭାବ ବିଦ୍ୟମାନ । କୌଣସିଥିରେ ଜୀବ ନିଜକୁ ସୁଖୀ ଭାବିପାରେ ନାହିଁ । ଭଗବାନଙ୍କର ଏହା ହିଁ ଶ୍ରେଷ୍ଠ ଦୟା । ଜୀବ ଅଭାବ-ପୀଡ଼ନରେ କ୍ରମେ ଉନ୍ନତି ପଥରେ ଅଗ୍ରସର ହୁଏ । କାରଣ, ସୁଖଭୋଗରେ ଯେ ଯେତେ ଉଦ୍‌ବିଗ୍ନ ନ ହୋଇ ରହନ୍ତି, ସେ ସେତେ ଜଡ଼ ହୋଇଯାନ୍ତି । ତେଣୁ ଭଗବାନ କାହାକୁ ହେଲେ ଏକାନ୍ତ ସୁଖୀ କରାନ୍ତି ନାହିଁ; ଗୋଟିଏ ହେଲେ ଜ୍ୱାଳା ଦେଇଥାନ୍ତି । ଏହା ହିଁ ତାଙ୍କର କରୁଣା । ସେଥିପାଇଁ ଭଗବାନଙ୍କୁ ଲାଭ କରିବାପର୍ଯ୍ୟନ୍ତ ଜୀବ କୌଣସି ପ୍ରକାରେ ତୃପ୍ତ ହୋଇପାରେ ନାହିଁ ।

ତାଙ୍କର ଅସୀମ ଦୟା ସ୍ତରେ-ସ୍ତରେ ସଜ୍ଜିତ ହୋଇ ରହିଛି । ଯେ ଯେତେ ଲୋଡ଼ିବେ, ସେ ସେତେ ପାଇବେ । ଯେ ପ୍ରାର୍ଥନା କରନ୍ତି, ସେ ତାଙ୍କ ଦୟାଲାଭ କରନ୍ତି । ପୁଣି କେବେ କେବେ ସେ ଅହେତୁକ ଦୟା ଦେଖାଇଥାନ୍ତି । ତଦ୍ଦ୍ୱାରା ତାଙ୍କ ଦୟାର ଆଦର୍ଶ ଜଗତରେ ସ୍ଥାପିତ ହୁଏ ଅଥବା ଉତ୍ତମ ଆଧାରର ସେହି ଦୟା ବର୍ଷିତ ହେଲେ ଜଗତର କଲ୍ୟାଣ ସାଧିତ ହୁଏ । ଦୟାର ଆଦର୍ଶ ସ୍ଥାପନନିମିତ୍ତ ଜଗାଇ ମାଧାଇଙ୍କୁ ସେ ଅହେତୁକ ଦୟା କରିଥିଲେ । ଭଗବାନଙ୍କ ନିକଟରେ ପ୍ରାର୍ଥନା କଲେ କର୍ମଫଳ ମଧ୍ୟ ଲାଘବ ହୋଇପାରେ । ସ୍ୱାଭାବିକ ନିୟମରେ ତିନି ଜନ୍ମରେ ଯାହାଙ୍କର ମୁକ୍ତି ହେବାର କଥା, ପ୍ରାର୍ଥନା ଓ ପ୍ରେରଣା ଫଳରେ ଏହି ଏକ ଜନ୍ମରେ ତାଙ୍କର ମୁକ୍ତି ହୋଇପାରେ ।

## କର୍ମନିମିତ୍ତ ଜୀବ ଦାୟୀ

ସବୁ ଯଦି ଭଗବାନ କରନ୍ତି, କର୍ମନିମିତ୍ତ ଜୀବ ଦାୟୀ ହେବ କାହିଁକି ? ପୁଣି ଭଗବାନଙ୍କୁ ଦୟାମୟ ଆଖ୍ୟା ଦିଆଯିବ ବା କାହିଁକି ? ସତ୍ ଓ ଅସତ୍ ସକଳ କର୍ମ ଭଗବାନ ଦେଇଛନ୍ତି । ପୁଣି ପ୍ରତ୍ୟେକଙ୍କୁ ସେ ବିବେକ ମଧ୍ୟ ଦେଇଛନ୍ତି । ବିବେକ ସତ୍-ଅସତ୍ ଜଣାଇଦିଏ । ତଥାପି କେହି ଯଦି ସେ କଥା ଗ୍ରହଣ ନ କରି ଅସତ୍ କର୍ମ କରନ୍ତି, ସେଥିପାଇଁ ଦାୟୀ ସେ ନିଜେ । ଏହି କାରଣରୁ ଜୀବ ତାର କୃତକର୍ମର ଫଳ ଭୋଗ କରିଥାଏ । କର୍ମବଶରେ ଜୀବ ଯଦି ଦୁଃଖ-ସମୁଦ୍ରରେ ବୁଡ଼ିରହେ, ସେହି ଦୁଃଖରୁ ଉଦ୍ଧାର ପାଇବା ପାଇଁ ଭଗବାନ ଜୀବକୁ ପ୍ରେରଣା ଦିଅନ୍ତି । ସେହି ପ୍ରେରଣାବଳରେ ଅସତ୍‌ରୁ ସତ୍ ଆଡ଼କୁ ଜୀବ ଆକୃଷ୍ଟ ହୁଏ । ତେଣୁ ଭଗବାନ ଦୟାମୟ ।

ଭଗବାନ ଗୋଟିଏ ଦିଗରେ ଆପଣା ନିୟମ ଶୃଙ୍ଖଳାର ଖୁବ୍ ପକ୍ଷପାତୀ, ଫଳରେ ଅତିଶୟ କଠୋର; ଅନ୍ୟ ଦିଗରେ ସେ ଅତି କୋମଳ କ୍ଷମାଶୀଳ, କାରୁଣିକ ଓ ଦୟାଶୀଳ । ଜଣେ ମୁନିବ ଭୃତ୍ୟମାନଙ୍କୁ ଖୁବ୍ କଠୋର ଶାସନରେ 'ରଖିଥିଲେ । ମୁନିବଙ୍କର ମାଲ ସରଞ୍ଜାମ ଯେତେ ମାତ୍ରାରେ ଖରଚ ହେଉଥିଲା, ସେସବୁର ଟିକିନିଖି ହିସାବ ରଖିବାକୁ ହେଉଥିଲା । ଭୃତ୍ୟ ଦୈବାତ୍ ଦିନେ ଚୋରିକରି ଗୋଟାଏ କଦଳୀ ଖାଇଦେଲା । ମୁନିବ ସେଥିପାଇଁ ତାକୁ ଟଙ୍କାଏ ଜୋରିମାନା କଲେ । ମୁନିବଙ୍କର ଆଉ ଗୋଟିଏ ଗୁଣ ଥିଲା, ସେ ଅତିଶୟ ଦୟାଳୁ । ଏହାପରେ ଭୃତ୍ୟଟିକୁ ସେ କୋଡ଼ିଏଟି କଦଳୀ ଖାଇବାକୁ ଦେଲେ । ଭୃତ୍ୟଟି ମୁନିବଙ୍କୁ ନ ମାଗି କୋଡ଼ିଏଟି କଦଳୀ ଯେତେବେଳେ ପାଇଲା, ତାଙ୍କୁ ମାଗିଥିଲେ ସେ ନିଶ୍ଚୟ ଦେଇଥାନ୍ତେ । ତାହାହେଲେ ଭୃତ୍ୟ ତାଙ୍କ ଭଣ୍ଡାରରୁ ଚୋରି କରିବ ବା କାହିଁକି ? ତାଙ୍କ ନିୟମ ଭଙ୍ଗ କରି ବୃଥାଟାରେ କଷ୍ଟ ପାଇବ କାହିଁକି ? ଭଗବାନ୍ ଠିକ୍ ଏହି ମୁନିବଙ୍କପରି । ନିଜ ନିୟମ-ଶାସନରେ ସେ ସମସ୍ତଙ୍କୁ ଚଳାଇବାକୁ ଇଚ୍ଛା କରନ୍ତି । ନ୍ୟାୟ ବିପକ୍ଷରେ କେହି ଯେପରି ନ ଯାଏ, ସେଥିପ୍ରତି ସେ କଡ଼ା ନଜର ରଖନ୍ତି । ସେ ପୁଣି ବାଞ୍ଛାକଳ୍ପତରୁ । ତାଙ୍କ ନିକଟରେ ଯେ ଯାହା ଲୋଡ଼ିବ, ତାହା ପାଇବ । ତେବେ ତାଙ୍କ ନିୟମ ଭଙ୍ଗ କରି ଲାଭ କଅଣ ?

## ବିଷୟ-ବିଭବ କ୍ଷୁଦ୍ର ପ୍ରାର୍ଥନା

ଯେ କିଛି ହେଲେ ଲୋଡ଼ନ୍ତି ନାହିଁ, ତାଙ୍କୁ ନେଇ ଭଗବାନ ବଡ଼ ଅଡୁଆରେ ପଡ଼ିଯାନ୍ତି । ନିଜକୁ ତାଙ୍କ ନିକଟରେ ସମର୍ପିଦେବା ବ୍ୟତୀତ ତାଙ୍କର ଅନ୍ୟ କିଛି ଉପାୟ ରହେ ନାହିଁ । ଜ୍ଞାନୀ କିଛି ମାଗନ୍ତି ନାହିଁ, କାରଣ, ସେ ସବୁ ବ୍ରହ୍ମମୟ ଉପଲବ୍ଧି କରନ୍ତି । ଫଳରେ ଲୋଡ଼ିବା ପାଇଁ ତାଙ୍କର କିଛି ନଥାଏ । ପୁଣି ଭକ୍ତ ଭଗବାନଙ୍କୁ ସବୁ ଦେଇସାରିଛନ୍ତି; ନିଜପାଇଁ କିଛି ରଖିନାହାନ୍ତି । ସୁତରାଂ ମାଗିବା ପାଇଁ ତାଙ୍କର କିଛି ନାହିଁ । ବ୍ରହ୍ମତ୍ୱ, ଇନ୍ଦ୍ରତ୍ୱ ଦେଇ ମଧ୍ୟ ଭଗବାନ ଏମାନଙ୍କୁ ଭୁଲାଇପାରନ୍ତି ନାହିଁ । ପରିଶେଷରେ ନିଜକୁ ଦାନ କରିବାକୁ ବାଧ୍ୟ ହୁଅନ୍ତି ।

ଖାଇବା ନିମିତ୍ତ କେହି କେହି ଭଗବାନଙ୍କ ଉପରେ ନିର୍ଭର କରନ୍ତି । ଭଗବାନ ଖାଇବାକୁ ଦେବେ ତ ଖାଇବି, ନଚେତ୍ ଖାଇବି ନାହିଁ । ପ୍ରକୃତ ଭକ୍ତ ତାଙ୍କୁ ଏ ସାମାନ୍ୟ କଥାପାଇଁ କଷ୍ଟ ଦିଅନ୍ତି ନାହିଁ । ଭଗବାନ ହାତ-ଗୋଡ଼ ଦେଇଛନ୍ତି, ମନବୁଦ୍ଧି ଦେଇଛନ୍ତି । ତାହା ବ୍ୟବହାର କରି ଖାଦ୍ୟ ସଂଗ୍ରହ କର ।

ଏହି ସାମାନ୍ୟ ବିଷୟ ପାଇଁ ତାଙ୍କୁ ପ୍ରାର୍ଥନା କରି ଲାଭ କଅଣ ? ଜ୍ୱର ହେଲେ ଗୋଟାଏ ଦୁଇଟା ବଟିକା ଖାଇ ଜ୍ୱର ବନ୍ଦ କରିପାରିବା ସ୍ଥଳେ ଭଗବାନଙ୍କ ନିକଟରେ ମୁଣ୍ଡ କୋଡ଼ିହେବାର ପ୍ରୟୋଜନ କଅଣ ? ମଶା ମାରିବା ପାଇଁ ତୋପ-ବନ୍ଧୁକର ପ୍ରାର୍ଥନା କର କାହିଁକି ? ତାଙ୍କ ନିକଟରେ ପ୍ରାର୍ଥନା କରିବ ତ ଜ୍ଞାନ-ଭକ୍ତି-ପାଇଁ ପ୍ରାର୍ଥନା କର; କାରଣ, ପୃଥିବୀର ସମସ୍ତ ଐଶ୍ୱର୍ଯ୍ୟ ବିନିମୟରେ ଏହି ଜ୍ଞାନ ଓ ଭକ୍ତି ମିଳେ ନାହିଁ । ଆମ ଦେହ, ମନ, ବୁଦ୍ଧିର ଯାହା ଅଧୀନ ନୁହେଁ, ଏପରି ବସ୍ତୁପାଇଁ ତାଙ୍କୁ ଡାକିବା ଦରକାର । ଗାୟତ୍ରୀ ମନ୍ତ୍ରରେ ଭଗବାନଙ୍କର ସାର୍ବଭୌମ ପ୍ରେରଣା ନିହିତ । ଏହି ପ୍ରାର୍ଥନାଟି ସକଳ ପ୍ରାଣୀଙ୍କର ହୃଦୟରେ ସର୍ବଦା ଉଚ୍ଚାରିତ ହେଉଅଛି ।

ରୂପ ଗୋସ୍ୱାମୀ ନିଶ୍ଚେଷ୍ଟ ଭାବରେ ଯମୁନା ତୀରରେ ବସିଥାନ୍ତି । ଭଗବାନ ବାଳକ ରୂପରେ ତାଙ୍କୁ ଆହାର ଦେଇଯାଆନ୍ତି । ଏ କଥା ଜାଣିପରି ରୂପଙ୍କ ଭାଇ ସନାତନ ତିରସ୍କାର କରି ରୂପଙ୍କୁ କହିଲେ, ‘‘ରୂପ! ତୁ ଯେ କିପରି ଭକ୍ତ ? ସାମାନ୍ୟ ଆହାର ଗଣ୍ଡାକ ପାଇଁ ଭଗବାନଙ୍କୁ କଷ୍ଟ ଦେଉଛୁ ?’’ ଭଗବାନଙ୍କୁ ପ୍ରେମ କରିବସିଲେ ତାଙ୍କ ନିକଟରେ ଆଉ ଅଳି କରିବା ଚଳିବ ନାହିଁ । ସେତେବେଳେ କହିବାକୁ ଶିଖିବ, ‘‘ତୁମେ ଯେଉଁଠାରେ ଅଛ,ସେହିଠାରେ ହିଁ ସୁଖରେ ଥାଅ । ତୁମ ସୁଖରେ ମୋ ସୁଖ, ମୋ ଦୁଃଖରେ ତୁମକୁ କାହିଁକି ଦୁଃଖ ଦେବି ? ହେ ସୁଖମୟ ! ତୁମେ ସୁଖରେ ରହିଥାଅ ।’’

ଜଣେ ଭକ୍ତଙ୍କୁ ଦେଖାଦେବା ପାଇଁ ଭଗବାନ ଆସି ହାତ ଯୋଡ଼ି ତାଙ୍କ ଆଗରେ ଛିଡ଼ାହେଲେ । ଭକ୍ତ ତ ଅବାକ୍! ସେ କହିଲା, ‘‘ପ୍ରଭୁ, ଏ କ’ଣ ? ଆପଣ ଯୋଡ଼ହସ୍ତ କାହିଁକି ?’’ ଭଗବାନ କହିଲେ, ‘‘ତୁମେ ତ ମୋତେ କେବେହେଲେ କୋମଳ କଥା କହିନାହଁ । ତୁମେ ତ ମୋ ଉପରେ ସବୁବେଳେ ହୁକୁମ ଚଳାଇଆସିଛ ! ତେଣୁ ତୁମେ ମୋର ପ୍ରଭୁ, ଆଉ ମୁଁ ତୁମର ଆଜ୍ଞାଧୀନ ।’’ ଜୀବ ମଧ୍ୟ ଯେତେବେଳେ-ସେତେବେଳେ ଭଗବାନଙ୍କୁ ଯାହା-ତାହା କରିଦେବା ପାଇଁ କହେ, ଯେପରି କି ଭଗବାନ ଜଣକର ଖାସ୍ ଜମିଦାରୀର ପ୍ରଜା ! ଯେତେବେଳେ ସେ ଯାହା ହୁକୁମ କରିବ, ଭଗବାନ ଯେପରି କି ତାହା ପାଳନ କରିବାକୁ ବାଧ୍ୟ! ଭଗବାନଙ୍କ ପ୍ରେମ ଜୀବ ବୁଝିପାରେ ନାହିଁ । ତାଙ୍କ ପ୍ରେମର ଫିଙ୍ଗାଫୋପଡ଼ା କଣିକାଏ ଧରି ଜୀବ ତାଙ୍କୁ ପ୍ରେମ କରିବାକୁ ଯାଏ । ସେ ଜୀବଙ୍କୁ

କିପରି ସୁଖ ପଆନ୍ତି, ଜୀବ ବା ତାହା କିପରି ବୁଝିବ ! ତାଙ୍କର ପ୍ରେମସିନ୍ଧୁ, ଜୀବର ପ୍ରେମ ବିନ୍ଦୁ । ବିନ୍ଦୁ କେତେବେଳେ କ'ଣ ସିନ୍ଧୁର ପରିମାଣ କଳନା କରିପାରେ ?

## ଜୀବର ପରୀକ୍ଷା

ଭଗବାନଙ୍କୁ ଅନୁଯୋଗ କର ନାହିଁ ।

ଜଗତରେ ସବୁ ତାଙ୍କରି ଇଚ୍ଛାରେ ହେଉଛି । ମେହେନ୍ତର ତା'ର ନିଜ କାର୍ଯ୍ୟ କରିଯାଉଛି । ସେଥିରେ ତା'ର ଘୃଣାର ବିଷୟ କିଛି ନାହିଁ । ସାଧୁ ଉପଦେଶ ଦେଉଛନ୍ତି କିମ୍ବା ଧର୍ମାଚରଣ କରୁଛନ୍ତି । ସେଥିରେ ମଧ୍ୟ ତାଙ୍କର ଗର୍ବ କରିବାର କଥା କିଛି ନାହିଁ । ମୂଳରେ ସବୁ ଏକ, ପ୍ରଭେଦ କେବଳ ବ୍ୟବହାରରେ । ଭଲ-ମନ୍ଦ ବିଚାର ମଧ୍ୟ ବ୍ୟବହାରରେ ।

ଭଗବାନ ଜୀବକୁ ସର୍ବଦା ପରୀକ୍ଷା କରନ୍ତି । ତାଙ୍କୁ ଛାଡ଼ି ଅନ୍ୟ କୌଣସି ବିଷୟପ୍ରତି ଜୀବର ଆକର୍ଷଣ ଅଛି କି ନାହିଁ, ତାହା ସେ ଦେଖନ୍ତି । ଭଗବାନ ଅନ୍ୟ ବସ୍ତୁ ଦେଇ ଯଦି ଜୀବକୁ ଭୁଲାଇପାରନ୍ତି, ତାହାହେଲେ ସହଜରେ ନିଜେ ଧରାଦିଅନ୍ତି ନାହିଁ । ସାଧକ ଯଦି କୌଣସି ବିଷୟର ପ୍ରଲୋଭନରେ ମୁଗ୍ଧ ନ ହୁଅନ୍ତି, ଭଗବାନ ନିଜେ ଆସି ଅଗତ୍ୟା ସେହିମାନଙ୍କ ନିକଟରେ ଉପସ୍ଥିତ ହୁଅନ୍ତି । ଯାହାଙ୍କର ଯେଉଁଠାରେ ଦୁର୍ବଳତା ଅଛି, ସେ ଆସି ପ୍ରଥମେ ସେହି ସ୍ଥାନଟି ଧରନ୍ତି । ସାଧୁପଣ କରିବା ଲାଳସା କିମ୍ବା ଜଗତ୍‌ବାସୀଙ୍କ ଠାରୁ ପ୍ରଶଂସା ଓ ବାହାବା ପାଇବା ଇଚ୍ଛା ଇତ୍ୟାଦି ପ୍ରତିଷ୍ଠା ପାଇବା ଭାବ ସାଧନପଥର ବିଶେଷ ଅନ୍ତରାୟ । ଅନ୍ତରପ୍ରତି ଦୃଷ୍ଟି ପକାଇ ଏସବୁ ପ୍ରଲୋଭନରୁ ଦୂରରେ ରହିବାକୁ ହେବ । ଯେ ଅନ୍ୟକୁ ବଞ୍ଚନା କରନ୍ତି, ତାଙ୍କର ଉଦ୍ଧାରର ବାଟ ଥାଇପାରେ; କିନ୍ତୁ ଯେ ନିଜକୁ ପ୍ରତରଣା କରନ୍ତି, ସେହି ଆତ୍ମପ୍ରତାରକଙ୍କର ଆଉ ଉପାୟ ନାହିଁ । ଏଥିପାଇଁ ସର୍ବଦା ପ୍ରଲୋଭନରୁ ଦୂରରେ ରହିବାକୁ ହେବ ।

ଜୀବକୁ ସ୍ୱରୂପ ଦେବା ପୂର୍ବରୁ ଭଗବାନ ତାକୁ ଭଲରୂପେ ପରୀକ୍ଷା କରି ଦେଖନ୍ତି । ନାନା ପ୍ରଲୋଭନ ଭିତରେ ପକାଇ ତାକୁ ପରୀକ୍ଷା କରନ୍ତି । ସେଥିରେ ଯଦି ସେ ଭୁଲି ନ ଯାଏ, ତା'ଭିତରେ ଗୁରୁଭାବ ପ୍ରବେଶ କରାଇ ଶେଷ ପରୀକ୍ଷା କରନ୍ତି । ଏଥିରେ ଅନେକେ ଅଟକିଯାଆନ୍ତି । ସେମାନେ ଭାବନ୍ତି ନାହିଁ ଯେ ନିଜେ ଯେତେବେଳେ ସେମାନେ ପୂର୍ଣ୍ଣ ନୁହଁନ୍ତି, ସେତେବେଳେ ଅନ୍ୟକୁ ଶିକ୍ଷାଦେବେ ବା କିପରି ? ଏହି ଶେଷ ପ୍ରଲୋଭନ ଅଗ୍ରାହ୍ୟ କରି ମଧ୍ୟ ଜୀବ ନିଜ ସ୍ୱରୂପପ୍ରାପ୍ତି

ନିମିତ୍ତ ଦୃଢ଼ ହୋଇ ରହିଲେ ଆଉ କେହି ତାଙ୍କର ପଥରୋଧ କରିପାରନ୍ତି ନାହିଁ। ଜ୍ଞାନ ଲାଭ ହେଲାପରେ ଗୁରୁପଣିଆ କରିବା ନ କରିବା ନିଜର ଇଚ୍ଛାଧୀନ। ସେତେବେଳେ ସେଥିରେ ଆଉ ଦୋଷ ହୁଏ ନାହିଁ।

ଭଗବାନଙ୍କର ଦର୍ଶନ ଇଚ୍ଛା କରିବା ମଧ୍ୟ କାମନା। ଦେଖିବାକୁ ଇଚ୍ଛା କଲେ ସେ ଦେଖାଦିଅନ୍ତି ନାହିଁ; କାରଣ, କାମନା ଥିବାଯାଏ କେହି ଭଗବାନଙ୍କୁ ପାଇପାରିବେ ନାହିଁ। ଏକମାତ୍ର ତାଙ୍କ ଉପରେ ନିର୍ଭର କରିବା ବ୍ୟତୀତ, ଏକମାତ୍ର ତାଙ୍କ କୃପା ଲାଭ କରିବା ବ୍ୟତୀତ କେହି ତାଙ୍କ ଦର୍ଶନ ପାଆନ୍ତି ନାହିଁ। ନିଷ୍କାମ ହେଲେ, ଚିତ୍ତ ଶୁଦ୍ଧ ହେଲେ ସେ ଆପେ ଆପେ ଆସି ଦର୍ଶନ ଦିଅନ୍ତି। କୃପାଲାଭ ନିମିତ୍ତି ବ୍ୟାକୁଳତା ଆବଶ୍ୟକ; କିନ୍ତୁ ଅହଂକାରୀ ମାନବ ସହଜରେ ଭଗବାନଙ୍କ ଠାରେ ନିର୍ଭର କରିବାକୁ ଇଚ୍ଛା କରେ ନାହିଁ। ଜୀବ ଯେତେବେଳେ ଅନ୍ୟ ଗତି ଖୋଜି ପାଏ ନାହିଁ, ସେତେବେଳେ ସେ କହେ, କପାଳରେ ତ ଏହା ଭୋଗିବାର ଥିଲା, କଅଣ କରିବି ? ଏହିଠାରେ ନିର୍ଭରତା ଆରମ୍ଭ ହୁଏ। ଝୁଣ୍ଟି ନ ପଡ଼ିଲେ କେହି ଶିଖନ୍ତି ନାହିଁ। କଥାରେ ଅଛି, 'ଶିଖିଛି ସେଇଠି, ଝୁଣ୍ଟିଛି ଯେଉଁଠି', କିନ୍ତୁ ରକ୍ଷା କରିବା ଆଗରୁ ସେ ପୁଣି ଥରେ ପରୀକ୍ଷା କରିନିଅନ୍ତି। ଭଗବାନଙ୍କ ଠାରେ ଯେ ପରିମାଣରେ ନିର୍ଭରତା ଜନ୍ମେ ଭୟ, ଭାବନା, ଅଶାନ୍ତି ସେହି ପରିମାଣରେ ଦୂରକୁ ପଳାୟନ କରେ।

ତାଙ୍କ ଇଚ୍ଛା ବ୍ୟତୀତ ଆଖିର ପତାଟିଏ ହେଲେ ପଡ଼େ ନାହିଁ, ଗଛର ପତ୍ରଟିଏ ମଧ୍ୟ ହଲେ ନାହିଁ; କିନ୍ତୁ ଏହା ଉପଲବ୍ଧିର ବିଷୟ। ସାଧାରଣ ଜୀବକୁ ଏ କଥା ଶୁଣାଇଲେ ହେବ ନାହିଁ। ଅହଂନାଶ ନ ହେଲେ ଏହି ସତ୍ୟ କେହି ବୁଝାଇପାରିବେ ନାହିଁ। ଭଗବାନଙ୍କ ଇଚ୍ଛା ହିଁ ସବୁ। ପ୍ରାରବ୍ଧ କେବଳ କଥା, କର୍ମ ପୂର୍ବର ଇଚ୍ଛା। ସୁତରାଂ, ଯାହା କିଛି ହୋଇଯାଉଛି, ସେସବୁ ତାଙ୍କରି ଇଚ୍ଛା।

ମନୁଷ୍ୟ ଭଗବାନଙ୍କ ଆଡ଼କୁ ଯେ ପରିମାଣରେ ଅଗ୍ରସର ହେଉଥାଏ, ବିଷୟୀ ଲୋକଙ୍କଠାରୁ ସେତିକି ଦୂରକୁ ଚାଲିଯାଉଥାଏ। ବିଷୟୀ ଲୋକେ ତାଙ୍କୁ ବାତୁଳ ବୋଲି କହନ୍ତି।

ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରିବା ବାସନା ନୁହେଁ। ମୋର ଖୁବ୍ ଧର୍ମ ହେଉ, ଲୋକେ ମୋତେ ମାନ୍ୟ କରନ୍ତୁ, ସ୍ୱର୍ଗଭୋଗ ହେଉ, ମୁଁ ଧର୍ମ ପ୍ରଚାର କରି ଜଗତ ଉଦ୍ଧାର କରିବି, ଧନ ଦିଅ, ଯଶ ଦିଅ, ପୁତ୍ର କନ୍ୟା ଦିଅ

ଇତ୍ୟାଦି—ସବୁ ବାସନା । ତୁମର ଦାସ କର, ତୁମର ସଖା କର, ତୁମର ଭକ୍ତ କର, ମୋତେ ସମସ୍ତ ବାସନାରୁ ମୁକ୍ତ କର, ଏହା ମଧ୍ୟ ବାସନା; କିନ୍ତୁ ଏସବୁ ଶୁଦ୍ଧ ବାସନା । ଏହା ଉତ୍ତମ । ଆତ୍ମସୁଖ-ଇଚ୍ଛାର ନାମ ଭୋଗ । ଯେତେବେଳଯାଏ ସୁଖ-ଇଚ୍ଛା ଥାଏ, ସେପର୍ଯ୍ୟନ୍ତ ସେ ଦାସ କିମ୍ବା ସଖା ହୋଇପାରନ୍ତି ନାହିଁ । ସୁଖ-ଇଚ୍ଛା ସ୍ୱାର୍ଥ । ଅହଂତ୍ୱ ନାଶ ଏକାଥରକେ ହୁଏ ନାହିଁ । ଅନନ୍ତ କୋଟି ବ୍ରହ୍ମାଣ୍ଡର ଏକକାଳୀନ ଲୟ କେବେହେଲେ ସମ୍ଭବପର ହୁଏ ନାହିଁ । ସୁତରାଂ, ଭଗବାନ ମଧ୍ୟ କେବେହେଲେ ଏକାବେଳକେ ନିର୍ଗୁଣ ଅବସ୍ଥା ପ୍ରାପ୍ତ ହୁଅନ୍ତି ନାହିଁ ।

## ରୂପଦର୍ଶନ

ଭଗବାନଙ୍କର ରୂପ ଦେଖି କେହି ସନ୍ତୁଷ୍ଟ ହୁଅନ୍ତି ନାହିଁ । ଭଗବାନ ରୂପ ଦେଖାଇ ଜୀବକୁ ଆକର୍ଷଣ କରି ଯଥାସର୍ବସ୍ୱ ନେଇ ଅଦୃଶ୍ୟ ହୁଅନ୍ତି । ଏହା ହିଁ ଶତବର୍ଷର ବିରହ । ସେତେବେଳେ ଜୀବ କାନ୍ଦି କାନ୍ଦି ଅସ୍ଥିର ହୋଇପଡ଼େ । ସେଥିରେ ଜୀବର ମଳିନତା କ୍ଷୟ ହୁଏ । ମଳିନତା କ୍ଷୟ ହୋଇଗଲେ ଜୀବ ତାଙ୍କୁ ପାଇଥାଏ । ଏହା ଯୋଗୀଙ୍କର ଯୋଗ । ଅନ୍ତରରେ ଭଗବାନଙ୍କ ପ୍ରତି ପୂର୍ଣ୍ଣ ବିଶ୍ୱାସ ଉପଲବ୍ଧି କରିବା ହିଁ ସ୍ୱରୂପତ୍ୱଲାଭ ।

ଭଗବାନଙ୍କର କୌଣସି ବିଶେଷ ମୂର୍ତ୍ତି ଦେଖିଲେ କିଛି ଫଳ ଲାଭ ହେବ ନାହିଁ । ଜ୍ଞାନ ମିଶ୍ରିତ ନ ହେଲେ ସେ ଦେଖାରେ କିଛି ଲାଭ ହେବ ନାହିଁ । ତତ୍ତ୍ୱ ବୁଝି କାର୍ଯ୍ୟ କଲେ ଅତି ସହଜରେ ଫଳ ଲାଭ ହୋଇଯାଏ । କେବଳ ଜଡ଼ଙ୍କପରି କାର୍ଯ୍ୟ କରିଗଲେ ସେପରି ଫଳ ପାଇପାରିବ ନାହିଁ । ସାଧାରଣତଃ ଭଗବାନଙ୍କ ନିକଟରେ ପ୍ରାର୍ଥନା କରାଯାଏ, ''ହେ ଭଗବାନ ! ତୁମର କୃପା ହେଲେ ସବୁ ହୋଇପାରିବ । ଯାହା ତୁମର ଇଚ୍ଛା, କର ।'' କିନ୍ତୁ ଜ୍ଞାନମିଶା ପ୍ରାର୍ଥନାରେ ଦୃଢ଼ତା ଥାଏ । କାହିଁକି ତାଙ୍କ କୃପା ନ ହେବ ? ନିଶ୍ଚୟ ହେବ ?

ପାଣିଭିତରେ କଳସୀଟିଏ ବୁଡ଼ାଇ ରଖିବା ଯାହା, ଆମେମାନେ ମଧ୍ୟ ଭଗବାନଙ୍କ ମଧ୍ୟରେ ସେହିପରି ବୁଡ଼ିରହିଛୁ; କିନ୍ତୁ ଜଳପାତ୍ରର ସୁଖ-ଦୁଃଖ ସହିତ ନିଜକୁ ଜଡ଼ିତ କରି ଆମେ ନିଜକୁ ବଦ୍ଧ ବୋଲି ମନେ କରୁଛୁ । ପ୍ରକୃତରେ ଆମର ଉପାଦାନ ଭଗବାନଙ୍କ ଉପାଦାନ ଠାରୁ ଆଦୌ ଭିନ୍ନ ନୁହେଁ । ଆମେ ସମସ୍ତେ ଭଗବାନଙ୍କର ସନ୍ତାନ । ଆମର ନିରାନନ୍ଦ ଆସିବ ବା କାହିଁକି ? ଆମେ ତ ଆନନ୍ଦର ଉତ୍ସ !

ଭଗବତ୍ ଦର୍ଶନ—ନିଜ ନିଜ ସଂସ୍କାରାନୁଯାୟୀ ହୋଇଥାଏ । ଯେ ଯେଉଁ ସ୍ତରକୁ ଉଠିଛନ୍ତି, ସେ ସେହି ସ୍ତରର ସତ୍ୟ ହିଁ ଦେଖିବାକୁ ପାଇଥାନ୍ତି । ସେଥିରୁ ଅଧିକ ସେ ଦେଖିପାରନ୍ତି ନାହିଁ । ଦେଖିଲେ ମଧ୍ୟ ବୁଝିପାରନ୍ତି ନାହିଁ କିମ୍ବା ଧାରଣା କରିପାରନ୍ତି ନାହିଁ ।

କର୍ମଦ୍ୱାରା ଭଗବାନଙ୍କୁ ପାଇପାରିବ ନାହିଁ; କିନ୍ତୁ କର୍ମଦ୍ୱାରା ତାଙ୍କର ବର ଲାଭ ହୁଏ ବା କୌଣସି ସିଦ୍ଧି ଲାଭ କରାଯାଇପାରେ । ମାତ୍ର ସିଦ୍ଧିଲାଭ କରିବା ଓ ତାଙ୍କୁ ପାଇବା ଏକା କଥା ନୁହେଁ । ତାଙ୍କ କୃପା ବ୍ୟତୀତ କେହି ତାଙ୍କୁ ପାଇପାରନ୍ତି ନାହିଁ କି ଜାଣିପାରନ୍ତି ନାହିଁ । ଜଗତରେ ସମସ୍ତେ ସ୍ୱାର୍ଥପର, ସମସ୍ତେ ସୁଖ ବାଞ୍ଛା କରନ୍ତି । ଠିକ୍ ଠିକ୍ ଭଗବାନଙ୍କୁ ଲୋଡ଼ନ୍ତି—ଏ କଥା କହିଲେ ସତ୍ୟର ଅପଳାପ ହେବ । ଯେଉଁମାନେ ଗୋପାଳ ମୂର୍ତ୍ତି କିମ୍ବା କିଶୋର ମୂର୍ତ୍ତି ଖୋଜନ୍ତି, ସେମାନେ ମଧ୍ୟ ନିଜର ମନୋମତ, ସଂସ୍କାରମତ ସୁନ୍ଦର ଦେଖି ତାଙ୍କୁ ଲୋଡ଼ନ୍ତି; କିନ୍ତୁ ସେହି ଗୋପାଳମୂର୍ତ୍ତି ବା କିଶୋରମୂର୍ତ୍ତି ଭଗବାନଙ୍କ ଶରୀରରେ ଯଦି କଣ୍ଟା ଥାଆନ୍ତା, ତାଙ୍କର ବିଶାଳ ଦନ୍ତ ଥାଆନ୍ତା, ସେପରି ମୂର୍ତ୍ତିକୁ ସେମାନେ କ'ଣ ଆଲିଙ୍ଗନ କରନ୍ତେ ? ତାହା ଲୋଡ଼ନ୍ତେ ନାହିଁ । ମନୋମତ ସୁଖର ବସ୍ତୁ ସମସ୍ତଙ୍କର ଲୋଡ଼ା । ବଙ୍ଗଳାର କୃଷ୍ଣଙ୍କ ମୂର୍ତ୍ତି, ବମ୍ବେର କୃଷ୍ଣଙ୍କ ମୂର୍ତ୍ତି, ମାନ୍ଦ୍ରାଜର କୃଷ୍ଣଙ୍କ ମୂର୍ତ୍ତି ଦେଖି ବିଚାର କଲେ ଦେଖାଯାଏ, ପ୍ରତ୍ୟେକ ନିଜ ନିଜ ସଂସ୍କାରର ଅନୁକୂଳ ମୂର୍ତ୍ତି ଗଠନ କରିଛନ୍ତି । ମାନ୍ଦ୍ରାଜ ଅଞ୍ଚଳରେ ଅଳଙ୍କାରର ପ୍ରଚଳନ ଅଧିକ । ଫଳରେ ସେମାନେ ଶ୍ରୀକୃଷ୍ଣଙ୍କୁ ବହୁ ପ୍ରକାର ଅଳଙ୍କାରରେ ଭୂଷିତ କରି ଦେଖିବାକୁ ସୁଖ ପାଆନ୍ତି । ଶ୍ରୀକୃଷ୍ଣ ସେମାନଙ୍କ ମନୋମତର ବେଶରେ ଦେଖା ନ ଦେଲେ ସେମାନେ ତାଙ୍କୁ ଚିହ୍ନି ନ ପାରିବାର ଆଶଙ୍କା ରହିଛି । ଫଳରେ ଠିକ୍ ଭାବରେ ଧରି ନ ଥିଲେ ସତ୍ୟ ଦର୍ଶନ ହୁଏ ନାହିଁ ।

ଭଗବାନଙ୍କୁ ଯେ ଯେଉଁଭାବରେ ଲୋଡ଼ନ୍ତି, ସେ ସେହି ଭାବରେ ପାଆନ୍ତି । ଅନେକ ସ୍ଥଳରେ ଜୀବ ଆତ୍ମସୁଖ କିମ୍ବା ବାସନା ଚରିତାର୍ଥ କରିବା ନିମିତ୍ତ ନିଜ ମନଗଢ଼ା ଭଗବାନ୍ ଲୋଡ଼ିଥାଏ । ସେ ନିଜେ ପ୍ରତାରିତ ହୁଏ । ଭଗବାନଙ୍କୁ ସ୍ୱରୂପରେ ଲାଭ କରିପାରେ ନାହିଁ ।

## ଅହେତୁକ ପ୍ରେମ

କର୍ତ୍ତାଯୁକ୍ତ ଚୈତନ୍ୟଙ୍କୁ ଭଗବାନ ଓ କର୍ମଯୁକ୍ତ ଚୈତନ୍ୟଙ୍କୁ ଜୀବ କୁହାଯାଏ । କର୍ତ୍ତା-କର୍ମ ଉପାଧି ତ୍ୟାଗ କଲେ କେବଳ ଚୈତନ୍ୟ ମାତ୍ର ଅବଶିଷ୍ଟ ରହେ । ସେତେବେଳେ ଜୀବ ଭଗବାନ ହୋଇଯାଏ । ଭଗବାନ ସମସ୍ତ ଜୀବଙ୍କୁ ସମାନ ଭାବରେ ସ୍ନେହ କରନ୍ତି; ଜୀବଠାରୁ ସେ କୌଣସି ପ୍ରକାର ପ୍ରତିଦାନର ଆଶା ରଖନ୍ତି ନାହିଁ । ଭଗବାନଙ୍କ ସୁଖର ଏହା ମୂଳ କାରଣ । ଏଥିପାଇଁ ସେ ସୁଖସ୍ୱରୂପ, ଆନନ୍ଦ ସ୍ୱରୂପ ।

ଭଗବାନ କେବେ ହେଲେ ସ୍ତୁତି ବା ସ୍ତୋକବାକ୍ୟରେ ଭୁଲି ଯାଆନ୍ତିନାହିଁ । ତାଙ୍କୁ 'ପିତା' ବୋଲି ଡାକିଲେ କିମ୍ବା ଗାଳିଦେଲେ ତାଙ୍କ ପକ୍ଷରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ସେ ବାକ୍‌ଚାତୁର୍ଯ୍ୟ ଦେଖନ୍ତି ନାହିଁ, ମନକୁ ଦେଖନ୍ତି, କାରଣ ସେ ଭାବଗ୍ରାହୀ । ସ୍ତୁତିଦ୍ୱାରା ଭଗବାନଙ୍କ ଗୁଣାବଳୀ ଆଲୋଚିତ ହୁଏ । ସେଥିରେ ଜୀବର ଚିତ୍ତଶୁଦ୍ଧି ହୋଇଯାଏ । ଏଥିପାଇଁ ସ୍ତୁତି ଆବଶ୍ୟକ । ଜୀବକୁ ସେ ଖୁବ୍ ସ୍ନେହ କରନ୍ତି; କିନ୍ତୁ ତା'ଠାରୁ କୌଣସି ପ୍ରତିଦାନ ଲୋଡ଼ନ୍ତି ନାହିଁ । ଭଗବାନଙ୍କ ପରି ସେବକ ଆଉ କେହି ନାହାନ୍ତି । ସେ ସମସ୍ତଙ୍କର ସେବା ସମାନ ଭାବରେ କରିଯାଆନ୍ତି । ଯେତେବେଳେ ଯେଉଁଠାରେ ଯାହା ଆବଶ୍ୟକ, ପୂର୍ବରୁ ସେ ସମସ୍ତ ସଂଘଟନ କରି ରଖିଛନ୍ତି । ତାହା ଅତିକ୍ରମ କରିବା ଜୀବପକ୍ଷରେ ଅସାଧ୍ୟ । ସୁତରାଂ, ଅନର୍ଥକ ଭବିଷ୍ୟତ ଚିନ୍ତା କରିବାର କୌଣସି ଫଳ ନାହିଁ ।

ଭଗବାନ ଦର୍ଶନ ଦେଲେ ଯଦି ଜୀବ ତ୍ରିବିଧ ଦୁଃଖରୁ ତତ୍‌କ୍ଷଣାତ୍ ମୁକ୍ତ ହୋଇଯାଉଥାନ୍ତା, ତାହା ହେଲେ ସେ ଅହେତୁକ କୃପାମୟ ଦର୍ଶନ ଦେଇ ସମସ୍ତ ଜୀବଙ୍କୁ ମୁକ୍ତ କରିଦେଉଥାନ୍ତେ ଏବଂ ଜଗତରେ ତାଙ୍କ କାରୁଣ୍ୟ ଓ ମାହାତ୍ମ୍ୟ ପ୍ରକାଶ କରୁଥାନ୍ତେ । ଭଗବାନଙ୍କ ସ୍ୱରୂପ ନ ଜାଣି ପ୍ରାର୍ଥନା କଲେ ପ୍ରାର୍ଥନା ପୂରଣ ହୋଇପାରେ; କିନ୍ତୁ ସ୍ୱରୂପ ନ ଜାଣିଲେ ମୁକ୍ତି-ଆଶା ବିଡ଼ମ୍ବନା । ତେଣୁ ଶାସ୍ତ୍ର କହୁଛନ୍ତି, ଜ୍ଞାନ ବ୍ୟତୀତ ମୁକ୍ତି ହାସ୍ୟ-ଜନକ ଓ ବୃଥା—ଶକ୍ତି ଜ୍ଞାନ ବିନା ଦେବୀ ମୁକ୍ତିର୍ହାସ୍ୟାୟ କଳ୍ପତେ ।

ଭଗବାନ ଯଦି ମନୁଷ୍ୟାକାର ହୁଅନ୍ତି, ତାଙ୍କ ଆକୃତି ସ୍ତ୍ରୀପରି ହେବ କି ପୁରୁଷପରି ହେବ ? କେହି କହନ୍ତି—ସେ ସ୍ତ୍ରୀ-ଆକୃତିବିଶିଷ୍ଟ, ଯେପରି କାଳୀ, ଦୁର୍ଗା, ରାଧା । କେହି କହନ୍ତି, ସେ ପୁରୁଷାକୃତି, ସେପରି ମହାଦେବ, ଶ୍ରୀକୃଷ୍ଣ,

ଶ୍ରୀରାମ। ସମସ୍ତ ସ୍ତ୍ରୀମୂର୍ତ୍ତିର ଚରମ ସୌନ୍ଦର୍ଯ୍ୟମୟୀ ମୂର୍ତ୍ତି ଶ୍ରୀରାଧା। ସମସ୍ତ ପୁରୁଷାକୃତିର ଚରମ ମାଧୁର୍ଯ୍ୟମୟ ମୂର୍ତ୍ତି ଶ୍ରୀକୃଷ୍ଣ। ଏହି ସ୍ତ୍ରୀ ମୂର୍ତ୍ତି ଓ ପୁରୁଷମୂର୍ତ୍ତି ମିଳିତ ହୋଇ ଶ୍ରୀକୃଷ୍ଣ ଚୈତନ୍ୟମୂର୍ତ୍ତି ହୋଇଛନ୍ତି।

ପ୍ରେମର ପାତ୍ର ଦୂରରେ ଥିଲେ ମଧ୍ୟ ଆନନ୍ଦ। ତାଙ୍କ ସ୍ମୃତି ବା ଚିନ୍ତାରେ ଆନନ୍ଦ ମିଳିଥାଏ। ସ୍ୱାମୀ ବିଦେଶରେ ଥିଲେ ସୁଦ୍ଧା ତାଙ୍କ କଥା ମନେ ପଡ଼ିଲେ ସତୀ ସ୍ତ୍ରୀର ଛାତି ଫୁଲିଉଠେ। ଆଖପାଖରେ କେତେ ପୁରୁଷ ଚାଲବୁଲ କରୁଥାନ୍ତି; କିନ୍ତୁ ଅନ୍ୟ କାହାରି ପ୍ରତି ତା'ର ମନ ଆକୃଷ୍ଟ ହୁଏ ନାହିଁ। ଭଗବାନଙ୍କୁ ପ୍ରେମ କରି ନ ପାରିଲେ ତାଙ୍କୁ ଦେଖିଲେ ମଧ୍ୟ ସେପରି ଆନନ୍ଦ ପାଇପାରିବ ନାହିଁ; କିନ୍ତୁ ତାଙ୍କୁ ପ୍ରେମ କରିପାରିଲେ ତାଙ୍କ ଦେଖା ନ ପାଇଲେ ମଧ୍ୟ କେବଳ ତାଙ୍କ ସ୍ମୃତିଦ୍ୱାରା ଆନନ୍ଦ ମିଳିବ, ଆକର୍ଷଣ କ୍ରମେ ଅଧିକ ହେଲେ ଅବଶେଷରେ ଭଗବାନ ଦେଖାଦେବେ। ସେ ସହଜରେ ଧରାଦେବାକୁ ଇଚ୍ଛା କରନ୍ତି ନାହିଁ; ଭକ୍ତମାନଙ୍କୁ ନିର୍ମଳ କରିସାରିବାପରେ ସେ ଆସନ୍ତି।

ସୂର୍ଯ୍ୟ ଯେପରି ଜଗତରେ ପ୍ରତିଭାତ ହୋଇ ସୁଦ୍ଧା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ କେନ୍ଦ୍ରରେ ଅବସ୍ଥାନ କରନ୍ତି, ଭଗବାନ ସର୍ବବ୍ୟାପୀ ହୋଇ ମଧ୍ୟ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ନିଷ୍କ୍ରିୟ ଅବସ୍ଥାରେ ଅବସ୍ଥାନ କରନ୍ତି।

## ଭଗବତ୍ ପ୍ରାପ୍ତିର ସାଧନା

ପଶୁତ୍ୱ ତ୍ୟାଗ କଲାପରେ ପ୍ରଥମରେ ମନୁଷ୍ୟତ୍ୱ ଲାଭ ହୁଏ। ତତ୍ପରେ ଦେବତ୍ୱ, ତାହାପରେ ଈଶ୍ୱରତ୍ୱ ଲାଭ ହିଁ ମାନବ-ଜୀବନର ଉଦ୍ଦେଶ୍ୟ। ଯେ ଏହିଭାବରେ ସିଦ୍ଧି ଲାଭ କରିଛନ୍ତି, ତାଙ୍କ ଓ ଭଗବାନଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ। ଜଗତରେ ଏପରି ମହାପୁରୁଷଙ୍କର ଅଭାବ ନାହିଁ। ଯେଉଁଠାରେ ଏହି ଆଦର୍ଶ ପ୍ରତିଷ୍ଠିତ, ତାଙ୍କୁ ଆଦର୍ଶ କରି ଜୀବନ ଗଠନ କରିବା ଏକାନ୍ତ ଆବଶ୍ୟକ।

ଭକ୍ତିର ସାଧନା ରାଗମାର୍ଗ। ସୁତରାଂ ଯାହାଙ୍କର ଯେପରି ଅନୁରାଗ, ସେ ସେହିପରି ରୂପ ହୃଦୟରେ ଧାରଣ କରି ମନୋମତ ବେଶଭୂଷା କରି ଭଗବାନଙ୍କଠାରେ ତନ୍ମୟତା ଲାଭ କରିଥାନ୍ତି। ସେହି ଅବସ୍ଥାରେ ବିଧିନିଷେଧ ସବୁ ଭାସିଯାଏ। ତାଙ୍କ ନିକଟରେ କିଛି ଲୋଡ଼ିବା ଦରକାର ନାହିଁ। ତେବେ ଯଦି ନିତାନ୍ତ କିଛି ମାଗିବାକୁ ହେବ, ଜ୍ଞାନ ଅଥବା ଭକ୍ତି ହିଁ ମାଗ। ସେ କେତେ ଜନ୍ମ-

ଜନ୍ମାନ୍ତରରୁ ଦେଇ ଆସୁଛନ୍ତି । ସୁତରାଂ, ଏଥର ତାଙ୍କୁ ଯଥାସର୍ବସ୍ୱ ଦେଇଦେବା ଦରକାର । ମା ଯେପରି ପିଲାକୁ ଖୋଜି ଯାହା ଦେବାର ଯାଚିକରି ଦିଏ, ଭଗବାନ ସେହିପରି ବୁଝିକରି ଯାହାଙ୍କର ଯାହା ଆବଶ୍ୟକ ସବୁ ଦେବେ । ତୁମେ ତାଙ୍କ ଉପରେ ସବୁ ଭାର ଛାଡ଼ିଦେଇ ନିଶ୍ଚିନ୍ତ ହୋଇ କର୍ତ୍ତବ୍ୟ-ପଥରେ ଅଗ୍ରସର ହୁଅ ।

ଭଗବାନଙ୍କୁ ଚାରି ପ୍ରକାର ଭାବରେ ଆରାଧନା କରାଯାଇଥାଏ । ଶୂଦ୍ର ଭାବରେ ବାହ୍ୟପୂଜାଦ୍ୱାରା, ବୈଶ୍ୟଭାବରେ ଜୀବସେବାଦ୍ୱାରା, କ୍ଷାତ୍ରଭାବରେ ଧର୍ମରକ୍ଷା ଦ୍ୱାରା, ଆଉ ବ୍ରାହ୍ମଣ୍ୟ ଭାବରେ ବ୍ରହ୍ମଜ୍ଞାନ ପ୍ରଦାନ ଦ୍ୱାରା ତାଙ୍କର ଆରାଧନା ହୋଇଥାଏ ।

ଭଗବତ୍‌ଲୋକ ଭାବମୟ ' ସେଠାରେ ଶାନ୍ତ, ଦାସ୍ୟ, ସଖ୍ୟ ପ୍ରଭୃତି ଭାବଗୁଡ଼ିକ ମୂର୍ତ୍ତିମନ୍ତ; ସେ ସମସ୍ତେ ଭଗବାନଙ୍କ ଦାସ-ଦାସୀ ।

ଭଗବାନଙ୍କ ସମ୍ବନ୍ଧରେ ଆମେମାନେ ପ୍ରାୟ ସମସ୍ତେ ସଂକୀର୍ଣ୍ଣ ଜ୍ଞାନଦ୍ୱାରା ଏପରି ସଂକୀର୍ଣ୍ଣ ଧାରଣା ପୋଷଣ କରିଥାଉ ଯେ ହୁଏତ ପ୍ରକୃତରେ ଭଗବାନଙ୍କର ସାକ୍ଷାତ୍‌କାର ହେଲେ ମଧ୍ୟ ତାଙ୍କୁ ଆମେ ଚିହ୍ନିପାରିବୁ ନାହିଁ । ସାଧୁମାନଙ୍କ ସମ୍ବନ୍ଧରେ ମଧ୍ୟ ଠିକ୍ ସେହି କଥା ।

ଭଗବାନ ଶାନ୍ତିମୟ । ତାଙ୍କୁ ପାଇଲେ ଅର୍ଥାତ୍ ତାଙ୍କୁ ବୁଝିପାରିଲେ ଯାଇ ଶାନ୍ତି ପାଇବ । ମନୁଷ୍ୟ କ୍ଷୁଦ୍ର, ସସୀମ; ଭଗବାନ ଅନନ୍ତ, ଅସୀମ । ସୁତରାଂ, ଯୋଗ-ଜପ-ତପଦ୍ୱାରା ତାଙ୍କୁ ପାଇବା ଅସମ୍ଭବ । ତାଙ୍କ କୃପା ବ୍ୟତୀତ ତାଙ୍କୁ ପାଇହୁଏ ନାହିଁ ।

ଭଗବାନ କର୍ମ ଦେଖନ୍ତି ନାହିଁ; ସେ କେବଳ ଭାବ ଦେଖନ୍ତି । ତେଣୁ ସେ ଭାବଗ୍ରାହୀ ଜନାର୍ଦ୍ଦନ । ତାଙ୍କ ନିକଟରେ କେହି ଶତ୍ରୁ, କେହି ମିତ୍ର ନାହାନ୍ତି । ଯେଉଁ ଭାବରେ ହେଉ ପଛେ ତାଙ୍କୁ ସ୍ମରଣ ରଖିପାରିଲେ ଭଗବାନ ତାଙ୍କୁ ନେଇ ହୃଦୟରେ ଧରନ୍ତି । ତେଣୁ ହିରଣ୍ୟକଶିପୁ ଶତ୍ରୁଭାବରେ ଭାବି ମଧ୍ୟ ତିନି ଜନ୍ମରେ ଉଦ୍ଧାର ପାଇଥିଲା । ଦୀନନାଥଙ୍କୁ ପାଇବାକୁ ହେଲେ ଦୀନ ହୀନ କାଙ୍ଗାଳବେଶ ଧର । ନ ହେଲେ ତାଙ୍କୁ ପାଇବାର ଶକ୍ତି କାହାର ? ଯେ ସଂପୂର୍ଣ୍ଣ ଭାବରେ ତାଙ୍କଠାରେ ଆତ୍ମସମର୍ପଣ କରିଛନ୍ତି, ସେହି ଏକା ପ୍ରକୃତ ଦୀନ ହୀନ । କେବଳ ଲେଙ୍ଗୁଟି ପିନ୍ଧି ଭିକ୍ଷୁକ ବେଶ ଧାରଣ କଲେ କେହି ଦୀନହୀନ ହୋଇଯାନ୍ତି ନାହିଁ ।

କେତେ ପିଲା ଏପରି ଅମାନିଆ ଥାଆନ୍ତି, ଯେକୌଣସି ପଦାର୍ଥ ପୂରା ଷୋଳ ଅଣା ନ ପାଇଲେ ସେମାନେ ତୃପ୍ତ ହୁଅନ୍ତି ନାହିଁ। ଭଗବାନ ମଧ୍ୟ ଠିକ୍ ସେହିପରି। ଭକ୍ତଙ୍କର ଯଥାସର୍ବସ୍ୱ ନ ପାଇଲେ ସେ ଭକ୍ତାଧୀନ ହୁଅନ୍ତି ନାହିଁ। ଯେ ତାଙ୍କୁ ସର୍ବସ୍ୱ ଦେଇପାରିଛନ୍ତି, ସେ ତାହାଙ୍କର କିଣାଜନ।

## ଭଗବାନ୍‌ଙ୍କର ଆକାର

ଈଶ୍ୱର ନିରାକାର ଚୈତନ୍ୟ ସ୍ୱରୂପ। ସୁତରାଂ, ମନୁଷ୍ୟାକାର ପ୍ରତ୍ୟକ୍ଷ ଜୀବଙ୍କୁ ସ୍ୱୟଂ ଭଗବାନ ବୋଲି କିପରି କୁହାଯିବ ? ଭଗବାନ ନିରାକାର—ଏ କଥା ସତ୍ୟ, କିନ୍ତୁ ଏଠାରେ ନିରାକାର ଅର୍ଥରେ ଆକାର ନାହିଁ, ଏପରି ନୁହେଁ। ଯାହାଙ୍କର ନିଶ୍ଚୟ ଆକାର ଅଛି, ସେ ନିରାକାର। ନିଃ ଅର୍ଥ ନିଶ୍ଚୟ-ନିଷେଧୟୋଃ। ନିଃ ଏହି ଉପସର୍ଗର ଅର୍ଥ ନିଶ୍ଚୟାତ୍ମକ ଓ ନିଷେଧାତ୍ମକ। ଏ ସ୍ଥଳରେ ନିଶ୍ଚୟାତ୍ମକ ଭାବରେ ବ୍ୟବହୃତ ହୋଇଅଛି।

ଭଗବାନଙ୍କର ଆକୃତି ନ ଥିଲେ ତାଙ୍କ ରଚିତ ବିଶ୍ୱର ଏବଂ ଏହି ପୃଥିବୀସ୍ଥ ଜୀବସମୂହଙ୍କର ଭିନ୍ନ-ଭିନ୍ନ ଆକୃତି ରହିବା ସମ୍ଭବ ହୁଅନ୍ତା ନାହିଁ। ତେବେ ଭଗବାନଙ୍କ ଆକୃତି କିପରି? ଜଗତର ଯାବତୀୟ ପ୍ରାଣୀ ଆପାତଦୃଷ୍ଟିରେ ବିଭିନ୍ନ ବୋଧ ହେଉଥିଲେ ମଧ୍ୟ ଏମାନଙ୍କ ମୂର୍ତ୍ତିରେ ଗୋଟିଏ ସାମଞ୍ଜସ୍ୟ ଅଛି। ମନୁଷ୍ୟ ଯେ ସର୍ବଶେଷରେ ସୃଷ୍ଟ, ଏହା ସମସ୍ତ ପ୍ରାଣୀତତ୍ତ୍ୱବିତ୍ ଏକ ବାକ୍ୟରେ ସ୍ୱୀକାର କରନ୍ତି। ମନୁଷ୍ୟ ଶେଷ ସୃଷ୍ଟି। ସୁତରାଂ, ଭଗବାନ ମନୁଷ୍ୟାକାର।

ଦିନେ ଗୋଟିଏ ସ୍ତ୍ରୀଲୋକ ଆସି ନିଜ ଗୁରୁଦେବଙ୍କୁ କହିଲା, ‘‘ମୋର ସ୍ୱାମୀଙ୍କୁ ମୋର ବଶ କରିଦିଅନ୍ତୁ।’’ ଗୁରୁ କହିଲେ, ‘‘ତାହା ହୋଇପାରିବ ନାହିଁ।’’ ସ୍ତ୍ରୀଲୋକଟି କହିଲା, ‘‘ଆପଣ ପରା ଭଗବାନଙ୍କୁ ଦେଇପାରନ୍ତି ? ତେବେ ମୋର ସ୍ୱାମୀଙ୍କୁ ନିଜର କରି ଦେଇପାରିବେ ନାହିଁ କାହିଁକି ?’’ ଗୁରୁ କହିଲେ, ‘‘ହଁ ମୁଁ ତୁମକୁ ଭଗବାନଙ୍କୁ ଦେଇପାରେ; କାରଣ ସେ ଯେ ତୁମ ନିଜର ଲୋକ! ତୁମ ଅନ୍ତରରେ, ବାହାରେ ସବୁ ସ୍ଥାନରେ ସେ ବିଦ୍ୟମାନ। ସେ ତୁମ ଆପଣାର ଲୋକ ଅପେକ୍ଷା ଆହୁରି ଆପଣାର ଲୋକ। ତେଣୁ ଭଗବାନଙ୍କୁ ଦେବା ସହଜ ଓ ସ୍ୱାଭାବିକ, କିନ୍ତୁ ତୁମ ସ୍ୱାମୀ ତ ତୁମର ଆପଣାର ଲୋକ ନୁହଁନ୍ତି

ବା କେବେ ହେଲେ ସେ ତୁମର ଆପଣାର ଲୋକ ନ ଥିଲେ। ସେ ତୁମର ସଂପୂର୍ଣ୍ଣ ପର। ସୁତରାଂ, ତାଙ୍କୁ ବଶ କରାଯାଇପାରିବ ନାହିଁ। ତୁମର ଦେହ ଗୋଟିଏ, ଆଉ ତୁମ ସ୍ୱାମୀଙ୍କର ଦେହ ଅନ୍ୟ ଗୋଟିଏ। ତୁମ ମନ ସହିତ ତାଙ୍କ ମନର ସାମଞ୍ଜସ୍ୟ ହେଉନାହିଁ। ଭଗବାନଙ୍କର ତ ମନ ନାହିଁ; କାରଣ ସେ ଯେ ମନର ଅତୀତ! ଫଳରେ ତାଙ୍କୁ ନିଜ ମନର ଅନୁରୂପ କରିନିଆଯାଇପାରେ। ଯେ ତାଙ୍କୁ ଯେଉଁ ରୂପରେ ପାଇବାକୁ ଇଚ୍ଛା କରନ୍ତି, ସେ ତାଙ୍କୁ ସେହି ରୂପରେ ଦେଖାଦିଅନ୍ତି।

ଭଗବାନଙ୍କ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ନ ଥିଲେ ଭଗବାନ ଭକ୍ତଙ୍କୁ ଦର୍ଶନ ଦାନ କଲେ ମଧ୍ୟ ଭକ୍ତ ତାଙ୍କୁ ଜାଣିପାରିବେ ନାହିଁ ଏବଂ ନିଜର କିଛି ବିଶେଷ ଉନ୍ନତି ହେଉଛି ବୋଲି ଧାରଣା ହେବ ନାହିଁ। ଭଗବାନ ଯେତେବେଳେ ଦର୍ଶନ ଦିଅନ୍ତି, ସେତେବେଳେ ଯଦି ତାଙ୍କୁ ଭଗବାନ ବୋଲି ଜ୍ଞାନ ହୁଏ, ତେବେ ଭକ୍ତଙ୍କର ଦିବ୍ୟଚକ୍ଷୁର ବିକାଶ ହେବ ଏବଂ ଜ୍ଞାନ, ଭକ୍ତି ବା ପ୍ରେମ ମଧ୍ୟରୁ ସେ ଯାହା ଇଚ୍ଛା କରିବେ, ତାହା ଲାଭ କରିପାରିବେ। ଭଗବାନଙ୍କୁ ଜ୍ଞାନପୂର୍ବକ ଦର୍ଶନ କଲେ ଅର୍ଥାତ୍ ତାଙ୍କୁ ସ୍ୱରୂପରେ ଦର୍ଶନ କଲେ ଭକ୍ତଙ୍କର ହୃଦୟଗ୍ରନ୍ଥି ଭେଦ ହେବ। ସମସ୍ତ ସଂଶୟ ଛିନ୍ନ ହେବ। ପ୍ରାରବ୍ଧ ବ୍ୟତୀତ ଅନ୍ୟ ସମସ୍ତ କର୍ମର କ୍ଷୟ ହେବ। ଭକ୍ତଙ୍କର ଏଥିରେ ପରମାନନ୍ଦ ଲାଭ ହେବ।

ଭଗବାନ୍ ଆମ ଚତୁର୍ଦ୍ଦିଗରେ ସର୍ବଦା ଘୂରିବୁଲୁଛନ୍ତି। ଆମର ଜ୍ଞାନ-ଚକ୍ଷୁ ଅଭାବରୁ ଆମେ ତାଙ୍କୁ ଉପଲବ୍ଧି କରିପାରୁ ନାହିଁ। ଆମେ ପ୍ରାକୃତ ଜୀବ। ଭଗବାନ୍ ଆମକୁ ଦର୍ଶନ ଦେବାକୁ ଇଚ୍ଛା କଲେ ଆମରିପରି ମୂର୍ତ୍ତି ଧରି ଦେଖାଦେବେ। ତା ନ ହେଲେ ଶାସ୍ତ୍ରବର୍ଣ୍ଣିତ ମୂର୍ତ୍ତିରେ ଦେଖାଦେଲେ ଜୀବ ଭୟ ପାଇବ। ତେଣୁ ଭକ୍ତଙ୍କ ମଧ୍ୟରେ ହିଁ ଭଗବାନ୍‌ଙ୍କୁ ଉପଲବ୍ଧି କରିବାକୁ ହେବ। ଯେଉଁ ବସ୍ତୁ ଦୀପ୍ତିମାନ୍ ବୋଲି ଦେଖିବ, ତାଙ୍କ ମଧ୍ୟରେ ଭଗବାନ୍ ଅଛନ୍ତି ବୋଲି ଜାଣିବ। ଭଗବାନ୍ ଆନନ୍ଦସ୍ୱରୂପ, ଯାହା ଦେଖି ଆନନ୍ଦ ଲାଭ କରିବ, ସେଠାରେ ଭଗବାନ୍ ଅଛନ୍ତି ବୋଲି ଜାଣିବ। ଯାହାଙ୍କ ନିକଟରେ ଯାହା ପ୍ରିୟ, ତାଙ୍କ ନିକଟରେ ତାହା ହିଁ ଭଗବାନ।

ଭଗବାନ୍‌ଙ୍କୁ ଏହି ପୃଥିବୀରେ ମାନବ-ଦେହ ଧାରଣ କରି ଅବତୀର୍ଣ୍ଣ ହେବାକୁ ହେଲେ ପ୍ରଥମେ ସେ ନିଜେ ଆସନ୍ତି ନାହିଁ । ପ୍ରଥମେ ତାଙ୍କର ବାସନା ବା ଇଚ୍ଛାଶକ୍ତି ଦ୍ୱାରା ଦେହ ନିର୍ମିତ ହୁଏ । ବାସନା ହିଁ ମାୟାଶକ୍ତି । ପ୍ରଥମେ ବାସନାଦ୍ୱାରା ସୂକ୍ଷ୍ମ-ଦେହ ପ୍ରସ୍ତୁତ ହୁଏ, ପରେ ଭଗବାନ୍ ସେଥିରେ ପ୍ରବେଶ କରନ୍ତି ।

ଭଗବାନଙ୍କୁ କେବେ ହେଲେ ଅନୁଯୋଗ କର ନାହିଁ । ସେ ଯାହାଙ୍କୁ ଯେଉଁ ଅବସ୍ଥାରେ ରଖନ୍ତି, ତାଙ୍କ ପକ୍ଷରେ ସେହି ଅବସ୍ଥା ହିଁ ଶ୍ରେୟଃ । ତେଣୁ ସବୁ ଅବସ୍ଥାରେ ତାଙ୍କୁ ଧନ୍ୟବାଦ ଦେବା ଉଚିତ୍ ।

ଭଗବାନ୍ ଇଚ୍ଛା କରି କାହାକୁ ସୁଖ ବା କାହାକୁ ଦୁଃଖ ପ୍ରଦାନ କରନ୍ତି ନାହିଁ; ଯାହାଙ୍କର ଯେପରି କର୍ମ, ଭଗବାନ୍ ସେଥିର ଫଳ ପ୍ରଦାନ କରିଥାନ୍ତି ମାତ୍ର । ଭଗବତ୍‌କୃପା ଚିତ୍ତଶୁଦ୍ଧିର ଅପେକ୍ଷା କରେ ନାହିଁ । ଜଗାଇ ମାଧାଇ ଚିତ୍ତଶୁଦ୍ଧି ହେବା ପୂର୍ବରୁ ମଧ୍ୟ ଭଗବତ୍‌କୃପା ଲାଭ କରିଥିଲେ ।

ଭଗବାନ୍ ତୁମକୁ ସବୁ ଦେଇପାରିବେ, କେବଳ ତୁମର ସ୍ୱରୂପ ଦାନ କରିବେ ନାହିଁ । ସେ ଇନ୍ଦ୍ରତ୍ୱ, ବ୍ରହ୍ମତ୍ୱ ଏବଂ ବୈକୁଣ୍ଠର ଅଧିପତି ବିଷ୍ଣୁତ୍ୱ ଦେବାକୁ ମଧ୍ୟ କୁଣ୍ଠିତ ହେବେ ନାହିଁ; କିନ୍ତୁ ସ୍ୱରୂପ ଅର୍ଥାତ୍ ତୁମେ ଯାହା ଥିଲ, ତାହା ପ୍ରଦାନ କରିବାକୁ ସେ କେବେ ହେଲେ ଇଚ୍ଛା କରନ୍ତି ନାହିଁ । ସେ ଯଦି ସ୍ୱରୂପ ପ୍ରଦାନ କରନ୍ତି, ତେବେ ଜୀବକୁ ନେଇ ଯେ ଲୀଳା, ଭଗବାନ୍ ତାହା କରିପାରିବେ ନାହିଁ । ସ୍ୱରୂପଜ୍ଞାନ ଲାଭହେଲେ ସମସ୍ତେ ନିଜକୁ ଅମୃତ ସନ୍ତାନ ବୋଲି ମନେ କରିବେ । ସେପରି କ୍ଷେତ୍ରରେ ଭଗବାନଙ୍କ ଲୀଳାବିଳାସ ଚାଲିଲେ ମଧ୍ୟ ସେଥିରେ ଲୀଳାନନ୍ଦ ଭୋଗ ହୋଇପାରିବ ନାହିଁ ।

ଭାରତରେ ଦେବଦେବୀ-ପୂଜା, ବିଶେଷତଃ ଶକ୍ତିପୂଜା କରି ଦେଶବାସୀ ଶକ୍ତିହୀନ ହୋଇପଡୁଛନ୍ତି କାହିଁକି ? କାରଣ, ଦେବତାମାନେ ଭଗବତ୍ ଶକ୍ତିର ପ୍ରତୀକ । ମୂଳକୁ ଛାଡ଼ି ଡାଳକୁ ଅବଲମ୍ବନ କରୁଥିବାରୁ ପୂଜାର୍ଚ୍ଚନାର ଫଳ ସବୁ ବିଫଳ ହୋଇଯାଉଛି । ତେଣୁ ସମସ୍ତେ ଭଗବତ୍ ଆରାଧନା କଲେ ସମସ୍ତଙ୍କର ସର୍ବାର୍ଥ ସିଦ୍ଧ ହେବ ।

ଭଗବାନଙ୍କୁ ଦର୍ଶନ କରିବା ସହଜସାଧ୍ୟ ନୁହେଁ; କାରଣ ଭଗବାନ୍ ଜାଣନ୍ତି ଯେ ''ମୁଁ ଅସମୟରେ ଦର୍ଶନ ଦେଲେ ଭକ୍ତମାନେ କେବେହେଲେ ମୋତେ ଜାଣିପାରିବେ ନାହିଁ। ଘନଘନ ଦେଖାଦେଲେ ଭକ୍ତଙ୍କୁ ବିରକ୍ତ ଲାଗିବ। ଭକ୍ତ ଆଉ ତାଙ୍କୁ ଦେଖା କରିବାକୁ ଇଚ୍ଛା କରିବେ ନାହିଁ। ତାଙ୍କର ବ୍ୟାକୁଳତା ତିରୋହିତ ହୋଇଯିବ।''

ଭଗବାନ ଭକ୍ତଙ୍କୁ ଗୋଟିଏ ଅବସ୍ଥାରେ ସବୁଦିନେ ରକ୍ଷା କରିବାକୁ ଇଚ୍ଛା କରନ୍ତି ନାହିଁ। ଭକ୍ତ ପ୍ରଥମେ ଭଗବାନଙ୍କଠାରେ ଆତ୍ମସମର୍ପଣ କରିଥାଆନ୍ତି। ପରେ ଉଚ୍ଚସ୍ତରକୁ ଉଠିଲେ ଭକ୍ତ ହିଁ ଭଗବାନଙ୍କ ଭାର ଗ୍ରହଣ କରନ୍ତି।

ଭଗବାନ ହିଁ ଏକମାତ୍ର ସ୍ଥୁଳ ଓ ସୂକ୍ଷ୍ମଭାବରେ ଜନସେବକ। ପିତା-ମାତାଙ୍କ ଭିତର ଦେଇ ସେ ସ୍ଥୁଳ ସେବା କରନ୍ତି ଏବଂ ସଦ୍‌ଗୁରୁଙ୍କ ଭିତର ଦେଇ ସେ ପୁଣି ଆଧ୍ୟାତ୍ମିକ ସେବା କରିଥାନ୍ତି।

ଭଗବାନଙ୍କ ନିକଟରେ କିଛି ପ୍ରାର୍ଥନା କରିବା ଉଚିତ୍ ନୁହେଁ। ମାଗିବା ଆଗରୁ ସେ ସବୁ ଦାନ କରିସାରିଛନ୍ତି, ଏପରି କି ନିଜକୁ ମଧ୍ୟ ଭକ୍ତଙ୍କ ନିମିତ୍ତ ଦାନ କରିଛନ୍ତି; କିନ୍ତୁ ତାଙ୍କର ଏହି ପ୍ରେମ-ପ୍ରୀତିର ସମ୍ମାନ କିପରି ଦେବାକୁ ହେବ, ଆମେ ତାହା ଜାଣୁ ନାହିଁ। ସେ ପ୍ରତ୍ୟହ ବିଭିନ୍ନ ରୂପ ଧରି ଆମକୁ ଦର୍ଶନ ଦାନ କରୁଛନ୍ତି। ସେହି ରୂପର ଅନ୍ତରାଳରେ ରୂପଧାରୀଙ୍କୁ ଜାଣିବାକୁ ହେବ। ତେଣୁ ତାଙ୍କର କୌଣସି ବିଶେଷ ରୂପରେ ମନ ଯେପରି ଆବଦ୍ଧ ନ ହୁଏ। ତେବେ ସେ ସେତିକି ଦେଇ ଭକ୍ତଙ୍କୁ ଭୁଲାଇଦିଅନ୍ତି। ସେ ଅତି ଚତୁର, ସହଜରେ ନିଜକୁ ଧରାଦେବାକୁ ଇଚ୍ଛା କରନ୍ତି ନାହିଁ। ତେଣୁ ସେହି ଚତୁରଙ୍କୁ ଧରିବାକୁ ହେଲେ ଚତୁର ହେବାକୁ ପଡ଼ିବ।

ସବୁଠାରେ ଭଗବାନ ଅଛନ୍ତି ସତ୍ୟ; କିନ୍ତୁ କାଷ୍ଠ-ପାଷାଣ ମଧ୍ୟରେ ଯେତେ ସହଜରେ ତାଙ୍କୁ ଉପଲବ୍ଧି କରିହେବ, ତା'ଠାରୁ ଅତି ସହଜରେ ଉପଲବ୍ଧି କରିହେବ ମନୁଷ୍ୟ ଭିତରେ। ଶିଳାରେ ଭଗବତ୍ ଉପଲବ୍ଧି କରିବାକୁ ହେଲେ ସେହି ଶିଳାକୁ ଚୈତନ୍ୟ କରିନେବାକୁ ହେବ; କିନ୍ତୁ ମନୁଷ୍ୟ ଭିତରେ ସେ ପ୍ରକଟ ଅଛନ୍ତି। କେବଳ ତାଙ୍କୁ ଜାଣିପାରିଲେ ହେଲା। ଯେଉଁ ଭାବ ଦେଇ ଜଡ଼କୁ ତୁମେ

ପ୍ରାଣ ପ୍ରତିଷ୍ଠା କରି ଜାଗ୍ରତ କରିପାରିବ, ସେହି ଭାବରୁ ସାମାନ୍ୟ କଣିକାଏ ମାତ୍ର ଦେଇ ମନୁଷ୍ୟକୁ ସୁଖ ପାଇବାକୁ ଅଭ୍ୟାସ କଲେ ଭଗବାନ ପ୍ରତ୍ୟକ୍ଷ ହୋଇ ସାଧକଙ୍କ ନିକଟରେ ଧରାଦେବେ ।

ଜଳ ନ ହେଲେ ଯେଉଁମାନଙ୍କର କାମ ଚଳେ ନାହିଁ, ଜଳ ଖୋଜିବାର ଶ୍ରମ ସେମାନଙ୍କ ନିକଟରେ କଷ୍ଟକର ବୋଲି ବୋଧ ହୁଏନାହିଁ । ସେହିପରି ଭଗବାନଙ୍କ ନିମିତ୍ତି ଯାହାଙ୍କ ଅନ୍ତରରେ ଯଥାର୍ଥ ପିପାସା ଜାତ ହୋଇଛି, ତାଙ୍କୁ ଲାଭ କରିବା ନିମିତ୍ତ ଯେଉଁ ସାଧନା ଆବଶ୍ୟକ, ତାହା ସେହି ଭକ୍ତଙ୍କ ନିକଟରେ କଷ୍ଟକର ବୋଲି ବୋଧ ହେବନାହିଁ । ଜଳର ତୃଷ୍ଣା ଯେପରି ଜଳ ନିକଟକୁ ଟାଣିନିଏ ସେହିପରି ତାଙ୍କର ବିରହ ହିଁ ତାଙ୍କ ଆଡ଼କୁ ଆକର୍ଷଣ କରି ନେଇଥାଏ ।



# ଆତ୍ମା

## ଆଭାସ

ଆନନ୍ଦ-ଚିନ୍ମୟ-ରସ ପ୍ରତିଭାବିତାଭି-
ସ୍ତାଭିର୍ଯ୍ୟ ଏବ ନିଜରୂପତୟା କଳାଭିଃ ।
ଗୋଲୋକ ଏବ ନିବସତ୍ୟଖିଳାତ୍ମଭୂତେ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ॥

ଯେ ଆନନ୍ଦଚିନ୍ମୟ ରସ ଦ୍ୱାରା ପ୍ରତିଭାବିତା ଏବଂ ଆତ୍ମସ୍ୱରୂପା, ଆତ୍ମ କଳାରୂପିଣୀ ଗୋପୀମାନଙ୍କ ସହିତ ଗୋଲୋକରେ ଯେ ଲୀଳା କରୁଛନ୍ତି, ସେହି ଗୋବିନ୍ଦ ନାମଧାରୀ ଭଗବାନଙ୍କୁ ମୁଁ ଭଜନ କରୁଅଛି । ଏହି ଭଗବାନ ସକଳ ଜୀବଙ୍କର ଆତ୍ମା ।

ଅଗ୍ନିରୁ ଯେପରି ସ୍ଫୁଟିଙ୍ଗ ସମୁଦ୍ଭୂତ ହୋଇ ପୁଣି ସେହି ଅଗ୍ନିରେ ଲୀନ ହୁଏ, ଆତ୍ମାରୁ ସେହିପରି ଜଗତ ଉତ୍ପନ୍ନ ହୋଇ ଆତ୍ମାରେ ଲୟ ହୁଏ ।

କୁମ୍ଭ ଯେପରି ମୃତ୍ତିକାରୁ ଭିନ୍ନ ନୁହେଁ, ପରିଣାମରେ ମୃତ୍ତିକାରେ ମିଶିଯାଏ, ଅଳଙ୍କାର ଯେପରି ସ୍ୱର୍ଣ୍ଣରୁ ପୃଥକ୍ ନୁହେଁ, ଅବଶେଷରେ ସ୍ୱର୍ଣ୍ଣରେ ହିଁ ପରିଣତ ହୁଏ, ସେହିପରି ଏହି ଜଗତ୍ ଭଗବାନଙ୍କଠାରେ ଲୟପ୍ରାପ୍ତ ହୁଏ ।

ଯାହାଙ୍କର ମୁକ୍ତିଲାଭର ଇଚ୍ଛା ଅଛି, ତାଙ୍କୁ ମୁକ୍ତ ଏବଂ ଯେ ସଂସାରରେ ଲିପ୍ତ ରହିବାକୁ ଇଚ୍ଛା କରନ୍ତି, ତାଙ୍କୁ ବଦ୍ଧ କୁହାଯାଏ । ଫଳତଃ ଯାହାଙ୍କର ଯେପରି ବୁଦ୍ଧି, ତାଙ୍କର ସେହିପରି ସିଦ୍ଧି । ଯେପରି ବହୁସଂଖ୍ୟକ ପାତ୍ରରେ ଗୋଟିଏ ସୂର୍ଯ୍ୟ ପ୍ରତିବିମ୍ବିତ ହୋଇ ବହୁସଂଖ୍ୟକ ବୋଲି ଦୃଷ୍ଟ ହୁଅନ୍ତି, ସେହିପରି ଆତ୍ମା ମଧ୍ୟ ମାୟାବଚ୍ଛିନ୍ନ ହୋଇ ବହୁସଂଖ୍ୟକ ପରି ପ୍ରତୀୟମାନ ହୋଇଥାନ୍ତି ।

କ୍ଷୁଦ୍ର ଜଳାଶୟର ଜଳ ଦୂଷିତ ହୋଇପାରେ ବା ଶୁଖିଯାଇପାରେ; କିନ୍ତୁ ସେହି ଜଳାଶୟ ସମୁଦ୍ର ସହିତ ମିଶି ରହିଗଲେ ସେ ଭୟ ଆଉ ରହିବ ନାହିଁ ।

ନାଳଟିଏ ଖୋଲି ସମୁଦ୍ରଜଳ ସହିତ ଜଳାଶୟର ଜଳକୁ ଯୋଗ କରାଯାଇପାରେ । ଜୀବ ଯେତେ ଦିନଯାଏ ଅହଂତ୍ୱର କ୍ଷୁଦ୍ର ଗଣ୍ଡିରେ ଆବଦ୍ଧ ଅଛି, ତେତେଦିନ ପର୍ଯ୍ୟନ୍ତ ତା'ର ପତନ ହେବାର ଆଶଙ୍କା ରହିଛି; କିନ୍ତୁ ଭଗବାନଙ୍କ ଠାରେ ଅହଂତ୍ୱକୁ ବୁଡ଼ାଇଦେଇ ପାରିଲେ, ଅର୍ଥାତ୍ ନିଜ କ୍ଷୁଦ୍ର ଇଚ୍ଛାକୁ ସମଷ୍ଟି ଇଚ୍ଛାରେ ଯୋଗ କରିଦେଇପାରିଲେ ତା'ର ପତନର ଆଉ କୌଣସି ଭୟ ରହିବ ନାହିଁ ।

## ଆତ୍ମଜ୍ଞାନ

ଚୈତନ୍ୟଙ୍କ ପ୍ରକାଶ ଚାରି ଭାବରେ—(୧) ବ୍ରହ୍ମ-ଚୈତନ୍ୟ, (୨) ଈଶ୍ୱର-ଚୈତନ୍ୟ, (୩) କୂଟସ୍ଥ-ଚୈତନ୍ୟ ଏବଂ (୪) ଜୀବ-ଚୈତନ୍ୟ । କୂଟସ୍ଥ-ଚୈତନ୍ୟ ଜୀବଦେହରେ ଏବଂ ବ୍ରହ୍ମାଣ୍ଡରେ ଅଖଣ୍ଡ ଭାବରେ ବିରାଜିତ । ତାଙ୍କରି ଆଭାସରେ ଜୀବ-ଦେହରେ ପ୍ରାଣଶକ୍ତିର ବିକାଶ ହୋଇଅଛି । ଏହିପରି ଚୈତନ୍ୟାଧାସିତ ଜଡ଼ ଓ ସୁଖଦୁଃଖର ଭୋକ୍ତାଙ୍କୁ ହିଁ ଜୀବାତ୍ମା କୁହାଯାଏ ।

ଚୈତନ୍ୟଯୁକ୍ତ କର୍ତ୍ତା ହେଲେ ଭଗବାନ ଏବଂ ଚୈତନ୍ୟଯୁକ୍ତ କର୍ମ ହେଉଛି ଜୀବ । କର୍ତ୍ତା କର୍ମ ଉପାଧି ତ୍ୟାଗ କଲେ କେବଳ ଚୈତନ୍ୟ ମାତ୍ର ଅବଶିଷ୍ଟ ରହେ । ଜୀବ ସେତେବେଳେ ଶିବ ।

ସ୍ଥୁଳଦେହରେ ପଦତଳ ଠାରୁ ମସ୍ତକପର୍ଯ୍ୟନ୍ତ ଚତୁର୍ଦ୍ଦଶ ଭୁବନ ଅର୍ଥାତ୍ ସପ୍ତ ପାତାଳ ଓ ସପ୍ତ ସ୍ୱର୍ଗ ବିଦ୍ୟମାନ । ଏହି ସପ୍ତ ପାତାଳ ଓ ସପ୍ତ ସ୍ୱର୍ଗଯୁକ୍ତ ଚତୁର୍ଦ୍ଦଶ ଭୁବନମୟ ସ୍ଥୁଳଦେହର ତତ୍ତ୍ୱ ପ୍ରକୃତ ରୂପରେ ଅବଗତ ହେବାର ନାମ ଆତ୍ମତତ୍ତ୍ୱଜ୍ଞାନ । ସାଧନା ବ୍ୟତୀତ ମାୟାବିମୋହିତ ଜୀବର ଏହି ଆତ୍ମଜ୍ଞାନ ସହଜରେ ଉଦୟ ହୁଏ ନାହିଁ । ଆମଜ୍ଞାନବୀଜ ସମସ୍ତ ଜୀବଙ୍କ ଦେହରେ ନିହିତ; କିନ୍ତୁ ସାଧନା ବା ଅଭ୍ୟାସ ନ କଲେ ତାହା ବର୍ଦ୍ଧିତ ଓ ପ୍ରକାଶିତ ହୋଇପାରେ ନାହିଁ । ସାଧନା କଲେ ଆତ୍ମଜ୍ଞାନ ଜାତ ହୁଏ । 'ମୁଁ ଦେହ ନୁହେଁ', ଏହି ଜ୍ଞାନ ଲାଭ ହେବାମାତ୍ରେ ଏହି ଜଗତକୁ ସାକ୍ଷୀ ଭାବରେ ଦେଖିପାରିବ । ଯାହାଙ୍କର ଦାୟିତ୍ୱ ଯେତେ ଅଧିକ, ଆତ୍ମବିକାଶ ପାଇଁ ତାଙ୍କର ସୁଯୋଗ ମଧ୍ୟ ସେତିକି ଅଧିକ । ଦାୟିତ୍ୱଶୂନ୍ୟ ବ୍ୟକ୍ତି କେତେକ ପରିମାଣରେ ଜଡ଼ର ଅନ୍ତର୍ଭୁକ୍ତ ।

ଅହଂତ୍ୱକୁ ସ୍ଥୁଳଦେହ ସଙ୍ଗେ ଯୋଗ କରିଦିଅ ନାହିଁ । ତାହା କଲେ ବଡ଼ ହୋଇଯିବ । ଅହଂତ୍ୱର ବିକାଶ ଦେଖିବାକୁ ଇଚ୍ଛା କଲେ ସ୍ଥୁଳଦେହକୁ ପାସୋରିପକାଅ । ଯେତେକାଳ ଅହଂ ବା ମୁଁ ଅଛି, ଅବସାଦ ବା କ୍ଳାନ୍ତି ଆସିବ

ହିଁ ଆସିବ । 'ମୁଁ' ର ବିକାଶ ହେଲେ ଅବସାଦର ବିକାଶ ହେବ । ସେତେବେଳ କେବଳ ରହିବ ସମ୍ମୁଖ ଗତି ।

ଜଗତ-ବିଚାର ଦ୍ୱାରା ଅଦ୍ୱୈତ ଭାବର ପୁଷ୍ଟି ହୁଏ । ମୋ ଦେହ, ପଶୁଦେହ, ବୃକ୍ଷଲତା ସବୁ ଏକ ଅର୍ଥାତ୍ ଏ ସମସ୍ତ ପଞ୍ଚମହାଭୂତର ସମଷ୍ଟି ମାତ୍ର । ସୁତରାଂ, ଭେଦ କେଉଁଠାରେ ? ସେହିପରି ମନ, ବୁଦ୍ଧି ମଧ୍ୟ ମୂଳରେ ଏକ । କେବଳ କେତେଗୁଡ଼ିଏ ତରଙ୍ଗର ବାହ୍ୟକ୍ରିୟା ଦ୍ୱାରା ବିଭିନ୍ନ ବୋଧ ହୁଏ । ମୂଳରେ କିନ୍ତୁ ସବୁ ଏକ ବସ୍ତୁ । ସୁତରାଂ, ମୁଁ ସ୍ଥୂଳ, ସୂକ୍ଷ୍ମ, କାରଣରେ ଏକ, ସର୍ବବ୍ୟାପୀ ଓ ଅନନ୍ତ ।

ମହାଇଚ୍ଛାରେ ତୁମ ଇଚ୍ଛା ଯୋଗ କରିଦିଅ । କୌଣସି ସ୍ୱତନ୍ତ୍ର ଇଚ୍ଛା ପୋଷଣ କର ନାହିଁ । ମହାବୁଦ୍ଧିରେ ତୁମର କ୍ଷୁଦ୍ର ବୁଦ୍ଧିକୁ ନିମଗ୍ନ କରିଦିଅ । ତାହା ହେଲେ ସତ୍ୟକୁ ବୋଧ କରିପାରିବ । ସେତେବେଳେ ଆଉ କୌଣସି ଅଶାନ୍ତି କିମ୍ବା ଉଦ୍‌ବେଗ ରହିବ ନାହିଁ । ତୁମେ ଆନନ୍ଦର ଅଧିକାରୀ ହେବ ।

ମୁଁ ଅଛି, ସବୁବେଳେ ଏହି ଭାବ ଜାଗ୍ରତ କରି ରଖିବାକୁ ହେବ । ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତିରେ ନିଜକୁ ଜାଗ୍ରତ ରଖିବାକୁ ପଡ଼ିବ । ସେଥିପାଇଁ ବିଶେଷ ଉଦ୍ୟମ ଓ ପୁରୁଷାକାରର ପ୍ରୟୋଜନ । ମୁଁ ଦେହସ୍ଥ, ମୁଁ ଗୁହାସ୍ଥିତ—ଏହି ତତ୍ତ୍ୱର ସମ୍ୟକ୍ ଜ୍ଞାନ ହିଁ ଆତ୍ମଜ୍ଞାନ । ମୁଁ ଦେହବାହାରେ ସଚରାଚର ବ୍ୟାପ୍ତ, ଏହି ତତ୍ତ୍ୱଜ୍ଞାନ ବେଦାନ୍ତଜ୍ଞାନ ।

ମୁଁ ବା ଅହଂତ୍ୱକୁ ଖୁବ୍ ବିସ୍ତୃତ କରିଦେବାକୁ ହେବ । ମୋ ଭିତରେ ଏହି ଦେହ, ଜଗତ, ବ୍ରହ୍ମାଣ୍ଡ ସବୁ ରହିଛି—ଏହି ଧାରଣାକୁ କ୍ରମେ ଦୃଢ଼ କରିବାକୁ ହେବ । ସୂକ୍ଷ୍ମରେ ମୁଁ ଅତି କ୍ଷୁଦ୍ର, କାରଣରେ ଆହୁରି କ୍ଷୁଦ୍ର, ଖୁବ୍ ଛୋଟ ପୁଣି ଖୁବ୍ ବଡ଼—ଉଭୟ ଏକ ଅବସ୍ଥା । ନିଜକୁ ଅତି କ୍ଷୁଦ୍ର କିମ୍ବା ଅତି ବଡ଼ କଲେ କାରଣରେ ପହଞ୍ଚିପାରିବ ।

## ଅହଂଜ୍ଞାନ

ଦେହ ଥାଉ ଥାଉ ଅହଂଜ୍ଞାନ ଯାଏ ନାହିଁ । ତେବେ ସାଧ-ସାଧନା ବଳରେ ଅହଂଜ୍ଞାନର ପରିବର୍ତ୍ତନ ହୋଇପାରେ । ଘନ ଅନ୍ଧକାର ରଜନୀରେ ଖଦ୍ୟୋତ ଯେତେବେଳେ ଉଡ଼ିବୁଲେ, ତାର ଆପଣା କ୍ଷୀଣ ଆଲୋକରେ ସେ ପ୍ରକାଶିତ ହୁଏ । ସେତେବେଳେ ତାର ଅସ୍ତିତ୍ୱ ଉପଲବ୍ଧ କରାଯାଏ । ବିମଳ ଜ୍ୟୋତ୍ସ୍ନାପୂର୍ଣ୍ଣ

ରଜନୀରେ ତାର ଜ୍ୟୋତିଃ ସେହି ବିରାଟ ଜ୍ୟୋତିରେ ମିଶିଯାଏ । ସେତେବେଳେ ଖଦ୍ୟୋତର ଅସ୍ତିତ୍ୱବୋଧ ହୁଏ ନାହିଁ । ପୁଣି ଯେତେବେଳେ କେତେ ବିନ୍ଦୁ ଜଳ ଘନ ହୋଇ ବରଫ ପାଲଟେ, ସେତେବେଳେ ଗୋଟିଏ ଆକାର ଧାରଣ କରେ । ନିରାକାର ଜଳରାଶି ଉପରେ ଗୋଟିଏ ସାକାର ଜିନିଷ ଦେଖାଯାଏ । ପୁଣି ଯେତେବେଳେ ଏହି ବରଫ ତରଳି ଅନନ୍ତ ଜଳରାଶିରେ ମିଶିଯାଏ, ସେତେବେଳେ ତାର ସାକାରତ୍ୱ ଚାଲିଯାଏ ।

ଠିକ୍ ସେହିପରି ପଞ୍ଚଭୂତାତ୍ମକ ଦେହସହିତ ଯେତେବେଳ ଶିକ୍ଷାଦୀକ୍ଷାଦି ଗୁଣଦ୍ୱାରା ତୁମେ ଏହି ପରିଦୃଶ୍ୟମାନ ଜଗତରେ ବିକାଶ ଲାଭ କଲ, ସେତେବେଳେ ତୁମେ ଉପାଧିଯୁକ୍ତ ହେଲ । ତୁମର ମନେ ହେଲା, ମୁଁ ଜଣେ ମନୁଷ୍ୟ, ମୁଁ ଜଣେ ସଙ୍ଗତିସମ୍ପନ୍ନ ବିଦ୍ୱାନ ଲୋକ । ଏହା ତୁମର କ୍ଷୁଦ୍ର ଅହଂ । ପୁଣି ତୁମର ଏ ଦେହ ଯେତେବେଳେ ମହାତତ୍ତ୍ୱରେ ମିଶିଯିବ, ସେତେବେଳେ କ୍ଷୁଦ୍ର ଅଭିମାନ କରିବା ପାଇଁ କେହି ରହିବେ ନାହିଁ । ଦ୍ୱୈତଜ୍ଞାନ ଥିବାଯାଏ ଅହଂର ବିକାଶ ନାହିଁ ।

କେହି ଆଘାତ କଲେ କି ଅନ୍ୟ-କୌଣସି ପ୍ରକାରର ଆଘାତ ଲାଗିଲେ ତୁମେ କାହିଁକି ବ୍ୟଥା ପାଅ ? 'ମୁଁ', 'ମୋତେ' ଦେହରୁ ଅଭିନ୍ନ ବୋଲି ମନେ କର, ଅର୍ଥାତ୍ ମୁଁ ବା ଅହଂତ୍ୱକୁ ତୁମେ ଦେହର ପ୍ରତି ଅଣୁ-ପରମାଣୁରେ ଜଡ଼ିତ ମନେ କର—ତେଣୁ ବ୍ୟଥା ପାଅ ।

ଆମେ ଏପରି ଦେହାତ୍ମବାଦୀ ହୋଇପଡ଼ିଛୁ ଯେ ଦେହ ଯେଉଁ ରୂପରସାଦି ଦେଖାଏ, ତାଠାରୁ ଅଧିକ କିଛି ଦର୍ଶନ କରିବା ଶକ୍ତି ଆମର ନାହିଁ । ଦେହ ଶୋଇପଡ଼ିଲେ ଆମେ ଅନ୍ଧ ହୋଇଯାଉ । ସ୍ୱପ୍ନ ସୁଷୁପ୍ତିରେ ନିଜକୁ ଜାଗ୍ରତ ରଖିବା ପାଇଁ ଉଦ୍ୟମ କଲେ ଆତ୍ମଦର୍ଶନ ହେବ ।

ଆତ୍ମପ୍ରତିଷ୍ଠା ଅତି ମନ୍ଦ ବସ୍ତୁ । ଅଜ୍ଞାତସାରରେ ସାଧକଙ୍କ ଭିତରେ ତାହା ସଂକ୍ରମିତ ହୁଏ, ଏପରି କି ସେଥିରେ ତ୍ୟାଗ-ବୈରାଗ୍ୟଯୁକ୍ତ ସାଧକଙ୍କର ପତନ ପର୍ଯ୍ୟନ୍ତ ଘଟେ । ଲୋକଙ୍କ ନିକଟରେ କ୍ରମାଗତ ସାଧୁର ଯୋଗ୍ୟ ସମ୍ମାନ ପାଉଥିବାରୁ ମନ ସେହି ଦିଗକୁ ଆକୃଷ୍ଟ ହୁଏ । ସେତେବେଳେ ସେ ସମସ୍ତଙ୍କ ଠାରୁ ସମ୍ମାନ ଦାବି କରେ । ସମ୍ମାନ ନ ପାଇଲେ ତାର ବିକାର ହୁଏ । ଭଗବାନଙ୍କଠାରେ ଦାସ୍ୟଭାବରେ ଆତ୍ମସମର୍ପଣ କରିବା ବ୍ୟତୀତ ଅହଂନାଶର ଅନ୍ୟ ଉପାୟ ନାହିଁ । ସେ ଯେତେବେଳେ ଯାହାଦ୍ୱାରା ଯାହା କରିବାକୁ ଇଚ୍ଛା କରନ୍ତି, ତାହା କରାଇନିଅନ୍ତି ।

ସୁତରାଂ, ଜୀବର ଅହଂକାରର ବସ୍ତୁ କିଛି ନାହିଁ କିମ୍ବା ଜୀବ ନିକଟରେ ହେୟ କି ଉପାଦେୟ ବୋଲି କିଛି ନାହିଁ ।

## ଭୋଗ ଓ ମୁକ୍ତି

ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ମନ, ବୁଦ୍ଧି, ଅହଂକାର ଏବଂ ପ୍ରାଣାଦି ପଞ୍ଚବାୟୁ ମିଳିତ ହୋଇ ଲିଙ୍ଗଶରୀର ନାମରେ ଅଭିହିତ । ଏହି ଲିଙ୍ଗଶରୀରାଭିମାନୀ ଚୈତନ୍ୟ ହିଁ ବ୍ୟାବହାରିକ ଜୀବ । ଏହି ଜୀବ ହିଁ ପ୍ରବାହ ରୂପରେ ଅନାଦି ପାପ-ପୁଣ୍ୟଜନିତ ଅଦୃଷ୍ଟ ଭୋଗ କରେ ଏବଂ ଲିଙ୍ଗଶରୀରକୁ ନିମିତ୍ତ କରି ଇହଲୋକ ପରଲୋକ ଗମନ ଓ ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଆଦି ଅବସ୍ଥା ଭୋଗ କରିଥାଏ । ସେ ଅନାଦି, ଅଜର ଅମର; ସୁତରାଂ କୌଣସି ପ୍ରକାରରେ ତାଙ୍କର ବିନାଶ ସାଧିତ ହୋଇପାରେ ନାହିଁ ।

ମନ, ଇନ୍ଦିଶକ୍ତି ଓ ଭୂତଶକ୍ତି ହିଁ ଏହି ଜୀବାତ୍ମାକୁ ଭୋଗ ପ୍ରଦାନ କରିଥାଆନ୍ତି । ମନରେ କୁଭାବର ଉଦୟ ହେଲେ କୁଭୋଗ ହୁଏ । ମନ ଯଦି ପୁଣ୍ୟକାର୍ଯ୍ୟ କରେ, ତେବେ ସେ ପୁଣ୍ୟ ଭୋଗ କରେ । ପରମାତ୍ମାଙ୍କ ସହିତ ଜୀବର ସାମ୍ୟଭାବ ଘଟାଇବାକୁ ଯେଉଁସବୁ ସକାମ ଅନୁଷ୍ଠାନ କରାଯାଏ, ତାହା ପୁଣ୍ୟ । ସେଥିପାଇଁ ଯେଉଁ ନିଷ୍କାମ ଅନୁଷ୍ଠାନ, ତାହା ହିଁ ମୁକ୍ତି । ପାପାଚରଣ ଦ୍ୱାରା ଜୀବ ପରମାତ୍ମଭାବରୁ ସ୍ଖଳିତ ହୋଇପଡ଼େ । ଏହି ଅବସ୍ଥାରେ ଯେଉଁ ଯାତନାଭୋଗ, ତାହା ନରକ-ଯନ୍ତ୍ରଣା; କିନ୍ତୁ ଈଶ୍ୱରବିଷୟକ ଜ୍ଞାନ ଉପସ୍ଥିତ ହେଲେ ତାଙ୍କ କୃପାରେ ପାପ ବିନଷ୍ଟ ହୁଏ ।

ଯେପର୍ଯ୍ୟନ୍ତ ଜୀବର ଆତ୍ମସାକ୍ଷାତ୍କାର ଲାଭ ହୋଇନାହିଁ, ସେପର୍ଯ୍ୟନ୍ତ ଯନ୍ତ୍ରଣାର ସୀମା ରହେ ନାହିଁ । ସେ ଯନ୍ତ୍ରଣାର ସୀମା ନଥିଲେ ମଧ୍ୟ ପ୍ରକାରଗତ ସୀମା ଅଛି । ସେ ସୀମାର ନାମ ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ । ଏହି ତ୍ରିତାପର ନାମ କ୍ଳେଶ । ପ୍ରକୃତି ଓ ପୁରୁଷଙ୍କର ପରସ୍ପର ଅଧ୍ୟାସ ଯୋଗୁ ଏହି କ୍ଳେଶ ଉତ୍ପନ୍ନ ହୁଏ ।

ଜୀବକୁ ଉଦ୍ଧାର କରିବା ନିମିତ୍ତ ଭଗବାନ୍‌ଙ୍କର ସତତ ଚେଷ୍ଟା । ଉନ୍ନତି ପଥରେ ନେବାପାଇଁ ସେ ଆମମାନଙ୍କୁ ଅନବରତ ଆକର୍ଷଣ କରୁଛନ୍ତି; କିନ୍ତୁ ଆମେମାନେ ମାୟାରେ ମୁଗ୍ଧ ହୋଇ ଅନିତ୍ୟ ବିଷୟରସରେ ସତତ ବୁଡ଼ିମରୁ । ଲୌହଖଣ୍ଡକୁ ଚୁମ୍ବକ ଆକର୍ଷଣ କରେ; କିନ୍ତୁ ଏ ଉଭୟଙ୍କ ମଧ୍ୟରେ ଯଦି ଗୋଟିଏ

ଇଷ୍ଟକ ରଖାଯାଏ, ତାହାହେଲେ ଚୁମ୍ବକ ଆଉ ଲୌହକୁ ଆକର୍ଷଣ କରିପାରେ ନାହିଁ। ସେହିପରି ତାଙ୍କ ଆକର୍ଷଣ ପଥରେ ମାୟାକୁ ରଖି ଆମେମାନେ ତାଙ୍କ କରୁଣା ଆକର୍ଷଣରୁ ନିଜକୁ ଦୂରରେ ରଖୁଛୁଁ।

ଇନ୍ଦ୍ରିୟ-ଅନୁକୂଳ ବିଷୟପ୍ରାପ୍ତିର ନାମ ସୁଖ; ତାହାର ବିପରୀତ ଦୁଃଖ। ସାସାଂରିକ ସୁଖ ବିଷୟସାପେକ୍ଷ। ବିଷୟ ଅନିତ୍ୟ। ସୁତରାଂ, ସୁଖ ମଧ୍ୟ ଅନିତ୍ୟ। ତାହା ହେଲେ ବିଷୟନିରପେକ୍ଷ ସୁଖ ହିଁ ପ୍ରକୃତ ସୁଖ। ସେ ସୁଖ କାହିଁ ? ତୁମେ ହିଁ ସୁଖସ୍ୱରୂପ, ଏହା ଅନୁଭୂତିର ବିଷୟ। ଆତ୍ମବିକାଶ ହେଲେ ସୁଖ ସ୍ୱରୂପରେ ଉପଲବ୍ଧ ହୁଏ, ଅକାରଣ ଆନନ୍ଦରେ ମନ ଉଚ୍ଛୁଳିପଡ଼େ। ଏହା ହେଉଛି ଆତ୍ମାନନ୍ଦର ଆଭାସ।

ନିଜ ହୃଦୟର ବାସନାକୁ ଉନ୍ନତ କରି ନ ପାରିଲେ ମୁକ୍ତିଲାଭ ହୁଏ ନାହିଁ। ନିଜ ଦୋଷ ସମ୍ୟକ୍ ରୂପେ ଦେଖିବା ଓ ସଂଶୋଧନ କରିବା ଉଚିତ୍। କର୍ତ୍ତବ୍ୟରେ ଉତ୍ସାହିତ ହେବା ଉଚିତ୍। ଜୀବଶବ୍ଦ କେବଳ ପ୍ରାଣୀକୁ ବୁଝାଏ ନାହିଁ, ଯାହା ବର୍ଦ୍ଧିତ ହୁଏ, ତାହା ଜୀବ।

ସୁନା ଅଗ୍ନିରେ ଯେ ପରିମାଣରେ ପୋଡ଼ାଯାଏ, ତାହାର ଭେଲ ତେତେ ପରିମାଣରେ ବାହାର ହୋଇଯାଏ। ମନୁଷ୍ୟର ଅବସ୍ଥା ଠିକ୍ ସେହିପରି। ଶୋକ-ଦୁଃଖ, ବିପଦ-ଆପଦ, ରୋଗ-ତାପରେ ଜୀବ ଯେତେ ପୋଡ଼ିହୁଏ, ତାହାର ମଳିନତା ସେତିକି ଦୂର ହୋଇଯାଏ। ନିଜେ ଭଲ ହେବାକୁ ଇଚ୍ଛା ନ କଲେ ଅନ୍ୟ କୌଣସି ପ୍ରକାରରେ କେହି ଭଲ ହୋଇପାରିବେ ନାହିଁ। ପରର ଦୋଷ ଦେଖିବାକୁ ପାଇଲେ ନିଜ ଆଡ଼କୁ ଦୃଷ୍ଟି ପକାଇ ଦେଖ, ତୁମେ ମଧ୍ୟ ସେହିପରି ଦୋଷରେ ଦୋଷୀ କି ନୁହଁ। ଯଦି ଜୀବନରେ ଭଗବାନଙ୍କ ବିକାଶ ଦେଖିବାକୁ ଇଚ୍ଛା କର, ତେବେ ସବୁ ପ୍ରକାର ଦୁଃଖ-କଷ୍ଟ, ରୋଗ-ଶୋକ ମଧ୍ୟରେ ନିଜକୁ ଆନନ୍ଦରେ ରଖିବାକୁ ଚେଷ୍ଟା କର।

## ବିଚାର ଓ ଆତ୍ମପ୍ରସାର

ଏକମାତ୍ର ତୁମେ ହିଁ ଜୀବ— ଅନ୍ୟ ସମସ୍ତଙ୍କୁ ଭଗବାନ ବୋଲି ଜାଣିବ ଏବଂ ଭାବନା କରିବ। ତାହା ହେଲେ ଜୀବନରେ ଯାହା କିଛି ଶିକ୍ଷା ବା ଉପଦେଶ ପାଇଛ, କିଛି ବୃଥା ହେବ ନାହିଁ। ଯେତେବେଳେ ଆଧ୍ୟାତ୍ମିକ ଉନ୍ନତିର ଉଚ୍ଚ ସ୍ତରକୁ ଉଠିବ, ସେତେବେଳେ ସେହିସବୁ ଶିକ୍ଷା ଓ ଉପଦେଶ ଆପେ ଆପେ

ପ୍ରକାଶ ପାଇବ । ପୂର୍ବେ ଯାହା ଧାରଣା କରିପାରି ନଥିଲ, ତାହାର ଅପୂର୍ବ ସାମଞ୍ଜସ୍ୟ ଦେଖି ବିମୋହିତ ହୋଇଯିବ ଏବଂ ବୁଝିପାରିବ, ଜଗତରେ କିଛି ନଷ୍ଟ ହୁଏ ନାହିଁ ।

ମନୁଷ୍ୟ ନିଜର ବୁଦ୍ଧି ପ୍ରବୃତ୍ତି ଓ କଳ୍ପନା ଅନୁଯାୟୀ ଭଗବାନଙ୍କୁ ଆଦର୍ଶ କରି ଧରିଅଛି । ଯେଉଁମାନେ ତାଙ୍କୁ ଆତ୍ମାରେ ଅବଲୋକନ କରିପାରନ୍ତି, କେବଳ ସେହିମାନେ ଶାଶ୍ୱତ ଶାନ୍ତି ପ୍ରାପ୍ତ ହୁଅନ୍ତି; ଅନ୍ୟ କେହି ତାହା ପ୍ରାପ୍ତ ହୁଅନ୍ତି ନାହିଁ । ଶରୀର, ମନ, ଆତ୍ମାର ଐକ୍ୟ ସଂଗଠନ ନ ହେଲେ ସ୍ୱାଭାବିକ ଅବସ୍ଥା ଆସେନାହିଁ । ସ୍ୱଭାବ ହିଁ ଧର୍ମ । ଯୁକ୍ତି ଓ ଆତ୍ମପ୍ରତ୍ୟୟ ସହିତ ଏକତ୍ର କରି ପ୍ରତ୍ୟେକ ବିଷୟ ଗ୍ରହଣ କରିବା ଦରକାର ।

ଆତ୍ମତତ୍ତ୍ୱ ଲାଭ ହେଲାନାହିଁ ବୋଲି, ଜୀବନରେ କିଛି ହେଲା ନାହିଁ ବୋଲି ଚିତ୍କାର କରୁଛ କାହିଁକି ? ବିଶ୍ୱାସ ଓ ଧୈର୍ଯ୍ୟ ସହକାରେ ଅଗ୍ରସର ହୁଅ । ସମୟ ହେଲେ ଆପେ ଆପେ ସବୁ ହେବ । ମଧ୍ୟରାତ୍ରରେ ସୂର୍ଯ୍ୟ ଦେଖିବାକୁ ଇଚ୍ଛା କଲେ କ'ଣ ଦେଖିପାରିବ ? ପ୍ରଭାତ ହେଲେ ସୂର୍ଯ୍ୟୋଦୟ ଆପେ ଆପେ ହେବ । ଆତ୍ମା ପ୍ରସ୍ତୁତ ହେଲେ ଭଗବତ୍‌ଦର୍ଶନ ଆରମ୍ଭ ହୁଏ । ସଂଶୟ, କାମ, କ୍ରୋଧ, ବାସନା, କର୍ମ—ଏସବୁ ନ ଥିଲେ ଭଗବଦ୍ଦର୍ଶନ ନିମିତ୍ତ ଆତ୍ମା ପ୍ରସ୍ତୁତ ହୁଏ ।

ଗୃହପାଳିତ ପଶୁ ମଧ୍ୟ ମନୁଷ୍ୟ ସଂସ୍ପର୍ଶରେ ରହେ ବୋଲି ବନ୍ୟ ପଶୁଙ୍କ ଅପେକ୍ଷା ଉନ୍ନତ । ଏମାନଙ୍କ ରୋଗ-ଦୁଃଖାଦି ମଧ୍ୟ ଅଧିକ ଦେଖାଯାଏ; କାରଣ, ପ୍ରକୃତିର ଘାତପ୍ରତିଘାତ ଦ୍ୱାରା ହିଁ ଆତ୍ମାର ସ୍ଫୁରଣ ହୋଇଥାଏ । ବାହାରେ କଷ୍ଟ ପାଇବା ଦ୍ୱାରା କ୍ଷଣକ ପାଇଁ ହେଉ, ଜୀବକୁ ଅନ୍ତର୍ମୁଖୀ ହେବାକୁ ପଡ଼େ । ପଶୁ ଅଜ୍ଞାନତା ହେତୁ କଷ୍ଟସହିଷ୍ଣୁ ହୋଇଥାଏ । ଅଜ୍ଞାନ-ଜଡ଼ଭାବାପନ୍ନ ମନୁଷ୍ୟ ମଧ୍ୟ ସେହିପରି । ପୁଣି ବିବେକ-ବିଚାର ବଳରେ ଜ୍ଞାନୀ ମଧ୍ୟ କଷ୍ଟସହିଷ୍ଣ ହୁଅନ୍ତି । କେବଳ ଯେଉଁମାନେ ମଝିମଝିଆ ଲୋକ, ସେମାନଙ୍କ କଷ୍ଟଭୋଗ ଅଧିକ ।

## ଆତ୍ମପ୍ରସାରର ସ୍ତର

ସମସ୍ତଙ୍କ ନିମ୍ନରେ ମନୁଷ୍ୟ ଅଛି । ସେ କିନ୍ତୁ ସମସ୍ତଙ୍କ ଠାରୁ ଉନ୍ନତ ହୋଇପାରେ । ଏଥିପାଇଁ ଦେବତାମାନେ ମଧ୍ୟ ମୁକ୍ତିନିମିତ୍ତ ମନୁଷ୍ୟ ହେବାକୁ ଇଚ୍ଛା କରନ୍ତି ।

ଉତ୍ତମ ଅଧିକାରୀଙ୍କର ବ୍ରହ୍ମଭାବ—ଏମାନେ ଜ୍ଞାନୀ; ମଧ୍ୟମ ଅଧିକାରୀଙ୍କର ଧ୍ୟାନ—ଏମାନେ ଯୋଗୀ; ଅଧମ ଅଧିକାରୀଙ୍କର ପୂଜା—ଏମାନେ କର୍ମୀ; ଅଧମାଧମ ଅଧିକାରୀମାନଙ୍କର ବାହ୍ୟ ଅନୁଷ୍ଠାନ—ଏହା ସର୍ବସାଧାରଣଙ୍କ ଧର୍ମ।

ପ୍ରତ୍ୟେକଙ୍କ ଜୀବନରେ ଗୁଣର ନାନା ସ୍ତର ବିଦ୍ୟମାନ। ସମୟ ସମୟରେ ଚିତ୍ତ ଅତିଶୟ ଚଞ୍ଚଳ ହୋଇଯାଏ। ବିଚାର ସାହାଯ୍ୟରେ ମଧ୍ୟ ତାକୁ ଶାନ୍ତ କରିହୁଏ ନାହିଁ। ଆଉ କେତେବେଳେ ବା ସବୁ କଥା ସୁଖ ଲାଗେ, ଆପେ ଆପେ ବିଶ୍ୱାସ ଜାତ ହୋଇଥାଏ। କୌଣସି ସଂଶୟ ରହେ ନାହିଁ। ନିଜକୁ ଏହିସବୁ ବିଛିନ୍ନ ସ୍ତରରେ ସ୍ଥିର ରଖିବାକୁ ହେବ। ଅଶାନ୍ତି ବା ଚିନ୍ତାକୁ କୌଣସି ସୂତ୍ରରେ ଆସିବାକୁ କିମ୍ବା କୌଣସିମତେ ଚିତ୍ତକୁ ବିକ୍ଷିପ୍ତ ହେବାକୁ ଛାଡ଼ିଦେବା ଉଚିତ ନୁହେଁ। ଏହି ଭାବରେ ଅଭ୍ୟାସ କରି ଯେକୌଣସି ଅବସ୍ଥାରେ ଉଦ୍‌ବେଗଶୂନ୍ୟ ହୋଇପାରିଲେ ତୁମେ ଶଙ୍କର ହୋଇଯିବ। ସେତେବେଳେ ତାଙ୍କ ଓ ତୁମ ମଧ୍ୟରେ ପାର୍ଥକ୍ୟ ରହିବ ନାହିଁ।

ତିନି ଶ୍ରେଣୀର ଅଧିକାରୀ ଅଛନ୍ତି। ଯେ କୌଣସି ପ୍ରକାର ବିଚାର କରନ୍ତି ନାହିଁ, ବିଚାର କରିବାର ଯାହାଙ୍କର କୌଣସି ପ୍ରୟୋଜନ ନାହିଁ, ସେ ଉତ୍ତମ ଅଧିକାରୀ। ଯାହାଙ୍କର ଚିତ୍ତ ସଂଶୟଶୂନ୍ୟ, ତାଙ୍କର ବିଶ୍ୱାସ ସ୍ୱତଃ ଜାତ ହୁଏ। ସତ୍ୟରେ ତାଙ୍କର ପ୍ରତ୍ୟୟ ହୋଇଛି। ମଧ୍ୟମ ଅଧିକାରୀ ପ୍ରଥମେ ବିଚାର ଦ୍ୱାରା ସଂଶୟ ଦୂର କଲାପରେ ସତ୍ୟପଥରେ ଅଗ୍ରସର ହୁଅନ୍ତି। କିନ୍ତୁ ଯେ ଅଧମ ଅଧିକାରୀ, ତାଙ୍କର କୌଣସି ବିଚାର ଆସେ ନାହିଁ। ତାଙ୍କ ଭିତରେ ଜୋର୍ କରି ବିଶ୍ୱାସ ଜାତ କରାଇବାକୁ ହୁଏ। ଏଥିରେ କେତେକ ପରିମାଣରେ ନିର୍ଭରତା ଆସିଗଲେ କ୍ରମେ ତାଙ୍କର ସନ୍ଦେହ ଦୂର ହୋଇଯାଏ। ସେତେବେଳେ ସେ ସତ୍ୟପଥରେ ଅଗ୍ରସର ହୁଅନ୍ତି।

ପୁରୁଷାକାର ଭାବରେ ମାୟାବନ୍ଧନକୁ ଛିନ୍ନ କରିପାରିଲେ ତାଙ୍କ କରୁଣା ଆକର୍ଷଣ କରାଯାଏ। ଅଦୃଷ୍ଟ ଓ ପୁରୁଷକାର ମଧ୍ୟରେ ଅତିଶୟ ଘନିଷ୍ଟ ସମ୍ପର୍କ ବିଦ୍ୟମାନ। ମାନବ ଯଥାବିଧି ପରିଶ୍ରମ କରି ଭୂମି ଚାଷ କଲା, ବୀଜ ବୁଣିଲା; କିନ୍ତୁ ଅଦୃଷ୍ଟଶକ୍ତି ଯଥା ସମୟରେ ବର୍ଷା ନକରିବାରୁ ଶସ୍ୟ ହେଲା ନାହିଁ। ପୁଣି କେବଳ ଅଦୃଷ୍ଟଶକ୍ତି ଅନବରତ ବର୍ଷଣ କଲେ ମଧ୍ୟ ମନୁଷ୍ୟ ଯଦି ନିଜ ପରିଶ୍ରମରେ ମଞ୍ଜି ନ ବୁଣେ, ଶସ୍ୟ ଉତ୍ପାଦନ ହୁଏ ନାହିଁ। ଅତଏବ ଅଦୃଷ୍ଟ ଓ ପୁରୁଷକାର

ଉଭୟ ମିଳି କାର୍ଯ୍ୟ କରିଥାନ୍ତି । ସେହି ଅଦୃଷ୍ଟ ଓ ପୁରୁଷକାର ଏକତ୍ର ମିଳିତ ହେଲେ ଚିତ୍ତଶୁଦ୍ଧି ହୋଇଥାଏ । ଚିତ୍ତଶୁଦ୍ଧି ହେଲେ ବିଷୟବିରାଗ ଜାତ ହୋଇ ଭକ୍ତିର ଉଦୟ ହୁଏ । ତାହା ହେଲେ ତାଙ୍କ କରୁଣାବଂଶୀର ମୋହନ ସ୍ୱନ କର୍ଣ୍ଣଗୋଚର ହୁଏ ।

## ସାଧନାରେ ଜାତିଭେଦ

ପ୍ରତି ବ୍ୟକ୍ତିଗତ ଜୀବନରେ ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ ଓ ବ୍ରାହ୍ମଣ ଦେଖାଯାଆନ୍ତି । ମନୁଷ୍ୟ ଯେତେବେଳେ ପ୍ରବୃତ୍ତି ସ୍ରୋତରେ ଭାସିଯାଏ, ନିଜର କିଛି ସ୍ୱାଧୀନତା ନଥାଏ, ସେତେବେଳ ସେ ଶୂଦ୍ର; ଯେତେବେଳେ ସେ ଏଣୁତେଣୁ ଖୋଜିବୁଲେ, ମୁକ୍ତିନିମିତ୍ତ ତା ପ୍ରାଣରେ ପିପାସା ଜାତ ହୁଏ, କିନ୍ତୁ କେଉଁଥିରେ ହେଲେ ତୃପ୍ତି ମିଳେ ନାହିଁ, ସେତେବେଳେ ସେ ବୈଶ୍ୟ; ଯେତେବେଳେ ସେ ପ୍ରବୃତ୍ତି ସହିତ ସଂଗ୍ରାମ କରି ତାକୁ ଦମନ କରିବାକୁ ଚେଷ୍ଟା କରେ, ସେତେବେଳେ ସେ କ୍ଷତ୍ରିୟ ଆଉ ଯେତେବେଳେ ପ୍ରବୃତ୍ତି ଦମନ କରି ନିଜେ ସ୍ୱାଧୀନ ଭାବରେ ଚଳିପାରେ, ସେତେବେଳେ ସେ ବ୍ରାହ୍ମଣ ।

ଅହଂତ୍ୱର ସଂକୋଚନ ଓ ପ୍ରସାରଣ ହିଁ ଜାତିଭେଦର କାରଣ । ଯାହାଙ୍କର ଅହଂତ୍ୱ ଏକାବେଳକେ ସଙ୍କୁଚିତ ଓ ଆଚାର-ବ୍ୟବହାର ଅନାର୍ଯ୍ୟପରି, ସେ ବ୍ରାହ୍ମଣକୁଳୋଦ୍ଭବ ହେଲେ ସୁଦ୍ଧା ଶୂଦ୍ର । ପୁଣି ଯାହାଙ୍କର ଅହଂତ୍ୱ ଜଗତ୍‌ବ୍ୟାପ୍ତ ହୋଇଛି, ନୀଚ କୁଳୋଦ୍ଭବ ହେଲେ ସୁଦ୍ଧା ସେ ବ୍ରାହ୍ମଣ । ପୁରାଣରେ ଲୋମଶ ମୁନିଙ୍କ ଆଖ୍ୟାନ ଦୃଷ୍ଟ ହୁଏ । ତାଙ୍କର ଗୋଟିଏ ଲୋମ ଖସିଲେ ଜଣେ ଇନ୍ଦ୍ରଙ୍କର ପତନ ହୁଏ । ଏହିପରି ତାଙ୍କ ଦେହପାତ ହେଲାବେଳକୁ କେତେ ଇନ୍ଦ୍ରଙ୍କର ପତନ ହେବ, ବୁଝିନିଅ; କିନ୍ତୁ ଦେହ ରଖିବା ଇଚ୍ଛା ତାଙ୍କର ନାହିଁ । ତେଣୁ ତାଙ୍କ ପ୍ରତି ଆଦେଶ ହେଲା—ତୁମେ ଚଣ୍ଡାଳ ଅନ୍ନ ଗ୍ରହଣ କର । ତାହାହେଲେ ତୁମର ଲୋମସବୁ ଝଡ଼ିପଡ଼ିବ । ସେ ଯାଇ ଜଣେ ସଦାଚାରୀ ଚଣ୍ଡାଳ ଘରେ ଅନ୍ନ ଗ୍ରହଣ କଲେ; କିନ୍ତୁ ସେଥିରେ ତାଙ୍କର କିଛି ହେଲାନାହିଁ । ତା'ପରେ ସେ ଜଣେ କଦାଚାରୀ ବ୍ରାହ୍ମଣ ଘରେ ଅନ୍ନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ତାଙ୍କ ଶରୀରର ସବୁ ଲୋମ ଝଡ଼ିପଡ଼ିଲା । ସେତେବେଳେ ଜଣାପଡ଼ିଲା ଯେ ବ୍ରାହ୍ମଣ ହୋଇ ସୁଦ୍ଧା ସେହି ଶେଷୋକ୍ତ ବ୍ୟକ୍ତି ପ୍ରକୃତରେ ଚଣ୍ଡାଳ ।

## ଜୀବତ୍ୱ ଓ ଶିବତ୍ୱ

ସାଧନା ବ୍ୟତୀତ ଆତ୍ମା ନିଜ ଭାବରେ ଅବସ୍ଥାନ କରିପାରେ ନାହିଁ । ଆତ୍ମା ବର୍ତ୍ତମାନ ମଧ୍ୟ ନିଜ ଭାବରେ ଅବସ୍ଥା କରୁଛି ସତ୍ୟ; କିନ୍ତୁ ସେ ଭାବର ପ୍ରକାଶ ହୋଇନାହିଁ । ପ୍ରକୃତି ବର୍ତ୍ତମାନ ଚିନ୍ମୟ ପୁରୁଷଙ୍କର ଭୋଗ୍ୟ ହୋଇ ସେହି ଚିନ୍ମୟ ପୁରୁଷଙ୍କୁ ନିଜର ଭୋଗ୍ୟ କରିନେଇଛନ୍ତି । ସାଧନାଦ୍ୱାରା ସେହି ଭୋକ୍ତା-ଭୋଗ୍ୟ ଭାବର ଅପସାରଣ କରିବାକୁ ହେବ; ତେବେ ଯାଇ ଆତ୍ମଜ୍ଞାନ ଲାଭ ହେବ, ଜୀବ ଶିବରେ ପରିଣତ ହେବ ।

ଆଧାର ନାହିଁ ଅଥଚ ଶବ୍ଦ ଅଛି; ବିଷୟ ନାହିଁ ଅଥଚ ରୂପ, ରସ, ଗନ୍ଧ, ସ୍ପର୍ଶ ଅଛି—ଏହା ଧ୍ରୁବ ସତ୍ୟ । ସାଧାରଣ ଭୂମିରେ ଏ କଥାର ଧାରଣା ହୋଇପାରେ ନାହିଁ । ଲୋକେ ଭାବନ୍ତି, ଦେହ ନ ଥିଲେ ଦେଖିବ କିପରି, ଶୁଣିବ ବା କିପରି ? ଏହା ସେମାନଙ୍କର ବିପରୀତ ଧାରଣା । ବୁଝିବାକୁ ହେବ ଯେ 'ମୁଁ' ଦେହୀ ଅଛି ବୋଲି ଦେହ ଦେଖୁଛି ବା ଶୁଣୁଛି । 'ମୁଁ' ଚାଲିଗଲେ ତ କେବଳ ଦେହଟା ପଡ଼ିରହିବ, ଆଉ ଦେଖିବ ନାହିଁ କି ଶୁଣିବ ନାହିଁ । ସୁତରାଂ, ଦେହ ଛାଡ଼ିଗଲେ ମୁଁ ଦେଖିବିନାହିଁ କିପରି ? ବରଂ ଦେହ ଭିତରେ ମୁଁ ବନ୍ଦୀ ଥିବାରୁ ବିଶ୍ୱତଶ୍ଚକ୍ଷୁ ହୋଇ ସୁଦ୍ଧା ଗୋଟିଏ ଗବାକ୍ଷ ପଥରେ ଜଗତକୁ ଦେଖୁଛି ।

ନିଜ ଭାବରେ ବିହ୍ୱଳ ହୋଇ ଜଗତକୁ ଭୁଲିଅଛି । ନିଜେ ଚୋର, ତେଣୁ ଜଗତ ଚୋର; ନିଜେ ସାଧୁ ତ ଜଗତ ସାଧୁ । ବିଚାର କହିଲେ ତର୍କ କରିବା ନୁହେଁ । ବିଚାରର ଅର୍ଥ ସଂଶୟ ଦୂର କରିବା ଓ ପଥ ନିର୍ମଳ କରିବା । ବିଚାର ସାହାଯ୍ୟରେ କ୍ରମେ ଡାଳପତ୍ର ଛାଡ଼ି ମୂଳରେ ଉପସ୍ଥିତ ହେବାକୁ ପଡ଼େ । ସେତେବେଳେ ସବୁ ନିସ୍ତବ୍ଧ ହୋଇଯାଏ । ବିଚାରର ପରିଣତିରେ ସ୍ଥିରଭାବ ଆସେ । ସେତେବେଳ କୌଣସି ଉଦ୍‌ବେଗ ରହେ ନାହିଁ । ଆପଣା ମଧ୍ୟରେ ଆପେ ଅବସ୍ଥାନ କରିବା; ଏହା ଏକାବେଳକେ ନିଶ୍ଚିନ୍ତ ଅବସ୍ଥା । ଏହି ଅବସ୍ଥାରେ ଉପନୀତ ହେଲେ ସତ୍ୟ ପ୍ରତ୍ୟକ୍ଷ ହୁଏ ।

ବିଚାରର ବିଷୟ ଦୁଇଟି ହେବା ଉଚିତ୍; (୧) ଆତ୍ମତତ୍ତ୍ୱ—ମୁଁ କଅଣ, ମୋର ସୁଖ କଅଣ, ଦୁଃଖ ବା କଅଣ ? (୨) ବ୍ରହ୍ମତତ୍ତ୍ୱ—ବ୍ରହ୍ମ କଅଣ, ମୋ ସହିତ ବ୍ରହ୍ମଙ୍କର କି ସମ୍ବନ୍ଧ ଇତ୍ୟାଦି । ସ୍ଥୂଳଜଗତରେ ଉନ୍ନୀତ ହୋଇ ସ୍ଥୂଳପ୍ରତି ଦୃଷ୍ଟି ଫେରାଇଲେ ଦେହକଥା ଆଦୌ ମନେ ପଡ଼ିବ ନାହିଁ; କାରଣ ବିଶାଳ

ସ୍ଥୂଳଜଗତ ତୁଳନାରେ ଏ ଦେହ କେଡ଼େ କ୍ଷୁଦ୍ର ଏବଂ ସ୍ଥୂଳରେ ଏତେ ଅଳ୍ପ ଅଂଶ ସେ ଅଧିକାର କରି ରହିଛି ବୋଲି ସେ ଆଡ଼କୁ ଦୃଷ୍ଟି ଯିବ ନାହିଁ। ବିଶେଷତଃ ଅଶେଷ ଦୃଶ୍ୟ ଯେଉଁଠାରେ ଦୃଷ୍ଟି ସମ୍ମୁଖରେ ଯୁଗପତ୍ ପ୍ରକାଶିତ ହୁଏ, ସେଠାରେ ଦୃଷ୍ଟି ଏଡ଼େ ସଂକୀର୍ଣ୍ଣ ହେବା ହିଁ ଅସ୍ୱାଭାବିକ। ସ୍ଥୂଳ ଦ୍ୱାରା ସ୍ଥୂଳକୁ ଯେପରି ଜାଣିହୁଏ, ସୂକ୍ଷ୍ମଦ୍ୱାରା ସେହିପରି ସୂକ୍ଷ୍ମକୁ ଏବଂ କାରଣ ଦ୍ୱାରା ସେହିପରି କାରଣକୁ ଜାଣିବାକୁ ହୁଏ; କିନ୍ତୁ ସମଷ୍ଟି ସ୍ଥୂଳ ଜାଣିବା ପାଇଁ ସୂକ୍ଷ୍ମକୁ ନ ଗଲେ ସମ୍ୟକ ଜ୍ଞାନ ହୁଏ ନାହିଁ। ସେହିପରି ସମଷ୍ଟି-କାରଣକୁ ଗଲେ ସମଷ୍ଟି ସୂକ୍ଷ୍ମ ଜ୍ଞାନ ଲାଭ ହେବ, ପୁଣି ମହାକାରଣରେ ଲୀନ ହେଲାପରେ ସମଷ୍ଟି କାରଣଜଗତର ଜ୍ଞାନ ଲାଭ ହେବ।

ଯଦି ଅମର ହେବାକୁ ଇଚ୍ଛା କର, ଜୀବତ୍ୱରେ ଶିବତ୍ୱ ପ୍ରତିଷ୍ଠା କରିବାକୁ ଇଚ୍ଛା କର, ତେବେ ଜୀବନ୍ମୃତ ହୁଅ। ଯେତେବେଳେ ଏହି ମାଟିର ଦେହ ମାଟିରେ ଦିନେ ମିଶିଯିବ, ସେତେବେଳେ ମିଶିବା ପୂର୍ବରୁ କାହିଁକି ସବୁ ବିଷୟରେ ମାଟି ହୋଇଯିବ ନାହିଁ ? ମନୁଷ୍ୟତ୍ୱ ଲାଭର ପ୍ରକୃତ ଓ ଅକପଟ ଇଚ୍ଛା ଥିଲେ ଭଗବାନ ତାଙ୍କର ସହାୟ ହୁଅନ୍ତି।

## ସ୍ୱରୂପ ଉପଲବ୍ଧି

ଯେ ଯେଉଁ ସ୍ତରର ସାଧକ ହୁଅନ୍ତୁ, ବାଟରେ ଯାଉ ଯାଉ ଭକ୍ତ ଆସି ମିଳିଯିବେ। ସାଧନ ପଥରେ ଏହା ଅତି ବଡ଼ ବିଘ୍ନ। ଗୈରିକ ବସ୍ତ୍ର ଦେଖିଲାକ୍ଷଣି ଗୋଟିଏ ଶ୍ରେଣୀର ଲୋକ ଆସି ପାଦତଳେ ଲୋଟିପଡ଼ନ୍ତି। ଏପରି ଅବସ୍ଥାରେ ପଡ଼ିଲେ ନିଜକୁ ସମ୍ଭାଳିନେବା କଷ୍ଟକର ହୋଇପାରେ। ସମୟ ସମୟରେ ମୋହ ଆସି ଘୋଟିଯାଏ। ଏ କାର୍ଯ୍ୟ ତ୍ୟାଜ୍ୟ ବୋଲି ସାଧକ ତିଳେ ମାତ୍ର ହୃଦୟଙ୍ଗମ କରିପାରନ୍ତି ନାହିଁ। ସାଧକଙ୍କ ଭିତରେ କିଛି ମାଲମସଲା ନାହିଁ ଅଥଚ ଅନେକ ସମୟରେ ଆତ୍ମପ୍ରତିଷ୍ଠା ପାଇଁ ଅଲକ୍ଷ୍ୟରେ ତାଙ୍କର ଇଚ୍ଛାହୁଏ। ସେତେବେଳେ ଜଣକଠାରୁ ସେ ଯେଉଁ ସମ୍ମାନ ପାଆନ୍ତି, ସମସ୍ତଙ୍କ ଠାରୁ ତାହା ଦାବି କରନ୍ତି; କିନ୍ତୁ ସ୍ୱରୂପରେ ପ୍ରତିଷ୍ଠିତ ହେବା ପୂର୍ବରୁ ଏପରି ଭକ୍ତ ସଂଗ୍ରହ କଲେ କିମ୍ବା ମନରଖା କଥାରେ ଭୁଲିଗଲେ ସାଧକଙ୍କର ପତନ ଅବଶ୍ୟମ୍ଭାବୀ। ତଥାପି ଗୁରୁକୃପା ଥିଲେ ସାଧକ ଏପରି ଅବସ୍ଥାରେ ନିଜ ଭ୍ରମ ବୁଝିପାରି ସମ୍ଭାଳି ରହିଯାନ୍ତି। ସାଧକ ଯେଉଁ ସ୍ତରର, ସେହି ସ୍ତରର ଭକ୍ତ ଆସି ରୁଣ୍ଡ ହୋଇଯାନ୍ତି।

ତୁମେ କାହାଠାରୁ ବଡ଼ ନୁହଁ କି କାହାଠାରୁ ଛୋଟ ନୁହେଁ। ତୁମେ ଆତ୍ମାନନ୍ଦରେ ରହିଛ, ନିଜ ମଧ୍ୟରେ ପ୍ରତିଷ୍ଠିତ ରହିଛି। ସୁଖ-ଦୁଃଖ, ସଂସାରର ଘାତ-ପ୍ରତିଘାତ, ସତ୍-ଅସତ୍ ସବୁ ଆସିବ ଓ ଯିବ। ସେସବୁ ସହିତ ନିଜକୁ କେବେହେଲେ ଜଡ଼ିତ କରିପକାଅ ନାହିଁ।

ସାଂଖ୍ୟ ଟୀକାକାର କହନ୍ତି, ଦ୍ୱୈତଭାବ ବ୍ୟତୀତ ଅନ୍ୟ କୌଣସି ଉପାୟ ନାହିଁ; କାରଣ, ଆତ୍ମା ସର୍ବବ୍ୟାପୀ। ସୁତରାଂ, ଆତ୍ମାକୁ କିପରି ଦର୍ଶନ କରିବ ? ଆତ୍ମା ସାକ୍ଷୀସ୍ୱରୂପ ବୋଲି କହିଲେ ଦ୍ୱୈତର ଅବତାରଣା ହେଲା; କିନ୍ତୁ ମନ ତ ସ୍ୱପ୍ନାବସ୍ଥାରେ ନିଜେ ନାନା ରୂପ ସୃଷ୍ଟି କରେ, ନିଜେ ବାଘ ହୋଇ ନିଜକୁ ଭୟ ଦେଖାଏ। ଏହି ଭାବରେ ଏକା ମନ ଯଦି ଦ୍ରଷ୍ଟା ଓ ଦୃଶ୍ୟ ହୋଇପାରେ, ତେବେ ଆତ୍ମା କ'ଣ ଆତ୍ମାର ସାକ୍ଷୀ ସ୍ୱରୂପ ହୋଇପାରିବ ନାହିଁ ?

ମୁଁ ଦେହଠାରୁ ପୃଥକ୍—ଏତିକି ଉପଲବ୍ଧି ହେଲେ ମୃତ୍ୟୁଞ୍ଜୟ ହୋଇଯିବ; କାରଣ, ଜୀବର କେବଳ ଦେହ ନଷ୍ଟ ହୋଇଯାଏ କିନ୍ତୁ ଆତ୍ମାର ମୃତ୍ୟୁ ନାହିଁ। ଯାହାର ମୃତ୍ୟୁ ହୋଇଛି, ତାହାର ପୁଣି ଜନ୍ମ ହେବ। ଗୀତାରେ ଏହା ଭଗବାନଙ୍କ ଉକ୍ତି। ସୁତରାଂ, ମୋର ଯଦି ମୃତ୍ୟୁ ହୁଏ, ତାହା ହେଲେ ମୋର ପୁଣି ନିଶ୍ଚୟ ଜନ୍ମ ହେବ; କିନ୍ତୁ ପ୍ରକୃତରେ ମୁଁ କୌଣସି ଦିନ ଜାତ ହୋଇ ନାହିଁ କିମ୍ୱା କେବେ ମରି ନାହିଁ କି ମରିବି ନାହିଁ, ମରି କେଉଁଠାକୁ ମୋତେ ଯିବାକୁ ମଧ୍ୟ ହେବ ନାହିଁ; କାରଣ, ଯିବା ରହିଲେ ପୁଣି ଆସିବା ରହିବ। ମୋର ଯିବା ନାହିଁ କି ଆସିବା ନାହିଁ, ମୁଁ ଜୀବନ୍ମୁକ୍ତ। ଏହିଠାରେ ମୁଁ ସବୁ ଉପଲବ୍ଧି କରିବି—ଏହା ପୂର୍ଣ୍ଣଜ୍ଞାନୀଙ୍କର କଥା।

ଆତ୍ମଜ୍ଞାନୀଙ୍କ ନିକଟରେ ଜନ୍ମାନ୍ତର ମିଥ୍ୟା, କ୍ରମବିକାଶ ଦ୍ୱାରା ଜୀବଠାରେ ଜ୍ଞାନର ବିକାଶ ହୋଇଛି। ତେଣୁ ଜନ୍ମ-ମୃତ୍ୟୁ ବିଚାରର କୌଣସ ସାର୍ଥକତା ଜ୍ଞାନପନ୍ଥୀଙ୍କ ପକ୍ଷରେ ନାହିଁ। ପୂର୍ବେ ଦଶ ଜନ୍ମରେ ଅବା ମନୁଷ୍ୟ ହୋଇଥିଲି। ସେହି ଦଶ ଜନ୍ମର ଦେହବିଷୟ ବିଚାର କଲେ ଲାଭ ହେବ କ'ଣ ? ବରଂ ଉକ୍ତ ଦଶ ଜନ୍ମରେ ଜ୍ଞାନର ବିକାଶ କେତେ ପରିମାଣରେ ହୋଇଛି, ତାହା ବିଚାରଯୋଗ୍ୟ। ସେ ବିଚାର କଲେ ଜଣାଯାଏ, ମୋର ଜନ୍ମ ନାହିଁ କି ମରଣ ମଧ୍ୟ ନାହିଁ। ସୁଖ-ଦୁଃଖ, ଜନ୍ମ-ମୃତ୍ୟୁ—ଏସବୁ ଦେହର; ମାତ୍ର ମୋ ସହିତ ସେ ସମସ୍ତର କୌଣସି ସମ୍ୱନ୍ଧ ନାହିଁ। ମୁଁ ରାଜପୁତ୍ର, ଆଜି ଯୋଦ୍ଧା ବେଶରେ ଯୁଦ୍ଧଭୂମିକୁ

ଯାଉଛି; କିନ୍ତୁ ମନେ ମନେ ମୁଁ ଜାଣେ ଯେ ମୁଁ ସେହି ରାଜପୁତ୍ର, ଯୁଦ୍ଧପରେ ପୁଣି ଆସି ସେହି ରାଜଉଆସରେ ବସିବି । ସାଧାରଣ ଲୋକେ ଏହିପରି ଭାବ ଆଶ୍ରୟ କରିବା ଦରକାର । ଜନ୍ମ-ବିଚାର କିମ୍ବା କର୍ମଫଳ ବିଚାରରେ କୌଣସି ପ୍ରୟୋଜନ ନାହିଁ ।

ତତ୍ତ୍ୱ ବିଚାରପରାୟଣ ବ୍ୟକ୍ତି ନିଜେ ସବୁଠାରେ ଆତ୍ମାକୁ ଲାଭ କରିଥାନ୍ତି । ଅବିଚାରପରାୟଣ ବ୍ୟକ୍ତି ସର୍ବତ୍ର ମନୋହର ଜଗତଭାବ ହିଁ ଦର୍ଶନ କରନ୍ତି । ଆତ୍ମସତ୍ତାକୁ ବିଶ୍ୱସତ୍ତାରେ ମିଶାଇବା ନାମ ନିର୍ବାଣ । ନିଜ ଭିତରେ ବିଶ୍ୱବ୍ରହ୍ମାଣ୍ଡକୁ ଉପଲବ୍ଧି କରିବା ହିଁ ନିର୍ବାଣ; ତାହା ନିଜ ଅସ୍ତିତ୍ୱର ବିନାଶ ନୁହେଁ ।

ବ୍ରହ୍ମ, ଆତ୍ମା ଓ ଭଗବାନଙ୍କ ମଧ୍ୟରେ ଭେଦାଭେଦ ସମ୍ବନ୍ଧ ବିଦ୍ୟମାନ । ସର୍ବବ୍ୟାପୀ ତରଳ ସୂର୍ଯ୍ୟ-କିରଣକୁ ବ୍ରହ୍ମ, ଘନୀଭୂତ ସୂର୍ଯ୍ୟମଣ୍ଡଳ ଆତ୍ମା ଏବଂ ସୂର୍ଯ୍ୟର ଅଧିଷ୍ଠାତା ହିଁ ଭଗବାନ । ବ୍ରହ୍ମ ଭଗବାନଙ୍କର ଅଙ୍ଗଜ୍ୟୋତିଃ । 'ତସ୍ୟ ତନୁଭା' ।

ବ୍ରହ୍ମ କିମ୍ବା ଆତ୍ମାର କିଛି କରିବାର କ୍ଷମତା ନାହିଁ । ସେ ନିର୍ଗୁଣ, ନିର୍ବିଶେଷ । ଭଗବାନ ଇଚ୍ଛା କଲେ ସବୁ କରିପାରନ୍ତି । ସେ ସର୍ବଜ୍ଞ ଓ ସର୍ବଶକ୍ତିମାନ । ସେ ସମସ୍ତଙ୍କୁ ଧରିରଖିଛନ୍ତି । ସେ ସମସ୍ତଙ୍କୁ ଆନନ୍ଦଧାମକୁ ସର୍ବଦା ଆକର୍ଷଣ କରୁଛନ୍ତି । ତେଣୁ ସେ ଆମର ପରମ ବନ୍ଧୁ ।

ବୌଦ୍ଧମାନଙ୍କ ବିଚାରର ଶେଷ ହେଲା ଶୂନ୍ୟ । ବୌଦ୍ଧମାନେ ଯାହାକୁ ଶୂନ୍ୟ ବୋଲି କହୁଛନ୍ତି, ତାହାର ଅନ୍ୟ ନାମ ଆତ୍ମା । ଯେ ଶୂନ୍ୟ ଅବସ୍ଥାର ଦ୍ରଷ୍ଟା, ତାଙ୍କୁ କୁହାଯାଏ ଆତ୍ମା । ଯେ ସୁଷୁପ୍ତିରେ ଆନନ୍ଦ ଅନୁଭବ କରନ୍ତି, ତାଙ୍କର ନାମ ସଚେତନ ଆତ୍ମା । ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ଏହି ଅବସ୍ଥାତ୍ରୟର ଯେ ଦ୍ରଷ୍ଟା, ଯେ ଅନୁଭବିତା; ତାଙ୍କୁ କୁହାଯାଏ ଆତ୍ମା । ଆତ୍ମାର ଅନ୍ୟ କେହି ଦ୍ରଷ୍ଟା ନାହାଁନ୍ତି । ଚକ୍ଷୁ ସମସ୍ତ ବସ୍ତୁ ଦର୍ଶନ କରିପାରେ; କିନ୍ତୁ ଚକ୍ଷୁକୁ କେହି ଦର୍ଶନ କରିପାରନ୍ତି ନାହିଁ । ଚକ୍ଷୁକୁ ଦର୍ଶନ କରିବାକୁ ହେଲେ ଦର୍ପଣର ପ୍ରୟୋଜନ । ଦର୍ପଣରେ ଚକ୍ଷୁର ପ୍ରତିବିମ୍ବ ପ୍ରତିଫଳିତ ହେଲେ ଯେପରି ଚକ୍ଷୁକୁ ଦେଖିହୁଏ, ସେହିପରି ବିଶୁଦ୍ଧ ମନରେ ଚୈତନ୍ୟଙ୍କର ପ୍ରତିବିମ୍ବ ପ୍ରତିଫଳିତ ହେଲେ ଆତ୍ମଦର୍ଶନ ଘଟେ ।

ମନୁଷ୍ୟ ଭିତରେ ଅନନ୍ତ ଶକ୍ତି ବିଦ୍ୟମାନ ଥିଲେ ମଧ୍ୟ ତାହା ସୁପ୍ତ । ଅନୁଶୀଳନ ଅଭାବରୁ ତାହାର ପ୍ରକଟ ହୋଇପାରେ ନାହିଁ । ଗୁରୁବାକ୍ୟ ଅନୁସରଣ କରି ସାମାନ୍ୟ ଅନୁଶୀଳନ କଲାକ୍ଷଣି ମାନବ ଅନ୍ତରରେ ତାହା ଫୁଟିଉଠେ ।

ସମସ୍ତେ ନିଜକୁ ପ୍ରଥମ ପୁରୁଷ ବୋଲି ମନେ କରି ଶ୍ରୀଗୁରୁଦେବଙ୍କୁ ଶକ୍ତିପ୍ରଦାନ ନିମିତ୍ତ ପ୍ରାର୍ଥନା କରିଥାନ୍ତି। ଏହି ଭାବକୁ ବଦଳାଇ ଯଦି ଭାବିବ, ଶ୍ରୀଗୁରୁଦେବ ହିଁ ପ୍ରଥମ ପୁରୁଷ ବା ପୁରୁଷୋତ୍ତମ, ସେତେବେଳେ ଆତ୍ମଜ୍ଞାନ ଲାଭ ହେବ ଏବଂ ସେତେବେଳେ ହିଁ ଭକ୍ତ ଭଗବାନଙ୍କ ନିମିତ୍ତ ବ୍ୟାକୁଳ, ନ ହୋଇ ରହିପାରିବେ ନାହିଁ। ନିଦ୍ରିତ ବ୍ୟକ୍ତି ସ୍ୱପ୍ନରେ ଗଁ-ଗଁ ଶବ୍ଦ କରିବାବେଳେ ଯଦି କେହି ଧକ୍‌କା ଦେଇ ତାକୁ ଜାଗ୍ରତ କରାଇଦିଅନ୍ତି, ତେବେ ସେହି ନିଦ୍ରିତ ବ୍ୟକ୍ତିଙ୍କର ସ୍ୱପ୍ନ ଭାଙ୍ଗିଯାଏ। ଯଦି ଶ୍ରୀଗୁରୁଦେବ ତାଙ୍କ ଜ୍ଞାନ ପ୍ରଭାବରେ ଧକ୍‌କା ଦେଇ ମୋହନିଦ୍ରା ଭାଙ୍ଗିଦିଅନ୍ତି, ତାହା ହେଲେ ଜୀବ ସ୍ୱରୂପ ଲାଭ କରି ଧନ୍ୟ ହୁଏ।

ମନକୁ ଅନ୍ତର୍ମୁଖୀ କଲେ ଆତ୍ମଜ୍ଞାନ ଲାଭ କରାଯାଏ; କିନ୍ତୁ ବ୍ରହ୍ମଜ୍ଞାନ ଲାଭ କରାଯାଇପାରେ ନାହିଁ। ବ୍ରହ୍ମତତ୍ତ୍ୱ ବୁଝିବାକୁ ହେଲେ ଜଗତ୍‌ଭିତରକୁ ନ ଯାଇ ଜଗତ୍ ବାହାରେ ରହିଲେ ତାହା ଉପଲବ୍ଧ ହୋଇପାରିବ। ବ୍ରହ୍ମଜ୍ଞାନୀ ମନକୁ ଜଗତ୍‌ବ୍ୟାପ୍ତ ବୋଲି ମନେ କରନ୍ତି ଏବଂ ଆତ୍ମଜ୍ଞାନୀ ମନକୁ ଅନ୍ତର୍ମୁଖୀ କରି ଗୋଟିଏ ସ୍ଥାନରେ ଆବଦ୍ଧ କରି ରଖନ୍ତି। ଆତ୍ମଜ୍ଞାନୀ ଅର୍ଥାତ୍ 'ତୁମେ କିଏ' ଏହି କଥା ଜାଣିପାରିଲେ ତୁମର ସମସ୍ତ ଅଶାନ୍ତି ଦୂରୀଭୂତ ହୋଇଯିବ। ଆତ୍ମାରେ ଯାହା ଅଛି, ଉପଯୁକ୍ତ ସମୟ ହେଲେ ତାହାର ବିକାଶ ହୋଇଥାଏ। ଜ୍ଞାନ-ଭକ୍ତି ସମସ୍ତ ହିଁ ଆତ୍ମାରେ ନିହିତ। ଉପଯୁକ୍ତ କ୍ଷେତ୍ର ଏବଂ ଉପଯୁକ୍ତ ସମୟ ପାଇଲେ ତାହା ପ୍ରକାଶିତ ହୋଇଥାଏ ମାତ୍ର। ଯେତେବେଳେ ବିକୃତ ଭାବରେ ତାହା ପ୍ରକାଶ ପାଏ, ସେତେବେଳେ ତାହାର ନାମ ରିପୁ। ଇନ୍ଦ୍ରିୟଦ୍ୱାରା କୁକାର୍ଯ୍ୟ କଲେ ସେମାନେ ଶତ୍ରୁ ଏବଂ ସୁକାର୍ଯ୍ୟ କଲେ ସେମାନେ ବନ୍ଧୁ ହୋଇଯାନ୍ତି। ତେଣୁ ଆତ୍ମସୁଖର ନାମ କାମ, ଭଗବତ୍‌ସୁଖର ନାମ ପ୍ରେମ।

ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା—ଏ କଥାର ଅର୍ଥ ନୁହେଁ ଯେ ଜଗତକୁ କିଛି ନୁହେଁ ବା ଜଗତ୍‌ର ଅସ୍ତିତ୍ୱ ନାହିଁ। ଏହାର ଅର୍ଥ ହେଉଛି ଯେ ଜଗତ୍ ବ୍ରହ୍ମଙ୍କର ନିତ୍ୟସ୍ୱରୂପ ନୁହେଁ, ତାଙ୍କର ମାୟାମୟ ରୂପ। ଜଗତ୍ ସ୍ଥିର ନୁହେଁ, ନିୟମ ପରିବର୍ତ୍ତନଶୀଳ। ତେଣୁ ଅନିତ୍ୟ ଓ ଚଞ୍ଚଳ ବସ୍ତୁପ୍ରତି ଆସକ୍ତି ହେଲେ ତୁମେ ପ୍ରତାରିତ ହେବ ସିନା ! ତେଣୁ ବ୍ରହ୍ମଙ୍କର ଏହି ଚଞ୍ଚଳ ମାୟାମୟ ରୂପକୁ ପରିତ୍ୟାଗ କରି ଅଟଳ ସତ୍ୟସ୍ୱରୂପରେ ନିଜକୁ ପ୍ରତିଷ୍ଠିତ କର। ତେବେ କେବେହେଲେ

ତୁମର ପତନ ହେବ ନାହିଁ। ଅନନ୍ତକାଳଯାବତ୍ ଆତ୍ମସ୍ୱରୂପରେ ଅବସ୍ଥାନ କରି ତୁମେ ଅମର ହେବ।

ସ୍ୱାଧୀନତାର ଅର୍ଥ ହେଉଛି ସ୍ୱ-ଅଧୀନତା ଅର୍ଥାତ୍ ନିଜର ବା ସ୍ୱରୂପର ଅର୍ଥାତ୍ ଆତ୍ମାର ବା ଧର୍ମର ଅଧୀନତା। ପରାଧୀନତା ଅର୍ଥ ଶତ୍ରୁର ଅର୍ଥାତ୍ ଷଡ଼ରିପୁଙ୍କର ଅଧୀନତା। ରିପୁଜୟ କରି ଯେ ଆତ୍ମଜ୍ଞାନ ଲାଭ କରନ୍ତି, ତାଙ୍କୁ ସ୍ୱାଧୀନ କୁହାଯାଏ। ଯେଉଁଦିନ ତ୍ରିଗୁଣାତୀତ ହୋଇ ସ୍ୱରୂପରେ ପ୍ରତିଷ୍ଠିତ ହେବ, ସେହିଦିନ ହିଁ ଜୀବର ପ୍ରକୃତ ସ୍ୱାଧୀନତା। ଯେଉଁମାନେ ରିପୁବଶୀଭୂତ ହୋଇ କ୍ଷୁଦ୍ର ଦେଶର ସ୍ୱାଧୀନତାନିମିତ୍ତ ଲାଳାୟିତ ହେଉଛନ୍ତି, ସେମାନଙ୍କୁ ଦେଖି ଆତ୍ମଜ୍ଞାନୀ ସାଧନକମାନେ କେବଳ ଉପହାସ କରିଥାନ୍ତି।

ଆତ୍ମାର କାର୍ଯ୍ୟ ଅପର ସଙ୍ଗରେ ଆତ୍ମୀୟ ଭାବ ରକ୍ଷା କରି ଚଳିବା। ବିସଦୃଶକୁ ସଦୃଶ, ଦୂରକୁ ନିକଟ, ପରକୁ ଆପଣାର ଜ୍ଞାନ କରିବା ଆତ୍ମାର ସ୍ୱଭାବ। କେବଳ ନିଷ୍କ୍ରିୟ ହୋଇ ବସିରହିବା ଆତ୍ମଜ୍ଞାନୀଙ୍କର ଲକ୍ଷଣ ନୁହେଁ। ସମସ୍ତଙ୍କୁ ସୁଖ ପାଇବା ହିଁ ଆତ୍ମାର ସ୍ୱଭାବ। ସମସ୍ତଙ୍କ ସଙ୍ଗରେ ଐକ୍ୟସୂତ୍ର ସ୍ଥାପନ କରିବା ହିଁ ଆତ୍ମବିଦ୍ଙ୍କର ଲକ୍ଷଣ; ତେଣୁ ସେ ସମସ୍ତଙ୍କୁ ସୁଖ ପାଆନ୍ତି, ସୁଖ ପାଇ ଅପରର ସୁଖ-ଦୁଃଖରେ ସହାନୁଭୂତି ଜ୍ଞାପନ କରନ୍ତି।



# ଶକ୍ତି

## ଶକ୍ତି ଓ ଶକ୍ତିଲାଭ

ଶକ୍ତି-ସାଧନା ଆଧୁନିକ ନୁହେଁ । ଉପନିଷଦ୍ ଯୁଗରେ ଆର୍ଯ୍ୟମାନେ ବୁଝିପାରିଥିଲେ ଯେ ଯେଉଁ ଶକ୍ତିରେ ଦେବରାଜ ଇନ୍ଦ୍ର ବିଶ୍ୱବ୍ରହ୍ମାଣ୍ଡ ଚୂର୍ଣ୍ଣ କରିପାରନ୍ତି, ଯେଉଁ ଶକ୍ତିବଳରେ ଅଗ୍ନି ବିଶ୍ୱ ଦହନ କରିପାରେ, ସେ ଶକ୍ତି ସେମାନଙ୍କର ନିଜର ନୁହେଁ । ଅନ୍ୟ ଏକ ମହାଶକ୍ତିଠାରୁ ସେମାନେ ସ୍ୱ-ସ୍ୱ ଶକ୍ତି ପ୍ରାପ୍ତ ହୋଇଅଛନ୍ତି ।

ଏ ଜଗତରେ ସମସ୍ତ ମହାଶକ୍ତିଙ୍କର ଲୀଳା ବା ଖେଳ । ଆମେମାନେ କେବଳ ଶକ୍ତି ଦେଖି ବିହ୍ୱଳ ହୋଇଯାଉ । ମନୁଷ୍ୟ ଯେଉଁଠାରେ ଶକ୍ତି ଦେଖିବାକୁ ପାଏ, ସେଠାରେ ମସ୍ତକ ଅବନତ କରେ । ତୁମ୍ଭେମାନେ କୋଣାର୍କର ସୂର୍ଯ୍ୟମନ୍ଦିର ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୁଅ; କାରଣ ସେଠାରେ ଶକ୍ତିର ବିକାଶ ଦେଖିବାକୁ ପାଅ । ତୁମେ ତ 'ଭଗବାନ' 'ଭଗବାନ' ବୋଲି କହୁଛ ! ତାଙ୍କୁ କ'ଣ କେବେ ଦେଖିଛ ? ତୁମେ କହୁଛ, କୃଷ୍ଣସ୍ତୁ ଭଗବାନ ସ୍ୱୟଂ—କୃଷ୍ଣ ସ୍ୱୟଂ ଭଗବାନ—ଏକଥା କିପରି ବୁଝୁଛ ? ତାଙ୍କର ଅଲୌକିକ ଶକ୍ତି, ଦେଖି ନୁହେଁ କି ? ଶ୍ରୀକୃଷ୍ଣଙ୍କର ବୃନ୍ଦାବନଲୀଳା ଓ କୁରୁକ୍ଷେତ୍ର ଯୁଦ୍ଧରେ ତାଙ୍କର ଅମାନୁଷିକ, ଅନିର୍ବଚନୀୟ ବୁଦ୍ଧି ଓ ପ୍ରତିଭା ଶକ୍ତିର ଏପରି ଗୋଟିଏ ଆଶ୍ଚର୍ଯ୍ୟ ପରିଚୟ ତୁମେ ପାଉଛ ଯେ, ସେ ଶକ୍ତିକୁ ଏହି ବ୍ରହ୍ମାଣ୍ଡ ନୀୟମନୀ ଶକ୍ତି ବୋଲି ମନେ କରୁଛ । ତେଣୁ ତୁମେ ଶ୍ରୀକୃଷ୍ଣଙ୍କୁ ଭଗବାନ୍ ବୋଲି କହୁଛ ।

ଯାହାଙ୍କଠାରେ ଶକ୍ତିର ବିକାଶ ଦେଖିବାକୁ ମିଳେ, ତାଙ୍କୁ ମହାପୁରୁଷ ବୋଲି କୁହାଯାଏ । ଯେଉଁ ବିରାଟ ଶକ୍ତି ଏହି ବିଶ୍ୱ ପରିଚାଳନା କରୁଛନ୍ତି, ସେହି ଶକ୍ତିଙ୍କର ପରିଚୟ ସ୍ଥୂଳଦୃଷ୍ଟିରେ ପାଇବା ଅସମ୍ଭବ । ଯେଉଁଠାରେ ନିଜ ଶକ୍ତି ଅପେକ୍ଷା ଅଧିକ ଶକ୍ତିର ବିକାଶ ଦେଖିବାକୁ ମିଳେ, ସେହି ଆଡ଼କୁ ଆମେମାନେ ଆକୃଷ୍ଟ ହୋଇପଡୁ । ମୁଠାଏ ଧୂଳି ଚିନି ହୋଇଗଲା, ସ୍ପର୍ଶମାତ୍ରେ ରୋଗ ଭଲ

ହୋଇଗଲା, କେହି ଆମ ମନକଥା କହିଦେଇ ପାରିଲେ ଇତ୍ୟାଦି ଶକ୍ତିର ବିକାଶ ଦେଖି ମନୁଷ୍ୟ ଆକୃଷ୍ଟ ନହୋଇ ରହିପାରେ ନାହିଁ ।

ପୃଥିବୀରେ ସମସ୍ତେ ଶକ୍ତି ଲାଭ କରିବାକୁ ଇଚ୍ଛୁକ । କେବଳ ଶକ୍ତି ଥିଲେ ମଧ୍ୟ କେହି ସାଧୁ ହୋଇପାରନ୍ତି ନାହିଁ । ଜଣେ ସାଧକ ଓ ଜଣେ ସାଧୁଙ୍କ ମଧ୍ୟରେ ବହୁତ ପ୍ରଭେଦ ଅଛି । ଯେ ପୂର୍ବ କିମ୍ବା ଇହଜନ୍ମର ତପସ୍ୟା ଫଳରେ ଭଗବତ୍ ପ୍ରେମ ଉପଲବ୍ଧି କରିବାର ଶକ୍ତି ଓ ଭକ୍ତି ଲାଭ କରିଛନ୍ତି, ତାଙ୍କୁ ସାଧୁ କୁହାଯାଏ । ସାଧୁ ଓ ଭକ୍ତ ଏକ କଥା । ଯେ ଶକ୍ତିଲାଭ ନିମିତ୍ତ ସାଧନା କରୁଛନ୍ତି, ସେ ସାଧକ । ଭକ୍ତି ଲାଭ କରିବା ନିମିତ୍ତ ଶକ୍ତି-ସାଧନାର ପ୍ରୟୋଜନ । ଭଗବାନଙ୍କ ଲୀଳା ବୁଝିବାର ଶକ୍ତି ନଥିଲେ ଭକ୍ତି ଆସେ ନାହିଁ । ବିଶ୍ୱସଂସାରର ନାନା ବୈଚିତ୍ର୍ୟ ମଧ୍ୟରେ ତାଙ୍କ ଲୀଳା ଅନୁଭବ କରିବା ତୁମ-ଆମର ସାଧ୍ୟାୟତ୍ତ ନୁହେଁ । ଯେ ଶକ୍ତି ଲାଭ କରିଛନ୍ତି, ଏକମାତ୍ର ସେ ତାହା ଅନୁଭବ କରିପାରନ୍ତି ।

ବିଶ୍ୱ ନିୟାମକ ବିରାଟ ଶକ୍ତି ତାଙ୍କ ଇଚ୍ଛାନୁସାରେ କାର୍ଯ୍ୟପରେ କାର୍ଯ୍ୟର ଶୃଙ୍ଖଳା ବାନ୍ଧି ଚାଲିଛନ୍ତି—ଏହି କଥା ଯେଉଁଦିନ ବୁଝିପାରିବ, ସେଦିନ ତୁମର ଭକ୍ତି ଆସିଯିବ, ଈଶ୍ୱରଙ୍କ ପ୍ରତି ନିର୍ଭରତା ଆସିଯିବ, ସେଦିନ ତୁମେ ଭକ୍ତ ହୋଇଯିବ । ଅଜ୍ଞ ମାନବ ! ତୁମେ ତାଙ୍କ ବିରାଟ ଶକ୍ତିର କଅଣ ବା ଉପଲବ୍ଧି କରିଛ ? ତୁମର ଭକ୍ତି ଆଉ କେଉଁଠାରୁ ଆସିବ ? ବ୍ରାହ୍ମଣ କିମ୍ବା ବିଗ୍ରହ ଦେଖି ପ୍ରଣାମ କଲେ, ଆଚାର-ନିୟମରେ ଚଳିଲେ ଏବଂ 'ଶ୍ରୀହରି' 'ଶ୍ରୀହରି' ବୋଲି ଡାକିଲେ କଅଣ କେହି ଭକ୍ତ ହୋଇପାରିବେ ? ତେବେ ସ୍ତ୍ରୀ ପୁତ୍ରଙ୍କ ବିୟୋଗରେ ତୁମେ ଅଧୀର ହୁଅ କାହିଁକି ? ଦାରିଦ୍ର୍ୟଜର୍ଜ୍ଜରିତ ହୋଇ ଦୁଃଖିତ ହୁଅ କାହିଁକି ? କାମ, କ୍ରୋଧ, ପ୍ରଭୃତି ରିପୁବର୍ଗ ତୁମକୁ ଉତ୍ତେଜିତ କରୁଛନ୍ତି କିପରି ? ପ୍ରକୃତରେ ତୁମର ଭକ୍ତି ହୋଇ ନାହିଁ । ଭକ୍ତି ଆସିଥିଲେ ତୁମର ଏହିସବୁ ବୁଝିବାର ଶକ୍ତି ହୋଇଥାନ୍ତା । ଯେଉଁ ମଙ୍ଗଳମୟ ଈଶ୍ୱରଙ୍କର ମଙ୍ଗଳମୟ ନିୟମରେ ଏହି ବିଶ୍ୱସଂସାର ପରିଚାଳିତ, ସେଥିରେ ତୁମର ସୁଖ ବା ଦୁଃଖ କରିବାର କିଛି ନାହିଁ ।

## ଶକ୍ତି ସାଧନାଲବ୍ଧ

ତେଣୁ କହୁଛି, ଶକ୍ତି ଭିନ୍ନ ଭକ୍ତି ହେବ ନାହିଁ । ଶକ୍ତି ସାଧନାର ବସ୍ତୁ । ଭାବି ଦେଖ, ତୁମର କି ଶକ୍ତି ଅଛି ଯେ ତୁମେ ଭଗବାନଙ୍କର ଆରାଧନା କରିବ ? ତୁମର କ'ଣ ଚିତ୍ତ ସ୍ଥିର କରିବାର ଶକ୍ତି ଅଛି ? ସବୁ ପ୍ରକାର ବିପଦ-ଆପଦ

ଅଗ୍ରାହ୍ୟ କରିବାର ଶକ୍ତି କ'ଣ ତୁମର ଅଛି ? ବିଳାସ, ସମ୍ଭୋଗ ଓ ସ୍ତ୍ରୀ-ପୁତ୍ରଙ୍କର ମାୟା ଛିନ୍ନ କରିବାର ଶକ୍ତି କ'ଣ ତୁମର ଅଛି ? ଏସବୁ ତ ତୁମର କିଛି ନାହିଁ, ତେବେ ତୁମେ ଭଗବାନଙ୍କ ଆରାଧନା କରିବ କିପରି ? ତୁମର ଶକ୍ତି ପ୍ରୟୋଜନ, ତେଣୁ ତୁମେ ସାଧୁ ନୁହଁ, ସାଧକ ମାତ୍ର । ଶକ୍ତି ତୁମର ସାଧ୍ୟ ।

ଶକ୍ତିର ସାଧନା କରିବାକୁ ହୁଏ । ଶକ୍ତି ଭିନ୍ନ ଆଉ କାହାରି ସାଧନା ହୋଇପାରେ ନାହିଁ । ଯୁଗଯୁଗାନ୍ତରରୁ ମହାପୁରୁଷମାନେ କହି ଆସୁଛନ୍ତି, ତୁମେ ସେହି ଭଗବାନ । ତାହା ଯଦି ସତ୍ୟ, ତେବେ ଆମେ ତାହା ବୁଝିପାରୁ ନାହୁଁ କାହିଁକି ? ଆମ ଇଚ୍ଛାରେ ଅଘଟନ ଘଟୁ ନାହିଁ କାହିଁକି ? ବର୍ତ୍ତମାନ ମଧ୍ୟ ସାଧକମାନେ ଅମାନୁଷିକ ଶକ୍ତି ଲାଭ କରୁଛନ୍ତି । ଶକ୍ତିସାଧନାରେ ସିଦ୍ଧ ହେଲେ ମାନବ-ଜୀବନର ଚରମ ଉଦ୍ଦେଶ୍ୟ ସଫଳ ହୁଏ, ମନୁଷ୍ୟ ବ୍ରହ୍ମଙ୍କ ସହିତ ଏକ ହୋଇଯାଏ; ସୁତରାଂ, ଏକମାତ୍ର ଶକ୍ତି ଭିନ୍ନ ଜଗତରେ କାହାର ସାଧନ ହୁଏ ନାହିଁ ।

ଏ ଜଗତ ଯଦି ଶିବ-ଶକ୍ତିମୟ ହୁଏ ଏବଂ ଏ ବିଶ୍ୱବ୍ରହ୍ମାଣ୍ଡ ଯଦି ଚଞ୍ଚଳା ଶକ୍ତିର ବିକାଶ ଓ ମାୟା ହୋଇଥାଏ, ତେବେ ସେହି ଶକ୍ତିଙ୍କୁ ଆୟତ୍ତାଧୀନ କରି ନ ପାରିଲେ ଭିନ୍ନ ପନ୍ଥାରେ ମୁକ୍ତି ଲାଭ ହେବ ନାହିଁ । ଶକ୍ତିଙ୍କୁ ଆୟତ୍ତାଧୀନ କରିବାର ନାମ ସାଧନା ।

## ଶକ୍ତି-ପରିଚୟ

ଏହି ମହାଶକ୍ତି ନିତ୍ୟ, ଜନ୍ମମୃତ୍ୟୁବିରହିତ, ଜଗତର ଆଦିକାରଣ । ଏହାଙ୍କଠାରୁ ଏହି ଜଗତ ବିସ୍ତାରିତ ହୋଇଅଛି । ଯେଉଁ ଅନାଦି ମୂଳଶକ୍ତିରୁ ଏହି ନିଖିଳ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟ ହୋଇଅଛି, ବିଜ୍ଞାନ ତାହାର ଅସ୍ତିତ୍ୱ ଅସ୍ୱୀକାର କରିପାରୁ ନାହିଁ । ଏହି ନିଖିଳ ଜଗତ ମୂଳରେ ଯେ ଅନିର୍ବଚନୀୟ, ଅଚିନ୍ତ୍ୟ, ଅନନ୍ତ, ଅଜ୍ଞେୟ ଏକ ମହାଶକ୍ତି ବିରାଜିତ, ତାହା ପାଶ୍ଚାତ୍ୟ ପଣ୍ଡିତବର୍ଗ ମଧ୍ୟ ସ୍ୱୀକାର କରିଛନ୍ତି । ତେବେ ସେମାନେ ଏହି ମହାଶକ୍ତିଙ୍କର ଅସ୍ତିତ୍ୱ ମାତ୍ର ଅବଗତ ଅଛନ୍ତି; କିନ୍ତୁ ଆର୍ଯ୍ୟମାନେ ଜ୍ଞାନ ଓ ଭକ୍ତିର ସରଳ ମାର୍ଗରେ ଗମନ କରି, ଏହି ମହାଶକ୍ତିଙ୍କର ଦର୍ଶନ ମଧ୍ୟ ପାଇଥିଲେ । ତେଣୁ ଶକ୍ତି ଉପାସନା ଅବୈଜ୍ଞାନିକ ନୁହେଁ । ଆର୍ଯ୍ୟ ଜାତିର ନିଗୂଢ଼ ଜ୍ଞାନୋନ୍ନତି ସମୟରେ ଶକ୍ତି ଉପାସନା ପ୍ରତିଷ୍ଠିତ ହୋଇଅଛି ।

ବେଦାନ୍ତବାଦୀମାନେ ଏହି ମହାଶକ୍ତିଙ୍କ ଉପରେ ଚିନ୍ମୟ ପଦାର୍ଥକୁ ଦ୍ରଷ୍ଟା ଓ ତାଙ୍କ ଆଶ୍ରୟରେ ଦୃଶ୍ୟ ଭାବରେ ବିଶ୍ୱବ୍ରହ୍ମାଣ୍ଡର ଅନନ୍ତ ଶକ୍ତିର କେନ୍ଦ୍ରୀଭୂତ ପଦାର୍ଥକୁ ରଖି ବିଶ୍ୱଲୀଳାର ସୁନ୍ଦର ମୀମାଂସା କରିଛନ୍ତି । ସାଂଖ୍ୟକାର ମଧ୍ୟ ଏହି ଉର୍ଦ୍ଧ୍ୱତନ ପଦାର୍ଥକୁ ପୁରୁଷ ଓ ଅଧସ୍ତନ ପଦାର୍ଥକୁ ପ୍ରକୃତି ବୋଲି ଆଖ୍ୟା ଦେଇଛନ୍ତି ।

ପ୍ରଳୟକାଳରେ ଏହି ବିଶ୍ୱବ୍ରହ୍ମାଣ୍ଡ ଯେତେବେଳେ କାରଣାର୍ଣ୍ଣବରେ ପ୍ଲାବିତ ଥିଲା, ଭଗବାନ ସକଳ ପଦାର୍ଥର କର୍ମବୀଜ ନିଜ ଅଙ୍ଗରେ ସଂହୃତ କରି ସେହି କାରଣବାରିଧିରେ ଶାୟିତ ଥିଲେ । ସୃଷ୍ଟି ଆରମ୍ଭରେ ପୁରୁଷଙ୍କର ତେଜ ଯେତେବେଳେ ମୂଳା ପ୍ରକୃତିରେ ସଂକ୍ରମିତ ହେଲା, ସେତେବେଳେ ଗୁଣର କ୍ରିୟା ଆରମ୍ଭ ହୋଇ ବିବର୍ତ୍ତିତ ଅବସ୍ଥାରୁ ଅବସ୍ଥାନ୍ତରକୁ ଗମନ କଲା । ଈଶ୍ୱରଙ୍କ ବାସନା ଚୈତନ୍ୟ ମିଶ୍ରଣରେ ଯେଉଁ ଭାବରେ କ୍ରିୟଶୀଳ ହୁଏ; ସେହି ଭାବକୁ ଶକ୍ତି କୁହାଯାଏ । ସୁତରାଂ, ମୂଳା ପ୍ରକୃତି ହିଁ ଆଦ୍ୟାଶକ୍ତି ।

ଏହି ମୂଳା ପ୍ରକୃତିଙ୍କ ଠାରୁ ସତ୍ତ୍ୱ, ରଜଃ ଓ ତମଃ ଗୁଣର ଉତ୍ପତ୍ତି ହେଲା । ଏହି ଗୁଣତ୍ରୟଙ୍କର ଦେବତା ବ୍ରହ୍ମା, ବିଷ୍ଣୁ ଓ ଶିବ । ଗୋଟିଏ କଥାରେ, ପ୍ରକଟ ଈଶ୍ୱରଙ୍କର ତିନିଗୋଟି ଗୁଣବିଭାବ ହିଁ ବ୍ରହ୍ମା, ବିଷ୍ଣୁ ଓ ଶିବ ନାମରେ ଖ୍ୟାତ । ଈଶ୍ୱରଙ୍କୁ ଜାଣିବାକୁ ହେଲେ ଏହି ଦେବତାତ୍ରୟଙ୍କୁ ଜାଣିବାକୁ ହେବ । ସୁତରାଂ, ମହାଶକ୍ତି ସଗୁଣ ଅବସ୍ଥାରେ ସତ୍ତ୍ୱ, ରଜଃ ଓ ତମୋମୟୀ ।

ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରବୃତ୍ତି ମାର୍ଗର ପଞ୍ଚଉପାସକଗଣ ମହାଶକ୍ତିଙ୍କର ଦେବୀମୂର୍ତ୍ତିଙ୍କର ଉପାସନା କରିଥାନ୍ତି । ମହାଶକ୍ତିଙ୍କ ଆରାଧନାରେ ସାଧକ ଶୀଘ୍ର ସିଦ୍ଧି ଲାଭ କରିପାରନ୍ତି; କାରଣ, ଶକ୍ତି ଆମମାନଙ୍କର ସର୍ବାଙ୍ଗରେ ଜଡ଼ିତ । ସେଥିପାଇଁ ତନ୍ତ୍ରଶାସ୍ତ୍ର ଭଗବାନଙ୍କୁ ଶକ୍ତିମାନ ଭାବରେ ବର୍ଣ୍ଣନା ନ କରି ଶକ୍ତିମୟୀ ରୂପରେ ପ୍ରକଟିତ କରିଛନ୍ତି ।

## ଗାୟତ୍ରୀ ଶକ୍ତିସମନ୍ୱୟ

ପରମତତ୍ତ୍ୱ ପରମାତ୍ମା ସୃଷ୍ଟି ଇଚ୍ଛା କଲାମାତ୍ରେ ସେହି ନିର୍ଗୁଣ ସତ୍ତା ସଗୁଣ ହେଲେ; ସେହି ବାସନା ହେଲା ଜୀବସୃଷ୍ଟିର କାରଣ । ପୁଷ୍ପରୁ ଯେପରି ଫଳ ହୁଏ, ସେହିପରି ନିର୍ଗୁଣ ବ୍ରହ୍ମରୁ ଈଶ୍ୱର ହେଲେ; ସେହି ବାସନା ଜୀବର ଆଦିକାରଣଭୂତା ହେଲା । ଏହାକୁ ପ୍ରକୃତି ଓ ପୁରୁଷ କୁହାଯାଏ । ପ୍ରକୃତି ଜଗତର ଉପାଦାନ ଓ ପୁରୁଷ ନିମିତ୍ତ-କାରଣ । ପ୍ରକୃତି ଦ୍ୱିବିଧା—ପରା ଓ ଅପରା । ବ୍ରହ୍ମଙ୍କ ସୃଷ୍ଟି-

ବାସନା ପରାପ୍ରକୃତି । ପରାପୁରୁଷ କ୍ଷୋଭିତ ହେଲାକ୍ଷଣି ସତ୍ତ୍ୱ, ରଜଃ, ତମଃ— ଏହି ତ୍ରିବିଧ ଗୁଣର ଅଭିବ୍ୟକ୍ତ ହେଲା । ସେହି ତ୍ରିଗୁଣରୁ କ୍ରିୟାଶକ୍ତି ଉତ୍ପନ୍ନ ହେଲା । ଏହି କ୍ରିୟାଶକ୍ତିକୁ ଅପରା ପ୍ରକୃତି କୁହାଯାଏ । ଜୀବଜଗତର ସୃଷ୍ଟି କାର୍ଯ୍ୟରେ ଦାର୍ଶନିକମାନେ କେତେଗୋଟି କଥା ଅନୁମାନ କରିଯାଇଛନ୍ତି । ତାହାହେଲା ପରା ପ୍ରକୃତି, ଅପରା ପ୍ରକୃତି ଓ ବିନ୍ଦୁ । ବିନ୍ଦୁ ଶବ୍ଦବ୍ରହ୍ମଙ୍କର ଅବ୍ୟକ୍ତ ତ୍ରିଗୁଣ ଓ ଚିଦଂବୀଜ । ଏହି ବିନ୍ଦୁ ହିଁ ଶକ୍ତିତତ୍ତ୍ୱ । ଏହି ଶକ୍ତିତତ୍ତ୍ୱରୁ ଜଗତ୍‌ର ସୃଷ୍ଟି । ପ୍ରକୃତି, ମାୟା, ଅବିଦ୍ୟା ପ୍ରଭୃତି ଯେତେ ନାମରେ ମହାଶକ୍ତିଙ୍କୁ ଅଭିବ୍ୟକ୍ତ କରାଯାଇଅଛି, ସେଥିରେ ଜୀବ ଜାତ, ବର୍ଦ୍ଧିତ ଓ ସଂସ୍ଥିତ ।

ସଗୁଣ ବ୍ରହ୍ମ ତ୍ରିଗୁଣର ତ୍ରିଶକ୍ତିଧାରୀ । ଏହି ତିନି ଶକ୍ତିକୁ ଈଶ୍ୱର ବଶୀଭୂତ କରି ବ୍ରହ୍ମା, ବିଷ୍ଣୁ, ଶିବ ରୂପରେ ଜୀବ-ଜଗତ୍‌ର ସୃଜନ, ପାଳନ ଓ ଲୟ କରିଥାନ୍ତି । ବ୍ରହ୍ମାଙ୍କ ସୃଷ୍ଟିକାରିଣୀ ଶକ୍ତିର ନାମ ସରସ୍ୱତୀ, ବିଷ୍ଣୁଙ୍କର ପାଳନକାରିଣୀ ଶକ୍ତିଙ୍କର ନାମ ଲକ୍ଷ୍ମୀ, ଶିବଙ୍କର ଲୟକାରିଣୀ ଶକ୍ତିଙ୍କର ନାମ କାଳୀ । ତ୍ରିଶକ୍ତି ଅଭିନ୍ନ । ପ୍ରାଣ ଓ ଦେହ ମଧ୍ୟରେ ଯେପରି ସମ୍ବନ୍ଧ, ଶକ୍ତି ଓ ଶକ୍ତିମାନଙ୍କ ଭିତରେ ସେହିପରି ସମ୍ବନ୍ଧ । ତ୍ରିଶକ୍ତିର ସମନ୍ୱୟଭାବ ହିଁ ଗାୟତ୍ରୀଶକ୍ତି; ସୁତରାଂ ଗାୟତ୍ରୀ ଉପାସନା ଦ୍ୱାର ସଗୁଣ ବ୍ରହ୍ମଙ୍କର ଉପାସନା ହୋଇଥାଏ ।

ବ୍ରହ୍ମ ସଗୁଣ ବା ପ୍ରକଟ ହେଲାକ୍ଷଣି ଈଶ୍ୱର ବା ପୁରୁଷ । ସେହି ଇଚ୍ଛାଶକ୍ତି ହିଁ ପ୍ରକୃତି ବା ମହାମାୟା । ଏହି ମହାଶକ୍ତି କି ପ୍ରକାର, ସେହି ସ୍ୱରୂପତତ୍ତ୍ୱ ଜାଣିବାର ଶକ୍ତି ସାଧାରଣଙ୍କର ନାହିଁ । ଜଡ଼ଶକ୍ତି-ବିଜ୍ଞାନରେ ଯେତେ ପାଣ୍ଡିତ୍ୟ ଥିଲେ ସୁଦ୍ଧା ଜଡ଼ାତୀତ ଜ୍ଞାନଶକ୍ତିର ବିଶେଷ ଉନ୍ନତି ନ ହେଲେ କେହି ଏ ତତ୍ତ୍ୱ ଅବଗତ ହୋଇପାରନ୍ତି ନାହିଁ । ଏହି ମହତୀ ମାୟା ଶକ୍ତିକୁ ଜାଣିବା ସାଧକଙ୍କର ପ୍ରଧାନ କର୍ତ୍ତବ୍ୟ । ଯେ ଏହି ମହାଶକ୍ତିକୁ ଜାଣିପାରନ୍ତି, ସେ ମୃତ୍ୟୁ ଜୟ କରି ପରଲୋକରେ ଅମରତ୍ୱ ଲାଭ କରନ୍ତି ।

## ମୂଳା ପ୍ରକୃତି

ମୂଳା ପ୍ରକୃତି ଅବ୍ୟକ୍ତ ଓ ସୂକ୍ଷ୍ମାତିସୂକ୍ଷ୍ମ ମହାଶକ୍ତି । ମନୁଷ୍ୟ ନିକଟରେ ତାହା ସଂପୂର୍ଣ୍ଣ ଅବ୍ୟକ୍ତ । ସ୍ତ୍ରୀ-ଅଣୁ ଯେପରି ପୁଂ-ଅଣୁ ସଂଯୋଗରେ ପରିଣାମ ପ୍ରାପ୍ତ ହୁଏ, ସେହିପରି ଶକ୍ତି ପୁରୁଷ ସଂଯୋଗରେ ପରିଣାମ ପ୍ରାପ୍ତ ଓ କ୍ରମବିବର୍ତ୍ତିତ ହୋଇ ସ୍ଥୁଳା ପ୍ରକୃତିରେ ପରିଣତ ହୁଅନ୍ତି । ଜଡ଼ପଦାର୍ଥର ପରମାଣୁପୁଞ୍ଜ ଯେଉଁପରି

ଭାବରେ ଜଡ଼ଶକ୍ତି ସଂଯୋଗରେ କ୍ଷୋଭିତ ଓ ପରିଣତ ହୁଏ, ମହାଶକ୍ତି ସେହିଭଳି ପୁରୁଷ ସଂଯୋଗରେ କ୍ଷୋଭିତ ହୋଇ ବୈଷମ୍ୟ ପ୍ରାପ୍ତ ହୁଅନ୍ତି ।

ଉପାଦାନ-କାରଣ ବା ମୂଳା ପ୍ରକୃତି କ୍ରମେ ଚତୁର୍ବିଂଶତି-ତତ୍ତ୍ୱରେ ପରିଣତ ହୋଇ ଅନନ୍ତ ବିକାରର ଖେଳା ଖେଳନ୍ତି । ନିମିତ୍ତ କାରଣ ବା ପୁରୁଷ ନିର୍ଗୁଣ । ସେ ସର୍ବଦା ଏକ ଭାବରେ ରହନ୍ତି ଓ ଏକ ଭାବରେ ରହିବେ । ପ୍ରକୃତି ସହିତ ଓତପ୍ରୋତ ଭାବରେ ଅଧିଷ୍ଠିତ ଥାଇ ସୁଦ୍ଧା ସେ ନିର୍ବିକାର, ନିର୍ଲିପ୍ତ ଓ ସାକ୍ଷୀସ୍ୱରୂପ । ବ୍ୟଷ୍ଟିଭାବରେ ଚୈତନ୍ୟ ଅନନ୍ତ ବିକାରର ଅଧିଷ୍ଠାତା, ପୁଣି ସମଷ୍ଟିଭାବରେ ସାକ୍ଷୀ ରୂପରେ ସେ ସମସ୍ତ ଉପଭୋଗ କରନ୍ତି । ବ୍ୟଷ୍ଟି-ଚୈତନ୍ୟ ନିର୍ବିକାର, ତଥାପି ପ୍ରକୃତିର ବିକାର ଅନୁଯାୟୀ ସେ ନିଜକୁ ବିକାରଗ୍ରସ୍ତ ଜ୍ଞାନ କରନ୍ତି । ଏହିଠାରେ ଭୁଲ୍ ହୁଏ; ଏହି ଭୁଲ ଭାଙ୍ଗିବା ପାଇଁ ଜ୍ଞାନସାଧନା ଆବଶ୍ୟକ ।

ପ୍ରକୃତି କାହାକୁ ହେଲେ ସ୍ଥିର ରଖିଦିଅନ୍ତି ନାହିଁ । ଆଘାତ କରି ଚେତନା ଜାଗ୍ରତ କରିବାର ଚେଷ୍ଟା ତାଙ୍କର ସର୍ବତ୍ର ବିଦ୍ୟମାନ । ସବୁ ସ୍ଥାନରେ ଚୈତନ୍ୟ ସମଭାବରେ ବିରାଜିତ ସତ୍ୟ; କିନ୍ତୁ ତାଙ୍କ ପ୍ରକାଶରେ ତାରତମ୍ୟ ଅଛି । ଆଘାତବଳରେ ଚୈତନ୍ୟଙ୍କର କ୍ରମବିକାଶ ସଂଘଟନ ପ୍ରକୃତିର ଚେଷ୍ଟା । ତେଣୁ ସେ ପାଷାଣ ଉପରେ ସୁଦ୍ଧା ବଜ୍ରାଘାତ କରନ୍ତି । ତଦ୍ଦ୍ୱାରା କ୍ଷଣକ ପାଇଁ ହେଲେ ମଧ ତାର ଚେତନାର ସ୍ଫୁରଣ କରିଦିଅନ୍ତି । ଏହିଭାବରେ କ୍ଷୁଦ୍ର ଧୂଳିକଣାଠାରୁ ସର୍ବଶ୍ରେଷ୍ଠ ଜୀବପର୍ଯ୍ୟନ୍ତ ସମସ୍ତଙ୍କୁ ସେ ଉନ୍ନତି ପଥରେ ଆକର୍ଷଣ କରିନେଉଛନ୍ତି । ଗୋଟିଏ ଧୂଳିକଣା ମଧ ପ୍ରକୃତି ତାଡ଼ନାରେ ଦିନେ ପୂର୍ଣ୍ଣଜ୍ଞାନରେ ପ୍ରତିଷ୍ଠିତ ହୋଇପାରେ ।

## ମାତୃ-ଆରାଧନା

ମନୁଷ୍ୟ ଯେତେ ପ୍ରକାର ଶକ୍ତି ଧରି କାରବାର କରେ ସେ ସମସ୍ତ ଦୈବୀଶକ୍ତି; ମନୁଷ୍ୟ ତାହାର କେନ୍ଦ୍ରସଦୃଶ । ଜଗତ୍‌ର ସମୁଦାୟ ଶକ୍ତିକୁ ମନୁଷ୍ୟ ନିଜ ଆଡ଼କୁ ଆକର୍ଷଣ କରିନେଉଛି । ଆତ୍ମଚୈତନ୍ୟ ପୁରୁଷ ହିଁ କେନ୍ଦ୍ର । ଏହି କେନ୍ଦ୍ରରେ ଶକ୍ତି ଏକତ୍ରିତ ହେଉଅଛି ଏବଂ ଖୁବ୍ ପ୍ରବଳ ଭାବରେ ତରଙ୍ଗାକାରରେ ବିଭିନ୍ନ ଶକ୍ତିଙ୍କୁ ବାହାରେ ନିକ୍ଷେପ କରୁଅଛି । ଯେ ଏପରି କରିପାରନ୍ତି, ସେ ପ୍ରକୃତ ମନୁଷ୍ୟ । ଶକ୍ତିଙ୍କୁ ସ୍ୱବଶରେ ରଖିବା, ଶକ୍ତିଙ୍କ ଦ୍ୱାରା ଇଚ୍ଛାନୁରୂପ କାର୍ଯ୍ୟ କରାଇନେବା ନିମିତ୍ତ ହିନ୍ଦୁମାନଙ୍କର ଦେବତା-ଆରାଧନା ।

ମହାଶକ୍ତିଙ୍କୁ ମା କୁହାଯାଏ। ସେ ଅନନ୍ତ କୋଟି ଜୀବ-ଜଗତ୍ ସୃଷ୍ଟି କରି ସାକ୍ଷୀଭାବରେ ତାହା ଉପଲବ୍ଧି କରନ୍ତି; କିନ୍ତୁ କେବଳ ସୃଷ୍ଟ ବସ୍ତୁରେ ସେ କେବେ ହେଲେ ତୃପ୍ତ ହୋଇପାରନ୍ତି ନାହିଁ। ତେଣୁ ନିର୍ଗୁଣଚେତା ଶିବଙ୍କର ସେ ଅନୁରାଗିଣୀ। ଏହା ହିଁ ଜଗତ୍-ରହସ୍ୟ। ଏହି ଶିବ ଜଗତ୍‌ର ଗୁରୁ। ବ୍ରହ୍ମାଣ୍ଡରେ ପୁରୁଷ ଓ ନାରୀ ରୂପରେ ମା ବିକଶିତ ହୋଇ ରହିଛନ୍ତି। ମହାନିର୍ବାଣ-ତନ୍ତ୍ରର କାଳୀ ଚୈତନ୍ୟମୟୀ, ନିର୍ଗୁଣା, ସାକ୍ଷୀସ୍ୱରୂପିଣୀ। ପୁଣି ମହାକାଳ ଜୀବସମଷ୍ଟି ମୋହମଦ ପାନ କରି ନୃତ୍ୟପରାୟଣ।

କାଳୀ ନଗ୍ନ କାହିଁକି ? ତାଙ୍କୁ ବସ୍ତ୍ର ପରିଧାନ କରିବାକୁ ହେଲେ ତାଙ୍କଠାରୁ ଅତିରିକ୍ତ କିଛି ନେଇ ଆଚ୍ଛାଦନ କରିବାକୁ ହେବ। ଅତିରିକ୍ତ କିଛି ଯେ ସେ ନିଜେ! ସୁତରାଂ, କାଳୀ ନଗ୍ନା। ସେ କଳା କାହିଁକି ? ପ୍ରଳୟରେ ସବୁ ତାଙ୍କରିଠାରେ ଲୟ ହୁଏ। ତେଣୁ ସେ କଳା। କଳାରେ ଆଉସବୁ ରଙ୍ଗ ଲୟ ହୁଏ। କାଳୀ, ତାରା ପ୍ରଭୃତି ତତ୍ତ୍ୱମୟୀ ଅର୍ଥାତ୍ ଜ୍ଞାନମୟୀ ମୂର୍ତ୍ତି; ରାଧାକୃଷ୍ଣ ପ୍ରଭୃତି ଭାବମୟୀ ଅର୍ଥାତ୍ ମନୋମୟୀ ମୂର୍ତ୍ତି।

ରାଧାକୃଷ୍ଣ, ଦକ୍ଷିଣ କାଳିକା, ଏମାନେ ସମ୍ଭୋଗମୟୀ ଭେଦମୂର୍ତ୍ତି; ଶ୍ରୀଗୌରାଙ୍ଗଦେବ ଅର୍ଦ୍ଧନାରୀଶ୍ୱର। ଏ ସମସ୍ତ ବିପ୍ରଲମ୍ଭ ଭାବ, ଅଭେଦ ମୂର୍ତ୍ତି। ଏହି ଭେଦାଭେଦ ହିଁ ଜଗତ୍‌ର ମୂଳ ରହସ୍ୟ। ସ୍ଥୂଳରୂପ ଗ୍ରହଣ କଲେ ପ୍ରକୃତ ଗ୍ରହଣ କରିବା ହୁଏ ନାହିଁ; ତତ୍ତ୍ୱଭାବ ଗ୍ରହଣ କରିବାକୁ ହେବ। ସହସ୍ରାରରେ ଶିବଙ୍କ ସହିତ କୁଣ୍ଡଳିନୀ ଶକ୍ତିଙ୍କର ମିଳନ। ପୁଣି ସମ୍ଭୋଗାବସ୍ଥାରେ ଥାଇ ସୁଦ୍ଧା ମାତୃଭାବ ଅକ୍ଷୁଣ୍ଣ ରଖିବା ଏବଂ ଚିତ୍ତର ଚାଞ୍ଚଲ୍ୟ ପରିହାର କରିବା ଉଦ୍ଦେଶ୍ୟରେ ତାଙ୍କର ସ୍ଥିରଭାବ ଅବଲମ୍ବନ। ଏହା ନ ହେଲେ ସାଧନ ପଥରେ ଅଗ୍ରସର ହେବା କଠିନ।

ଭଗବାନଙ୍କୁ ମାତୃ ଭାବରେ ଭଜନ କରାଯାଇପାରେ। ମା ସଗୁଣ ବ୍ରହ୍ମ। ମାତୃଭାବର ଅର୍ଥ, ଗୋଟିଏ ସ୍ତ୍ରୀମୂର୍ତ୍ତି ଚିନ୍ତା କରିବା ନୁହେଁ। ସନ୍ତାନ, ମା ଠାରେ ଯେପରି ସ୍ନେହ, ଅଳି ସବୁ କରିପାରେ, ଭଗବାନଙ୍କଠାରେ ସେହିଭଳି ସ୍ନେହ, ଅଳି କରିବା ହିଁ ମାତୃଭାବରେ ଆରାଧନା। ଭଗବାନଙ୍କଠାରେ ସେହିପରି ବ୍ୟବହାର କରିପାରିଲେ ମାତୃ-ସାଧନା ହେବ। କେବଳ ଗୋଟିଏ ସ୍ତ୍ରୀମୂର୍ତ୍ତି ଚିନ୍ତା କଲେ କିଛି ଫଳ ନାହିଁ।

ମା କେବଳ ମା । ତାଙ୍କ ନିକଟରେ ଯୋଗ, ଜପ କିଛି ନାହିଁ । ପାରିଲେ ତାଙ୍କୁ ସ୍ନେହ କର, ତାଙ୍କ ନିକଟରେ ଅଳି କର । ତାଙ୍କ ଇଚ୍ଛାରେ ତୁମ ଇଚ୍ଛା ମିଶାଇଦେଇ ତାଙ୍କ ଉପରେ ନିର୍ଭର କର । ଏହା ଶ୍ରେଷ୍ଠ ସାଧନା ।

ସମସ୍ତ ନାରୀ-ଦେହ ଜଗଜ୍ଜନନୀଙ୍କ ଆଧାର । ଆଧାରକୁ କେବେହେଲେ ପ୍ରେମ କରିବାକୁ ହେବ ନାହିଁ । କେନ୍ଦ୍ରୀଭୂତ ସମଷ୍ଟି ମା'ଙ୍କର କୃପା ପାଇଲେ ବ୍ୟଷ୍ଟି ଆଧାରରେ ମଧ୍ୟ ତାଙ୍କ କୃପା ଓ ଆନନ୍ଦର ଅନୁଭୂତି ହେବ; କିନ୍ତୁ ବ୍ୟକ୍ତିଭିତରେ ସେହି ସମଷ୍ଟିକୁ ହିଁ ଦେଖିବାକୁ ହେବ ।

ମାତୃଭାବର ଉପାସନା ଦାସ୍ୟଭାବର ଉପାସନାସଦୃଶ । ମା'ଙ୍କଠାରେ କେବଳ ଅଳି କରାଯାଏ ଏବଂ ତାଙ୍କଠାରୁ ଗ୍ରହଣ କରାଯାଏ । ସ୍ତ୍ରୀଭାବ—ସଖ୍ୟଭାବ, ବିନିମୟର ଭାବ । ମୁଁ ତାଙ୍କୁ କିଛି ଦେଉଛି, ସେ ମୋତେ କିଛି ଦେଉଛନ୍ତି । କିଛି ପ୍ରାପ୍ତ ହେବା ଆଶା ଏଠାରେ ପୋଷଣ କରାଯାଏ । କନ୍ୟାଭାବ—ବାତ୍ସଲ୍ୟଭାବ । ମୁଁ ତାଙ୍କଠାରୁ କିଛି ଲୋଡୁ ନାହିଁ, କିନ୍ତୁ ତାଙ୍କ କଲ୍ୟାଣ ପାଇଁ ସର୍ବଦା ମୁଁ ବ୍ୟସ୍ତ । ଜଗତ୍‌ର ସ୍ତ୍ରୀମାନଙ୍କୁ ଏହିପରି କନ୍ୟାଭାବରେ ଯେ ଦେଖିପାରନ୍ତି, ସେ ନିଶ୍ଚୟ ଶ୍ରେଷ୍ଠ ସାଧକ ।

ଅସୁରଙ୍କ ନିକଟରେ ମା କାଳୀ କରାଳବଦନା; କିନ୍ତ ସନ୍ତାନ ନିକଟରେ ସେ ବରାଭୟଦାୟିନୀ, ଶାନ୍ତିଦାୟିନୀ ଜନନୀମୂର୍ତ୍ତି । ବାଘୁଣୀ ଅନ୍ୟ ନିକଟରେ ଯେତେ ହିଂସ୍ର ହେଉ ପଛକେ ନିଜ ଶାବକ ନିକଟରେ ବାଘୁଣୀ ସ୍ନେହମୟୀ ଜନନୀ ।

ମା ଅଛନ୍ତି, ପୁଣି ତାଙ୍କୁ ଡାକିଲେ ପାଇପାରିବ । ଏ ଦୁଇକଥା ବିଶ୍ୱାସ କରିପାରିଲେ ହେଲା । ସେ ଅନନ୍ତ ଶକ୍ତିସ୍ୱରୂପିଣୀ । ନିରାକାର ହେଲେ ହେଁ ସେ ଭକ୍ତମାନଙ୍କୁ ମନୋମୟୀ ମୂର୍ତ୍ତିରେ ଦେଖାଦିଅନ୍ତି । ସମସ୍ତଙ୍କୁ ସେ ସମାନ କୃପା କରନ୍ତି । ତେବେ ଆଧାରଭେଦରେ ସେହି କୃପା ବିଭିନ୍ନ ବୋଲି ଲକ୍ଷିତ ହୁଏ । ଶୁଖିଲା କାଠରେ ଯେପରି ନିଆଁ ଲଗାଇଲେ ଜଳିଉଠେ, ସେହିପରି ସତ୍ତ୍ୱଶୁଦ୍ଧ ଭକ୍ତଙ୍କ ଭିତରେ ମା ସହଜରେ ଜାଗ୍ରତ ହୁଅନ୍ତି । କଞ୍ଚା କାଠରେ ନିଆଁ ଲଗାଇଲେ କ୍ରମେ ତା'ର ରସ ଶୁଖିଯାଏ, ତା'ପରେ ଯାଇ ସେ କାଠରେ ନିଆଁ ଲାଗେ । ବିଶ୍ୱାସ କରିପାରିଲେ ଅବଶ୍ୟ ଦିନେ ମାଆଙ୍କର କୃପା ଉପଲବ୍ଧ ହେବ । ମାଆଙ୍କର କୃପା ହେଲେ ମାଆଙ୍କୁ ପାଇବ, ନ ହେଲେ ସାଧନ-ଭଜନ ରୂପ କ୍ଷୁଦ୍ର ଶକ୍ତିଦ୍ୱାରା

କଣ ଅନନ୍ତ ଶକ୍ତିଙ୍କୁ କେହି ବଶ କରିପାରିବେ ? ଜୁଳୁଜୁଳିଆପୋକ କେବେ ହେଲେ ନିଜର ତେଜଦ୍ୱାରା କ'ଣ ସୂର୍ଯ୍ୟତେଜ ପ୍ରକାଶ କରିପାରେ ?

## ହରଗୌରୀ ଓ ରାଧାକୃଷ୍ଣ

ହରଗୌରୀ ଜ୍ଞାନମୟ ଭାବ, ରାଧାକୃଷ୍ଣ ଭାବମୟ ଭାବ। ହର ରାଧା, ଗୌରୀ କୃଷ୍ଣ। ହର ସମ୍ବୋଧନରେ ହରେ। ଶିବ ନିର୍ଗୁଣ, ଶକ୍ତି କର୍ମମୟୀ; ରାଧା ନିର୍ଗୁଣ, କୃଷ୍ଣ କର୍ମମୟ। ତେଣୁ ଶିବଙ୍କ ନିକଟରେ ଶକ୍ତି ଯୋଡ଼ହସ୍ତ, ଆଉ ରାଧାଙ୍କ ନିକଟରେ କୃଷ୍ଣ ଯୋଡ଼ହସ୍ତ। ରାଧା କେବଳ ପ୍ରେମମୟୀ, ଶକ୍ତିମୟୀ ନୁହନ୍ତି। ବୈଷ୍ଣବୀ ମାୟା ଲକ୍ଷ୍ମୀ ଓ ସରସ୍ୱତୀ ଯଥାକ୍ରମେ ବିକ୍ଷେପ ଶକ୍ତି ଓ ଆବରଣୀ ଶକ୍ତି। ବ୍ରହ୍ମା ଲୋକସୃଷ୍ଟିର କର୍ତ୍ତା, ଶିବ ମଙ୍ଗଳସ୍ୱରୂପ ଲୟକର୍ତ୍ତା। ମରଣରେ ହିଁ ମଙ୍ଗଳ। ମରଣକୋଳରେ ହିଁ ମା ବିଦ୍ୟମାନ।

ହର-ଗୌରୀଙ୍କ ଯୁଗଳ-ମିଳନ ଜ୍ଞାନର ସମନ୍ୱୟ। ଗୌରୀ ସଗୁଣ ମହାଶକ୍ତି। ହର ନିର୍ଗୁଣ ପ୍ରେମର ଭାବ। ହରଗୌରୀଭାବର ବେଦାନ୍ତ ସହିତ ସାମଞ୍ଜସ୍ୟ ଅଛି। ଏହି ଭାବ ଅନାଦିସିଦ୍ଧ। ତା'ପରେ ରାଧାକୃଷ୍ଣ। ସଚ୍ଚିଦାନନ୍ଦ ସ୍ୱରୂପିଣୀ ମା କୃଷ୍ଣ। ମା'ଙ୍କର ହ୍ଲାଦିନୀଶକ୍ତି ହିଁ ରାଧା। ଜ୍ଞାନ ସହିତ ବିଚାର କରି ଏସବୁ ମୂର୍ତ୍ତିର ଆରାଧନା କଲେ ଓ ଇଷ୍ଟମୂର୍ତ୍ତିରେ ଭାବର ମିଳନ କରାଇନେଲେ ଆଉ କୌଣସି ଭୟ ରହିବ ନାହିଁ। ତେଣୁ ମା ସଗୁଣ, ପିତା ନିର୍ଗୁଣ। ସଗୁଣ-ନିର୍ଗୁଣର ମିଳନାତ୍ମକ ଭାବ ହିଁ ବ୍ରହ୍ମ।

ଆଧ୍ୟାତ୍ମିକ ଜଗତରେ ମଧ୍ୟ ମା ପ୍ରଲୋଭନ ଦେଖାଇ ଭୁଲାଇ ରଖିବାକୁ ଇଚ୍ଛା କରନ୍ତି। ସେତେବେଳ ପିତା ନୀରବ ହୋଇ ରହନ୍ତି। ମାଙ୍କ ନିକଟରେ ଅଛି ବୋଲି ଭାବି ତ ସେ ତୂନୀ ହୁଅନ୍ତି; କିନ୍ତୁ ପିଲା ଯଦି ସେଇଥିରେ ହିଁ ଭୁଲି ରହିଯାଏ, ପିତା ପୁଣି ତାକୁ ଚେତାଇ ଦିଅନ୍ତି।

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସ୍ଥୁଳ, ସୂକ୍ଷ୍ମ ଓ କାରଣର ଅବସ୍ଥା। ମହାଶକ୍ତି ଏହି ଶକ୍ତିତ୍ରୟର ସମଷ୍ଟି। ଆଦ୍ୟାଶକ୍ତି ବ୍ରହ୍ମମୟୀ। ଆମେମାନେ ବ୍ରହ୍ମମୟୀଙ୍କ ସନ୍ତାନ, ସମସ୍ତେ ବ୍ରହ୍ମସ୍ୱରୂପ। ସମ୍ଭ୍ରାନ୍ତ ପରିବାରର ଦାସୀ ଯେପରି ପରିବାରର ବାଳକ-ବାଳିକାଙ୍କୁ ସଙ୍ଗରେ ଧରି ଖେଳାଏ, ପିଲା ଦୁଷ୍ଟାମି କଲେ ଧମକଚମକ ଦିଏ ଓ ଶାସନ କରେ, ଠିକ୍ ସେହିପରି ଆମେ ଅଜ୍ଞାନାଚ୍ଛନ୍ନ ଥିବାରୁ ସେହି ତ୍ରିଶକ୍ତି ଆମମାନଙ୍କୁ ନେଇ କ୍ରୀଡ଼ା କରନ୍ତି, ଧମକ ଦିଅନ୍ତି, ଶାସନ କରନ୍ତି। ପିଲା ବଡ଼ ହେଇଗଲେ କିମ୍ବା ମାଆଙ୍କ କୋଳରେ ଥିଲେ ଅଥବା ମାଆଙ୍କ ନିକଟରେ ଥିଲେ

ତା ଉପରେ ଦାସୀଙ୍କର ଯେପରି କୌଣସି ଅଧିକାର ଆଉ ଚଳେ ନାହିଁ, ସେହିପରି ଆମମାନଙ୍କର ଜ୍ଞାନ ହେଲେ କିମ୍ବା ମାଆଙ୍କର କୃପା ହେଲେ ସେହିସବୁ ଶକ୍ତି ଦାସୀପରି ଆମର ଆଜ୍ଞାଧୀନ ହୁଅନ୍ତି ।

## ପ୍ରକୃତି ବା ମାୟା

ଯେଉଁ ଶକ୍ତି ମାନବକୁ ବ୍ରହ୍ମଠାରୁ ବିନାଶ ଆଡ଼କୁ ନେଇଯାଏ, ତାହା ବହିରଙ୍ଗା ଶକ୍ତି ବା ମାୟା । ଆଉ ଯେଉଁ ଶକ୍ତି ବ୍ରହ୍ମଙ୍କ ଆଡ଼କୁ ଅର୍ଥାତ୍ ନିବୃତ୍ତି ଆଡ଼କୁ ନେଇଯାଏ, ତାହା ଅନ୍ତରଙ୍ଗା ଶକ୍ତି ବା ଯୋଗମାୟା । ଏହି ଦୁଇ ଶକ୍ତିର ଖେଳରେ ସୃଷ୍ଟି ଓ ପ୍ରଳୟ ସଂସାଧିତ ହେଉଅଛି । ଜୀବର ଶ୍ୱାସ-ପ୍ରଶ୍ୱାସ ମଧ୍ୟ ସେହି ଖେଳ । ଇଚ୍ଛାମୟୀ ମାଆଙ୍କର ଇଚ୍ଛା ବ୍ୟତୀତ ପଦେ ହେଲେ ଅଗ୍ରସର ହେବାର ସାଧ୍ୟ କାହାର ନାହିଁ ।

ମାୟାକୁ ଛାଡ଼ିଦେଲେ ଚଳିବ ନାହିଁ । ମାୟାକୁ ବୁଝିବାକୁ ହେବ । ଏହି ମାୟା ହିଁ ଶକ୍ତି । ଯେ ଏହି ମାୟାକୁ ଜାଣନ୍ତି,ସେ ବ୍ରହ୍ମ । ତୁମେ ମଧ୍ୟ ବ୍ରହ୍ମ; କିନ୍ତୁ ତୁମେ ମାୟା ବା ଗୁଣଦ୍ୱାରା ଆବୃତ ହୋଇ ରହିଛ । ଗୁଣକୁ ବୁଝିପାରିଲେ ତୁମେ ମଧ୍ୟ ସ୍ୱରୂପ ଲାଭ କରିପାରିବ । ସେତେବେଳେ ମାୟା ତୁମର କରାୟତ୍ତ ହୋଇଯିବ; ତୁମେ ବ୍ରହ୍ମାନନ୍ଦ ଲାଭ କରିବ । ଶକ୍ତିର ବିକାଶ ଦେଖିବାକୁ ଇଚ୍ଛା କଲେ, ଶବ ହୁଅ । ତେଣୁ ଶକ୍ତି ଶିବଙ୍କ ବକ୍ଷରେ ଦଣ୍ଡାୟମାନ ନୁହନ୍ତି; ସେ ଶବ ବକ୍ଷରେ ବିରାଜିତା ।

କାର୍ଯ୍ୟକ୍ଷେତ୍ରରେ ଶକ୍ତିଙ୍କର ବିକାଶ । କାୟମନୋବାକ୍ୟରେ କାର୍ଯ୍ୟ କରିଗଲେ ଆପେ ଆପେ ଶକ୍ତିର ବିକାଶ ହୋଇଥାଏ । ଶକ୍ତି ମୁଖରେ ନାହିଁ, ଶକ୍ତି ମନରେ । ପରାଶକ୍ତି ବ୍ୟତୀତ ତତ୍ତ୍ୱଜ୍ଞାନ ଲାଭ ହୁଏ ନାହିଁ । ପ୍ରକୃତିର ଅନୁକୂଳ ହୋଇ ଚଳିଲେ ଯେଉଁ ଜୀବ ତିନି ଜନ୍ମରେ ମୁକ୍ତ ହୁଅନ୍ତା, ନିଜ କର୍ମଦ୍ୱାରା ଏକ ଜନ୍ମରେ ସେ ତାର ବନ୍ଧନ ଛିଣ୍ଡାଇ ଦେଇପାରେ । ପୁଣି ଯାହାଙ୍କର ଗୋଟିଏ ଜନ୍ମରେ ମୁକ୍ତି ହେବାର ସମ୍ଭାବନା, ପ୍ରକୃତିର ପ୍ରତିକୂଳ ଅବସ୍ଥାରେ ଚଳିଲେ ତାଙ୍କର ସାତ ଜନ୍ମ ମଧ୍ୟ ଲାଗିଯାଇପାରେ ।

## ଆଧାର ଶକ୍ତି

ମୁମୁକ୍ଷୁ ବ୍ୟକ୍ତିମାନେ ସ୍ଥୂଳରୂପ ଅବଲମ୍ବନ କରି କ୍ରିୟାଯୋଗ ଓ ଧ୍ୟାନଯୋଗଦ୍ୱାରା ବିଧିବିଧାନରେ ସ୍ଥୂଳରୂପ ଅର୍ଚ୍ଚନା କରି କ୍ରମେ ସୂକ୍ଷ୍ମ ରୂପ ଅବଲୋକନ କରନ୍ତି । ଉପାସନା ନ କଲେ ମନୁଷ୍ୟ ସିଦ୍ଧି ଲାଭ କରିପାରେ ନାହିଁ ।

କିନ୍ତୁ ନିର୍ଗୁଣ ବ୍ରହ୍ମ ଶରୀର ରହିତ । ସୁତରାଂ, ତାଙ୍କର ଉପାସନା ହୋଇପାରେ ନାହିଁ । ତେଣୁ ଚିତ୍‌ସ୍ୱରୂପ ବ୍ରହ୍ମ ଉପାସକମାନଙ୍କର ଉପାସନାର ସୌକାର୍ଯ୍ୟ ନିମିତ୍ତ କାଳୀ, ଦୁର୍ଗା, ଅନ୍ନପୂର୍ଣ୍ଣା ପ୍ରଭୃତି ସ୍ତ୍ରୀରୂପ ଓ ଶିବ, ବିଷ୍ଣୁ ପ୍ରଭୃତି ପୁରୁଷରୂପ ପରିଗ୍ରହ କରିଛନ୍ତି । ଦେବୀଙ୍କ ଅନ୍ତଃକରଣ ଅତିଶୟ କୋମଳ; ସୁତରାଂ, ସାଧକଙ୍କ ଦୁର୍ଦ୍ଦଶା ଦେଖିଲେ ସେ ସହଜରେ ଦୟାପ୍ରବଣା ହୋଇଥାନ୍ତି । ଅନ୍ୟ ଦେବତାଙ୍କ ଉପାସକମାନଙ୍କ ମଧ୍ୟରୁ କେହି ବା ମୁକ୍ତି ଲାଭ କରନ୍ତି, କେହି ବା ଅତୁଳ ଭୋଗସୁଖ ପ୍ରାପ୍ତ ହୁଅନ୍ତି; କିନ୍ତୁ ଦେବୀ-ଉପାସକମାନଙ୍କର ଭୁକ୍ତି ଓ ମୁକ୍ତି ଉଭୟ ଲାଭ ହୁଏ । ଅତଏବ ସମସ୍ତେ ମହାଶକ୍ତିଙ୍କର ଆରାଧନା କରିବା କର୍ତ୍ତବ୍ୟ ।

ଧ୍ୟାନ-ଧାରଣା ଦ୍ୱାରା ଦେବୀଙ୍କର ଉତ୍କୃଷ୍ଟ ସୂକ୍ଷ୍ମରୂପ କେହି ବିଷୟୀଭୂତ କରିପାରନ୍ତି ନାହିଁ । କେବଳ ନିର୍ମଳଚେତା ଯୋଗୀମାନେ ନିର୍ବିକଳ୍ପ ସମାଧି ଯୋଗଦ୍ୱାରା ତାହା ଉପଲବ୍ଧି କରିଥାନ୍ତି ।

ମାୟାର ମିଥ୍ୟା ନୁହେଁ, ତାହାର କାର୍ଯ୍ୟ ମିଥ୍ୟା । ଉଦାହରଣ ସ୍ୱରୂପ, ରଜ୍ଜୁ ଦେଖି ସର୍ପଭ୍ରମ ହେଲା ଅର୍ଥାତ୍ ରଜ୍ଜୁ ସର୍ପ ନୁହେଁ, କିନ୍ତୁ ଭ୍ରମବଶରୁ ସର୍ପ ବୋଲି ପ୍ରତୀୟମାନ ହେଲା । ଏହାକୁ ମାୟାର କାର୍ଯ୍ୟ କୁହାଯାଏ । ଅନିତ୍ୟବସ୍ତୁକୁ ନିତ୍ୟ ବୋଲି, ମିଥ୍ୟାକୁ ସତ୍ୟ ବୋଲି ଭ୍ରମଧାରଣା ଜାତ କରାଇବା ମାୟାର କାର୍ଯ୍ୟ । ଜ୍ଞାନ ଲାଭ ହେଲେ ମାୟାର କାର୍ଯ୍ୟ ନଷ୍ଟ ହୋଇଯାଏ ।

ଯୋଗ, ଜ୍ଞାନ, ଭକ୍ତି ଯାହା କିଛି ଆଲୋଚନା କଲେ ମଧ୍ୟ ଭଗବତ୍ ଶକ୍ତି ଲାଭ ନ ହେଲେ ଜୀବର ନିଜ ଶକ୍ତିରେ କିଛି ସଫଳ ହେବ ନାହିଁ ।

ଗୀତା ଶ୍ରବଣ କରି ଅର୍ଜ୍ଜୁନଙ୍କର ପ୍ରକୃତ ଜ୍ଞାନ ଲାଭ ହୋଇ ନଥିଲା । ଶ୍ରୀକୃଷ୍ଣଙ୍କ ଅପ୍ରକଟପରେ ଅର୍ଜ୍ଜୁନଙ୍କର ପ୍ରକୃତ ଜ୍ଞାନୋଦୟ ହେଲା । ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କ ତିରୋଧାନ ପରେ ଗାଣ୍ଡୀବଧନୁରେ ଗୁଣ ସୁଦ୍ଧା ପ୍ରଦାନ କରିପାରିଲେ ନାହିଁ । ସେତେବେଳେ ସେ ବୁଝିପାରିଲେ ଯେ ସେ ଏତେ ଦିନଯାଏ ଯେଉଁ ଶକ୍ତିରେ ଶକ୍ତିମାନ୍ ଥିଲେ, ସେ ସମସ୍ତ ଶକ୍ତି ନିଜର ନୁହେଁ; ତାହାସବୁ ଭଗବାନ୍‌ଙ୍କ ଶକ୍ତି । ଯେଉଁ ଶକ୍ତି ବଳରେ ସେ ବିଶ୍ୱବିଜୟୀ ବୀର ଥିଲେ, ସେହି ଶକ୍ତି ତାଙ୍କୁ ଛାଡ଼ି ଚାଲିଯାଇଛି । ଶ୍ରୀକୃଷ୍ଣଙ୍କ ଶକ୍ତି ବିହୀନ ହୋଇ ଅର୍ଜ୍ଜୁନ ଶବସଦୃଶ ଶକ୍ତିହୀନ ହୋଇପଡ଼ିଲେ ।

ନିତ୍ୟଶୁଦ୍ଧ ବ୍ରହ୍ମ ଯାହାଦ୍ୱାରା ଆବରିତ ହୁଅନ୍ତି, ତାହାର ନାମ ମାୟା । ସେହି ବ୍ରହ୍ମଙ୍କର କୌଣସି ଅଂଶ ଆବୃତ ହେଲେ ତାହାର ନାମ ଅବିଦ୍ୟା । ଈଶ୍ୱର ମାୟାଦ୍ୱାରା ଆବରିତ ଏବଂ ଜୀବ ଅବିଦ୍ୟା ଦ୍ୱାରା ଆଚ୍ଛନ୍ନ । ବ୍ରହ୍ମଙ୍କର ଆଭାସ ଈଶ୍ୱର ଏବଂ ଈଶ୍ୱରଙ୍କ ପ୍ରତିବିମ୍ୱ ଜୀବ । ଯେପରି ସୂର୍ଯ୍ୟଙ୍କ କିରଣ ଦର୍ପଣରେ ପତିତ ହେଲେ ଦର୍ପଣରୁ ଆଉ ଗୋଟିଏ ପ୍ରତିବିମ୍ୱ କାନ୍ଥରେ ପଡ଼େ, ସେହିପରି ବ୍ରହ୍ମଙ୍କର ପ୍ରତିବିମ୍ୱ ମାୟାରେ ପତିତ ହେଲେ ତାଙ୍କ ନାମ ଈଶ୍ୱର ଏବଂ ସେହି ଈଶ୍ୱରଙ୍କ ପ୍ରତିବିମ୍ୱ ଅବିଦ୍ୟା ମାୟାରେ ପତିତ ହେଲେ ତାହା ଜୀବ ବୋଲି ଧରାଯାଏ । ଦର୍ପଣ ଉପରେ ସୂର୍ଯ୍ୟକିରଣ ପତିତ ହେଲେ ସେଥିରେ ସୂର୍ଯ୍ୟଙ୍କର ଉତ୍ତାପ ଥାଏ; କିନ୍ତୁ ତାଙ୍କ ପ୍ରତିବିମ୍ୱରେ ଉତ୍ତାପ ନଥିବାରୁ ଜୀବର ଐଶ୍ୱରିକ ଶକ୍ତିର ବିକାଶ ହୋଇପାରେ ନାହିଁ । ତେଣୁ ଜୀବ କେବେହେଲେ ଈଶ୍ୱରଙ୍କ ଶକ୍ତି ଲାଭ କରିପାରେ ନାହିଁ ।

ଈଶ୍ୱର, ଶକ୍ତି, ମାୟା, ଅବିଦ୍ୟା ଓ ପ୍ରକୃତି—ଏକ ଶକ୍ତିଙ୍କର କ୍ରିୟା । ଶକ୍ତିଙ୍କୁ ବିଭିନ୍ନ ଶାସ୍ତ୍ର, ବିଭିନ୍ନ ନାମରେ ନାମିତ କରିଛନ୍ତି । ସାଂଖ୍ୟ ଯାହାଙ୍କୁ ପ୍ରକୃତି କହନ୍ତି, ବେଦାନ୍ତରେ ତାହାଙ୍କ ନାମ ମାୟା । ପୁରାଣରେ ସେହି ଶକ୍ତିଙ୍କ ନାମ ଈଶ୍ୱର ।

ପ୍ରକୃତି ବଶୀଭୂତ କରିବା ଅର୍ଥ ପ୍ରକୃତିଦ୍ୱାରା ଇଚ୍ଛାଅନୁସାରେ କାର୍ଯ୍ୟ କରାଇନେବା, ପ୍ରକୃତିର ଦାସ ନ ହୋଇ ପ୍ରକୃତିକୁ ଦାସୀ କରିବା । ପ୍ରକୃତି ସବୁବେଳେ ପୁରୁଷର ଦାସୀ । ଆମେ ସ୍ୱରୂପ ଭୁଲିଯାଇ ପ୍ରକୃତିର କ୍ରୀଡ଼ନକ ହୋଇପଡ଼ିଛୁଁ । ପ୍ରକୃତି କବଳରେ ପତିତ ହୋଇ ତାହାର ରୂପରସରେ ନିମଜ୍ଜିତ ହୋଇଯାଉଛୁଁ । ପୁରୁଷକାର ଅବଲମ୍ୱନ କଲେ ଏହି ପ୍ରକୃତି ବଶୀଭୂତା ହେବେ ।

ଶକ୍ତିମାନ୍ ଓ ଶକ୍ତି ଅଭେଦ । ପ୍ରକୃତି ହିଁ ଶକ୍ତି; କିନ୍ତୁ ପକୃତି ସହିତ ଚିତ୍‌ର ଯୋଗ ନ ହେଲେ ସେହି ପ୍ରକୃତି ଜଡ଼ରେ ପରିଣତ ହୋଇଯାଏ । ପ୍ରକୃତି ସହିତ ବ୍ରହ୍ମ ସମ୍ମିଶ୍ରିତ ହେଲେ ତାହାଙ୍କୁ ଭଗବାନ କୁହାଯାଏ । ମନେକର, କୁମ୍ଭକାର ବ୍ରହ୍ମ ବା ଚିତ୍, ମାଟି ପ୍ରକୃତି ବା ଉପାଦାନ-କାରଣ; କୁରାଳଚକ୍ର ନିମିତ୍ତ-କାରଣ । କୁମ୍ଭକାର ଚକ୍ରରେ ମାଟି ଦେଇ ଯେଉଁ ମୂର୍ତ୍ତି ଗଠନ କଲେ, ତାହା ହିଁ ଭଗବାନ ବା ମହାଶକ୍ତି । ତେଣୁ ଶକ୍ତିମାନଙ୍କ ଠାରୁ ଶକ୍ତିଙ୍କୁ ବିଚ୍ଛିନ୍ନ କଲେ ତାହା ଜଡ଼ ହୋଇଯାଏ । ମନେକର, ଆଲୋକ ବ୍ରହ୍ମ ଓ ଅନ୍ଧକାର ଅବିଦ୍ୟା । ଆଲୋକ ଓ

ଅନ୍ଧକାର ମଧ୍ୟରେ ଯେଉଁ ଅବସ୍ଥା ଅର୍ଥାତ୍ ଘର ଭିତରେ ଯେପରି ଆଲୋକ ଦେଖାଯାଏ, ତାହା ହିଁ ଭଗବାନ ବା ମହାଶକ୍ତି ।

ପୁରୁଷ ବହୁ ନୁହଁନ୍ତି—ଏକ । ପ୍ରକୃତି ବହୁ । ପ୍ରକୃତି ବା ମାୟାର ଆବରଣରେ ପତିତ ହୋଇ ପୁରୁଷ ସ୍ୱରୂପ ବହୁ ବୋଲି ପ୍ରତୀୟମାନ ହୋଇଥାନ୍ତି । ବାୟୁ ଯେପରି ଏକ ହୋଇ ମଧ୍ୟ ଆଧାର ଭେଦରେ ବିଭିନ୍ନ ଗୁଣ ଧାରଣ କରେ, ସେହିପରି ଆତ୍ମା ବା ପୁରୁଷ ଏକ ହୋଇ ମଧ୍ୟ ପ୍ରକୃତି ବା ମାୟାର ସହଯୋଗରେ ବହୁ ରୂପରେ ଭିନ୍ନ ଭିନ୍ନ ଗୁଣାତୀତ ହୋଇ ପ୍ରତୀୟମାନ ହୁଅନ୍ତି । ପୁରୁଷ ଦ୍ରଷ୍ଟାଭାବରେ ସ୍ଥିର ଥାନ୍ତି । ମାୟାଶକ୍ତି ପୁରୁଷ ସହିତ ଆନ୍ୱିତ ହୋଇ ଗୁଣ ପ୍ରାଶ କରନ୍ତି । ଏହା ହିଁ ମାୟାର କାର୍ଯ୍ୟ । ତେଣୁ ମାୟାର କାର୍ଯ୍ୟ ମିଥ୍ୟା; କିନ୍ତୁ ମାୟା ମିଥ୍ୟା ନୁହେଁ । ଆଚାର୍ଯ୍ୟ ରାମାନୁଜଙ୍କ ମତରେ ଜଗତ୍ କିମ୍ବା ମାୟା କେହି ମିଥ୍ୟା ନୁହନ୍ତି । ସାଂଖ୍ୟର ଲକ୍ଷ୍ୟ ପ୍ରତିବିମ୍ବ ପ୍ରତି; ବେଦାନ୍ତର ଲକ୍ଷ୍ୟ ବିମ୍ବପ୍ରତି ।

ପ୍ରକୃତ ଜ୍ଞାନ ନ ହେଲେ ଅପରକୁ ସୁଖ ପାଇବାକୁ ଯାଇ ସାଧକ ମୋହାଚ୍ଛନ୍ନ ହୋଇପଡ଼ନ୍ତି । ଜ୍ଞାନ ଲାଭ ହେଲେ ଅର୍ଥାତ୍ 'ମୁଁ ଶିବସ୍ୱରୂପ' ଏହି ବୋଧ ଜାତ ହେଲେ ଶକ୍ତିଲାଭ ସ୍ୱତଃ ହୋଇଥାଏ । ତେଣୁ ଜ୍ଞାନ ଲାଭ ହେଲେ ଆପଣା ମନକୁ ଭଗବତ୍ ପ୍ରେମ ଜାତ ହୁଏ । ସେହି ପ୍ରେମକୁ ସ୍ଥୁଳଭାବରେ ଲାଭ କରିବାକୁ ଇଚ୍ଛା କଲେ ଭଗବାନ ହିଁ ପ୍ରେମଘନ ବିଗ୍ରହ ରୂପରେ ମନୁଷ୍ୟ ହୋଇ ଧରାଦିଅନ୍ତି । ମାନବ ଭିତରେ ଭଗବାନଙ୍କୁ ଅନୁସନ୍ଧାନ ନ କରି ଭଗବାନଙ୍କୁ ମନୁଷ୍ୟ ଭାବରେ ଦର୍ଶନ କରିପାରିଲେ ସହଜରେ ସିଦ୍ଧମନୋରଥ ହୋଇପାରିବ ।

ବୈଷ୍ଣବ-ତତ୍ତ୍ୱ ଏବଂ ଶକ୍ତି-ତତ୍ତ୍ୱ ସ୍ତରଭେଦ ମାତ୍ର । ସାଧକଙ୍କର ପ୍ରଥମ ସ୍ତରରେ ଶାକ୍ତଭାବ, ଚରମ ସ୍ତରରେ ବୈଷ୍ଣବଭାବ । ତେଣୁ ଯେ ଶକ୍ତି, ସେହି ମଧ୍ୟ ରାଧା । ବହିରଙ୍ଗା ଶକ୍ତି ମା । ଅନ୍ତରଙ୍ଗା ଚିତ୍‌ଶକ୍ତି ତିନି ଭାଗରେ ବିଭକ୍ତ—ସତ୍, ଚିତ୍ ଓ ଆନନ୍ଦ । ଏହି ଆନନ୍ଦମୟୀ ଶକ୍ତିଙ୍କ ନାମ ରାଧା । ଭାବ ହେଲେ ଅଭାବ ରହେ ନାହିଁ । ସଗୁଣ-ନିର୍ଗୁଣର ସନ୍ଧିସ୍ଥଳରେ ଭାବଲୋକ ।

ତତ୍ତ୍ୱରେ ଯେ ନିଶ୍ଚଳ, ଲୀଳାରେ ଯେଉଁ ଶକ୍ତି ଉନ୍ମୁଖ, ତାଙ୍କୁ ଜଗଜ୍ଜନନୀ କୁହାଯାଏ । ଧୃତି ଓ ଉତ୍ସାହ ଯେଉଁ ସାଧକଙ୍କ ଅନ୍ତରରେ ନିତ୍ୟବିରାଜିତ, ସେ ହିଁ ଶକ୍ତିଧର ।

ଯେଉଁ ଶକ୍ତିବଳରେ ମାନବର ଦୃଷ୍ଟିଶକ୍ତି, ଶ୍ରବଣଶକ୍ତି, ବାକଶକ୍ତି, ଶ୍ୱାସ-ପ୍ରଶ୍ୱାସଜନିତ ଜୀବନୀଶକ୍ତି ଅର୍ଥାତ୍ ଯେଉଁ ଶକ୍ତିଦ୍ୱାରା ପ୍ରାଣର ସ୍ପନ୍ଦନ ଅନୁଭୂତ ହୁଏ ଅର୍ଥାତ୍ ଯେଉଁ ଶକ୍ତିବଳରେ ଯାବତୀୟ ଇନ୍ଦ୍ରିୟବର୍ଗ ସତେଜ ହୋଇଉଠନ୍ତି, ତାହାର ନାମ କୁଣ୍ଡଳିନୀ ଶକ୍ତି । ସାଧନା ଦ୍ୱାରା ସମଗ୍ର ଇନ୍ଦ୍ରିୟଶକ୍ତିକୁ ସଂଯତ କରି ତାକୁ ଏକମୁଖୀ କରି, ସେହି ଶକ୍ତିଙ୍କୁ ସୁଷୁମ୍ନାମାର୍ଗ ଦେଇ ସରସ୍ରାରସ୍ଥ ପରମଶିବଙ୍କ ସହିତ ସମ୍ମିଳିତ କରିବାକୁ ହୁଏ । କାରଣ, ଏହି ଶକ୍ତି ଶିବଙ୍କର ଶକ୍ତି । ଏହାର ଏତେ ଅଦ୍ଭୁତ ପ୍ରଭାବ ଯେ, ତାହା ସାଧାରଣଙ୍କ ଧାରଣାର ଅତୀତ । ଦୈହିକ ଓ ମାନସିକ ଶକ୍ତିକୁ ସଂଯତ କରି ଯାହାଙ୍କ ଶକ୍ତି, ତାହା ତାଙ୍କଠାରେ ଲୀନ କରାଇ ପାରିଲେ ଜୀବ ଶିବତ୍ୱ ଲାଭ କରେ ।

ଶକ୍ତି କାହାକୁ କହନ୍ତି ? କେଉଁ ଶକ୍ତିବଳରେ ମାନବ ଅଲୌକିକ ବ୍ୟାପାରମାନ ସଂଘଟନ କରୁଅଛି ? କେଉଁ ଶକ୍ତିବଳରେ ଏହି ପୃଥିବୀ ଓ ଗ୍ରହ-ନକ୍ଷତ୍ର ବିଘୁର୍ଣ୍ଣିତ ହେଉଛନ୍ତି ଏବଂ ସୂର୍ଯ୍ୟ ମଧ ନିଜର ଗ୍ରହ-ନକ୍ଷତ୍ରଙ୍କୁ ନେଇ ଗୋଟିଏ ବୃହତ୍ତମ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ବିଘୂର୍ଣ୍ଣିତ ହେଉଅଛି ? ଜଡ଼ବସ୍ତୁର ପ୍ରତି ଅଣୁରେ ମଧ ଗୁଣ ଓ ଶକ୍ତି ନିହିତ ଅଛି ଏବଂ ସେହି ପରମାଣୁର ଏକତ୍ରିତ ଶକ୍ତି କିଭଳି କ୍ରିୟାଶୀଳ ହୁଏ, ତାହା ଆଧୁନିକ ବିଜ୍ଞାନବିତ୍‌ମାନଙ୍କର ଅବିଦିତ ନୁହେଁ । ଜଡ଼ଶକ୍ତିଠାରୁ ମାନସିକ ଶକ୍ତି ମଧ ଅତି ଶକ୍ତିଶାଳୀ । ଏହି ମାନସିକ ଶକ୍ତିବଳରେ ଅନ୍ୟକୁ ଅଭିଭୂତ କରିଦିଆଯାଇପାରେ, ତାଙ୍କୁ ଇଚ୍ଛାମତେ ଚାଳିତ କରାଯାଇପାରେ, ଅସତ୍ ଚରିତ୍ରକୁ ସତ୍ ଚରିତ୍ର କରାଯାଇପାରେ । ଆଧାତ୍ମିକ ଶକ୍ତି ଜାଗ୍ରତ କରିପାରିଲେ ଏହି ଦେହତ୍ୟାଗ କରି ଅନ୍ୟତ୍ର ଗମନାଗମନ କରିବାର ଶକ୍ତି ଜନ୍ମେ । ଗୋଟିଏ ସ୍ଥାନରେ ବସି ଜଗତର ସମସ୍ତ କାର୍ଯ୍ୟ ପ୍ରତ୍ୟକ୍ଷ କରାଯାଇପାରେ ।

ଜଗତ ହିଁ ଶକ୍ତିର ବ୍ୟକ୍ତାବସ୍ଥା । ଶକ୍ତିର ଅବ୍ୟକ୍ତାବସ୍ଥାକୁ ପ୍ରକୃତି ବା ମାୟା କୁହାଯାଏ; କିନ୍ତୁ ଶକ୍ତି ଓ ଚୈତନ୍ୟ ଅଭେଦ । ଏଥିପାଇଁ ଅଦ୍ୱୈତବାଦର ହିଁ ଉପାସନା କରାଯାଏ । ଚୈତନ୍ୟ ବ୍ୟତୀତ ଶକ୍ତିର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ ଏବଂ ଶକ୍ତି ବ୍ୟତୀତ କେବଳ ଚୈତନ୍ୟଙ୍କର ଉପାସନା ସମ୍ଭବପର ନୁହେଁ । ମାୟାର ଆଶ୍ରୟ ନାହିଁ, ସେ ପରଂବ୍ରହ୍ମଙ୍କର ଆଶ୍ରିତା ।

ଅବିଦ୍ୟାବସ୍ଥାରେ ଜୀବ ଉପାସକ, ଈଶ୍ୱର ଉପାସ୍ୟ । ସାଧକଙ୍କ ହୃଦୟରେ ସନ୍ତାନଭାବ ପ୍ରବଳହେଲେ ସେ ଭଗବାନଙ୍କୁ ମାତୃ ଭାବରେ ଉପାସନା କରନ୍ତି

ଏବଂ ତାଙ୍କ ଅନ୍ତରଜ୍ଞାନ ବୈରାଗ୍ୟରେ ପୂର୍ଣ୍ଣ ହେଲେ ସେ ଶିବଙ୍କୁ ଉପାସନା କରନ୍ତି। ଯେଉଁମାନଙ୍କର ଲକ୍ଷ୍ୟ ଆନନ୍ଦ, ସେମାନେ ଉପାସନା କରନ୍ତି ଆନନ୍ଦ ଘନମୂର୍ତ୍ତି ଶ୍ରୀକୃଷ୍ଣଙ୍କର। ଭାବଭେଦରେ ମୂର୍ତ୍ତିଭେଦ ହେଲେ ମଧ୍ୟ ସ୍ୱରୂପତଃ ଏକ ପରମେଶ୍ୱରଙ୍କ ଉପାସନା ହୋଇଥାଏ। ଶକ୍ତିଙ୍କର ଅସଂଖ୍ୟ ମୂର୍ତ୍ତି ମଧ୍ୟରୁ ଦଶମହାବିଦ୍ୟା ମୂର୍ତ୍ତି ଶ୍ରେଷ୍ଠ। ତେଣୁ ଶକ୍ତି ସ୍ଥୂଳଭାବରେ ତିନି ଭାଗରେ ବିଭକ୍ତ— ଶାରୀରିକ (Physical), ମାନସିକ (Psychic) ଓ ଆଧ୍ୟାତ୍ମିକ (Spiritual)। ଉପରେ କୁହାଯାଇଥିବା ସମସ୍ତ ଶକ୍ତିମୂଳରେ ମାନବଦେହରେ ଯେଉଁ ଶକ୍ତି ବିରାଜିତ, ତାହାର ଅପର ନାମ କୁଣ୍ଡଳିନୀ ଶକ୍ତି। ମାନବଦେହର କେନ୍ଦ୍ରସ୍ଥଳରେ ଯେପରି କୁଣ୍ଡଳିନୀ ବିଦ୍ୟମାନ, ବ୍ରହ୍ମାଣ୍ଡ ଏବଂ ପୃଥିବୀର କେନ୍ଦ୍ରସ୍ଥଳରେ ମଧ୍ୟ ସେହିଭଳି ମହାଶକ୍ତି ବିରାଜିତା। ଯଦି କେହି ଆତ୍ମଶକ୍ତିବଳରେ ସେହି କେନ୍ଦ୍ରସ୍ଥିତ ଶକ୍ତିଙ୍କୁ କକ୍ଷଚ୍ୟୁତ କରିପାରନ୍ତି, ତେବେ ଏହି ପୃଥିବୀ ଧ୍ୱଂସ ହୋଇଯିବ।

ସମଗ୍ର ଶକ୍ତି, ଚୈତନ୍ୟ ବା ଶିବଙ୍କ ଠାରେ ଆଶ୍ରିତା। ତେଣୁ ଚୈତନ୍ୟ ହିଁ ଜଗତ୍‌କାରଣ। ଚୈତନ୍ୟ ଶକ୍ତିଙ୍କର ପ୍ରଥମ ପରିଣାମ ବୁଦ୍ଧିତତ୍ତ୍ୱ ବା ମହତତ୍ତ୍ୱ। ଏହା ସଦ୍‌ଗୁରୁଙ୍କ ସ୍ଥାନ। ଦ୍ୱିତୀୟ ପରିଣାମ ଅହଂତତ୍ତ୍ୱ, ତୃତୀୟ ପରିଣାମ ଇନ୍ଦ୍ରିୟ ଓ ପରମାଣୁ, ଚତୁର୍ଥ ପରିଣାମ ହେଉଛି ଜଗତ୍। ଚୈତନ୍ୟ ସତ୍ତ୍ୱଗୁଣରେ ପ୍ରତିବିମ୍ବିତ ହେଲେ ତାଙ୍କରି ନାମ ବିଷ୍ଣୁ, ରଜୋଗୁଣରେ ପ୍ରତିବିମ୍ବିତ ହେଲେ ତାଙ୍କ ନାମ ବ୍ରହ୍ମା ଏବଂ ତମୋଗୁଣରେ ସେ ଶିବ ନାମ ଧାରଣ କରନ୍ତି। ସତ୍ତ୍ୱଗୁଣରେ ଜ୍ଞାନ ସମ୍ୟକ ଭାବରେ ପ୍ରତିଭାତ ହୁଏ। ଭାବମାତ୍ରକେ ରସଉପରେ ପ୍ରତିଷ୍ଠିତ। ଶ୍ରୀକୃଷ୍ଣ ହିଁ ପୂର୍ଣ୍ଣରସର ଘନୀଭୂତ ବିଗ୍ରହ। ଲୀଳାରସ ବ୍ରହ୍ମାନନ୍ଦ ରସର ପର ଅବସ୍ଥା।

ଶକ୍ତିଙ୍କର ଯେତେ ପ୍ରକାର ରୂପ ଅଛି, ତନ୍ମଧ୍ୟରେ କାଳୀମୂର୍ତ୍ତି ହିଁ ଶ୍ରେଷ୍ଠତମା। କାଳୀ ଅର୍ଥ କାଳର ଶକ୍ତି। ସେ ଷଡ଼ରିପୁନାଶିନୀ ହେତୁ ତାଙ୍କ କରରେ ଅସି। କେବଳ ଭକ୍ତମାନଙ୍କ ପ୍ରତି ସେ ଅଭୟା। ଶକ୍ତିଜ୍ଞାନ ଉପରେ ପ୍ରତିଷ୍ଠାତା ହେତୁ ସେ ବିରୂପାକ୍ଷ ଦକ୍ଷବିହାରିଣୀ। ସେ ନୃମୁଣ୍ଡମାଳିନୀ ଅର୍ଥାତ୍ ଅନନ୍ତକୋଟି ଜୀବଜଗତ ଓ ବ୍ରହ୍ମା ପ୍ରଭୃତି ଲୟ ହେଲେ ମଧ୍ୟ ସେ ସାକ୍ଷୀ ଭାବରେ ଅବସ୍ଥାନ କରନ୍ତି। ମୁଣ୍ଡମାଳା ବର୍ଣ୍ଣମାଳାର ପ୍ରତୀକ।

ଶକ୍ତି-ଉପାସକମାନଙ୍କ ମଧ୍ୟରେ ସନ୍ତାନଭାବ ଓ ଦାସ୍ୟଭାବ ପ୍ରବଳ। ମା'ଙ୍କ ନିକଟରେ ସାଧକ ଶିଶୁ। ସେ ଯେତେବେଳେ ଜଗଜ୍ଜନନୀଙ୍କ ଆଶ୍ରିତ, ସେପରି

ଅବସ୍ଥାରେ ତାଙ୍କର ଅନ୍ୟ ଚିନ୍ତା, ଏପରିକି ନିଜର ଚିନ୍ତା କିଛି ନାହିଁ । ପ୍ରଥମେ ଶିଶୁ ମା ନିକଟରେ ସାମାନ୍ୟ ଖେଳନା କଣ୍ଢେଇ ଦାବି କରେ, ତାହା ପାଇବାମାତ୍ରେ ସେଥିରେ ତୃପ୍ତି ଲାଭ ନ କରି ଅର୍ଥାତ୍ ଭୋଗରେ ବୀତସ୍ପୃହ ହୋଇ ମାତୃକ୍ରୋଡ଼ରେ ଆଶ୍ରୟ ନିଏ ଏବଂ ମା ଶିଶୁକୁ ନେଇ ପିତାଙ୍କ ସହିତ ମିଳିତ କରାଇଦିଅନ୍ତି ଅର୍ଥାତ୍ ଶକ୍ତି, ଚୈତନ୍ୟରେ ସମ୍ମିଳିତ ହୋଇ ଲୀନ ହୁଅନ୍ତି ।

ଶ୍ରୀକୃଷ୍ଣଙ୍କ ଉପାସନା ପାଞ୍ଚ ଭାବରେ କରାଯାଏ । ପଞ୍ଚଭାବ ମଧ୍ୟରେ ମଧୁରଭାବ ଶ୍ରେଷ୍ଠ । ମଧୁରଭାବ ମଧ୍ୟରେ ପରକୀୟାଭାବ ସର୍ବଶ୍ରେଷ୍ଠ । ପରକୀୟାଭାବ ସହିତ ମାତୃଭାବର ଘନିଷ୍ଠ ସମ୍ବନ୍ଧ ବିଦ୍ୟମାନ । ଉପପତିଙ୍କ ସହିତ ଭାବର ତୀବ୍ରତା ହେତୁ ପ୍ରେମିକା ଯେପରି ନିଜର ସର୍ବସ୍ୱ ବିସର୍ଜ୍ଜନ ଦେଇଥାନ୍ତି, ସେହିପରି ପୁତ୍ରନିମିତ୍ତ ମାତା ମଧ୍ୟ ସର୍ବସ୍ୱ ବିସର୍ଜ୍ଜନ ଦେଇ ଶିଶୁକୁ ରକ୍ଷା କରନ୍ତି । ଏହା ହିଁ ଗୋପୀଭାବ । ତେଣୁ ଶ୍ରୀକୃଷ୍ଣଙ୍କ ଉପାସନା ଓ କାଳୀଙ୍କ ଉପାସନା ଅଭେଦ ଅର୍ଥାତ୍ ଏ ଉଭୟ ଉପାସନାରେ କିଛି ପ୍ରଭେଦ ନାହିଁ ଓ ଶାକ୍ତ ବୈଷ୍ଣବମାନଙ୍କ ମଧ୍ୟରେ ମିଳନ କରାଇବା ନିମିତ୍ତ ବୃନ୍ଦାବନରେ ଶ୍ରୀକୃଷ୍ଣ କାଳୀମୂର୍ତ୍ତିରେ ଆବିର୍ଭୂତ ହୋଇଥିଲେ ।

ଶକ୍ତି ଅପେକ୍ଷା ଶକ୍ତିମାନଙ୍କର ପ୍ରାଧାନ୍ୟହେତୁ ଶକ୍ତି ନିର୍ଗୁଣାବସ୍ଥା ପ୍ରାପ୍ତ ହେଲେ ସ୍ୱରୂପରେ ଅବସ୍ଥାନ କରନ୍ତି । ତେଣୁ ସ୍ୱରୂପଶକ୍ତି ହିଁ ଶ୍ରୀକୃଷ୍ଣ । ଏହି ଚିତ୍‌ସ୍ୱରୂପ ଲାଭ କରିବାକୁ ହେଲେ କିମ୍ବା ଯେ କୌଣସି ପ୍ରକାର ଶକ୍ତିସାଧନ କରିବାକୁ ହେଲେ, ନିଜ ଭିତରେ ଯେଉଁ ଶକ୍ତି ସୁପ୍ତ ଅଛି, ସେହି ଶକ୍ତିକୁ ଜାଗ୍ରତ କରିବାକୁ ହେବ । ଜୀବ ଦେହରେ ଏହି ଶକ୍ତି ସୁଷୁମ୍ନା ଦ୍ୱାର ରୁଦ୍ଧ କରି ନିଦ୍ରିତା ଅଛନ୍ତି । ଏହି ଶକ୍ତିଙ୍କୁ ଜାଗ୍ରତ କରି ସହସ୍ରାରସ୍ଥିତ ପରମ ଶିବ ବା ଚୈତନ୍ୟଙ୍କ ସହିତ ସମ୍ମିଳିତ କରିବା ହିଁ ଜାଗତିକ ସର୍ବସାଧନାର ପ୍ରାଣ । ହିନ୍ଦୁମାନଙ୍କର ଏହି ଶକ୍ତି ସମ୍ବନ୍ଧରେ ଅବିଶ୍ୱାସ ଥିଲେ ମଧ୍ୟ ପାଶ୍ଚାତ୍ୟ ପଣ୍ଡିତମାନେ ଗବେଷଣା କରି ଏହି ଶକ୍ତିର ସନ୍ଧାନ ପାଇଛନ୍ତି । *ଏହି କୁଣ୍ଡଳିନୀକୁ ଜାଗ୍ରତ କରିବାକୁ ହେବ ।

---

* The existence of powerful electric organ in every humanbeing which with proper cultivation are capable of marvellous spiritual force. —Marie Corello

That is an inner woman in every man.

—Woodroth

ଏହି ଶକ୍ତିଙ୍କୁ ଜାଗରିତା କରିବାକୁ ହେଲେ ପ୍ରଥମେ ଶାରୀରିକ ଶକ୍ତି ଅର୍ଜନ କରିବାକୁ ହେବ। ସାତ୍ତ୍ୱିକ ଆହାର ଏବଂ ଇନ୍ଦ୍ରିୟ ସଂଯମହିଁ ଏହାର ପ୍ରାଥମିକ ସାଧନା। ସ୍ଥୂଳଦେହରେ ଶକ୍ତି ସଞ୍ଚାର କରିବାକୁ ହେଲେ ପରିମିତ ସ୍ଥୂଳ ସାତ୍ତ୍ୱିକ ଆହାର୍ଯ୍ୟର ପ୍ରୟୋଜନ। ପରିମିତ ସାତ୍ତ୍ୱିକ ଆହାର ବ୍ୟତୀତ ଯେପରି ବ୍ରହ୍ମଚର୍ଯ୍ୟ ମୂଲ୍ୟହୀନ ଓ ନିଷ୍ଫଳ, ସେହିପରି ଆହାର ଗ୍ରହଣ କରି ଯଦି ଇନ୍ଦ୍ରିୟଶକ୍ତିର ସଂଯମ କରା ନଯାଏ, ତେବେ ଆହାର୍ଯ୍ୟ ଗ୍ରହଣ ମଧ୍ୟ ନିଷ୍ଫଳ। ବ୍ରହ୍ମଚର୍ଯ୍ୟ ରକ୍ଷା ନିମିତ୍ତ ସଦ୍‌ଗୁରୁଙ୍କ ନିକଟରୁ ଆସନ-ମୁଦ୍ରାଦି ବାହ୍ୟିକ କ୍ରିୟା ଶିକ୍ଷା କରିବାକୁ ହୁଏ। ଏଥିରେ ଶାରୀରିକ ବଳ ସଞ୍ଚିତ ହୋଇ ଶକ୍ତି ଉଦ୍‌ବୋଧିତ ହୋଇଥାଏ। ଦ୍ୱିତୀୟରେ, ମାନସିକ ବଳ ବା ଶକ୍ତିସଞ୍ଚୟ ନିତାନ୍ତ ଆବଶ୍ୟକ। ମାନସିକ ବଳ ଅର୍ଥାତ୍ ମନର ଶକ୍ତି ବିଜ୍ଞାନଠାରୁ ମଧ୍ୟ ଅଧିକ ଶକ୍ତିଶାଳୀ। ଜଣେ ମାନସିକ ଶକ୍ତିସମ୍ପନ୍ନ ସାଧକ ବିଜ୍ଞାନସମ୍ପନ୍ନ ବହୁଜନଙ୍କୁ ପରାଜିତ କରିଥାନ୍ତି। ଏହି ଶକ୍ତି ସଞ୍ଚିତ ହେଲେ ମାନବ ଆଳସ୍ୟାଦି ଦୋଷ ତ୍ୟାଗକରି ଉଦ୍ୟମଶୀଳ ହୁଅନ୍ତି। ଉଦ୍ୟମଶୀଳ ହେଲେ ଗୁରୁସେବାର ଅଧିକାର ଲାଭ ହୁଏ। ଶ୍ରୀଗୁରୁଦେବଙ୍କ ସେବା ନିମିତ୍ତ ଅତ୍ୟଧିକ ମାନସିକ ବଳର ଏକାନ୍ତ ପ୍ରୟୋଜନ। ତେଣୁ ସେବକମାନେ ହିଁ ଶ୍ରୀଗୁରୁଦେବଙ୍କର ଅନ୍ତରଙ୍ଗ ଭକ୍ତ। ଗୁରୁସେବା ଫଳରେ ସେବକମାନେ ସେହି ଶକ୍ତି ଧାରଣ କରିବାକୁ ସମର୍ଥ ହୁଅନ୍ତି। ଭଗବତ୍‌ଦର୍ଶନ, ତାଙ୍କ କଥା ଶ୍ରବଣ-ମନନ କରିବାର ଶକ୍ତି ଏବଂ ଅନୁଭୂତି ଲାଭ କରିବାର ଶକ୍ତି ମଧ୍ୟ ଲାଭ ହୁଏ। ସତ୍ୟର ସନ୍ଧାନ ମିଳିଲେ ଅନ୍ତରରେ ମହାବଳର ଆବିର୍ଭାବ ଘଟେ। ତେଣୁ ଆତ୍ମଶକ୍ତି ଠାରୁ ଅନ୍ୟ ଶ୍ରେଷ୍ଠଶକ୍ତି ଜଗତ୍‌ରେ ଆଉ କିଛି ନାହିଁ। ଆତ୍ମଶକ୍ତି ଜାଗରିତ ହେଲେ ସମସ୍ତ ରହସ୍ୟ ଜଣାଯାଏ, ସମସ୍ତ ଶକ୍ତି ଲାଭ ହୁଏ। ଶକ୍ତିର ଜାଗରଣ ହେଲେ ପ୍ରାଣରେ ଅସୀମ ବଳର ସଞ୍ଚାର ହୁଏ। ଶକ୍ତିର ଉଦ୍‌ବୋଧନ ନିମିତ୍ତ ଯେଉଁସବୁ ଶାରୀରିକ କ୍ରିୟା ଓ ମାନସିକ କ୍ରିୟା ଆବଶ୍ୟକ, ତାହାରି ନାମ ଶକ୍ତି ସାଧନା। ସମଷ୍ଟି ପ୍ରାଣଶକ୍ତିର ପ୍ରାର୍ଥନାରେ ସେହି ଶକ୍ତିଙ୍କର ଆବିର୍ଭାବ ସହଜରେ ହୋଇଥାଏ। ସଂଘବଦ୍ଧଭାବ ହିଁ ଶକ୍ତି ଉଦ୍‌ବୋଧନର ପ୍ରଧାନ ସାଧନା। ଅନ୍ତର୍ମୁଖୀ ସାଧନଲବ୍ଧ ଶକ୍ତିଦ୍ୱାରା କୁଣ୍ଡଳିନୀର ଜାଗରଣ ହୋଇଥାଏ। ତେଣୁ କୁଣ୍ଡଳିନୀର ଜାଗରଣ ମଧ୍ୟ ମହାଶକ୍ତି-ସାଧନାର ଅନ୍ତର୍ଗତ।

ମାନସିକ ବଳ ଲାଭ କରିବାକୁ ହେଲେ ଭଗବତ୍ ବିଷୟକ ଶ୍ରବଣମନନ ଏବଂ ଧ୍ୟାନ ଧାରଣାଦି କ୍ରିୟାଭ୍ୟାସ କରି ଚିତ୍ତର ଏକାଗ୍ରତା ଶକ୍ତି ଆନୟନ କରିବାକୁ ହୁଏ । ଏହି ଏକାଗ୍ରତା ଫଳରେ ଶକ୍ତି ସହଜରେ ଉଦ୍‌ବୋଧିତା ହୁଅନ୍ତି । ମାନସିକ ବଳସଞ୍ଚୟ ନିମିତ୍ତ ମହାପୁରୁଷମାନଙ୍କ ଜୀବନ ଚରିତ ପାଠ କରିବା ଏକାନ୍ତ କର୍ତ୍ତବ୍ୟ । ଦିବାନିଶି ନାମଜପ ପ୍ରଭାବରେ ମଧ୍ୟ ମାନସିକ ବଳ ସଞ୍ଚିତ ହୋଇ କୁଣ୍ଡଳିନୀ ଶକ୍ତିର ଊର୍ଦ୍ଧ୍ୱଗମନ ହୋଇଥାଏ ।

ବିଗ୍ରହ ଉପାସନାଦ୍ୱାରା ମଧ୍ୟ ଏହି ଶକ୍ତିର ଉଦ୍‌ବୋଧନ ହୋଇଥାଏ; କିନ୍ତୁ ଏହି ଉପାସନା ସାତ୍ତ୍ୱିକ ଭାବରେ ହେବା ଦରକାର । ଆଜିକାଲି ବିଗ୍ରହ ଉପାସନା ବ୍ୟବସାୟରେ ପରିଣତ ହୋଇଗଲାଣି । ପ୍ରତିମାପୂଜାରେ ତତ୍ତ୍ୱଜ୍ଞାନର ଉଦୟ ହେବାର କଥା; ମାତ୍ର ପ୍ରତିମା ହିଁ ଈଶ୍ୱର, ଅନ୍ୟତ୍ର ଈଶ୍ୱରଙ୍କ ସତ୍ତା ନାହିଁ, ଏହି ଭାବ ଜାଗିଲେ ତାହା ତାମସିକ ଭାବରେ ରୂପାନ୍ତର ହୋଇଯାଏ । ତେଣୁ ପ୍ରତିମାପୂଜା ଭିତରେ ସାତ୍ତ୍ୱିକଭାବ ଆଣିବାକୁ ପଡ଼ିବ । ମନର ବିଚ୍ଛିନ୍ନ ଭାବଗୁଡ଼ିକୁ ଏକତ୍ରିତ କରି ବାହ୍ୟମୂର୍ତ୍ତିର ଅନୁରୂପ ମୂର୍ତ୍ତି ଯଦି ନିଜ ହୃଦୟକନ୍ଦରରେ ପ୍ରତିଷ୍ଠିତ କରାଯାଇପାରିବ, ତାହାହେଲେ ଯାଇ ବାହ୍ୟମୂର୍ତ୍ତି ପୂଜାରେ ସାତ୍ତ୍ୱିକ ଭାବ ପ୍ରତିଷ୍ଠିତ ହେବ । ବାହ୍ୟମୂର୍ତ୍ତି ପୂଜାରେ ବାହ୍ୟଜ୍ଞାନ ଲୋପ ହୋଇ ଯେତେବେଳ ମାନସିକ ପୂଜାରେ ସାଧକ ତନ୍ମୟ ହେବେ, ସେତେବେଳେ ଯାଇ ପୂଜାର ସାର୍ଥକତା ଅନୁଭୂତ ହେବ । ଭଗବାନଙ୍କ ପ୍ରତି ଦୃଢ଼ ଭାବ ନ ଥିଲେ କେବେ ହେଲେ ଧ୍ୟାନ ଧାରଣାରେ ଏକାଗ୍ରତା ଶକ୍ତି ଆସେ ନାହିଁ । ଆଉ ଗୋଟିଏ କଥା, ଇଷ୍ଟନିଷ୍ଠା ଥିବା ଆବଶ୍ୟକ । ନିଷ୍ଠା ପ୍ରଭାବରେ ମାନସିକ ବଳ ସଞ୍ଚିତ ହୋଇଥାଏ । ଏହି ଏକାଗ୍ରତା ବଳରେ ଅନ୍ତରରେ ଭଗବତ୍ ପ୍ରେରଣା ଜାଗିଉଠେ । ଏହି ପ୍ରେରଣାବଶରୁ ସଦ୍‌ଗୁରୁଙ୍କ ପ୍ରଦତ୍ତ ସିଦ୍ଧ ନାମଜପରେ ମନ ତନ୍ମୟ ହୋଇ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରାଇଥାଏ । ଚିନ୍ତାଶକ୍ତି ଏବଂ ଶ୍ରୀଗୁରୁଦେବଙ୍କ ବାକ୍ୟରେ ଦୃଢ଼ ବିଶ୍ୱାସ ବଳରେ ମନ, ମନ୍ତ୍ର ଓ ଶକ୍ତି ଏକୀଭୂତ ହୋଇ ଶକ୍ତିଙ୍କୁ ଉଦବୋଧିତା କରାନ୍ତି । ସାଧକ ସେହି ଶକ୍ତିଙ୍କ ସହିତ ନିଜକୁ ଅଭିନ୍ନ ଭାବନା କରିବା ଫଳରେ ଶିବଙ୍କ ସହିତ ସମ୍ମିଳିତ ହେବାକୁ ତାଙ୍କର ପ୍ରବଳ ଇଚ୍ଛା ଜାଗ୍ରତ ହୁଏ; ଫଳରେ ସହସ୍ରାରରେ ସମ୍ମିଳିତ ହୋଇ ପରମାନନ୍ଦ ଭୋଗ କରନ୍ତି ।

ସମସ୍ତେ ଏକ ମନ ଏକପ୍ରାଣ ହେଲେ ମହାଶକ୍ତିଙ୍କର ଉଦ୍ଭବ ହେବ। ତେଣୁ ମାତୃସାଧକ ଜାତିର ପ୍ରାଣରେ ପ୍ରଥମେ ଐକ୍ୟଭାବ ଜାଗ୍ରତ କରାଇବାକୁ ପଡ଼ିବ। ସେହି ଐକ୍ୟ ପ୍ରଥମେ ନିଜ ଭିତରେ, ପରେ ପରିବାର ଭିତରେ, ତତ୍‌ପରେ ଦେଶ ମଧ୍ୟରେ ଜାଗ୍ରତ କରିବା ନିମିତ୍ତ ଶକ୍ତିଙ୍କର ସାଧନା ଆବଶ୍ୟକ। ପ୍ରତ୍ୟେକଙ୍କ ଅନ୍ତରରେ ପ୍ରଥମେ ଶକ୍ତିଙ୍କର ଜାଗରଣ ହେବାପରେ ଐକ୍ୟର ସାଧନା ଆରମ୍ଭ ହେବ।

ଈଶ୍ୱରଙ୍କ ବାସନା-ଚୈତନ୍ୟ ସମ୍ମିଶ୍ରଣରେ ଯେଉଁ ଭାବରେ ଜଗତରେ କ୍ରିୟା କରେ, ତାଙ୍କରି ନାମ ଶକ୍ତି। ଅତଏବ ମୂଳା ପ୍ରକୃତି ହିଁ ଆଦ୍ୟାଶକ୍ତି। ଏହି ମୂଳା ପ୍ରକୃତିରୁ ସତ୍ତ୍ୱ, ରଜଃ ଓ ତମଃ ଗୁଣର ଉତ୍ପତ୍ତି ହୋଇଅଛି। ଏହି ତ୍ରିଗୁଣର ଦେବତା ବ୍ରହ୍ମା, ବିଷ୍ଣୁ ଓ ଶିବ। ଏହି ଦେବତାତ୍ରୟ ପ୍ରକଟ ଈଶ୍ୱରଙ୍କର ତିନିଗୋଟି ଗୁଣବିଭାଗ।

ଅଦୃଷ୍ଟ ସୂକ୍ଷ୍ମଶକ୍ତିଙ୍କୁ ଦେବତା କୁହାଯାଏ। ବର୍ତ୍ତମାନ ସୂକ୍ଷ୍ମଜଗତ୍ କାହାକୁ କହନ୍ତି, ସେ ବିଷୟରେ ଆଲୋଚନା କରିବା। ଜଗତର ଉପାଦାନ ଅର୍ଥାତ୍ ଜଗତର ସୂକ୍ଷ୍ମ ଜଗତ ବୀଜ ସ୍ୱରୂପ। ପଞ୍ଚମହାଭୂତର ପଞ୍ଚୀକରଣରେ ସ୍ଥୁଳଜଗତର ପ୍ରକାଶ। ପଞ୍ଚମହାଭୂତର ଯେଉଁ ସୂକ୍ଷ୍ମାଂଶ, ତାହା ହିଁ ସ୍ଥୁଳଜଗତର ସୃଷ୍ଟିକର୍ତ୍ତା ଦେବତା। ପଞ୍ଚମହାଭୂତ ହିଁ ପୁରାଣର ପଞ୍ଚଦେବତା। ଏମାନଙ୍କ ସ୍ଥୁଳଭାଗ ଦେବତା ନୁହନ୍ତି; ସୂକ୍ଷ୍ମ ଶକ୍ତିଙ୍କୁ ଦେବତା କୁହାଯାଏ। ସୂକ୍ଷ୍ମର ବିବର୍ତ୍ତନ ହିଁ ସ୍ଥୁଳଜଗତ। ବିବର୍ତ୍ତନ ଫଳରେ ଯେଉଁସବୁ ଅଦୃଷ୍ଟ ଶକ୍ତିର ଉଦ୍ଭବ ହୋଇଅଛି, ତାହାକୁ ମଧ୍ୟ ଦେବତା କୁହାଯାଏ। ତେଣୁ ଜଗତରେ ଯେତେ ପ୍ରକାର ସ୍ଥୁଳ ପଦାର୍ଥ ଉତ୍ପନ୍ନ ହୋଇଅଛି, ସେ ସମସ୍ତର ମଧ୍ୟ ଦେବତା ଅଛନ୍ତି। ପ୍ରତ୍ୟେକ ଶକ୍ତିର ମୂଳତତ୍ତ୍ୱ ସୂକ୍ଷ୍ମଜଗତରେ ଚିତ୍‌ଶକ୍ତି ବିଶିଷ୍ଟ ଦେବାତାମାନଙ୍କ ଦ୍ୱାରା ଅଧିକୃତ। ସେମାନେ ସୂକ୍ଷ୍ମଜଗତରେ ଥାଇ ସ୍ଥୁଳଜଗତକୁ ସୁଶୃଙ୍ଖଳ ଭାବରେ ପରିଚାଳନା କରନ୍ତି। ତେତିଶ କୋଟି ସ୍ଥୁଳ ପଦାର୍ଥରେ ତେତିଶ କୋଟି ଦେବତା ବିଦ୍ୟମାନ। ସୂକ୍ଷ୍ମ ଶକ୍ତିଗୁଡ଼ିକୁ ପୁରାଣକାରମାନେ ନାମ ଓ ରୂପ ଦେଇ ଦେବତା ବୋଲି କଳ୍ପନା କରିଛନ୍ତି। ପୁରାଣର ରୂପକ ଆଲୋଚନା କଲେ ଆମେ ଶକ୍ତିର ପ୍ରକୃତ ତତ୍ତ୍ୱ ଅବଗତ ହୋଇପାରିବା। କେବଳ ଆଧ୍ୟାତ୍ମିକ ନୁହେଁ, ପ୍ରତ୍ୟେକ ଜଟିଳ ତତ୍ତ୍ୱର ମଧ୍ୟ ନାନାବିଧ ଚିତ୍ର ଅଛି। ଆମ ଋଷିମାନେ ସଙ୍ଗୀତର ରାଗରାଗିଣୀର ରୂପ କଳ୍ପନା କରି ତାହାର

ଧ୍ୟାନ ମଧ୍ୟ ରଚନା କରିଯାଇଛନ୍ତି । ରାଗିଣୀ ଶୁଣିଲେ ମନରେ ଯେଉଁ ଭାବର ଉଦୟ ହୁଏ, ମୂର୍ତ୍ତି ଦର୍ଶନ କଲେ ମଧ୍ୟ ସେହିଭାବର ଉଦୟ ହୋଇଥାଏ । ଇନ୍ଦ୍ର, ଚନ୍ଦ୍ର ପ୍ରଭୃତି ଯାବତୀୟ ଦେବତାମାନେ ମଧ୍ୟ ସୃଷ୍ଟି-ସ୍ଥିତି-ଲୟର ଅଦୃଷ୍ଟ ସୂକ୍ଷ୍ମଶକ୍ତି । ବ୍ରହ୍ମରେ ତ୍ରିଗୁଣ ଓ ତ୍ରିଶକ୍ତି ବିଦ୍ୟମାନ । ତେଣୁ ତେତିଶ କୋଟି ଦେବଦେବୀ ଏହି ତ୍ରିଶକ୍ତିଙ୍କର ଭଗ୍ନାଂଶ ମାତ୍ର । ତେତିଶ କୋଟି ଦେବତାଙ୍କ ସମଷ୍ଟି ହିଁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର—ପ୍ରକଟ ବା ଈଶ୍ୱର ।

ମାନବର ବହିର୍ଜଗତର ଯେତେପ୍ରକାର ଭାବ ଓ ଶକ୍ତି ଅଛି, ସେସବୁ ଦେବତାଙ୍କର ସୂକ୍ଷ୍ମ ଶକ୍ତି । ସେହି ଦୈବୀଶକ୍ତି ସମୂହର ପୂର୍ଣ୍ଣଚୈତନ୍ୟ କରି ନ ପାରିଲେ ପୂର୍ଣ୍ଣଚୈତନ୍ୟ ଦିଗକୁ ଅଗ୍ରସର ହେବା ସହଜସାଧ୍ୟ ହେବ ନାହିଁ । ଦୈବଶକ୍ତିକୁ ଜାଗ୍ରତ କରିବା ନିମିତ୍ତ ଯେଉଁ ସାଧନା, ତାହା ହିଁ ଦେବତା-ଆରାଧନା । ବ୍ୟୋମତତ୍ତ୍ୱର ସାଧନା କଲେ ଶ୍ରବଣେନ୍ଦ୍ରିୟର ଶକ୍ତି ବୃଦ୍ଧିପାଏ; ତେଣୁ ଆରାଧନାକୁ ଶକ୍ତିର ଉତ୍କର୍ଷ ବୋଲି କୁହାଯାଇଥାଏ ।

ଭଗବାନ ସର୍ବଭୂତରେ ଅଧିଷ୍ଠାନ କରନ୍ତି । ତେଣୁ ସମସ୍ତ ଆରାଧନା ସେହି ଭଗବାନଙ୍କର । ଈଶ୍ୱରଙ୍କ ସ୍ୱରୂପତତ୍ତ୍ୱ ହିଁ ଜଗତତତ୍ତ୍ୱ । ସୁତରାଂ, ଈଶ୍ୱରଙ୍କୁ ବୁଝିବାକୁ ହେଲେ ଜଗତତତ୍ତ୍ୱ ଆଲୋଚନା କରିବାକୁ ହେବ । ଦେବତା ହିଁ ସ୍ଥୂଳବିଶ୍ୱର ମୂଳ । ତେତିଶ କୋଟି ଦେବତା ଭିନ୍ନ ଭିନ୍ନ ନୁହନ୍ତି—ବ୍ରହ୍ମା ବା ସୃଜନାତ୍ମିକା ଶକ୍ତି, ବିଷ୍ଣୁ ବା ପାଳନାତ୍ମିକା ଶକ୍ତି ଓ ଶିବ ବା ସଂହାରାତ୍ମିକାଶକ୍ତି ଈଶ୍ୱରଙ୍କର ଭିନ୍ନ ଭିନ୍ନ ଅଂଶ ମାତ୍ର । ଏହି ବ୍ରହ୍ମା, ବିଷ୍ଣୁ ଓ ଶିବ ମଧ୍ୟ ଏକ ଈଶ୍ୱରଙ୍କ ତ୍ରିଗୁଣ ମାତ୍ର । ଏହି ମୌଳିକ ତତ୍ତ୍ୱ ଅବଗତ ହେଲେ ସାଂପ୍ରଦାୟିକ ଭେଦ ତିରୋହିତ ହେବ । ତେଣୁ ହିନ୍ଦୁମାନେ ବହୁ ଦେବତାଙ୍କ ଉପାସକ ନୁହଁନ୍ତି । ଯେଉଁମାନଙ୍କ କ୍ଷୁଦ୍ର ମସ୍ତିଷ୍କରେ ଏହିସବୁ ବୃହତ୍ ତତ୍ତ୍ୱ ବା ମହତ୍ ତତ୍ତ୍ୱର ଧାରଣା ସମ୍ଭବ ହୁଏ ନାହିଁ, ସେହିମାନେ ହିଁ ହିନ୍ଦୁମାନଙ୍କୁ ତେତିଶ କୋଟି ଦେବତାଙ୍କ ଉପାସକ ବୋଲି ନିନ୍ଦା ସମାଲୋଚନା କରିଥାନ୍ତି । ହିନ୍ଦୁମାନଙ୍କ ଈଶ୍ୱର ସର୍ବବ୍ୟାପୀ; ତେଣୁ ସମୁଦାୟ ବିଶ୍ୱକୁ ନେଇ ହିନ୍ଦୁମାନେ ଈଶ୍ୱରୋପାସନା କରନ୍ତି । ସମସ୍ତ ବୃତ୍ତିର ସମଞ୍ଜସୀଭୂତ ସଂଯମ ଓ ତୃପ୍ତିରେ ମାନବର ଈଶ୍ୱରୋପାସନା । ତେଣୁ ଅଜ୍ଞ ମାନବଙ୍କ ନିମିତ୍ତ ବାହ୍ୟପୂଜାର ବ୍ୟବସ୍ଥା ରହିଛି । ଧର୍ମଜୀବନ ଲାଭ କରି ଦୈବୀଶକ୍ତି ବଳରେ ସେ ଜଡ଼କବଳରୁ ମୁକ୍ତି ଲାଭ କରେ । ହିନ୍ଦୁଧର୍ମର ଉପାସନା-ପଦ୍ଧତି ଅଧିକାରୀଭେଦରେ ପ୍ରଦତ୍ତ ।

ଅନ୍ୟଠାରୁ ନିନ୍ଦା ଶୁଣି ତୁମେ ସ୍ୱଧର୍ମରେ ଆସ୍ଥାହୀନ ହୁଅ ନାହିଁ। ହିନ୍ଦୁଧର୍ମର ତତ୍ତ୍ୱ ବୁଝିବାକୁ ଅନ୍ୟମାନଙ୍କର ଏବେ ମଧ୍ୟ ବହୁ ବିଳମ୍ବ ଅଛି।

ଆର୍ଯ୍ୟଜାତି ମଧ୍ୟରେ ପ୍ରବୃତ୍ତିମାର୍ଗର ପଞ୍ଚ ଉପାସକମାନେ ମହାଶକ୍ତିଙ୍କର ଦୈବୀମୂର୍ତ୍ତିର ଉପାସନା କରିଥାନ୍ତି। ଶକ୍ତି ଦଶବିଧ ଭାଗରେ ବିଭକ୍ତ। ଦଶବିଧ ଶକ୍ତିର ଦୈବୀମୂର୍ତ୍ତି ହିଁ ମହାବିଦ୍ୟା।

ପ୍ରଥମା ମହାବିଦ୍ୟା ମହାଶକ୍ତି କାଳୀ। ଏହା କାଳରେ ପ୍ରତୀକ ଏବଂ ଦ୍ୱିତୀୟା ଅନନ୍ତଦେଶର ପ୍ରକୃତିରୂପିଣୀ ଦେଶଶକ୍ତି ତାରା। କାଳ (Time) ତାରା ଦେଶ ଶକ୍ତି (Space)। ଦେଶ ଓ କାଳରେ ଯେଉଁ ବିଭିନ୍ନତା, କାଳୀ ଓ ତାରାଙ୍କ ମଧ୍ୟରେ ସେହି ବିଭିନ୍ନତା। କାଳଜ ପଦାର୍ଥ କାଳୀଙ୍କଠାରେ ଓ ଦେଶଜ ପଦାର୍ଥ ତାରାଙ୍କଠାରେ ଲୟ ହୁଅନ୍ତି। କାଳ ଓ ଦେଶ ଅନ୍ତର ବୋଲି ସେମାନେ ଆବରଣଶୂନ୍ୟା। ଆକାଶରୁ ସର୍ବଶକ୍ତି ସମ୍ପନ୍ନା ଚିରଯୌବନା ଷୋଡ଼ଶୀଙ୍କର ଉତ୍ପତ୍ତି। ଶକ୍ତିଙ୍କର ବଳ ଚିରକାଳ ଅକ୍ଷୁଣ୍ଣ ଥାଏ, ତେଣୁ ସେ ଷୋଡ଼ଶୀ। ଏହି ଶକ୍ତି ହିଁ ଈଶ୍ୱରଙ୍କର ବଳ। ଏଥିପାଇଁ ପଞ୍ଚଦେବତା ତାଙ୍କ ଧ୍ୟାନରେ ରତ। ସେହି ଆଦ୍ୟଶକ୍ତିଙ୍କ ଠାରୁ ସେମାନେ ଶକ୍ତି ଲାଭ କରିଛନ୍ତି। କାଳୀ ଓ ତାରାଙ୍କ ଠାରୁ ଏହି ବିଦ୍ୟାର ଉତ୍ପତ୍ତି। ଚତୁର୍ଥ ବିଦ୍ୟାର ନାମ ଭୁବନେଶ୍ୱରୀ। ଶକ୍ତିଙ୍କର ଦୁଇଗୋଟି ରୂପ—ଗୋଟିଏ ଶାନ୍ତ କୋମଳ, ଅନ୍ୟଟି ପ୍ରଚଣ୍ଡ। ତେଣୁ ଭୁବନେଶ୍ୱରୀଙ୍କ ରୂପ ମନୋହର। ଭୈରବୀଙ୍କର ଚଣ୍ଡୀଶକ୍ତି ଅଷ୍ଟ ଭାବରେ ବିଭକ୍ତ ହୋଇ ଅଷ୍ଟନାୟିକା ନାମ ଧାରଣ କରିଛନ୍ତି। ଅନ୍ୟମାନେ ବିଜ୍ଞାନ ଶକ୍ତିଙ୍କର ଏତେ ବିଶ୍ଳେଷଣ କରି ନାହାନ୍ତି। ଚିନ୍ନମସ୍ତା ପାଳିକାଶକ୍ତିର ପ୍ରତୀକ। ଭୋକ୍ତା, ଭୋଗ୍ୟ ଓ ଭୋଗ—ଏହା ହିଁ ତ୍ରିଧାରା। ପୀଡ଼ିତ ଜନନିକଟରେ ଭୋଗ୍ୟ ଅଛି; କିନ୍ତୁ ଭୋଗ କରିବାର ଶକ୍ତି ନାହିଁ। ଜଗତର ଭୋଗ ପୂର୍ଣ୍ଣ ହେଲେ ପ୍ରଳୟ ହୁଏ। ତେଣୁ ପ୍ରଳୟ ରୂପିଣୀ ଧୂମାବତୀଙ୍କର ଆବିର୍ଭାବ। ଧୂମାବତୀ ଭଗବତୀଙ୍କର ଘୋର ପ୍ରଳୟ ମୂର୍ତ୍ତି। ତାଙ୍କର ଅଷ୍ଟ ମୂର୍ତ୍ତି ବଗଳା ରଜୋରୂପିଣୀ। ଏହି ମୂର୍ତ୍ତିରେ ସେ ଅସୁର ନାଶ କରନ୍ତି। ଅସୁର ନାଶ ହେଲେ ଅର୍ଥାତ୍ ଆସୁରିକ ପ୍ରବୃତ୍ତି ଧ୍ୱଂସରେ ଯେଉଁ ଜ୍ଞାନଶକ୍ତିର ଉଦୟ ହୁଏ, ତାହା ହିଁ ନିର୍ମଳ ଜ୍ଞାନରୂପିଣୀ ମାତଙ୍ଗିନୀ ମୂର୍ତ୍ତି। ମାତଙ୍ଗିନୀ ରୂପରେ ବିଶ୍ୱରୂପିଣୀ ଭଗବତୀ, ଅଜ୍ଞାନ ରୂପରେ ଅବିଦ୍ୟାନାଶିନୀ। କୃଷ୍ଣାଙ୍ଗୀ ତମୋରୂପିଣୀ ଶକ୍ତି। ତତ୍ପରେ ଐଶ୍ୱର୍ଯ୍ୟଶକ୍ତି କମଳା। କାଳୀ ତାରା ମୂର୍ତ୍ତି ହିଁ

ମହାବିଦ୍ୟା । ଅନ୍ୟ ଅଷ୍ଟମୂର୍ତ୍ତି ତାଙ୍କରିଠାରୁ ଉତ୍ପନ୍ନ । ତେଣୁ ଦଶବିଧ ପ୍ରକୃତି ଶକ୍ତି ହିଁ ଦଶ ମହାବିଦ୍ୟା । ଏହି ଦଶ ମହାବିଦ୍ୟାଙ୍କର ସମଷ୍ଟି ମୂର୍ତ୍ତି ହିଁ ଦଶଭୂଜା ଭଗବତୀମୂର୍ତ୍ତି । ଶ୍ରୀଗୁରୁଦେବଙ୍କ ଠାରୁ ଏହି ତତ୍ତ୍ୱଜ୍ଞାନ ଲାଭ କରି ସେହି ସାଧନାରେ ପ୍ରବୃତ୍ତ ହେବାକୁ ପଡ଼େ । ତତ୍ତ୍ୱଜ୍ଞାନ ଉତ୍ପନ୍ନ ହେଲେ ମହାଶକ୍ତିଙ୍କର ନିତ୍ୟାନନ୍ଦପ୍ରଦ ଭଗବତୀମୂର୍ତ୍ତି ସାକ୍ଷାତ୍ ଭାବରେ ପ୍ରତ୍ୟକ୍ଷ ହୋଇଥାନ୍ତି ।

ବ୍ରହ୍ମାଣ୍ଡରେ ଯାହା ଶକ୍ତି, ସେହି ସମଷ୍ଟି ଶକ୍ତି ହିଁ ଦଶଭୁଜା ଦୁର୍ଗା । ସଗୁଣ ବହ୍ମଙ୍କର ସାକାରରୂପ ବା ନାରୀମୂର୍ତ୍ତି ହିଁ ଦୁର୍ଗାମୂର୍ତ୍ତି । ଏହି ମହାମାୟା ନିତ୍ୟ । ଏହି ସମସ୍ତ ବିଶ୍ୱ ତାଙ୍କରିଠାରୁ ଉତ୍ପନ୍ନ । ତାଙ୍କ ସର୍ଜିତ ବିଶ୍ୱରେ ପୁଣ୍ୟଶକ୍ତି ଓ ପାପଶକ୍ତିଙ୍କର ସଂଗ୍ରାମ ମଧ୍ୟ ନିତ୍ୟ । ଏହି ସଂଗ୍ରାମରେ କେତେବେଳେ ଦେବତାଶକ୍ତି, ପୁଣି କେତେବେଳେ ବା ଆସୁରିକ ଶକ୍ତିର ଜୟ ହେଉଅଛି । ଅସୁର ଜୟରେ ଜଗତ୍ ପାପଶକ୍ତିରେ ବୁଡ଼ିଯାଏ, ଦେବତାମାନେ ହୀନବଳ ହୋଇ ପଡ଼ନ୍ତି । ସେତେବେଳେ ପୁଣ୍ୟଶକ୍ତିର ରକ୍ଷା ନିମିତ୍ତ ଏହି ଶକ୍ତିଙ୍କର ଆବିର୍ଭାବ ହୁଏ । ଏହି ଦେବୀ ସମସ୍ତ ଦେବଶକ୍ତିର ସମଷ୍ଟି ଶକ୍ତି । ଶକ୍ତି ଯେତେବେଳେ ବ୍ୟଷ୍ଟିଭାବରେ କ୍ରିୟାଶୀଳା, ସେତେବେଳେ ସେ ଦେବଶକ୍ତି ଏବଂ ଯେତେବେଳେ ଏହି ଶକ୍ତି ସମଷ୍ଟି ଭାବରେ କ୍ରିୟା କରନ୍ତି, ତାଙ୍କର ନାମ ହୁଏ ମହାଶକ୍ତି ଦୁର୍ଗା ।

ପାଶ୍ଚାତ୍ୟ ବୈଜ୍ଞାନିକମାନେ ଜଗତ୍‌କୁ ସ୍ଥୁଳଦୃଷ୍ଟିରେ ଦେଖନ୍ତି । ତେଣୁ ସେମାନଙ୍କ ଦୃଷ୍ଟି ସ୍ଥୁଳଜଗତରେ ସୀମାବଦ୍ଧ । ଜଗତର ଯେ ସୂକ୍ଷ୍ମତମ ସ୍ତର ଅଛି, ତାହା ସେମାନେ ଅବଗତ ନୁହଁନ୍ତି । ବହୁ କାୟକ୍ଳେଶ ଦ୍ୱାରା ସେମାନେ ପଦାର୍ଥର ଘନ, ତରଳ, ବାଷ୍ପୀୟ ଓ ବେୟ ଅବସ୍ଥା ସ୍ୱୀକାର କରିଛନ୍ତି । ଏହା ଉପରେ କେଉଁ ତତ୍ତ୍ୱ ନିହିତ, ସେମାନେ ତାହା ଜାଣିବାକୁ କ୍ଷମ ନୁହନ୍ତି । ଆର୍ଯ୍ୟଋଷିମାନଙ୍କ ମତରେ ଭୂଲୋକର ପରେ ପରେ ସାତଗୋଟି ସ୍ତର ଅଛି । ପଞ୍ଚଭୂତ ଗ୍ରହଣ ନିମିତ୍ତ ଆମ ପଞ୍ଚଇନ୍ଦ୍ରିୟର ସୃଷ୍ଟି ହୋଇଅଛି, କିନ୍ତୁ ଶେଷ ତତ୍ତ୍ୱଗ୍ରହଣର ଉପଯୋଗୀ ଇନ୍ଦ୍ରିୟଶକ୍ତିର ବିକାଶ ମାନବର ହୋଇନାହିଁ ।

ଗୋଟିଏ ଗୋଟିଏ ତତ୍ତ୍ୱର ଉପାଦାନଭୂତ ପରମାଣୁକୁ 'ତନ୍ମାତ୍ର' କୁହାଯାଏ । ପାର୍ଥିବ ପରମାଣୁର ନାମ ଗନ୍ଧତନ୍ମାତ୍ର, ଜଳୀୟ ପରମାଣୁର ନାମ ରସତନ୍ମାତ୍ର, ତୈଜସ୍ ପରମାଣୁର ନାମ ରୂପତନ୍ମାତ୍ର, ବାୟବୀୟ ପରମାଣୁର ନାମ ସ୍ପର୍ଶତନ୍ମାତ୍ର ଏବଂ ଆକାଶୀୟ ପରମାଣୁର ନାମ ଶବ୍ଦତନ୍ମାତ୍ର । ଏହି ଭୂଲୋକ ପରି ଆହୁରି

ଛଅଗୋଟି ଲୋକ ବା ସ୍ତର ଅଛି । ଏହାକୁ ସପ୍ତଲୋକ କୁହାଯାଏ । ଭୂ, ଭୁବଃ, ସ୍ୱଃ, ମହ, ଜନ, ତପଃ ଓ ସତ୍ୟ—ଏହା ସପ୍ତଲୋକ । ପ୍ରତି ଲୋକରେ ମଧ୍ୟ ସାତଗୋଟି ସ୍ତର ବିଦ୍ୟମାନ । ସତ୍ୟଲୋକର ଯେଉଁ ସୂକ୍ଷ୍ମାତିସୂକ୍ଷ୍ମ ଆଦିତତ୍ତ୍ୱ, ତାହା ହିଁ ଆର୍ଯ୍ୟଋଷିମାନଙ୍କ କଥିତ ମୂଳା ପ୍ରକୃତି । ଏହି ପ୍ରକୃତି କ୍ରମବିବର୍ତ୍ତିତ ହୋଇ ଭୂଲୋକର ଆଦିତତ୍ତ୍ୱର ରୂପ ଧାରଣ କରିଅଛି । ଏହି ମୂଳା ପ୍ରକୃତିର ନାମ ମାୟା । ଏହି ପ୍ରକୃତି ତ୍ରିଗୁଣାତ୍ମିକା । ଗୁଣ ରହିତ ହେଲେ ଅବ୍ୟକ୍ତରେ ପରିଣତ ହୋଇଯାଏ; ଜଗତ୍ ଧ୍ୱଂସ ପାଇଯାଏ ।

ଏହି ପ୍ରକୃତିଦେବୀ ସୃଷ୍ଟି-ସ୍ଥିତି-ସଂହାରକାରିଣୀ । ତାଙ୍କୁ ହିଁ କାଳୀ, ଦୁର୍ଗା ବୋଲି କହନ୍ତି । ଦୁର୍ଗାଶକ୍ତି ନାରାୟଣଙ୍କର ଶକ୍ତିମୂର୍ତ୍ତି । ଏହି ଶକ୍ତି ପ୍ରଭାବରେ ବ୍ରହ୍ମାଦି ଦେବତାମାନେ ବିଶ୍ୱସଂସାର ଜୟ କରନ୍ତି । ଏହି ଶକ୍ତି ଆମର ଜୀବନୀଶକ୍ତି । ଏହି ଶକ୍ତି ହିଁ ସରସ୍ୱତୀ ଓ ସାବିତ୍ରୀ । ବହ୍ନିର ଯେଉଁ ଦାହିକାଶକ୍ତି, ଦେବତାମାନଙ୍କର ଯେଉଁ ଦେବଶକ୍ତି, ତପସ୍ୱୀମାନଙ୍କର ଯେଉଁ ତପଃଶକ୍ତି, ସେସବୁ ହିଁ ଏହି ଶକ୍ତି । ଭକ୍ତମାନଙ୍କ ମଧ୍ୟରେ ଏହି ଶକ୍ତି ଭକ୍ତି ଦେବୀ ରୂପରେ ପୂଜିତା । ଏହି ଶକ୍ତିଙ୍କର ବିକାଶ ହେଲେ ଜ୍ଞାନ, ବିଦ୍ୟା, ବୁଦ୍ଧି ବିଶେଷ ଭାବରେ ବୃଦ୍ଧି ପାଏ । ସେହି ବିଦ୍ୟା-ବୁଦ୍ଧି, ଐଶ୍ୱର୍ଯ୍ୟ ଓ ବୀର୍ଯ୍ୟବଳରେ ପଶୁବଳ ଶାସିତ ହୋଇଥାଏ । ଇନ୍ଦ୍ରିୟମାନଙ୍କର ରାଜା ମନରୂପ ସିଂହ ତାଙ୍କର ବାହନ; ଅବିଦ୍ୟାଜାତ ଅସୁର ହିଁ ମହିଷାସୁର । ଦକ୍ଷିଣରେ ସିଦ୍ଧିଦାତା ଜ୍ଞାନଗୁରୁ ଗଣପତି; ତତ୍ପରେ ଐଶ୍ୱର୍ଯ୍ୟପ୍ରଦାୟିନୀ ଦେବୀ ଲକ୍ଷ୍ମୀ । ସାଧାରଣ ମାନବ-ହୃଦୟରେ ପରମାତ୍ମା କେବଳ ଶକ୍ତିରୂପରେ ପ୍ରକଟିତ ହୁଅନ୍ତି । ଐଶ୍ୱର୍ଯ୍ୟ, ଜ୍ଞାନ, ବଳ ତାଙ୍କରି ବିଭୂତି । ଶକ୍ତି ଥିଲେ ଐଶ୍ୱର୍ଯ୍ୟ, ଜ୍ଞାନ, ସିଦ୍ଧି ଓ ବୀର୍ଯ୍ୟ, ଲକ୍ଷ୍ମୀ, ସରସ୍ୱତୀ, ଗଣପତି ଓ କାର୍ତ୍ତିକେୟ ମୂର୍ତ୍ତିରେ ପୂଜିତ ହୁଅନ୍ତି । ଉପଯୁକ୍ତ ଭାବରେ ତତ୍ତ୍ୱ ବୁଝି ପୂଜାନୁଷ୍ଠାନ କରିବାକୁ ହେବ । ତାହା ହେଲେ ଯାଇ ଜାତୀୟ ଉନ୍ନତି ସାଧିତ ହୋଇପାରିବ ।

ଯେଉଁମାନେ ଏକତ୍ର ଭାବରେ ଶକ୍ତିପୂଜା କରି ନ ପାରନ୍ତି, ସେମାନେ ସ୍ୱତନ୍ତ୍ର ଭାବରେ ଶକ୍ତିପୂଜା କରିଥାନ୍ତି । ବସନ୍ତକାଳର ପୂଜା ମାତୃ-ଭାବର ପୂଜା । ଶାରଦୀୟା ପୂଜା କନ୍ୟାଭାବର ପୂଜା । ଏହି ପୂଜା ବାତ୍ସଲ୍ୟ ଭାବର; ଏହି ଆହ୍ୱାନ ଅତି ମଧୁର । ଆଗମନୀ ହି ଭକ୍ତ ହୃଦୟରେ ଦେବୀଙ୍କୁ ମଧୁର ଆହ୍ୱାନ ସଦୃଶ ।

ଶକ୍ତି ସର୍ବଦା ଅସୁର ବିନାଶ କରିଥାନ୍ତି । ଦର୍ଶନଶାସ୍ତ୍ର ଅନୁସାରେ ମନର ପଞ୍ଚଅବସ୍ଥା । ମୂଢ଼, କ୍ଷିପ୍ତ, ବିକ୍ଷିପ୍ତ, ଏକାଗ୍ର ଓ ନିରୁଦ୍ଧଭେଦରେ ଚିତ୍ତର ଅବସ୍ଥା ପଞ୍ଚବିଧ । ଯେଉଁ ଅବସ୍ଥାରେ ଚିତ୍ତ ସର୍ବଦା ଭଗବତ୍ ବିରୋଧୀ କାର୍ଯ୍ୟରେ ପ୍ରବୃତ୍ତ ହୁଏ, ତାହା ହିଁ ମୂଢ଼ ଅଜ୍ଞାନ ଅବସ୍ଥା । ସେହି ମୂଢ଼ ଅବସ୍ଥା ହିଁ ଦୈତ୍ୟଦାନବର ଅବସ୍ଥା । ରଜୋଗୁଣର ଉଦୟରେ ଚିତ୍ତର ଯେଉଁ ଅବସ୍ଥା, ତାହା କ୍ଷିପ୍ତ ଅବସ୍ଥା । ସେଥିରେ ସୁଖ-ଦୁଃଖ ଅନୁଭୂତ ହୁଏ । ତାହା ଯକ୍ଷ-ପିଶାଚଙ୍କ ଅବସ୍ଥା । ସତ୍ତ୍ୱଗୁଣର ମିଶ୍ରଣରେ ଯେଉଁ ଅବସ୍ଥା ହୁଏ, ତାହା ବିକ୍ଷିପ୍ତ ଅବସ୍ଥା । ତାହା ହିଁ ଦେବତାମାନଙ୍କର ଅବସ୍ଥା । ସତ୍ତ୍ୱଗୁଣ ବିଶୁଦ୍ଧ ହେଲେ ତାହା ଏକାଗ୍ର ହୁଏ । ସେତେବେଳେ ସ୍ୱରୂପଜ୍ଞାନ ଲାଭ ହୋଇଥାଏ । ପ୍ରତ୍ୟେକ ଜୀବ ପ୍ରଥମେ ତମୋଗୁଣାନ୍ୱିତ ଥାଆନ୍ତି । ତେଣୁ ଜୀବ ଅଶେଷ ଦୁଃଖ ଭୋଗ କରେ । ଚିତ୍ତ ଦୈତ୍ୟଦାନବଙ୍କ କ୍ରୀଡ଼ାଭୂମିରେ ପରିଣତ ହୁଏ । ସେତେବେଳେ ମହାଶକ୍ତି ମାତୃ ମୂର୍ତ୍ତିରେ ଆବିର୍ଭୂତା ହୋଇ ସେହି ଅଜ୍ଞାନ ନାଶ କରନ୍ତି । ସେତେବେଳେ ସେହି ଚିତ୍ତରେ ଦେବତାମାନେ ବାସ କରନ୍ତି; କିନ୍ତୁ ରଜୋଗୁଣର ଉଦ୍ରେକ ହେଲେ ଜୀବର ଚିତ୍ତ ରାକ୍ଷସ ଭାବାପନ୍ନ ହୁଏ । ଆତ୍ମସୁଖ ନିମିତ୍ତ ପରପୀଡ଼ନ ତାହାର ନିତ୍ୟ କାର୍ଯ୍ୟରେ ପରିଣତ ହୁଏ । ସେତେବେଳେ ଜୀବ ସାଧନା କରି ରଜୋଗୁଣ ଧ୍ୱଂସ କରେ; କିନ୍ତୁ ସତ୍ତ୍ୱପ୍ରତିଷ୍ଠା ନିମିତ୍ତ ଦେବୀଙ୍କ ନିକଟରେ ପ୍ରାର୍ଥନା କରେ । ପରେ ସାଧକ ଭଗବତ୍ ସେବାନିମିତ୍ତ ଦେବୀଙ୍କୁ କନ୍ୟାଭାବରେ ଦର୍ଶନ କରିବାକୁ ଇଚ୍ଛା କରିଥାନ୍ତି । ସାଧକଙ୍କ ହୃଦୟ ସାତ୍ତ୍ୱିକଭାବରେ ପୂର୍ଣ୍ଣ ହେଲେ ତାଙ୍କ ଅନ୍ତରର ଭଗବତ୍ ଶକ୍ତି ଭଗବତୀ ମୂର୍ତ୍ତିରେ, ଅନ୍ତରର ସାତ୍ତ୍ୱିକ ଐଶ୍ୱର୍ଯ୍ୟ ଲକ୍ଷ୍ମୀମୂର୍ତ୍ତିରେ, ଅନ୍ତରର ଦିବ୍ୟଜ୍ଞାନ ଓ ପବିତ୍ରତା ସରସ୍ୱତୀ ମୂର୍ତ୍ତିରେ ପ୍ରକାଶିତା ହୁଅନ୍ତି । ଅନ୍ତରର ଅଦମ୍ୟ ବୀରତ୍ୱ, ଯେଉଁ ବୀରତ୍ୱରେ ସମସ୍ତ ପାପରାଶିରୂପ ମହିଷାସୁର ବିଜିତ ହୁଏ, ଯେଉଁ ସଂଯମରେ ରିପୁକୁଳ ବଶୀଭୂତ ହୁଅନ୍ତି, ତାହା କାର୍ତ୍ତିକେୟ ମୂର୍ତ୍ତିରେ ଏବଂ ଭଗବତ୍‌ଶକ୍ତି ପ୍ରସୂତ ସିଦ୍ଧିକୁ ଗଣେଷ ମୂର୍ତ୍ତିରେ ଚତୁର୍ଦ୍ଦିଗରେ ପ୍ରତ୍ୟକ୍ଷ କରନ୍ତି । ସେତେବେଳେ ହୃଦୟରେ ଦୃଢ଼ାଭକ୍ତିର ଉଦୟ ହୁଏ ।

ତତ୍ପରେ ସାଧନ ନିଜ ଅନ୍ତରର ତାମସିକ, ରାଜସିକ ଭାବଗୁଡ଼ିକର ବିସର୍ଜ୍ଜନ କରି ଅର୍ଥାତ୍ କାମ, କ୍ରୋଧ, ହିଂସା, ଦ୍ୱେଷ, କୁଟିଳତା, ମିଥ୍ୟା, ପ୍ରତାରଣା, ପ୍ରବଞ୍ଚତା ପ୍ରଭୃତି ଅସତ୍ୟର ଉଚ୍ଛେଦସାଧନ ପୂର୍ବକ ସତ୍ତ୍ୱଗୁଣ ସମ୍ପନ୍ନ ହୁଅନ୍ତି ଏବଂ

ମା'ଙ୍କୁ ହୃଦୟରେ ପ୍ରତିଷ୍ଠା କରନ୍ତି। ବିଜୟାର୍ଥେ ଅନ୍ତରରେ ଭଗବତ୍ ପ୍ରତିଷ୍ଠା। ପୁଣି ବିସର୍ଜ୍ଜନ ନ ହେଲେ ପ୍ରତିଷ୍ଠା ମଧ୍ୟ ହୋଇପାରେ ନାହିଁ। ତେଣୁ ଅସତ୍ୟର ବିସର୍ଜ୍ଜନ କରି ସତ୍ୟର ପ୍ରତିଷ୍ଠା କରିବା ହିଁ ବିଜୟାର ଉଦ୍ଦେଶ୍ୟ।

ବିଶ୍ୱର ପାଳନକର୍ତ୍ତା ବିଷ୍ଣୁ ସତ୍ତ୍ୱଗୁଣର ପ୍ରତୀକ। ସେହି ଗୁଣର ଶକ୍ତି ତ୍ରିଭୁବନ ପାଳନକାରିଣୀ ଲକ୍ଷ୍ମୀଦେବୀ। ଏହି ଶକ୍ତି ସ୍ଥିତିର ଦେବତା। ଆବିର୍ଭାବ ଓ ତିରୋଧାନର ମଧ୍ୟାବସ୍ଥାକୁ ସ୍ଥିତି କୁହାଯାଏ। ଲକ୍ଷ୍ମୀଦେବୀ ଏହି ସ୍ଥିତିର ଶକ୍ତି ବା ପାଳନକାରିଣୀ ଶକ୍ତି। ଲକ୍ଷ୍ମୀଦେବୀ ଆଦ୍ୟାଶକ୍ତିଙ୍କର ବିକ୍ଷେପଶକ୍ତି।

ମହାମାୟାଙ୍କର ଦ୍ୱିବିଧ ଶକ୍ତି—ଆବରଣୀ ଏବଂ ବିକ୍ଷେପ। ଯେଉଁ ଶକ୍ତିରେ ସ୍ୱରୂପଜ୍ଞାନ ଆବରିତ ହୁଏ, ତାହା ଆବରଣୀ ଶକ୍ତି କାଳୀ ଏବଂ ଯେଉଁ ଶକ୍ତିରେ ସୃଷ୍ଟିସାମର୍ଥ୍ୟ ବିଦ୍ୟମାନ, ତାହା ବିକ୍ଷେପ ଶକ୍ତି। ଅଜ୍ଞାନଜନିତ ସୃଷ୍ଟିକୁ ବିକ୍ଷେପ ଶକ୍ତି କୁହାଯାଏ। କିନ୍ତୁ ଅବୋଧ ମାନବ ନାରାୟଣଙ୍କୁ ପୂଜା ନ କରି ଲକ୍ଷ୍ମୀପୂଜାରେ ବ୍ୟସ୍ତ। ଧର୍ମର ସାଧନା କଲେ ଧନ, ଐଶ୍ୱର୍ଯ୍ୟ ସ୍ୱତଃ ଆସିଥାଏ।

ଶିବଙ୍କର ସଂହରଣଶକ୍ତିର ନାମ କାଳୀ। ସେ ମହାକାଳ ଉପରେ ନୃତ୍ୟପରାୟଣା ଅର୍ଥାତ୍ ସମସ୍ତ କାର୍ଯ୍ୟ ତାଳରେ ସମ୍ପନ୍ନ ହେଉଅଛି। ମୂଳା ପ୍ରକୃତି ତ୍ରିଗୁଣପ୍ରସବିନୀ ଏବଂ ସ୍ଥୁଳା ପ୍ରକୃତି, ଯେ କି ଆମର ମା, ସେ ବିଶ୍ୱପ୍ରସବିନୀ।

ବ୍ରହ୍ମାଙ୍କର ସୃଷ୍ଟିକାରିଣୀ ଶକ୍ତିର ନାମ ସରସ୍ୱତୀ। ଏହି ତ୍ରିଶକ୍ତି ଅଭିନ୍ନା ଓ ଏକ। ପ୍ରାଣ ଓ ଦେହର ଯେପରି ସମ୍ବନ୍ଧ, ଶକ୍ତି ଓ ଶକ୍ତିମାନଙ୍କ ଭିତରେ ସେହିପରି ନିତ୍ୟ ସମ୍ବନ୍ଧ ବିଦ୍ୟମାନ। ତ୍ରିଶକ୍ତିର ସମନ୍ୱୟୀ ମୂର୍ତ୍ତି ହିଁ ଗାୟତ୍ରୀଦେବୀ। ତେଣୁ ଗାୟତ୍ରୀ-ଉପାସନାଦ୍ୱାରା ସଗୁଣ ବ୍ରହ୍ମଙ୍କର ଉପାସନା ହୋଇଥାଏ। ସରସ୍ୱତୀଦେବୀଙ୍କ ଉପାସନା ଦ୍ୱାରା ତତ୍ତ୍ୱଜ୍ଞାନ ଲାଭ ହୁଏ।

ମହତ୍‌ପ୍ରକୃତି ଗର୍ଭାଧାନର ସ୍ଥାନ ଏବଂ ଭଗବାନ ସେଥିରେ ବୀଜପ୍ରଦ ପିତା। ତେଣୁ ସୃଷ୍ଟି ଉତ୍ପନ୍ନ ହୁଏ।

ଭଗବାନଙ୍କର ଅନନ୍ତ ଶକ୍ତି। ସେଥିମଧ୍ୟରୁ ମାୟାଶକ୍ତି ଓ ସ୍ୱରୂପଶକ୍ତି ପ୍ରାଧାନ। ପୁଣି ଏହି ସ୍ୱରୂପଶକ୍ତି ତିନି ଭାଗରେ ବିଭକ୍ତ—ସଂବିତ୍, ସନ୍ଧିନୀ ଓ ହ୍ଲାଦିନୀ। ଭକ୍ତଙ୍କର ଏହି ତିନ ସ୍ୱରୂପଶକ୍ତି ହିଁ ଭଗବାନଙ୍କୁ ଆଲିଙ୍ଗନ କରି ବିରାଜିତ। ସନ୍ଧିନୀ ଶକ୍ତିରେ ଭଗବତ୍‌ସତ୍ତା ବିଶ୍ରାମ ଲାଭ କରେ। ସଂବିତ୍ ଶକ୍ତି ଭଗବାନଙ୍କ ଠାରେ ଭଗବତ୍‌ଜ୍ଞାନ ଉତ୍ପନ୍ନ କରାଏ ଏବଂ ହ୍ଲାଦିନୀ ଶକ୍ତି ଆନନ୍ଦ ଦାନ କରେ।

ଏହି ଶକ୍ତିର ସାରଭାଗ ପ୍ରେମ ଓ ଭାବ । ଭାବପରାକାଷ୍ଠାର ନାମ ମହାଭାବ । ଶ୍ରୀମତୀ ରାଧିକା ମହାଭାବ ସ୍ୱରୂପିଣୀ । ହ୍ଲାଦିନୀ ଶକ୍ତି ଭଗବାନଙ୍କ ଠାରେ ଅର୍ପିତ ହେଲେ ଜୀବ ପରମାନନ୍ଦ ଲାଭ କରେ । ଭଗବାନ ଶ୍ରୀକୃଷ୍ଣ ସମସ୍ତ ଜୀବଭିତରେ ଆତ୍ମାରୂପରେ ବିରାଜିତ । ଭକ୍ତଙ୍କର ହୃଦୟକ୍ଷେତ୍ର ହିଁ ବୃନ୍ଦାବନ । ଯେଉଁ ଆଦ୍ୟାଶକ୍ତି ମହାମାୟାଙ୍କ ବିଷୟ ଆଲୋଚିତ ହେଲା, ସେହି ଶକ୍ତି ଜୀବର ଆଧାରକମଳରେ କୁଣ୍ଡଳିନୀ ଶକ୍ତିରୂପରେ ନିତ୍ୟ ବିରାଜିତା । ଶ୍ରୀଗୁରୁଦେବଙ୍କ କୃପାରୁ ଏହି ଶକ୍ତିର ଜାଗରଣ ହୋଇଥାଏ ।

ଯେଉଁ ଆଦ୍ୟାଶକ୍ତି ମହାମାୟାଙ୍କ ବିଷୟ ଆଲୋଚିତ ହେଲା, ସେହି ଦେବୀ ଆଧାରକମଳରେ କୁଣ୍ଡଳିନୀ ଶକ୍ତିରୂପରେ ଅବସ୍ଥିତା ।

ଏହି କୁଣ୍ଡଳିନୀ ସର୍ବଦେବମୟୀ, ସର୍ବମନ୍ତ୍ରମୟୀ, ସର୍ବତତ୍ତ୍ୱମୟୀ । ଏ ଯୋଗୀମାନଙ୍କ ହୃଦୟରେ ତତ୍ତ୍ୱରୂପିଣୀ ଏବଂ ସବୁ ଜୀବଙ୍କର ମୂଳାଧାରରେ ବିଦ୍ୟୁତ୍ ସ୍ୱରୂପ ବିରାଜିତା ।

ସର୍ବଦେବମୟୀ ଦେବୀ ସର୍ବମନ୍ତ୍ରମୟୀ ଶିବା,
ସର୍ବତତ୍ତ୍ୱମୟୀ ସାକ୍ଷାତ୍ ସୂକ୍ଷ୍ମାତ୍ ସୂକ୍ଷ୍ମାତ୍ ସୂକ୍ଷ୍ମତରା ବିଭୁଃ ।
ତ୍ରିଗୁଣା ସା ତ୍ରିଦୋଷା ସା ତ୍ରିବର୍ଣ୍ଣା ସା ତ୍ରୟୀ ଚ ସା,
ତ୍ରିଲୋକା ସା ତ୍ରିମୂର୍ତ୍ତିଃ ସା ତ୍ରିରେଖା ସା ବିଶିଷ୍ୟତେ ॥



# ଲୀଳା ଓ ଭାବଲୋକ

## ସଚ୍ଚିଦାନନ୍ଦଙ୍କ ତ୍ରିବିଧ ଅବସ୍ଥା

ବ୍ରହ୍ମ ପ୍ରଥମେ ନିର୍ଗୁଣ ଥିଲେ। ତାଙ୍କର ଲୀଳା କରିବାକୁ ଇଚ୍ଛା ହେଲା। ଲୀଳା ଏକା ହୁଏ ନାହିଁ। ତାଙ୍କ ଇଚ୍ଛାମାତ୍ରେ ତାଙ୍କଠାରୁ ମାଆଙ୍କର ଉଦ୍‌ଭବ ହେଲା। ଏହି ମା ସଗୁଣ ବ୍ରହ୍ମ ବା ଈଶ୍ୱର। ଏହି ମାଆଙ୍କ ଠାରୁ ଜଣେ ପୁରୁଷ ଓ ଜଣେ ନାରୀର ଉଦ୍ଭବ ହେଲା। ପରେ ଏହି ପୁରୁଷ ଓ ନାରୀଙ୍କ ଠାରୁ ଜୀବଜଗତ ସୃଷ୍ଟି ହେଲା। ମା ଦେଖିଲେ, ତାଙ୍କର ସବୁ ଅଛି; କେବଳ ସ୍ୱାମୀ ନାହାନ୍ତି। ମା ସେଥିପାଇଁ ତପସ୍ୟା କଲେ। ତାଙ୍କ ତପସ୍ୟାରେ ନିର୍ଗୁଣ ବ୍ରହ୍ମ ସାକାର ହୋଇ ଅବତରଣ କଲେ; ତାଙ୍କ ସାଧନାରେ ନିର୍ଗୁଣ ବ୍ରହ୍ମ ଧରାଦେଲେ। ନିର୍ଗୁଣ ଓ ସଗୁଣର ସନ୍ଧିସ୍ଥଳରେ ଅପ୍ରାକୃତ ଭୂମିରେ ମାଆଙ୍କୁ ଧରି ସେ ସଂସାର ରଚନା କଲେ। ଏହି ଲୋକ ମାଆଙ୍କର ନିଜ ସଂସାର। ଏହାକୁ ନିତ୍ୟଲୋକ ବା ଭାବଲୋକ କୁହାଯାଏ।

ଏହି ପୁରୁଷ ଗୁରୁ। ଏହାଙ୍କ କେନ୍ଦ୍ର ସଗୁଣ ବ୍ରହ୍ମରେ। ଏହିପରି ସୃଷ୍ଟିକ୍ରମ ଚାଲିଆସୁଛି। ସଗୁଣ ବ୍ରହ୍ମ ସବୁ ସୃଷ୍ଟି କରି ନିର୍ବିକାରଭାବରେ ଅବସ୍ଥାନ କରନ୍ତି। ବ୍ରହ୍ମଙ୍କର ତିନୋଟି ଅବସ୍ଥା—ସଚ୍ଚିଦାନନ୍ଦମୟ, ସଚ୍ଚିଦାନନ୍ଦ ଘନ ଓ ସଚ୍ଚିଦାନନ୍ଦ-ଘନ ବିଗ୍ରହ। ଭାବଲୋକରେ ସଚ୍ଚିଦାନନ୍ଦ ଘନବିଗ୍ରହ ଅଛନ୍ତି। ଯେପରି ପ୍ରଥମେ ଜଳ—ଜଳମୟ ଅବସ୍ଥା, ବ୍ୟାପକ ଭାବ; ତା'ପରେ ବରଫ—ତାହା ଘନ ଅବସ୍ଥା; ତା'ପରେ ବରଫର ପାହାଡ଼—ଗୋଟିଏ ଆକୃତିବିଶିଷ୍ଟ, ତାହା ବିଗ୍ରହ ଅବସ୍ଥା। ଭାବଲୋକ ବ୍ରହ୍ମଙ୍କର ସଚ୍ଚିଦାନନ୍ଦଘନବିଗ୍ରହ ଅବସ୍ଥା।

ସଚ୍ଚିଦାନନ୍ଦଘନବିଗ୍ରହ ଶ୍ରୀଭଗବାନ ନିତ୍ୟଭାବଲୋକ ଗୋଲୋକରେ ସ୍ୱକୀୟ ହ୍ଲାଦିନୀ ଶକ୍ତିଙ୍କସହିତ ନିତ୍ୟଲୀଳା କରୁଛନ୍ତି। ସେଠାରେ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ଭାବଗୁଡ଼ିକ ମୂର୍ତ୍ତିମନ୍ତ ହୋଇ ବିରାଜିତ। ଭଗବାନଙ୍କ ଲୀଳା ପ୍ରଧାନତଃ

ତ୍ରିବିଧ—ନିତ୍ୟଲୀଳା, ସୃଷ୍ଟିଲୀଳା ଓ ସଂସାରଲୀଳା । ନିତ୍ୟଧାମର ନିତ୍ୟକ୍ରିୟାର ନାମ ନିତ୍ୟଲୀଳା । ବିଶ୍ୱ-ଉତ୍ପାଦନ କ୍ରିୟାର ନାମ ସୃଷ୍ଟିଲୀଳା ଏବଂ ଜନ୍ମାଦି ମୋକ୍ଷାନ୍ତ କ୍ରିୟାର ନାମ ସଂସାରଲୀଳା । ତନ୍ମଧ୍ୟରେ ସଂସାରଲୀଳା ସାମର୍ଥ୍ୟର ନାମ ଜୀବଶକ୍ତି, ସୃଷ୍ଟିଲୀଳାସାମର୍ଥ୍ୟର ନାମ ମାୟାଶକ୍ତି ଓ ନିତ୍ୟଲୀଳାସାମର୍ଥ୍ୟର ନାମ ସ୍ୱରୂପଶକ୍ତି । ଏହି ନିତ୍ୟଲୀଳା, ଯାହାଦ୍ୱାରା ରସ ଓ ଆସ୍ୱାଦ ଯୋଗ୍ୟତା ପ୍ରାପ୍ତ ହୁଏ, ତାହାକୁ ରାସଲୀଳା କୁହାଯାଏ । ଭଗବାନ ପ୍ରେମିକ ସାଧନ ଭକ୍ତମାନଙ୍କୁ ଆକର୍ଷଣ କରିବା ନିମିତ୍ତ ଏବଂ ପ୍ରେମିକ ସିଦ୍ଧ ଭକ୍ତମାନଙ୍କ ମନୋରଥ ପୂରଣନିମିତ୍ତ ସମସ୍ତ ଲୀଳା କରିଥାନ୍ତି । ଏହି ବ୍ରଜଲୀଳା ଭକ୍ତମାନଙ୍କର ସର୍ବୋତ୍କୃଷ୍ଟ ସ୍ୱରୂପାନନ୍ଦ ।

## ଗୋଲୋକ ବା ନିତ୍ୟଲୋକ

ପାତାଳ ଉପରେ ପର୍ବତ । ପର୍ବତ ଉପରେ ବସୁମତୀ । ବସୁମତୀ ଉପରେ ମନୁଷ୍ୟ । ମନୁଷ୍ୟ ଉପରେ ଆକାଶ । ଆକାଶ ଉପରେ ଆଦିତ୍ୟଲୋକ । ଏହା ଉପରେ ସୁରଲୋକ ବିଦ୍ୟମାନ । ଏହି ସୁରଧାମ ଉପରେ ସତ୍ୟଧାମ । ସେଠାରେ ବ୍ରହ୍ମାଣ୍ଡପତି ଈଶ୍ୱର ଓ ବ୍ରହ୍ମର୍ଷିଗଣ ବାସ କରନ୍ତି । ଏହି ସତ୍ୟଲୋକ ବ୍ରହ୍ମାଣ୍ଡ କଟାହଦ୍ୱାରା ଆଚ୍ଛାଦିତ । ବ୍ରହ୍ମାଣ୍ଡ କଟାହର ବହୁ ଊର୍ଦ୍ଧ୍ୱରେ ମାୟାତତ୍ତ୍ୱାତୀତ ପରମ ବ୍ୟୋମରେ ଭଗବଦ୍‌ଧାମ ଗୋଲୋକ ବା ନିତ୍ୟଭାବଲୋକ ଅବସ୍ଥିତ । ସେହି ଗୋଲୋକ ପରମାନନ୍ଦମୟ ଚିଦ୍‌ଘନଧାମ । ତାହା ପରମ ରମ୍ୟ, ଗୁପ୍ତତମ ଓ ଅତି ଆଶ୍ଚର୍ଯ୍ୟ ଦର୍ଶନୀୟ । ତାହା ଚତୁର୍ଦ୍ୱାରଯୁକ୍ତ ଓ ରତ୍ନମୟ ତୋରଣଯୁକ୍ତ । ଚତୁର୍ଦ୍ଦିଗ ମୁକ୍ତାମାଳା ପରିଶୋଭିତ, ବିଚିତ୍ର ପତାକାମଣ୍ଡିତ, ଅତିଶୟ ସାଳଂକୃତ । ସେହି ପୁରୀମଧ୍ୟରେ କଳ୍ପପାଦପସମୂହ ଫଳଭାରରେ ଅବନତ । ସେହି ସୁବିସ୍ତୀର୍ଣ୍ଣ ପୁରୀର ଉତ୍ତର ପ୍ରଦେଶରେ ଅତି ବୃହତ୍ କଦମ୍ବତରୁ-ଉଦ୍ୟାନ । ତାହା ସର୍ବଦା ପ୍ରଫୁଲ୍ଲକୁସୁମସମାକୀର୍ଣ୍ଣ । ସେଠାରେ ନିତ୍ୟ ବସନ୍ତ ବିରାଜିତ ଏବଂ ମନ୍ଦ ମନ୍ଦ ବାୟୁ ସର୍ବଦା ପ୍ରବହମାନ ।

ଛଅ ରାଗ ଓ ଛତିଶ ରାଗିଣୀ ସେଠାରେ ମୂର୍ତ୍ତିମତୀ ହୋଇ ବିରାଜିତ । ସେଠାରେ ସିଦ୍ଧଗଣ ନାନାବିଧ ସୁଦୃଶ୍ୟ ପଶୁପକ୍ଷୀଙ୍କ ରୂପ ଧାରଣ କରି ସୁମଧୁର ସ୍ୱରରେ ଭଗବତ୍ ଗୁଣଗାନ ଏବଂ ବିଚିତ୍ର ଭଙ୍ଗୀରେ ନୃତ୍ୟପରାୟଣ । ପୂର୍ବଦିଗରେ ଚାରୁ ସରୋବର । ସେଥିରେ ସ୍ୱର୍ଣ୍ଣମୟ କମଳ-କୁମୁଦରାଜି ପ୍ରସ୍ଫୁଟିତ । ସେଠାରେ ବିଚିତ୍ର ମଧୁପଶ୍ରେଣୀଯୁକ୍ତ ବାୟୁ ସଞ୍ଚାଳିତ ଓ ମନ୍ଦ ମନ୍ଦ ଆନ୍ଦୋଳିତ ହେଉଅଛି ।

ପୁଳିନଦେଶ ବିବିଧ ପୁଷ୍ପଦ୍ୱାରା ଶୋଭାନ୍ୱିତ । ଚତୁର୍ଦ୍ଦିଗରେ କେଳିକୁଞ୍ଜ ସୁଶୋଭିତ । ମଧ୍ୟସ୍ଥଳରେ ନାନା ରତ୍ନବିନିର୍ମିତ ସୁବର୍ଣ୍ଣବେଷ୍ଟିତ ମଣିମୟ ଏକଶତ ସ୍ତମ୍ଭଯୁକ୍ତ ସୁରମ୍ୟ ସଦନ । ସେହି ମଣିମନ୍ଦିରର ଅଭ୍ୟନ୍ତରରେ ସୁବିସ୍ତୀର୍ଣ୍ଣ ରତ୍ନପର୍ଯ୍ୟଙ୍କ ଉପରେ ଶ୍ରୀଭଗବାନ ସ୍ୱମହିମାରେ ଦେଦୀପ୍ୟମାନ । ସେ ପୂର୍ଣ୍ଣରସ, ପୂର୍ଣ୍ଣାନନ୍ଦ ଓ ପରିପୂର୍ଣ୍ଣ ଚୈତନ୍ୟସ୍ୱରୂପ । ସେଠାରେ ପରାପ୍ରକୃତି ହ୍ଲାଦିନୀ ଶକ୍ତି ମହାଭାବସ୍ୱରୂପିଣୀ ପ୍ରେମମୟୀ ମୂର୍ତ୍ତିରେ ପ୍ରଣୟାଦି ହୃଦ୍‌ବୃତ୍ତିରୂପା ସଖୀମାନଙ୍କ ସହ ପରମ ପୁରୁଷ ଭଗବାନଙ୍କ ସେବାରେ ନିୟୋଜିତ ଅଛନ୍ତି । ସେଠାରେ ମଧୁର, ବାତ୍ସଲ୍ୟ, ସଖ୍ୟ, ଦାସ୍ୟାଦି ଭାବସମୂହ ମୂର୍ତ୍ତିମାନ ହୋଇ ବିରାଜମାନ କରୁଅଛି । ଏହି ନିତ୍ୟରସ ରାସମଣ୍ଡଳ ପୂର୍ଣ୍ଣତମ ସୁଖରସରେ ଅବସ୍ଥିତ ।

## ବ୍ରଜଲୀଳାର ଉଦ୍ଦେଶ୍ୟ

ଏହି ଭାବଲୋକରୁ ମଧୁର, ବାତ୍ସଲ୍ୟ, ସଖ୍ୟ, ଦାସ୍ୟାଦି ରସର କଣା ମର୍ତ୍ତ୍ୟଲୋକକୁ ଝରିପଡୁଛି । ତେଣୁ ଜୀବପ୍ରାଣରେ ରସପିପାସା ଜାଗିଉଠୁଛି । ପୃଥିବୀମୟ ରୂପ ଓ ରସର ବିଚିତ୍ର ଲୀଳା ପରିସ୍ଫୁଟ । ସ୍ୱର୍ଗ, ମର୍ତ୍ତ୍ୟ ରସର ଅଚ୍ଛେଦ୍ୟ ବନ୍ଧନରେ ଆବଦ୍ଧ । ଜୀବ ସେହି ରସନିମିତ୍ତ ବାସନାବିଦଗ୍ଧ ହୋଇ, ରସପିପାସୁ ହୋଇ ଘୂରିବୁଲୁଛି । ମୃଗ ଯେପରି ଆପଣା ନାଭିସ୍ଥିତ କସ୍ତୁରୀଗନ୍ଧରେ ଉଦ୍‌ଭ୍ରାନ୍ତ ହୋଇ ବନ ମଧ୍ୟରେ ବ୍ୟାକୁଳ ଭାବରେ ବୁଲୁଥାଏ, ଜୀବ ସେହିଭଳି ରସ ଓ ଆନନ୍ଦ-ଅନୁଭୂତିରେ ପାର୍ଥିବ ବିଷୟରେ ପ୍ରଧାବିତ ହୋଇ ଘୂରିବୁଲୁଛି । ଏହି ରସ ଓ ଆନନ୍ଦପ୍ରତି ଧାର୍ମିକମାନଙ୍କ ପ୍ରାଣର ଆକର୍ଷଣ । ରସ ଓ ଆନନ୍ଦଘନ ଭଗବାନ ହିଁ ସାଧ୍ୟ ଏବଂ ପ୍ରେମଭକ୍ତି ତାହାର ସାଧନା । ଜନ୍ମ-ଜନ୍ମାନ୍ତରର ସୁକୃତିବଶରୁ ସଦ୍‌ଗୁରୁଙ୍କ କୃପାରୁ ଏହି ସାଧ୍ୟସାଧନ-ତତ୍ତ୍ୱ ଅବଗତ ହୋଇ ପ୍ରେମଭକ୍ତି ସାଧନା କଲେ ସାଧକ ଭାବମୟ ଦେହରେ ନିତ୍ୟଭାବଲୋକରେ ପ୍ରେମସେବୋତ୍ତରା ଗତି ପ୍ରାପ୍ତ ହୋଇ ଅସମୋର୍ଦ୍ଧ୍ୱ ପ୍ରେମରସମାଧୁର୍ଯ୍ୟ ଉପଭୋଗ କରିଥାନ୍ତି ।

ଭଗବାନଙ୍କର ନିତ୍ୟଲୀଳା ରସମାଧୁର୍ଯ୍ୟ ଓ ପ୍ରକାଶ ଏବଂ ତତ୍‌ପ୍ରାପ୍ତିର ଉପାୟ ଶିକ୍ଷାଦେବା ନିମିତ୍ତ ଲୀଳାବତାର ଶ୍ରୀକୃଷ୍ଣଙ୍କର ବ୍ରଜଲୀଳା । ପ୍ରକୃତି ଓ ପୁରୁଷଙ୍କର ପ୍ରେମଲୀଳା ସମ୍ୟକ୍ ଅବଗତ ହୋଇ ସେହି ଲୀଳାନନ୍ଦରେ ଆତ୍ମାକୁ ଅଭିଭୂତ କରିବା ସଂସାରନିବୃତ୍ତିର ଏକମାତ୍ର ଉପାୟ । ସେଥିରେ ହୃଦୟରେ ଅପୂର୍ବ ଆନନ୍ଦର ଉଦୟ ହୁଏ; ସମସ୍ତଙ୍କ ସହିତ ଆତ୍ମାର ମିଶ୍ରଭାବ ଉତ୍ପନ୍ନ ହୁଏ;

ଜୀବ ଓ ଚୈତନ୍ୟଙ୍କର ମିଳନ ହୁଏ; ଜୀବ-ହୃଦୟରେ ପ୍ରେମରସର ଧାରା ଉଛୁଳି ଉଠେ ।

ଚିତ୍ତବୃତ୍ତି ନିରୋଧ କର, କର୍ମାନୁଷ୍ଠାନ କର, ନିଷ୍କାମ କର୍ମ କର ଇତ୍ୟାଦି ଉପଦେଶ ଦେଲେ ଚଳିବ ନାହିଁ । କାମ-ଅଗ୍ନି ଚାରିଆଡ଼େ ଜଳୁଅଛି । କେହି ସେ କାମନାଗ୍ନିରୁ ଉଦ୍ଧାର ପାଉ ନାହାନ୍ତି । ପ୍ରକୃତିର ପରିଣାମରୁ କାମ୍ୟ ପଦାର୍ଥ ସମୁଦ୍ଭୂତ । ତେଣୁ ପ୍ରକୃତିର ଏହି ମାୟା ଆବରଣ ଭେଦ କରି ମାୟାଜଗତରେ ଭକ୍ତ ଓ ଭଗବାନଙ୍କୁ ଏକ କରି ସେହି ଧର୍ମର ଆନନ୍ଦଧାରା ଅର୍ପଣ କରିବା ନିମିତ୍ତ ଭଗବାନ୍ ଶ୍ରୀକୃଷ୍ଣ ରୂପରେ ଅବତୀର୍ଣ୍ଣ ହୋଇ ସେହି କାମ ଜୟ କରିବାର ଉପାୟ ଜୀବକୁ ଶିକ୍ଷାଦେବାକୁ ବ୍ରଜଲୀଳା କରିଥିଲେ । ଜୀବ କିପରି ଭଗବାନଙ୍କ ସୃଷ୍ଟିଲୀଳା ଭିତରେ ଯାଇ ସଂସାରଲୀଳା କରି ନିତ୍ୟଲୀଳାରେ ଉପନୀତ ହୋଇ ସ୍ୱରୂପାନନ୍ଦ ଉପଭୋଗ କରିପାରିବ—ଲୀଳାବତାରଙ୍କ ବ୍ରଜଲୀଳାର ଏହା ହିଁ ଉଦ୍ଦେଶ୍ୟ ।

## ହ୍ଲାଦିନୀଶକ୍ତି

ସ୍ୱରୂପଶକ୍ତି ଓ ମାୟାଶକ୍ତି ମଧ୍ୟରେ ଜୀବଶକ୍ତି ଅବସ୍ଥିତ । ମାୟାଶକ୍ତିରେ ନିପୀଡ଼ିତ ହୋଇ ଜୀବ କ୍ରମେ ସ୍ୱରୂପ ଶକ୍ତିପଥରେ ଅଗ୍ରସର ହୋଇଥାଏ । ଏହା ହିଁ ଜୀବର କ୍ରମୋନ୍ନତି ।

ହ୍ଲାଦିନୀ ଶକ୍ତି ଭଗବାନଙ୍କୁ ଆନନ୍ଦ ଆସ୍ୱାଦନ କରାନ୍ତି । ସେ ସେହି ହ୍ଲାଦିନୀ ଶକ୍ତିଦ୍ୱାରା ଭକ୍ତମାନଙ୍କୁ ପୋଷଣ କରନ୍ତି । ଯାହାଙ୍କଠାରୁ ନିତ୍ୟାନନ୍ଦ ଅନୁଭୂତ ହୁଏ, ତାଙ୍କୁ ସେହି ଆନନ୍ଦ ଅର୍ପଣ କରିବା ଜୀବର ପ୍ରଧାନ କର୍ତ୍ତବ୍ୟ । ହ୍ଲାଦିନୀ ଶକ୍ତି ଭଗବାନଙ୍କଠାରେ ଅର୍ପିତ ହେଲେ ବିଶ୍ୱ ଆନନ୍ଦରସରେ ଆପ୍ଲୁତ ହୁଏ; ଜଗତ୍‌ରେ ଆନନ୍ଦଧାରା ପ୍ରବାହିତ ହୁଏ । ଯେଉଁଦିନଠାରୁ ଲୀଳା ହେଲା, ସେହିଦିନଠାରୁ ଜୀବ ରସ ଓ ଆନନ୍ଦର ସନ୍ଧାନ ପାଇ ଧନ୍ୟ ହୋଇଛି ।

ଆନନ୍ଦମୟ ଭଗବାନ୍ ଆପଣାର ହ୍ଲାଦିନୀ ଶକ୍ତି ଶ୍ରୀରାଧାଙ୍କୁ ଆଶ୍ରୟ କରି ଜୀବକୁ ସେହି ରସ ଉପଭୋଗ କରାଇବା ନିମିତ୍ତ ମୋହନବେଣୁ ବାଦନ କରୁଛନ୍ତି । ସେ ସମସ୍ତଙ୍କୁ ଡାକୁଛନ୍ତି । ତାଙ୍କ ମୋହନ ମୁରଲୀଧ୍ୱନି ସର୍ବତ୍ର ଧ୍ୱନିତ ହେଉଅଛି; କିନ୍ତୁ ଯେଉଁମାନେ ଗୋପୀ ହୋଇପାରିଛନ୍ତି ଅର୍ଥାତ୍ ଯେଉଁମାନେ କାମନା, ବାସନା, ଲାଜ, କୁଳ, ମାନ ସର୍ବସ୍ୱ ତାଙ୍କ ଶ୍ରୀଚରଣରେ ଅର୍ପଣ କରିପାରିଛନ୍ତି, ସେହିମାନେ ହିଁ ସେହି ମୁରଲୀସ୍ୱନ ଶୁଣିପାରନ୍ତି । ତେଣୁ ସେମାନେ ରାସରସ-

ବିହାର ଦେଖିବାକୁ ଦଉଡ଼ିଯାଆନ୍ତି । ଯେଉଁମାନଙ୍କ ହୃଦୟ ଅହଂକାରବିଜଡ଼ିତ, ସେମାନେ ସେ ବଂଶୀନାଦ ଶୁଣିପାରନ୍ତି ନାହିଁ । ଅହଂଭାବ ଦୂର ନ ହେଲେ, ପ୍ରକୃତିର ବନ୍ଧନ ଘୁଞ୍ଚାଇ ନ ପାରିଲେ, ସେ ବଂଶୀଧ୍ୱନି ଶୁଣାଯାଏ ନାହିଁ । ଯେଉଁମାନେ ବୁଝିପାରନ୍ତି, ସେମାନେ ଗୋକୁଳାଖ୍ୟ ମହାଧାମରେ ଉପସ୍ଥିତ ହୋଇ ସଖୀଭାବରେ ଶ୍ରୀ ଶ୍ରୀ ରାଧାକୃଷ୍ଣଙ୍କର ରାସରସବିହାର ଦର୍ଶନ କରି ପ୍ରାଣର ଆଶା ପରିତୃପ୍ତ କରନ୍ତି ।

## ଗୋପୀଭାବ

ଯେ ପୁରୁଷ, ସେ ଈଶ୍ୱର; ଯେ ପ୍ରକୃତି, ସେ ଜୀବ । ଦେଖିବାକୁ ଗଲେ ସମସ୍ତେ ପୁରୁଷ । ପୁରୁଷ ଅବିଦ୍ୟା ପ୍ରକୃତି ଦ୍ୱାରା ଆଚ୍ଛନ୍ନ ହେଲେ ଜୀବ । ଅତଏବ ଜୀବ ମାତ୍ରେ ପ୍ରକୃତି । ପ୍ରକୃତିତ୍ୱ ଘୁଞ୍ଚିଗଲେ ଜୀବ ପୁରୁଷ । ତେଣୁ ଜୀବମାତ୍ରକେ ପ୍ରକୃତି ବା ରମଣୀ । ଯେ ପ୍ରକୃତିର ଅତୀତ, ସେହି କେବଳ ପୁରୁଷ । ଗୋପୀ ଅର୍ଥ ସାଧୁ ପ୍ରକୃତିର ଜୀବ । ଗୋ =ପୃଥିବୀ + ପା = ଯେ ପାଳନ କରେ । ସାଧୁମାନେ ହିଁ ପୃଥିବୀର ପାତା । ଅତଏବ ସାଧୁମାନେ, ଭକ୍ତମାନେ ପ୍ରକୃତିସ୍ଥ ବୋଲି ସେମାନଙ୍କୁ ଗୋପୀ କୁହାଯାଏ । ଏହି ଗୋପୀମାନଙ୍କୁ ଅର୍ଥାତ୍ ଭକ୍ତମାନଙ୍କୁ ଆନନ୍ଦ ଉପଭୋଗ କରାଇବା ନିମିତ୍ତ ନିଜର ହ୍ଲାଦିନୀ ଶକ୍ତି ସହିତ ଭଗବାନ ବ୍ରଜଧାମରେ ଯେଉଁ କ୍ରୀଡ଼ା କରିଥିଲେ, ତାହା ରାସଲୀଳା ।

ଗୋପୀଭାବ ଗ୍ରହଣ କରି ରାଧାକୃଷ୍ଣଙ୍କ ମିଳନାତ୍ମକ ଆନନ୍ଦାନୁଭବ କରିବାହିଁ ଜୀବର ପରମ ପୁରୁଷାର୍ଥ । ଗୋପୀଭାବ ସାଧନାରେ ଗୋପୀମାନଙ୍କ ଅନୁଗତିମୟୀ ଭକ୍ତି ଲାଭ କରିପାରିଲେ ଶ୍ରୀରାଧାକୃଷ୍ଣଙ୍କର ରସରତିଜ୍ଞାନ ଜାତ ହୁଏ ।

ସେତେବେଳ ସାଧନାରେ ସାଧକଙ୍କ ପ୍ରତି ପରମାଣୁରେ ଇଷ୍ଟସ୍ଫୂର୍ତ୍ତି ହୁଏ, ସେତେବେଳେ ମଧୁର ଭାବ । ଗୋପୀଭାବ ସର୍ବଶ୍ରେଷ୍ଠ । ତାହା ହିଁ ବେଦାନ୍ତର ସାକ୍ଷୀଭାବ । ସେଥିରେ ରାଧା ଓ କୃଷ୍ଣ—ଉଭୟଙ୍କ ଭାବର ଆସ୍ୱାଦନ ମିଳେ ।

ବୈଷ୍ଣବମାନଙ୍କର ଭାବସାଧନା ନିରୋଳ ବା ବିଶୁଦ୍ଧ ବେଦାନ୍ତ ଉପରେ ପ୍ରତିଷ୍ଠିତ । ଯେଉଁମାନେ ସଖ୍ୟଭାବରେ ସାଧନା କରନ୍ତି, ସେମାନେ କ୍ରମେ ସଖୀରେ ମିଶିଯାନ୍ତି । ସେତେବେଳେ ସେମାନଙ୍କର ସଗୁଣ-ନିର୍ଗୁଣ ବ୍ରହ୍ମାତ୍ମକ ରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତି ଦର୍ଶନ ହୁଏ । ସଖୀ ହିଁ ବେଦାନ୍ତର ସାକ୍ଷୀଚେତା । ସଖୀଭାବରେ

ସାକ୍ଷୀସ୍ୱରୂପରେ ରହି ଏମାନେ ସମଗ୍ର ବ୍ରହ୍ମାଣ୍ଡରେ ରାଧାକୃଷ୍ଣଙ୍କର ଯୁଗଳମୂର୍ତ୍ତି ଦେଖିପାରନ୍ତି ।

ଚିତ୍ତଶୁଦ୍ଧି ନ ହେଲେ କେହି ରାସତତ୍ତ୍ୱର ଅଧିକାରୀ ଆଦୌ ହୋଇପାରିବେ ନାହିଁ । ଗୋପୀଭାବ, ସମ୍ଭୋଗ ଇତ୍ୟାଦି ଭାବାଶ୍ରୟ କାମ-କାମନାଯୁକ୍ତ ଲୋକଙ୍କ ପକ୍ଷରେ କି ଭୀଷଣ, ତାହା ବର୍ଣ୍ଣନାତୀତ । ସୋଽହଂବାଦୀ ସନ୍ନ୍ୟାସୀମାନଙ୍କର ପତନ ଅପେକ୍ଷା ଏହି ରସତତ୍ତ୍ୱସାଧକଙ୍କର ପତନର ଆଶଙ୍କା ଅଧିକ । ଏଥିରେ ଅଧିକ ଅନିଷ୍ଟ ହୁଏ । ରାଧାକୃଷ୍ଣଙ୍କ ଲୀଳାସମ୍ବନ୍ଧରେ ସାଧାରଣ ଲୋକେ କିଛି ବୁଝନ୍ତି ନାହିଁ । ସେମାନେ କେବଳ ସ୍ଥୂଳ ଲୀଳାର ଅନୁକରଣ କରନ୍ତି । ଜ୍ଞାନ ବ୍ୟତୀତ ରସତତ୍ତ୍ୱ ବୁଝିବାର ଉପାୟ ନାହିଁ । ଜ୍ଞାନୀମାନଙ୍କର ଆନନ୍ଦ କଥାରେ କହିହେବ ନାହିଁ । ରାଧାକୃଷ୍ଣଙ୍କ ମିଳନ-ଆନନ୍ଦ ସଦୃଶ ଜଗତର ସମସ୍ତ ମିଳନର ଆନନ୍ଦ ଜ୍ଞାନୀମାନଙ୍କ ନିକଟରେ ଫୁଟିଉଠେ । ଜ୍ଞାନୀ ପୁଣି ଦର୍ଶକ ଭାବରେ ସେହି ସମଷ୍ଟି ଆନନ୍ଦ ଭୋଗ କରିଥାନ୍ତି । ପ୍ରେମାଦି ଭାବ ସାତ୍ତ୍ୱିକ ଓ ସୁଖମୂଳକ । ଭଗବାନଙ୍କୁ ପରମପ୍ରେମର ଆସ୍ୱଦ ଓ ଭକ୍ତିର ଆସ୍ୱଦ ଭାବି ସାତ୍ତ୍ୱିକ ଭାବରେ ଉପାସନା କରିବା ବିଧେୟ ।

ସମସ୍ତେ ଦାସ୍ୟ, ସଖ୍ୟ, ବାତ୍ସଲ୍ୟଭାବରେ ସାଧନା କରନ୍ତି । କେବଳ ଏହାର ଗତି ବଦଳାଇଦେଲେ ହେଲା । ପିଲାବେଳେ ସମସ୍ତଙ୍କର ଦାସ୍ୟଭାବ । ଯୁବାମାନଙ୍କ ଠାରେ ସଖ୍ୟଭାବର ଉନ୍ମେଷ, ସ୍ତ୍ରୀଙ୍କଠାରେ ସଖ୍ୟଭାବର ପୁଷ୍ଟି । ତା'ପରେ ସନ୍ତାନର ପିତା-ମାତା ହେଲେ ବାତ୍ସଲ୍ୟଭାବର ବିକାଶ । ସଂସାରୀ ଲୋକଙ୍କର ଏହିସବୁ ଭାବ ସହଜରେ ପରିସ୍ଫୁଟ ହୁଏ । ତେବେ ଜ୍ଞାନ ସହିତ ତାହାର ଅନୁଶୀଳନ କରିପାରିଲେ ତାହା ଆଉ ବନ୍ଧନର କାରଣ ନ ହୋଇ ମୁକ୍ତିର କାରଣ ହୁଏ । ବୈଷୟିକ ଆସକ୍ତି ଯେତେବେଳେ ଭଗବତ୍‌ମୁଖୀ ହୁଏ, ସେତେବେଳେ ତାହା ଭକ୍ତି ।

## ତ୍ରିବିଧାଶକ୍ତି

ଭଗବାନଙ୍କର ଯେଉଁ ଅଖଣ୍ଡ ଭାବ ଜୀବକୁ ସର୍ବଦା ଉନ୍ନତିପଥରେ ପୂର୍ଣ୍ଣ ମଙ୍ଗଳ ଓ ଆନନ୍ଦପଥରେ ଆକର୍ଷଣ କରେ, ତାହା ହିଁ ଶ୍ରୀକୃଷ୍ଣ । ଭଗବାନଙ୍କର ଯେଉଁ ଶକ୍ତିଦ୍ୱାରା ଜୀବ ଅନନ୍ତ ଆନନ୍ଦ ପ୍ରତି ଆକୃଷ୍ଟ ହୁଏ, ତାହା ହିଁ ଭକ୍ତି । ଭକ୍ତି ଯେତେବେଳେ ଗୁଣ-ଆବରଣରେ ଆବୃତ୍ତ ଥାଏ, ସେତେବେଳେ ତାହାର ସ୍ୱରୂପ

ଉବଲବ୍ଧ ହୁଏ ନାହିଁ; କିନ୍ତୁ ଆବରଣ ଉନ୍ମୁକ୍ତ ହେଲାକ୍ଷଣି ତାହା ପ୍ରେମ ବା ଭାବ ଆଖ୍ୟା ପ୍ରାପ୍ତ ହୁଏ। ଏହି ପ୍ରେମ ସଚ୍ଚିଦାନନ୍ଦ ଭଗବାନଙ୍କର ହ୍ଲାଦିନୀ ଶକ୍ତିର ବିକାଶ ମାତ୍ର। ହ୍ଲାଦିନୀ, ସନ୍ଧିନୀ ଓ ସଂବିତ୍ ଏହି ତିନି ଶକ୍ତି ଭଗବାନଙ୍କୁ ଆଶ୍ରୟ କରିଛନ୍ତି। ତନ୍ମଧ୍ୟରେ ହ୍ଲାଦିନୀ ପ୍ରେମସ୍ୱରୂପା—ଏହାକୁ ଶ୍ରୀରାଧା କହନ୍ତି। ଶ୍ରୀରାଧା ଶକ୍ତିଙ୍କର ସୂକ୍ଷ୍ମତତ୍ତ୍ୱ। ରାଧା ଓ କୃଷ୍ଣ ଏକ ଆତ୍ମା। ସେହି ରାଧାକୃଷ୍ଣ ଆତ୍ମସ୍ୱରୂପରେ ପ୍ରତି ଜୀବ ହୃଦୟରେ ଅଧିଷ୍ଠିତ। ତେଣୁ ଜୀବ ସେହି ଆନନ୍ଦ ଅନ୍ୱେଷଣରେ ଜଳଭ୍ରାନ୍ତ ମୃଗ ମରୀଚିକା ଦେଖି ଧାଇଁଲାପରି ସଂସାରମରୁରେ ସୁଖ-ଆଶାରେ ସର୍ବଦା ଘୂରିମରୁଛି। ଜୀବ ସୁଖ ଲୋଡ଼େ; କିନ୍ତୁ ପାର୍ଥିବ ବସ୍ତୁରେ ସୁଖ ନାହିଁ। ପାର୍ଥିବ ସମସ୍ତ ବସ୍ତୁ କ୍ଷଣଭଙ୍ଗୁର। ସୁତରାଂ, ଅପୂର୍ଣ୍ଣ ଜଗତରେ ପୂର୍ଣ୍ଣ ସୁଖର ଆଶା କରିବା ବିଡ଼ମ୍ବନା ମାତ୍ର। ମାୟାମୁଗ୍ଧ ଜୀବ ଜାଣିପାରେ ନାହିଁ ଯେ ପୂର୍ଣ୍ଣ ସୁଖ, ପୂର୍ଣ୍ଣ ଆନନ୍ଦ ତାହାର ଆତ୍ମାରେ ଅବସ୍ଥିତ। ଜନ୍ମ-ଜନ୍ମାନ୍ତରର ସ୍ୱୀକୃତିବଶରୁ ଏବଂ ସାଧୁ-ଶାସ୍ତ୍ର-କୃପାରୁ ଜୀବ ଯେତେବେଳେ ଜାଣିପାରେ ଯେ ତାର ଚିର ଆକାଙ୍କ୍ଷିତ ପଦାର୍ଥ ତା ଆତ୍ମାରେ ଅବସ୍ଥିତ, ସେତେବେଳେ ତାହାର ବିଷୟବୈରାଗ୍ୟ ଉପସ୍ଥିତ ହୁଏ ଏବଂ ସେ ଆତ୍ମାନୁସନ୍ଧାନରେ ନିଯୁକ୍ତ ହୁଏ। ଅନନ୍ତର ଆତ୍ମସାକ୍ଷାତ୍କାର ଲାଭ କରି ଆତ୍ମାରେ ରାଧାକୃଷ୍ଣତତ୍ତ୍ୱର ବିକାଶ କରିପାରିଲେ ପୂର୍ଣ୍ଣରସ ଓ ପରିପୂର୍ଣ୍ଣ ଆନନ୍ଦର ଅଧିକାରୀ ହୁଏ। ସେ ସାଧନା କିପରି ଭାବରେ କରିବାକୁ ହୁଏ, ତାହା ଶିକ୍ଷା ଦେବାପାଇଁ ଭଗବାନଙ୍କର ବୃନ୍ଦାବନଲୀଳା।

## ଭାବସାଧନା

ଭାବ ଅର୍ଥ ପୂର୍ଣ୍ଣତ୍ୱ—ଅଭାବର ବିପରୀତ ଭାବ। ସୁତରାଂ ଯେ ପର୍ଯ୍ୟନ୍ତ ଅଭାବ ଥିବ, ସେ ପର୍ଯ୍ୟନ୍ତ ଭାବର ସ୍ଥାନ ନାହିଁ। ଯାହାଙ୍କର ଭାବ ଲାଭ ହୋଇଛି, ତାଙ୍କର ଅଭାବ ରହି ନପାରେ। ଭାବ ଅତି ଉଚ୍ଚ ଅବସ୍ଥା। ପ୍ରାଣରେ ଭାବ ଜାଗ୍ରତ ହେଲେ, ବିଷୟ ଯେଉଁଭାବରେ ଆସିଲେ ମଧ୍ୟ କେବଳ ଆନନ୍ଦ ଦେଇଯାଏ।

ଜ୍ଞାନ ଉପରେ ଭାବଲୋକ ଅବସ୍ଥିତ। ଜ୍ଞାନ ପାର ହେଲାପରେ ଭାବଲୋକ ଜ୍ଞାତ ହୁଏ। ଜ୍ଞାନ ଲାଭ ହେଲେ ଭାବ ଆପେ ଆପେ ଆସେ। ପୁଣି ଭାବ ଜାତ ହେଲେ ଜ୍ଞାନ ଆପେ ଆପେ ଆସିଯିବ। ଭାବ ଓ ଜ୍ଞାନ ଗୋଟିକ ପରେ ଗୋଟିଏ ପ୍ରତିଷ୍ଠିତ।

ଭାବଲୋକ ସଚ୍ଚିଦାନନ୍ଦ ଗୁଣମୟ । ଏହି ଗୁଣ କିନ୍ତୁ ଜଗତର ବିପରୀତ । ଜଗତର ଗୁଣର ଅର୍ଥ ଆବରଣ, ସଂକୋଚ; କିନ୍ତୁ ଭାବଲୋକ ଗୁଣର ଅର୍ଥ ବିକାଶ ବା ଆନନ୍ଦର ପୂର୍ଣ୍ଣତମ ଅବସ୍ଥା ।

ମାୟିକ ପ୍ରେମ ସ୍ୱାର୍ଥମୂଳକ । ଯେତେବେଳେ ସ୍ୱାର୍ଥହାନୀ ଘଟିବ, ସେତେବେଳେ ପ୍ରେମର ଅଭାବ ଘଟିବ । ଯାହାଙ୍କୁ ପ୍ରେମ କରୁଛ, ସେ ଯଦି ଶତ୍ରୁତା ଆଚରଣ କରନ୍ତି, ତଥାପି ତାଙ୍କ ପ୍ରତି ତୁମ ପ୍ରେମ ଏକାପରି ରହିବ; ତାଙ୍କ ପ୍ରୀତି ଅପ୍ରୀତିରେ ତୁମର ତାଙ୍କପ୍ରତି ସମାନ ଭାବ ରହିବ—ଏହାର ନାମ ହିଁ ପ୍ରକୃତ ପ୍ରେମ । ଭାବର କଳନା କରିହୁଏ ନାହିଁ । ତାହା ଆପେ ଆପେ ସ୍ଫୁରିତ ହୋଇଥାଏ । ଭାବକୁ ଦମନ କରାଯାଇ ନ ପାରେ ।

ବ୍ୟଷ୍ଟି ଆଧାରରେ ନିବଦ୍ଧ ରହିଲେ ତାହା ପ୍ରେମ ନୁହେଁ, କାମ ମାତ୍ର । ପ୍ରେମ ହିଁ ସ୍ୱଭାବ ହେବା ଉଚିତ୍ । ତାହା ହେଲେ ଜଗତରେ ଯେଉଁଠାରେ ଥାଅ, ପ୍ରେମ ସମସ୍ତଙ୍କ ଉପରେ ସମାନ ଓ ଅବିଚଳିତ ରହିଥିବ । ଏହା ହିଁ ପ୍ରେମର ଲକ୍ଷଣ ।

ଭାବସାଧନା ଖୁବ୍ ଉଚ୍ଚ, ସତ୍ୟ; କିନ୍ତୁ ଭାବ ଠିକ୍ ରଖିବାକୁ ହେଲେ ଅନୁଗତ ହୋଇ ସାଧନା କରିବାକୁ ହୁଏ । ଶ୍ରୀକୃଷ୍ଣଙ୍କୁ ଆରାଧନା କରିବା ଦ୍ୱାରା ଶ୍ରୀକୃଷ୍ଣଙ୍କୁ ପାଇପାରିବ ନାହିଁ । ତାହାହେଲେ ତୁମେ ନିଜେ ଶ୍ରୀକୃଷ୍ଣ ହୋଇଯିବ । ସୁତରାଂ, ଶ୍ରୀକୃଷ୍ଣଙ୍କୁ ପାଇବାକୁ ହେଲେ ଶ୍ରୀରାଧାଙ୍କ ଭାବ ଧରିବାକୁ ହେବ । ତାଙ୍କୁ ସଖା ରୂପରେ ପାଇବାକୁ ହେଲେ ଶ୍ରୀଦାମ ସୁଦାମାଙ୍କ ଅନୁଗତ ହୋଇ ସାଧନ କରିବାକୁ ହେବ । ବାତ୍ସଲ୍ୟ ଭାବରେ ତାଙ୍କୁ ପାଇବାକୁ ହେଲେ ଯଶୋଦାଙ୍କ ଭାବ ଗ୍ରହଣ କରିବାକୁ ପଡ଼ିବ ।

ବୈଷ୍ଣବମାନଙ୍କର ଭାବସାଧନା ଅତି ମଧୁର ଓ ବିଜ୍ଞାନସମ୍ମତ; କିନ୍ତୁ ସାଧନା କରିବାକୁ ଉପଯୁକ୍ତ ଅଧିକାରୀ ହେବା ଆବଶ୍ୟକ । କେବଳ ଭଗବାନଙ୍କୁ ପିତା ବୋଲି ଡାକିଦେଲେ କ'ଣ ଭାବ ହୁଏ ? ନିଜ ପିତାଙ୍କୁ ଯେ ଭକ୍ତି କରିବାକୁ ଶିଖି ନାହାନ୍ତି, ଭଗବାନଙ୍କୁ ସେ ପିତା ବୋଲି ଡାକିଦେଲେ କିପରି ତାଙ୍କୁ ପାଇପାରିବେ ?

## ଭାବର ଆଭାସ

ସଚ୍ଚିଦାନନ୍ଦମୟ ଜ୍ୟୋତିର୍ମୟ ସାଗର—ସେଥିରେ ଗୋଟିଏ ସଚ୍ଚିଦାନନ୍ଦଘନ ଦ୍ୱୀପ । ସେ ଦ୍ୱୀପରେ ସଚ୍ଚିଦାନନ୍ଦଘନବିଗ୍ରହ ଜଣେ ପୁରୁଷ ବିଦ୍ୟମାନ । ଏହା ହିଁ

ଭାବଲୋକର ଦୃଷ୍ଟାନ୍ତ । ଏହା ନିତ୍ୟଲୋକ । ଏଥିରେ କେବେହେଲେ ଆବରଣ ପଡ଼େ ନାହିଁ । ଏଠାରେ ସବୁ କାଳରେ ବିକାଶର ପୂର୍ଣ୍ଣତମ ଅବସ୍ଥା । ଜଗତରେ ଏହି ଭାବଲୋକର ଆଭାସ ପଡ଼ିଅଛି; ତେଣୁ ଅନିତ୍ୟ ଜଗତରେ ମଧ୍ୟ ନିତ୍ୟାନନ୍ଦର ବିଭ୍ରମ ସମସ୍ତଙ୍କର ହେଉଅଛି । ଏହି ଆଭାସକୁ ଅବଲମ୍ବନ କରି ବୈଷ୍ଣବମାନେ ପୂର୍ଣ୍ଣଆଡ଼କୁ ଯିବାକୁ ଅଗ୍ରସର ।

ସାଧକମାନେ ସାଧନାବଳରେ ପ୍ରକୃତିର ବାହୁବନ୍ଧନରୁ ମୁକ୍ତ ହୋଇ ଭଗବାନଙ୍କୁ ଆତ୍ମସମର୍ପଣ କଲେ ତାଙ୍କ ସ୍ୱରୂପ ଶକ୍ତି ପ୍ରାପ୍ତ ହୁଅନ୍ତି । ସେହି ଶକ୍ତିଙ୍କୁ ସାଧକ ପୁନରାୟ ଭଗବାନଙ୍କୁ ଅର୍ପଣ କରନ୍ତି । ସେହି ଶକ୍ତି ନିଜର ଶକ୍ତି ବୋଲି, ଆନନ୍ଦମୟୀ ହ୍ଲାଦିନୀ ଶକ୍ତି ବୋଲି ଭଗବାନ ତାହା ଗ୍ରହଣ କରି ମଧୁର ଭାବରେ ଆଲିଙ୍ଗନ କରି ମିଳିତ ହୁଅନ୍ତି । ଏହିପରି ଭାବରେ ଭଗବାନ୍ ଓ ଭକ୍ତଙ୍କର ସ୍ୱରୂପଗତ ଅଭେଦାତ୍ମକ ମିଳନର ନାମ ରମଣ । ଯୋଗୀମାନଙ୍କର ଏହା ହିଁ ସମାଧି । ତେଣୁ ଭଗବାନ ଆତ୍ମାରାମ । ଆତ୍ମାର ଏହି ନିତ୍ୟଭାବର ବାହ୍ୟବିକାଶ ରାସଲୀଳା ।

ବେଦ, ପୁରାଣ, ଶାସ୍ତ୍ର ସବୁ କି ଭାବରେ ହୋଇଛି, ସୃଷ୍ଟି କିପରି ହୋଇଛି— ଏସବୁ ପ୍ରକାଶ ହୋଇଗଲେ ମାୟା ଚାଲିଯାଏ । ସେତେବେଳେ ସମସ୍ତ ବ୍ରହ୍ମମୟ ହୋଇଯାଏ । ପୁନରାୟ ମନ ସୃଷ୍ଟି ଆଡ଼କୁ ଫେରିଆସେ । ସେତିକିବେଳେ ଭଗବତ୍‌ଲୀଳା ଦର୍ଶନ ହୁଏ ।

ପ୍ରେମ ଅଖଣ୍ଡ; କିନ୍ତୁ ଭିନ୍ନ ଭିନ୍ନ ଆଧାରରେ ତାହା ବ୍ୟଷ୍ଟି ଭାବରେ ପ୍ରକାଶିତ ହୁଏ । ଯେଉଁ ଆଧାରରେ ପ୍ରେମ ହେଲେ ମଧ୍ୟ ଯଥାସମୟରେ ସେ ଆଧାର ନଷ୍ଟ ହୋଇ ଭଗବାନଙ୍କ ଭୋଗରେ ଲାଗିବ, ସେହି ପ୍ରେମମୟ ଭଗବାନଙ୍କୁ ଆଶ୍ରୟ କରି ଅଖଣ୍ଡ ପ୍ରେମର ଅଧିକାରୀ ହୋଇପାରିବ । ଯେଉଁମାନେ ବ୍ୟଷ୍ଟିପ୍ରେମର ଆଧାରରେ ବଦ୍ଧ ହୁଅନ୍ତି, ସେମାନେ ଭ୍ରାନ୍ତ । ଯେ ଡାଳ-ପତ୍ର ଆଶ୍ରୟ କରନ୍ତି, ସେ ମୂଳବିଷୟ ଜାଣିପାରନ୍ତି ନାହିଁ ।

ଜ୍ଞାନଚର୍ଚ୍ଚାର ଆଦର୍ଶ ବର୍ତ୍ତମାନ ପୂର୍ଣ୍ଣ ହୋଇନାହିଁ; କାରଣ, ସେଥିରେ କେବଳ ନିର୍ଗୁଣତ୍ୱ ରକ୍ଷା କରାଯାଏ । ଏପରି ମୁକ୍ତିରେ ସ୍ୱ-ଭାବରେ ପ୍ରତିଷ୍ଠା ଲାଭ ହୋଇପାରେ; କିନ୍ତୁ ନିର୍ଗୁଣ-ସଗୁଣର ମୂଳ ଭାବଲୋକରେ ଯେଉଁ ସ୍ୱରୂପ ଅବସ୍ଥା ହୁଏ, ତାହାର ଜ୍ଞାନ ହୋଇପାରେ ନାହିଁ । ସ୍ୱ-ଭାବରେ ବହୁ କାଳ ଅବସ୍ଥାନ

କଳାପରେ ଭାବଲୋକ ଭାସମାନ ହୁଏ; କିନ୍ତୁ ଯେଉଁମାନେ ଜ୍ଞାନ ଓ ପ୍ରେମ ଉଭୟ ଉପଲବ୍ଧି କରି ଅଗ୍ରସର ହୁଅନ୍ତି, ସେମାନଙ୍କ ଜୀବନ ପୂର୍ଣ୍ଣ । କେବଳ ଭାବଗ୍ରାହୀ ପ୍ରେମିକ ଭକ୍ତଙ୍କର ଭାବଲୋକରେ ଅଧିକାର ଜନ୍ମେ ।

ଭାବର ସାଧକ ଆମ ଦେଶରେ ମାତ୍ର ପାଞ୍ଚ ଜଣ । ସେମାନଙ୍କୁ ପଞ୍ଚରସିକ କୁହାଯାଏ । ବିଲ୍ୱମଙ୍ଗଳ, ଚଣ୍ଡୀଦାସ, ବିଦ୍ୟାପତି, ଜୟଦେବ ଏବଂ ରାୟ ରାମାନନ୍ଦ । ବିଲ୍ୱମଙ୍ଗଳଙ୍କୁ ଭଗବାନ୍ ସାକ୍ଷାତ୍‌ଭାବରେ କୃପା କରିଥିଲେ । ରାମାନନ୍ଦ ରାୟ ଗୌରାଙ୍ଗଦେବଙ୍କ ଅନ୍ତରଙ୍ଗ ପାର୍ଷଦ ଭକ୍ତ । ରାମାନନ୍ଦ ରାୟଙ୍କ ନିକଟରୁ ଶ୍ରୀଗୌରାଙ୍ଗଦେବ ଶିଷ୍ୟଙ୍କ ପରି ଧର୍ମତତ୍ତ୍ୱ, ରାଧାକୃଷ୍ଣତତ୍ତ୍ୱ ପରମ ଆନନ୍ଦ ସହିତ ଶ୍ରବଣ କରୁଥିଲେ ।

ଅଭାବ ପୂରଣର ନାମ ଭାବ । ଯାହାଙ୍କର ଯେଉଁ ବିଷୟରେ ଅଭାବ ଅଛି, ତାଙ୍କର ସେହି ବିଷୟରେ ଭାବ ହୋଇଛି ବୋଲି ବୁଝିବାକୁ ହେବ । ଭାବ ହିଁ ନିତ୍ୟ । ଏହି ଭାବର ରାଜ୍ୟ ହିଁ ବୈଷ୍ଣବମାନଙ୍କର ନିତ୍ୟବୃନ୍ଦାବନ । ସେମାନଙ୍କର ଆରାଧ୍ୟ ଦେବତା ରାଧାକୃଷ୍ଣ । ସାଧକମାନେ ନିଜ ଦେହକୁ ବୃନ୍ଦାବନ ବୋଲି କଳ୍ପନା କରିଥାନ୍ତି ।

ନିତ୍ୟବୃନ୍ଦାବନରେ ବିରହ ନାହିଁ । ଏହି ଭୂ-ବୃନ୍ଦାବନରେ ବିରହ ବିଦ୍ୟମାନ । ବିରହ ପରେ ମିଳନସୁଖ ଉପଲବ୍ଧି କରାଇବା ନିମିତ୍ତ ଏହି ଭୂ-ବୃନ୍ଦାବନର ଲୀଳା ।

ଶ୍ରୀଗୌରାଙ୍ଗଦେବ ଏବଂ ରାଧାକୃଷ୍ଣ ଏକ ହେଲେ ମଧ ରାଧାକୃଷ୍ଣ ସାଧ୍ୟଭାବ, ଗୌରାଙ୍ଗଦେବଙ୍କ ସାଧନଭାବ । ରାଧାକୃଷ୍ଣଙ୍କ ସାଧ୍ୟଭାବ ଜୀବ କିଭଳି ଲାଭ କରିପାରିବ, ତାହା ଶିକ୍ଷା ଦେବା ନିମିତ୍ତି ଗୌରାଙ୍ଗଦେବଙ୍କ ଆବିର୍ଭାବ । ତେଣୁ ସେ ଭକ୍ତାବତାର ।

ଜ୍ଞାନର ପର ଅବସ୍ଥା ପ୍ରେମ । ତେଣୁ ବେଦାନ୍ତପରେ ଭାଗବତ । ପ୍ରକାଶାନନ୍ଦ ସରସ୍ୱତୀ ଜ୍ଞାନ ସାଧନା କରି ଜ୍ଞାନର ଭୂମିକା ପାରହୋଇଥିବାରୁ ସହଜରେ ଗୌରାଙ୍ଗଦେବଙ୍କ ପ୍ରେମ-ଭକ୍ତି ଗ୍ରହଣ କରିପାରିଥିଲେ ।

ପ୍ରେମ ବା ପରାଭକ୍ତି ସାଧନସାପେକ୍ଷ ନୁହେଁ । ତାହା ସଂପୂର୍ଣ୍ଣ ଭାବରେ ଭଗବାନ୍ ଓ ଭକ୍ତଙ୍କ କୃପାସାପେକ୍ଷ । ଭକ୍ତଙ୍କ କୃପା ମଧ ଭଗବାନ୍‌ଙ୍କ କୃପାର ଅନ୍ତର୍ଗତ ।

ଜ୍ଞାନ ଲାଭ ନ ହେଲେ କେବେ ହେଲେ ଭକ୍ତି ଲାଭ ହୋଇପାରେ ନାହିଁ । ଭଗବାନ କଣ, ତାଙ୍କୁ ଭକ୍ତି କଲେ କଣ ହୁଏ ଏବଂ ତାଙ୍କ ସହିତ ଜୀବର ସମ୍ବନ୍ଧ ଇତ୍ୟାଦି ତତ୍ତ୍ୱ ନ ଜାଣିଲେ ଭଗବାନ୍‌ଙ୍କ ପ୍ରତି ଭକ୍ତିଭାବ ଜାଗ୍ରତ ହୋଇପାରେ ନାହିଁ । ତେଣୁ ଜ୍ଞାନପରେ ଭକ୍ତି । ପ୍ରଥମେ ବେଦାନ୍ତଜ୍ଞାନ ଲାଭ ହେଲେ ପରେ ଭକ୍ତି ଲାଭ ହୋଇଥାଏ । ପରମହଂସ ନ ହେଲେ କାହାର ଭାଗବତ ପାଠର ଅଧିକାର ଆସେ ନାହିଁ । ପ୍ରେମ-ଭକ୍ତି ମାୟା ମିଶ୍ରିତ । ପ୍ରଥମେ ମାୟା ତ୍ୟାଗ କରି ପରେ ପ୍ରେମ-ଭକ୍ତି ଲାଭ କରିବା ପରେ ମାୟାସହିତ ଯୋଗ ରଖିବାକୁ ହେବ । ସେତେବେଳ ତୁମେ ମାୟା ଭିତରେ ଓ ମାୟା ତୁମ ଭିତରେ ଅଭିନ୍ନ ଭାବରେ ମିଶିଯିବ । ତେଣୁ ଭାଗବତର ଅନ୍ୟ ନାମ ପରମହଂସ ସଂହିତା । ଏଥିପାଇଁ ବେଦାନ୍ତ ପରେ ଭାଗବତର ଆରମ୍ଭ ।

ଶ୍ରୀରାଧାଙ୍କ ଭାବ ବୁଝିବା ଶକ୍ତି ଜୀବର ନାହିଁ । ଶ୍ରୀରାଧା ଭକ୍ତଙ୍କ ହୃଦୟରେ ଆବିଷ୍ଟ ହେଲେ ଯାଇ ରାଧାଭାବ ବୁଝିହେବ । ଶ୍ରୀରାଧାଙ୍କ ଭାବର ବିନ୍ଦୁମାତ୍ର ଲାଭ ହେଲେ ଜୀବର ନିର୍ବାଣମୁକ୍ତି ଲାଭ ହୋଇପାରିବ । ଶ୍ରୀରାଧା ହିଁ ମହାଭାବସ୍ୱରୂପିଣୀ । ବୃନ୍ଦାବନର ମହାଭାବ ଜୀବର ଅଜ୍ଞାତ ଥିଲା । ସ୍ୱୟଂ ଭଗବାନ ହିଁ ଶ୍ରୀରାଧାଙ୍କ ଭାବ-କାନ୍ତି ଧାରଣ କରି ଶ୍ରୀଗୌରାଙ୍ଗ ରୂପରେ ଆବିର୍ଭୂତ ହୋଇ ନିଜ ଆଚରଣ ଦ୍ୱାରା ଭକ୍ତମାନଙ୍କୁ ସେହି ଭାବ ଦେଖାଇଥିଲେ ।

ପଞ୍ଚରସିକମଣ୍ଡଳୀ କାମଜୟୀ ଥିଲେ । କାମଜୟୀ ନ ହେଲେ କେହି କେବେ ପ୍ରେମିକ ହୋଇପାରନ୍ତି ନାହିଁ । ତାଙ୍କ ଭିତରେ ଭୂତର ଶକ୍ତି ପ୍ରବେଶ କରିଥାଏ । ଏମାନଙ୍କ ମଧ୍ୟରେ ରାୟ ରାମାନନ୍ଦ ହିଁ ସାକ୍ଷାତ୍ ମଦନମୋହନ । ତେଣୁ ମହାପ୍ରଭୁଙ୍କର ସେ ବିଶେଷ ଅନ୍ତରଙ୍ଗ ଥିଲେ । ରାୟ ରାମାନନ୍ଦ ସଠିକ୍ ଭାବରେ ଶ୍ରୀକୃଷ୍ଣଙ୍କ ମଧୁର-ଲୀଳା ଜଗତ୍‌କୁ ଦେଖାଇଦେଇ ଯାଇଥିଲେ । ତାଙ୍କ ସାଧନାରେ ସ୍ୱତନ୍ତ୍ର ନାୟିକା ନଥିଲେ । ସେ ନିର୍ବିକାର ଭାବରେ ସେବା କରିପାରୁଥିଲେ । ଏହା ହିଁ ତାଙ୍କର ବିଶେଷତ୍ୱ ।

ଏ ଜଗତ୍‌ରେ ଥାଇ ମଧୁର ଭାବର ଧାରଣା ସମ୍ଭବ ହୋଇପାରେ ନାହିଁ । ତେଣୁ ସଖୀମାନଙ୍କର ଅନୁଗା ହୋଇ ଭଜନ କରିବାକୁ ହୁଏ । ରାୟ ରାମାନନ୍ଦ ପ୍ରକୃତ ପ୍ରେମିକ । ତାଙ୍କ ସାଧନାରେ ବିରହ ବା ବିଚ୍ଛେଦ ନାହିଁ । ଜ୍ଞାନ-ଲାଭପରେ ଯଦି ପ୍ରେମର ସ୍ଫୂର୍ତ୍ତି ହୁଏ, ତେବେ ସେ ପ୍ରେମରେ ବିରହ ବା ବିଚ୍ଛେଦ ବୋଲି

କିଛି ନଥାଏ । ସେତେବେଳେ ପ୍ରେମିକଙ୍କର ପ୍ରକୃତ ପକ୍ଷରେ ଗୋପୀଭାବ ଲାଭ ହୋଇଥାଏ । ଗୋପୀ ନିର୍ଲିପ୍ତ ନିର୍ଗୁଣ ସାକ୍ଷୀ ମାତ୍ର । ରାମାନନ୍ଦ ରାୟଙ୍କର ସେହି ଅବସ୍ଥା ଲାଭ ହୋଇଥିଲା । ପ୍ରକୃତ ପ୍ରେମ ଲାଭ ହେଲେ ରମଣୀ ବା ରମଣ ଭେଦଜ୍ଞାନ ନଥାଏ ।

ଜ୍ଞାନୀମାନଙ୍କର ପ୍ରେମ ଭକ୍ତି ଲାଭ ହେଲେ ସେମାନେ କେବଳ ମିଳନାନନ୍ଦ ଭୋଗ କରନ୍ତି । ସେମାନଙ୍କ ପ୍ରେମରେ ବିରହ-ଭୟ ନଥାଏ; କିନ୍ତୁ ଶ୍ରୀରାଧାଙ୍କ କଥା ସ୍ୱତନ୍ତ୍ର । ଏହି ମରଜଗତରେ ପ୍ରକୃତ ପ୍ରେମର ଉଦୟ ହେଲେ କିଭଳି ଅବସ୍ଥା ଲାଭ ହୁଏ, ଶ୍ରୀରାଧା ନିଜ ଜୀବନରେ ତାହାର ଅଭିନୟ ଦେଖାଇଦେଇ ଯାଇଛନ୍ତି । କେବଳ ଭକ୍ତିର ସାଧନାରେ ଆତ୍ମବିସ୍ମୃତି ଆସିଯାଏ ଏବଂ ଜ୍ଞାନସାଧନାରେ ଆତ୍ମପ୍ରତିଷ୍ଠା ଲାଭ ହୁଏ ।

ପ୍ରେମ ବା ଭାବ କହିଲେ ଆବିଳତାବିହୀନ କ୍ରମବର୍ଦ୍ଧମାନ ସୁଖ ପାଇବାକୁ ବୁଝାଇଥାଏ । କୌଣସି ଗୁଣ ଦେଖି ସେଥିପ୍ରତି ଆକୃଷ୍ଟ ହୋଇ ସୁଖ ପାଇଲେ ଗୁଣକ୍ଷୟ ହୋଇପାରେ ନାହିଁ । ସେତେବେଳେ ସୁଖ ପାଇବା ଚାଲିଯାଏ । ପ୍ରେମ କ୍ରମେ ବର୍ଦ୍ଧିତ ହୁଏ । ପ୍ରେମ କ୍ରମବର୍ଦ୍ଧମାନ; ସେପରି ନ ହେଲେ ତାହା ଦିନେ ଚାଲିଯାଇପାରେ । ଯେତେ ଘାତ-ପ୍ରତିଘାତ ଆସିଲେ ମଧ୍ୟ ପ୍ରେମ କ୍ରମେ ବର୍ଦ୍ଧିତ ହୁଏ । ପ୍ରେମରେ ବିଚ୍ଛିନ୍ନତା ନାହିଁ, ପ୍ରେମ ମଧ୍ୟ ସ୍ଥୁଳଦେହ ପ୍ରତି ଉଦ୍ଦିଷ୍ଟ ନୁହେଁ। ଏହା ଅନ୍ତରର ଏକମୁଖୀ ଆକର୍ଷଣୀ ବୃତ୍ତି । ଏଥିରେ ଏକତ୍ୱ ଅନୁଭୂତିର ତୃପ୍ତି ବିଦ୍ୟମାନ । ପ୍ରିୟତମଙ୍କ ସ୍ମୃତିରେ ତନ୍ମୟ ହୋଇଯିବା, ତାଙ୍କ ଲୀଳାରସ-ଅନୁଧ୍ୟାନରେ ଆନନ୍ଦ ଲାଭ କରିବା ଏବଂ ନିଜର ପୃଥକ୍ ସତ୍ତା ହରାଇବସିବା ହିଁ ପ୍ରକୃତ ପ୍ରେମର ଲକ୍ଷଣ । ଏହାକୁ ଅନୁଭବ କୁହାଯାଏ । ଅର୍ଥାତ୍ ଭାବି ଭାବି ତତ୍‌ସ୍ୱରୂପ ଲାଭ କରିବା, ଯେପରି ଗୋପୀମାନଙ୍କର ହୋଇଥିଲା ।

ସତ୍ ଚିତ୍ ଆନନ୍ଦ ହିଁ ବ୍ରହ୍ମଙ୍କର ସ୍ୱରୂପ । ଭଗବାନଙ୍କୁ ପୂର୍ଣ୍ଣ ଭାବରେ ଉପଲବ୍ଧି କରିବାକୁ ହେଲେ କେବଳ ଜ୍ଞାନୀ କିମ୍ବା କେବଳ ଭକ୍ତ ହେଲେ ଚଳିବ ନାହିଁ । ଜ୍ଞାନୀମାନେ ଭଗବାନଙ୍କର ଚିତ୍ ଅଂଶକୁ ଉପଲବ୍ଧି କରିଥାନ୍ତି ଏବଂ ଭକ୍ତମାନେ ତାଙ୍କର ଆନନ୍ଦ ଅଂଶକୁ ଉପଲବ୍ଧି କରିଥାନ୍ତି । ତେଣୁ ସେମାନଙ୍କ ଜୀବନ ପୂର୍ଣ୍ଣ ନୁହେଁ । ଏଥିପାଇଁ ତୁମମାନଙ୍କ ଭିତରେ ଜ୍ଞାନପ୍ରେମର ମିଳନ

କରିବାକୁ ହେବ । ଯଦି କେହି ଶଙ୍କରଙ୍କ ଜ୍ଞାନ ଏବଂ ଗୌରାଙ୍ଗଦେବଙ୍କ ପ୍ରେମଭକ୍ତି ଲାଭ କରିପାର, ତେବେ ଜୀବନରେ ପୂର୍ଣ୍ଣତା ଆସିଯିବ ।

ସଦ୍‌ଗୁରୁଙ୍କ ଠାରେ ଜ୍ଞାନ-ପ୍ରେମର ମିଳନ ହୋଇଅଛି । ତେଣୁ ମୁଁ ଯେଉଁ ଗୁରୁ-ବ୍ରହ୍ମଙ୍କ ଆସନ ପ୍ରତିଷ୍ଠା କରିଛି,ସେଥିରେ ସମସ୍ତେ ସମଭାବରେ ଉପକୃତ ହେବେ । ଅସାଂପ୍ରଦାୟିକ ଭାବରେ ଧର୍ମପ୍ରସାର ହିଁ ମୋର ଲକ୍ଷ୍ୟ ।

ଶ୍ରୀକୃଷ୍ଣଙ୍କ ହ୍ଲାଦିନୀ-ଶକ୍ତି ରୂପ ପରିଗ୍ରହ କରି ଶ୍ରୀରାଧା ରୂପରେ ଅବତୀର୍ଣ୍ଣ ହୋଇଥିଲେ । ରାଧା-ଭାବ ଓ କାନ୍ତି ସମ୍ମିଳିତ ହୋଇ ଗୌରାଙ୍ଗ ରୂପରେ ଅବତୀର୍ଣ୍ଣ ହୋଇଥିଲେ । ଭକ୍ତ ଭଗବାନ୍‌ଙ୍କୁ ଲାଭ କଲେ କିପରି ଆନନ୍ଦ ଅନୁଭବ କରନ୍ତି, ତାହାର ମହିମା ପ୍ରଦର୍ଶନନିମିତ୍ତ ଗୌରାଙ୍ଗଦେବଙ୍କ ଅବତାର । ଜ୍ଞାତା, ଜ୍ଞାନ, ଜ୍ଞେୟ—ଜଗତରେ ଏହି ତ୍ରିଧାରା ସର୍ବଦା ପରିଲକ୍ଷିତ ହୋଇଥାଏ । ଯେ ଜାଣିବାକୁ ଇଚ୍ଛା କରନ୍ତି, ଯାହାଙ୍କୁ ଜାଣିବାକୁ ଇଚ୍ଛା କରନ୍ତି ଏବଂ ସେ ବିଷୟ ଉପଲବ୍‌ଧି କଲେ କିଭଳି ବୋଧ ଜାଗ୍ରତ ହୁଏ—ଏହି ବୋଧ ବା ଜ୍ଞାନ ହିଁ ଆନନ୍ଦ । ଜୀବର ଇଚ୍ଛା ଭଗବତ୍ ଇଚ୍ଛାର ଅନୁକୂଳ ନ ହେଲେ ସେଥିରେ ଆନନ୍ଦ ଲାଭ ହୁଏ ନାହିଁ ।

ତେଣୁ ଶ୍ରୀକୃଷ୍ଣଚୈତନ୍ୟ ସ୍ୱୟଂ ଭଗବାନ । ସେ ମାନବାକାର ହେଲେ ମଧ୍ୟ ଭୌତିକ ମାନବ ନୁହନ୍ତି । ଈଶ୍ୱର ନିରାକାର ନୁହଁନ୍ତି । ଯାହାଙ୍କର ନିଶ୍ଚୟ ଆକାର ଅଛି, ସେ ନିରାକାର । ''ନିଃ—ନିଶ୍ଚୟ-ନିଷେଧୟୋଃ'' । ନିଶ୍ଚୟ ଆକାର ଥିଲେ ସେ ନରାକାର ସ୍ୱରୂପ । ସମସ୍ତ ସ୍ତ୍ରୀମୂର୍ତ୍ତିର ଚରମ ସୌନ୍ଦଯମୟୀ ଶ୍ରୀରାଧା ଏବଂ ସମସ୍ତ ପୁରୁଷାକୃତିର ଚରମ ମାଧୁର୍ଯ୍ୟ ମୂର୍ତ୍ତି ଶ୍ରୀକୃଷ୍ଣ । ତେଣୁ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ମିଳିତ ମୂର୍ତ୍ତି ଶ୍ରୀକୃଷ୍ଣଚୈତନ୍ୟ ହିଁ ନରାକାର ଭଗବାନଙ୍କର ମୂର୍ତ୍ତି ।

ଶ୍ରୀଗୁରୁଦେବ ହିଁ ଗୌରାଙ୍ଗଦେବଙ୍କର ସ୍ୱରୂପ । ତେଣୁ ଗୁରୁନାମ ସିଦ୍ଧନାମ ମଧ୍ୟରେ ଗଣ୍ୟ ।

ମଧୁର ଭାବର ଧାରଣା ଏ ଜଗତରେ ଥାଇ ସମ୍ଭବ ହୋଇପାରେ ନାହିଁ । ଏଥିପାଇଁ ସଖୀମାନଙ୍କର ଅନୁଗା ହୋଇ ଭଜନ କରିବାକୁ ହୁଏ ।

ଶ୍ରୀରାଧା ଓ ଶ୍ରୀକୃଷ୍ଣ ଏକ ଆତ୍ମା ଏବଂ ଅଭିନ୍ନ । ଜୀବକୁ ରସତତ୍ତ୍ୱ ଆସ୍ୱାଦନ କରାଇବାକୁ ଉଭୟେ ଦେହଧାରଣ କରିଥିଲେ । ସେହି ରାଧାକୃଷ୍ଣ ଆତ୍ମାରୂପରେ ପ୍ରତି ଜୀବ ଦେହରେ ବିଦ୍ୟମାନ । ଜୀବ ସେହି ସୁଖନିମିତ୍ତ ଜୀବନ ଧାରଣ କରିଅଛି; କିନ୍ତୁ ଅପୂର୍ଣ୍ଣ ଜଗତ୍‌ରେ ପୂର୍ଣ୍ଣସୁଖ ମିଳେ ନାହିଁ । ପୂର୍ଣ୍ଣସୁଖ ଆତ୍ମାରେ

ଅବସ୍ଥିତ । ଏହି ତତ୍ତ୍ୱ ସାଧୁ-ଶାସ୍ତ୍ରମୁଖରୁ ଜାଣିପାରିଲେ ଜୀବର ବିଷୟବୈରାଗ୍ୟ ଉପସ୍ଥିତ ହୁଏ । ପରେ ଗୁରୁକୃପାରୁ ଆତ୍ମାରେ ରାଧାକୃଷ୍ଣ ତତ୍ତ୍ୱର ବିକାଶ କରିପାରିଲେ ଜୀବ ପୂର୍ଣ୍ଣରସ ଓ ଆନନ୍ଦର ଅଧିକାରୀ ହୁଏ; କିନ୍ତୁ ଏହା ସାଧନସାପେକ୍ଷ । ଏହି ସାଧନ ଶିକ୍ଷା ଦେବାନିମିତ୍ତ ଭଗବାନଙ୍କର ରାଧା-କୃଷ୍ଣରୂପରେ ଅବତାର ଗ୍ରହଣ ।

ରାସଲୀଳା ପ୍ରାକୃତ ଜଗତର କାମଲୀଳା ନୁହେଁ । ହ୍ଲାଦିନୀ ଶକ୍ତି ସହିତ ଶ୍ରୀକୃଷ୍ଣଙ୍କର ଅର୍ଥାତ୍ ଶକ୍ତି ସହିତ ଶକ୍ତିମାନଙ୍କର ଯେଉଁ ମିଳନ ବା ଅଭେଦଭାବରେ ପରସ୍ପରକୁ ଆଶ୍ରୟ କରିବାର ଯେଉଁ ପିପାସା, ତାହା ହିଁ ରାସଲୀଳା । ଜୀବମାତ୍ରକେ ରମଣୀ ଓ ଭଗବାନ ରମଣ । ଭକ୍ତ-ଭଗବାନଙ୍କ ମଧ୍ୟରେ ଏହି ଯେଉଁ ଅଭେଦଭାବ, ତାହା ହିଁ ରାସଲୀଳା । ଆନନ୍ଦମୟ କାମଗନ୍ଧଶୂନ୍ୟ ପ୍ରେମ ବିକାରର ନାମ ରାସକ୍ରୀଡ଼ା । ଭଗବାନ ଆତ୍ମାରାମ ଅର୍ଥାତ୍ ସ୍ୱରୂପରେ ସେ ସର୍ବଦା ଅଧିଷ୍ଠିତ ଥାଆନ୍ତି । ଭଗବାନ ଓ ଭକ୍ତଙ୍କର ସ୍ୱରୂପଗତ ଅଭେଦାତ୍ମକ ମିଳନର ନାମ ରମଣ । ଯୋଗୀମାନଙ୍କର ଏହା ସମାଧି । ତେଣୁ ଭଗବାନ ରାମ ନାମରେ ଅଭିହିତ । ଏହା ବେଦବାକ୍ୟ । ରାମ ଶବ୍ଦରେ ଅଦ୍ୱୈତ ପରମାତ୍ମାଙ୍କୁ ବୁଝାଇଥାଏ । ଯୋଗୀମାନେ ଯେଉଁ ଅଦ୍ୱୈତବ୍ରହ୍ମଙ୍କ ଠାରେ ଇନ୍ଦ୍ରିୟନିରୋଧ ପୂର୍ବକ ରମଣ କରନ୍ତି, ତାହାଙ୍କୁ ରାମ କୁହାଯାଏ । ତେଣୁ ଆତ୍ମା-ପରମାତ୍ମାଙ୍କର ଅଭେଦ ଭାବରେ ସ୍ୱରୂପାତ୍ମକ ମିଳନର ନାମ ରାସଲୀଳା । ଏହା ହିଁ ବ୍ରହ୍ମଙ୍କର ଅମାନୁଷୀ ଗୂଢ଼ଲୀଳା ।

ଜୀବ ଗୋପୀଭାବ ଗ୍ରହଣ କରି ରାଧାକୃଷ୍ଣଙ୍କ ମିଳନାତ୍ମକ ଆନନ୍ଦାନୁଭବ କରିବା ହିଁ ପରମପୁରୁଷାର୍ଥ ।

ଭକ୍ତଙ୍କର ପଞ୍ଚଭାବ ଗାଢ଼ ହୋଇ ରାଧାପ୍ରେମରେ ପର୍ଯ୍ୟବସିତ ହୋଇଅଛି । ରାଧା-ପ୍ରେମ ପରକୀୟାହେତୁ ଶ୍ରେଷ୍ଠ । ପତି-ପତ୍ନୀ ସମ୍ବନ୍ଧ ପ୍ରଭୁ-ଦାସର ସମ୍ବନ୍ଧ । ରାଧା-ପ୍ରେମରେ ସେ ବ୍ୟବଧାନ ନାହିଁ । ସଂସାର ହିଁ ରାଧାଙ୍କ ସ୍ୱାମୀ ଚନ୍ଦ୍ରଷେଣ । ଧର୍ମଦ୍ୱେଷୀ ବ୍ୟକ୍ତିମାନେ ଜଟିଳା-କୁଟୀଳା ସଦୃଶ । ତେଣୁ ସେମାନଙ୍କର ଅଗୋଚରରେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କୁ ସୁଖ ପାଉଥିଲେ । ଏହି ଅନୁରାଗ ହିଁ ଭକ୍ତଙ୍କର ଭଗବାନଙ୍କ ଠାରେ ପରାନୁରକ୍ତି । ଏହି ପରାନୁରକ୍ତିର ବାହ୍ୟବିକାଶ ହିଁ ବ୍ରଜଲୀଳା । ଜୀବ ଭଗବାନଙ୍କ ସୃଷ୍ଟିଲୀଳା ମଧ୍ୟଦେଇ ସଂସାର ଲୀଳାନନ୍ଦ ଭୋଗ କରି ନିତ୍ୟଲୀଳାରେ ଉପନୀତ ହୋଇ କିଭଳି ସ୍ୱରୂପାନନ୍ଦ ଭୋଗ କରିପାରିବ, ବ୍ରଜଲୀଳାର ତାହା ହିଁ ଉଦ୍ଦେଶ୍ୟ ।

ସ୍ୱରୂପଶକ୍ତି ଓ ମାୟାଶକ୍ତି ଏହି ଉଭୟ ମଧ୍ୟରେ ତଟସ୍ଥାଶକ୍ତି ବା ଜୀବଶକ୍ତି ଅବସ୍ଥିତ । ମାୟାଶକ୍ତିର ତାଡ଼ନାରେ ଜୀବ ସ୍ୱରୂପଶକ୍ତିଆଡ଼କୁ ଅଗ୍ରସର ହୁଏ । ଏହା ହିଁ ଜୀବର କ୍ରମୋନ୍ନତି । ଭଗବତ୍‌ଭକ୍ତ ସ୍ୱରୂପଶକ୍ତି ଲାଭ କରି ସେହି ଶକ୍ତିକୁ ପୁଣି ଭଗବାନଙ୍କୁ ଅର୍ପଣ କରନ୍ତି । ଏହା ହିଁ ଲୀଳାର ଗୂଢ଼ ରହସ୍ୟ । ଏହି ଲୀଳାନନ୍ଦଭୋଗ କରି ଜୀବ ଧନ୍ୟ ହୋଇଛି ।

ରାଧାଭାବର କଣିକାଏ ଧାରଣା କରିବା ଶକ୍ତି ଜୀବର ନାହିଁ । ଜୀବ ରାଧାଭାବରେ ଆବିଷ୍ଟ ହେଲେ ସେ କେବଳ ବୁଝିପାରେ । ଏହି ଭାବ ମହାପ୍ରଭୁ ଗୌରାଙ୍ଗଦେବ ନିଜେ ଆଚରଣ କରି ସାଧାରଣଙ୍କୁ ଦେଖାଇଥିଲେ । ଗୌରାଙ୍ଗଦେବଙ୍କ ପଥର ସାଧନା ଅଦ୍ୱୈତଭାବର ସାଧନା । ଆମ ଦେଶରେ ଭଗବାନ ସ୍ୱୟଂପୂର୍ଣ୍ଣ ଭାବରେ ଅବତୀର୍ଣ୍ଣ ହୋଇ ପ୍ରେମଧର୍ମ ପ୍ରଚାର କରିଥିବାରୁ ଦେଶବାସୀମାନେ ମଧ୍ୟ ଧନ୍ୟ ।

କିନ୍ତୁ ଆମ ଦେଶର ବ୍ରାହ୍ମଣମାନେ ଗୌରାଙ୍ଗଦେବଙ୍କ ନାମଶୁଣିଲେ କ୍ରୋଧାନ୍ୱିତ ହୁଅନ୍ତି । ନବଦ୍ୱୀପର ବ୍ରାହ୍ମଣମାନେ ମଧ୍ୟ ଗୌରାଙ୍ଗଦେବଙ୍କ ଭାବର ବିରୋଧୀ । ଗୌରାଙ୍ଗଦେବ ବ୍ରାହ୍ମଣମାନଙ୍କର ବ୍ୟବସାୟ ନଷ୍ଟ କରି ଦେଇଥିଲେ । ମହାପ୍ରଭୁ ଭକ୍ତଭାବର ଆଦର୍ଶ ।

ବସନ୍ତ ଋତୁର ସୌନ୍ଦର୍ଯ୍ୟ ଓ ମଧୁରତା ହିଁ ଶ୍ରୀକୃଷ୍ଣ "ଋତୁନାଂ କୁସୁମାକରଃ" । କେବଳ ବସନ୍ତଋତୁ କାହିଁକି, ଯାହା କିଛି ସୁନ୍ଦର, ରମଣୀୟ, ମନୋହର ଓ ମଧୁର, ତାହା ହିଁ ଶ୍ୟାମସୁନ୍ଦର । ପ୍ରକୃତ ଦେବୀଙ୍କର ମନୋହାରିତା, କୋମଳତା, କାନ୍ତି ଓ ମାଧୁରୀ ହିଁ ଶ୍ୟାମସୁନ୍ଦରଙ୍କ ରୂପ ଏବଂ ଶ୍ରୀମତୀ ରାଧା ସ୍ୱୟଂପରା ଭକ୍ତିସ୍ୱରୂପା—ନିତ୍ୟାନନ୍ଦମୟୀ ପ୍ରକୃତି ଦେବୀ । ବସନ୍ତର ଯେଉଁ ଉଲ୍ଲାସ, ନବଜୀବନର ଯେଉଁ ଉତ୍ସାହ, ପ୍ରେମର ଯେଉଁ ମୁଗ୍ଧତା, ସେ ସମସ୍ତ ଏକତ୍ରିତ ହୋଇ ଶ୍ରୀମତୀ ରାଧାଙ୍କ ରୂପରେ ଫୁଟିଉଠିଛି । ଶ୍ରୀରାଧାଙ୍କର ଯେଉଁ ଅନୁରାଗ, ଯେଉଁ ଐକାନ୍ତିକତା ଓ ମଧୁରତା, ତାହା ଅନ୍ୟତ୍ର ଦୃଷ୍ଟ ହୁଏ ନାହିଁ । ଶ୍ରୀକୃଷ୍ଣଙ୍କ ଭକ୍ତିରେ ଶ୍ରୀରାଧା ଆତ୍ମହରା, ଉତ୍ସାହିତା ଓ ଉଲ୍ଲସିତା । ତେଣୁ ଶ୍ରୀକୃଷ୍ଣ ରସମୟ ଶ୍ୟାମସୁନ୍ଦର, ଶ୍ରୀରାଧା ପ୍ରେମମୟୀ ସୁନ୍ଦରୀ । ରସ ଏବଂ ପ୍ରେମର ମିଳନ ହିଁ ଦୋଳଲୀଳା । ଅନାଦି କାଳରୁ ଏହି ପ୍ରେମଲୀଳା ଚାଲିଆସୁଛି । ପୁରୁଷ-ପ୍ରକୃତିର ପ୍ରେମ-ଦେବତାଙ୍କ ନାମ ମଦନ । ସେହି ଚିର ଆସକ୍ତିର ନାମ ରତି । ତେଣୁ ଭକ୍ତ

ଭଗବତ୍ ଧ୍ୟାନରେ ମୋହିତହୋଇ ତାଙ୍କର ଯେଉଁ ପୂଜା କରନ୍ତି, ତାହାର ନାମ ମଦନ-ଉତ୍ସବ । ଏହି ଉତ୍ସବ ହିଁ ଶ୍ରୀରାଧାକୃଷ୍ଣଙ୍କ ଦୋଳଲୀଳା ।

ଯେଉଁମାନେ ଏହି ଲୀଳା ଦର୍ଶନ କରିବାକୁ ଇଚ୍ଛା କରନ୍ତି, ସେମାନେ ପ୍ରଥମେ ବିବେକ, ସଂଯମ ଓ ଏକାଗ୍ରତାସମ୍ପନ୍ନ ହୋଇ ଜ୍ଞାନରୂପିଣୀ ସରସ୍ୱତୀଦେବୀଙ୍କର ଅର୍ଥାତ୍ ଗୁରୁଶକ୍ତିଙ୍କ ଆରାଧନା କରିବା ଦରକାର । ତତ୍ତ୍ୱଜ୍ଞାନ ରୂପିଣୀ ଦେବୀ ସରସ୍ୱତୀଙ୍କ କୃପାରୁ ଦିବ୍ୟଚକ୍ଷୁ ଫିଟିଲେ ସେତେବେଳେ ସେ ସ୍ପଷ୍ଟ ଉପଲବ୍ଧ କରିପାରିବେ ଯେ ସମଗ୍ର ପ୍ରକୃତି ରାଜ୍ୟ ଅନନ୍ତ ମୂଳସତ୍ତାଙ୍କର ତରଙ୍ଗଲୀଳା ମାତ୍ର । ଏହି ଜ୍ଞାନ ପ୍ରଥମେ ଶିବରାତ୍ରିରେ ଶିବଭାବ ଜାଗ୍ରତ କରାଇଦିଏ । ସାଧକ ମହାକାଳଙ୍କ ପୂଜା କରି ଜାଣିପାରନ୍ତି ଯେ ଲୟ ହିଁ ସୃଷ୍ଟିର ମୂଳ । ଏହାପରେ ସାଧକଙ୍କର ସଂସାରପ୍ରତି ଅନିତ୍ୟତା-ଜ୍ଞାନ ଜାତ ହୁଏ । ମହାମାୟା ପ୍ରକୃତିଦେବୀ ଯାହାଙ୍କର ଆଶ୍ରୟ; ସେହି ପରମପୁରୁଷଙ୍କ ସହିତ ପ୍ରକୃତିର ମିଳନ କିପରି ନିତ୍ୟ-ସଂଘଟିତ ହେଉଛି; ଭକ୍ତ ତାହା ଦର୍ଶନ କରିବା ନିମିତ୍ତ ବ୍ୟାକୁଳ ହୋଇଉଠନ୍ତି । ସେତେବେଳେ ଅନ୍ତରରେ ମାନସବୃନ୍ଦାବନ ଫୁଟିଉଠେ ଓ ହୃଦୟ ପ୍ରେମରେ ପରିପୂର୍ଣ୍ଣ ହୋଇଯାଏ । ସେତେବେଳେ ଭକ୍ତ ଅନ୍ତରମଧ୍ୟରେ ରାଧାକୃଷ୍ଣଙ୍କ ପ୍ରେମଲୀଳା ଦର୍ଶନ କରି ମୁଗ୍ଧ ହୁଅନ୍ତି । ଭକ୍ତିବଳରେ ଓ ପ୍ରେମସାଧନାରେ ସାଧକ ଏହି ଲୀଳା ଦର୍ଶନ କରିପାରନ୍ତି । ଶ୍ରୀଗୁରୁଦେବଙ୍କ କୃପାରୁ ଲୀଳାତତ୍ତ୍ୱର ଉପଲବ୍ଧି ହେଲେ ସାଧକ ଭଗବାନଙ୍କର ଲୀଳା ଏହି ଦେହରେ ମଧ୍ୟ ପ୍ରତ୍ୟକ୍ଷ କରିପାରନ୍ତି ।

ପରିଣାମିନୀ ପ୍ରକୃତିଦେବୀ ଆକାଶରୁ ସମ୍ଭବା ଅର୍ଥାତ୍ ସୃଷ୍ଟିର ଆଦି, ମଧ୍ୟ ଓ ଅନ୍ତକାଳରେ ଏହି ଆକାଶ ହିଁ ବିଦ୍ୟମାନ ଥାଏ । ବୈଜ୍ଞାନିକମାନେ ଏହି ବ୍ୟୋମତତ୍ତ୍ୱକୁ ଇଥର (Ether) ବୋଲି କହିଛନ୍ତି । ଏହି ଆକାଶ ହିଁ ଘନୀଭୂତ ହୋଇ ସ୍ଥୁଳଜଗତ୍ ସୃଷ୍ଟି କରିଛି । ଏହି ଆକାଶ ହିଁ ବାୟୁ, ଜଳ ଓ ପୃଥିବୀ ଆକାର ଧାରଣ କରେ । ଜଗତରେ ଯେତେ ବସ୍ତୁ ଅଛି, ସେ ସମସ୍ତ ହିଁ ଆକାଶରୁ ଉତ୍ପନ୍ନ । ସୃଷ୍ଟି ପୂର୍ବରୁ ଆକାଶ ହିଁ ବିଦ୍ୟମାନ ଥିଲା ଏବଂ ପ୍ରଳୟପରେ ସମସ୍ତେ ଲୟ ଭଜି ଏହି ଆକାଶର ପରିଣତ ହେବେ ।

ପ୍ରାଣଶକ୍ତି ପ୍ରଭାବରେ ଜଗତ୍‌ର ସମସ୍ତ କ୍ରିୟା ସମ୍ପାଦିତ ହୋଇଥାଏ । ଯେପରି ଜଗତ୍‌ର ମୂଳପଦାର୍ଥ ଆକାଶ, ପ୍ରାଣ ମଧ୍ୟ ସେହି ଅନନ୍ତ ବିକାଶିନୀଶକ୍ତି ।

ଜଗତରେ ସମୁଦାୟ ଶକ୍ତି ପ୍ରାଣରେ ଲୀନ ହୁଏ । ଆକାଶ ସ୍ଥିତିର, ପ୍ରାଣଗତିର ସ୍ୱରୂପ । ଏହି ପ୍ରାଣ ହିଁ ମାଧ୍ୟାକର୍ଷଣ ପ୍ରଭୃତି ଶକ୍ତିନାମରେ ଅଭିହିତ । ଏହି ପ୍ରାଣ ହିଁ ସ୍ନାୟବିକ ଶକ୍ତିପ୍ରବାହ; ଚିନ୍ତାଶକ୍ତି ଓ ଦୈହିକ ଶକ୍ତି ମଧ୍ୟ ପ୍ରାଣର ବିକାଶ । ବାହ୍ୟ ଓ ଅନ୍ତର୍ଜ୍ଜଗତର ସମୁଦାୟ ଶକ୍ତି ଯେତେବେଳେ ତାହାର ମୂଳଦେଶକୁ ଗମନ କରେ, ସେତେବେଳେ ତାହାକୁ କୁହାଯାଏ ପ୍ରାଣ । ଆଧୁନିକ ବିଜ୍ଞାନ ମତରେ ମଧ୍ୟ ଶକ୍ତି ସମଷ୍ଟି ଭାବରେ ସମାନ । ଏହା ବ୍ୟକ୍ତ ଓ ଅବ୍ୟକ୍ତଭାବରେ ଦୁଇ ଭାଗରେ ବିଭକ୍ତ । ବ୍ୟକ୍ତାବସ୍ଥାରେ ଏହି ଶକ୍ତି ବିବିଧାକାର ଧାରଣ କରେ । ଅବ୍ୟକ୍ତାବସ୍ଥାରେ ଏହା ମହାକାଳରେ ଲୟପ୍ରାପ୍ତ ଥାଏ ।

ଏହି ପ୍ରାଣର ପୁଣି ପ୍ରାଣ ଅଛି । ତାହାର ନାମ ଭାବ । ଆକାଶ ହିଁ ସମୁଦାୟ ଜଡ଼ବସ୍ତୁର ଜନକ । ପ୍ରାଣର ସୂକ୍ଷ୍ମ ସ୍ପନ୍ଦନଶୀଳ ଅବସ୍ଥାରେ ଏହି ଆକାଶ ହିଁ ମନର ସ୍ୱରୂପ । ତେଣୁ ସମଗ୍ର ମନୋମୟ ଜଗତ ଅଖଣ୍ଡ । ଯେ ନିଜ ମନମଧ୍ୟରେ ଏହି ଅତି ସୂକ୍ଷ୍ମ କମ୍ପନ ଉତ୍ପାଦନ କରିପାରନ୍ତି, ସେ ଅନୁଭବ କରିପାରନ୍ତି ଯେ ସମଗ୍ର ଜଗତ୍ କେବଳ ସୂକ୍ଷ୍ମାତିସୂକ୍ଷ୍ମ କମ୍ପନର ସମଷ୍ଟି ମାତ୍ର । ଅନ୍ତର୍ଜଗତ ମଧ୍ୟରେ କେବଳ ଗୋଟିଏ ଅଖଣ୍ଡ ଭାବ ବିଦ୍ୟମାନ । ସମଗ୍ର ଜଗତରେ ଯେଉଁ ଅଖଣ୍ଡସତ୍ତା ସମ ଭାବରେ ବିଦ୍ୟମାନ, ତାହା ହିଁ ଆତ୍ମା । ଏହି ଅଖଣ୍ଡ ଭାବମୟ ଅବସ୍ଥାକୁ ଶ୍ରୀକୃଷ୍ଣ କହନ୍ତି । ଶ୍ରୀରାଧା ପ୍ରାଣର ସ୍ୱରୂପ । ଯେ ଅଖିଳ ଆନନ୍ଦ ଓ ସୁଖର ଏକମାତ୍ର କର୍ତ୍ତା, ସେହି ଆନନ୍ଦରସ ବିଗ୍ରହ ଶ୍ରୀକୃଷ୍ଣ ନାମରେ ଅଭିହିତ । ପୁଣି ଯେ ସେହି ଶ୍ରୀକୃଷ୍ଣଙ୍କ ମନ ହରଣ କରନ୍ତି, ତାଙ୍କୁ କୁହାଯାଏ ଶ୍ରୀରାଧା । ତେଣୁ ଭାବ ଓ ପ୍ରାଣର ମିଳନ ହିଁ ଅନ୍ତର ରାଜ୍ୟରେ ଝୁଲଣଲୀଳା ନାମରେ ଖ୍ୟାତ ।

ଶ୍ରୀକୃଷ୍ଣ ଓ ଶ୍ରୀରାଧା ଚିଦ୍‌ଘନମୂର୍ତ୍ତି; ଜୀବକୁ ରସତତ୍ତ୍ୱ ଆସ୍ୱାଦନ କରାଇବା ନିମିତ୍ତ ବୃନ୍ଦାବନରେ ଦେହ ଧାରଣ କରିଥିଲେ । ସେହି ରାଧାକୃଷ୍ଣ ପ୍ରତି ଜୀବ ଦେହରେ ଆତ୍ମାରୂପରେ ଅଧିଷ୍ଠିତ ଅଛନ୍ତି । ଆତ୍ମାନୁସନ୍ଧାନରେ ରତ ସାଧକ ସଦ୍‌ଗୁରୁଙ୍କ ଆତ୍ମଜ୍ଞାନ ରୂପ ଦୀକ୍ଷା ଗ୍ରହଣ କରି, ତୀର୍ଥଜଳରେ ଅଭିଷିକ୍ତ ହୋଇ, ନବଦ୍ୱାର ରୋଧପୂର୍ବକ ସାଧନା କରିଥାନ୍ତି । ଏହା ହିଁ ସ୍ନାନଯାତ୍ରା । ସାଧନାଦ୍ୱାରା ଦେହ-ରଥରେ ଆତ୍ମା ପ୍ରଥମେ ବାମନରୂପରେ ଅର୍ଥାତ୍ ଜଗନ୍ନାଥ ରୂପରେ ପ୍ରକାଶିତ ହୁଅନ୍ତି । ଏହା ହିଁ ରଥଯାତ୍ରା । ତତ୍ପରେ ପ୍ରେମରସ-ସାଧନାରେ ନବଦିନ ଅବସ୍ଥାନ କଲାପରେ ସାଧକଙ୍କର ହୃଦୟ ବର୍ଷାବାରିଦ୍ୱାରା ଧୌତ ହୋଇ ଆକାଶ ପରି

ନିର୍ମଳଭାବ ଧାରଣ କରେ। ଜ୍ଞାନ ପୂର୍ଣ୍ଣଚନ୍ଦ୍ର ରୂପରେ ପ୍ରକାଶିତ ହୋଇ ସ୍ନିଗ୍ଧ କିରଣ ବିକିରଣ କରେ । ସେହି ପ୍ରେମପୂର୍ଣ୍ଣ ହୃଦୟରେ ପରମପୁରୁଷ ଝୁଲଣପୂର୍ଣ୍ଣିମା ଦିନ ଆବିର୍ଭୁତ ହୁଅନ୍ତି । ତେଣୁ ହ୍ଲାଦିନୀରୂପିଣୀ ଶ୍ରୀରାଧା ପରମପୁରୁଷଙ୍କ ସହିତ ମିଳିତ ହୋଇ ଝୁଲଣଲୀଳା ସମ୍ପାଦନ କରନ୍ତି । ପ୍ରେମ-ସାଧନାରୂପିଣୀ ଅଷ୍ଟସଖୀଙ୍କ ସହ ଭକ୍ତ ଲୀଳାନନ୍ଦ ଭୋଗ କରନ୍ତି । ତେଣୁ ନିତ୍ୟପ୍ରେମ ଭାବରେ ହୃଦୟ ପୂର୍ଣ୍ଣ କରି ସାଧନା କଲେ ପ୍ରଥମେ ହ୍ଲାଦିନୀଶକ୍ତି ଶ୍ରୀରାଧା ରୂପରେ ପ୍ରକାଶିତା ହୁଅନ୍ତି । ପରେ ଶ୍ରୀରାଧା ଭାବରେ ରହି ଶ୍ରୀକୃଷ୍ଣଙ୍କୁ ଉପଲବ୍ଧି କରିପାରିଲେ ହୃଦୟ ବ୍ରଜଧାମ ବା ବୃନ୍ଦାବନରେ ପରିଣତ ହୋଇଯାଏ । ଏହି ଲୀଳାତତ୍ତ୍ୱ ଆସ୍ୱାଦନ ଓ ଧର୍ମସଂସ୍ଥାପନ ପାଇଁ ଶ୍ରୀକୃଷ୍ଣଙ୍କର ଆବିର୍ଭାବ ହୋଇଥିଲା ।

ସୃଷ୍ଟିକାଳରୁ ଜ୍ଞାନର ଚର୍ଚ୍ଚା ହୋଇଆସୁଥିଲା । ଯଜ୍ଞରୁ ଜ୍ଞାନ ଓ ଜ୍ଞାନରୁ ଉପାସନାର ସୃଷ୍ଟି । କ୍ରମେ ଜ୍ଞାନର ଚର୍ଚ୍ଚା ପ୍ରବଳ ଆକାର ଧାରଣ କରିବା ଫଳରେ ବେଦର ସାର ଉପନିଷଦ୍ ଦର୍ଶନର ବୁଦ୍ଧିଭେଦ ଦ୍ୱାରା ବିଭକ୍ତ ହୋଇ ବିଭିନ୍ନ ଦର୍ଶନଶାସ୍ତ୍ର ସୃଷ୍ଟି ହେଲା । ଧର୍ମ କେବଳ କର୍ମକାଣ୍ଡର କଠୋରତାରେ ଆବଦ୍ଧ ହେଲା । ଜଣେ ଜଣେ ଗୋଟିଏ ଗୋଟିଏ ମତ ପ୍ରକାଶ କରିବାକୁ ଆରମ୍ଭ କଲେ । କ୍ରମେ ନାସ୍ତିକବାଦର ପ୍ରସାର ହେଲା । ଜଡ଼ଚର୍ଚ୍ଚାରେ ଜଗତ୍ ପୂର୍ଣ୍ଣ ହୋଇଗଲା । ରଜୋଗୁଣର ଅହଙ୍କାର ପ୍ରଭାବ ବର୍ଦ୍ଧିତ ହେଲା । ପୃଥିବୀ ପାପଭାରରେ ଭାରାକ୍ରାନ୍ତ ହୋଇଗଲା । ମାନବ ସମାଜ ଦାନବ ସମାଜରେ କ୍ରମେ ପରିଣତ ହେବାକୁ ଲାଗିଲା । ଅଧିକାଂଶ ବ୍ୟକ୍ତି ଯଥେଚ୍ଛାଚାରପରାୟଣ ହୋଇଉଠିଲେ । ଏହା ଦେଖି ସତ୍ତ୍ୱଗୁଣୀ ଦେବତାମାନେ ବିଚଳିତ ହେଲେ । ସେମାନେ ଭଗବାନଙ୍କର ଶରଣାପନ୍ନ ହେଲେ । କଂସ ରଜଃ-ତମୋଗୁଣରୂପୀ । ତେଣୁ ରଜଃ-ତମଃଗୁଣର ଅତ୍ୟାଚାର ଆରମ୍ଭ ହେଲା । ପରେ ଭଗବାନ ଦେବକୀଙ୍କ ଗର୍ଭ ଆଶ୍ରୟ କରି ଅବତୀର୍ଣ୍ଣ ହେଲେ । ଯେପରି ଭାବରେ ସେ ଜଗତରେ ଅବତୀର୍ଣ୍ଣ ହୋଇଥିଲେ, ବର୍ତ୍ତମାନ ସୁଦ୍ଧା ସେ ଭକ୍ତମାନଙ୍କ ହୃଦୟରେ ସେହିପରି ଆବିର୍ଭୂତ ହେଉଛନ୍ତି ।

ରଜଃ-ତମୋଗୁଣବିଶିଷ୍ଟ ମନ ଅହଙ୍କାରୀ । ସେ ଭଗବତ୍‌ଦ୍ୱେଷୀ ହେଲେ ସତ୍ତ୍ୱଗୁଣୀ ବସୁଦେବ ଓ ଭକ୍ତିରୂପିଣୀ ଦେବକୀ କାରାରୁଦ୍ଧ ହୁଅନ୍ତି । ମନର ଯଥେଚ୍ଛାଚାରରେ ହୃଦୟନଗରୀ ଛାରଖାର ହୋଇଯାଏ । ସେତେବେଳେ ଭକ୍ତିଗର୍ଭରୁ ଶୁଦ୍ଧସତ୍ତ୍ୱରେ ଆତ୍ମଜ୍ୟୋତିଃ ପ୍ରତିବିମ୍ବିତ ହୁଅନ୍ତି । ସତ୍ତ୍ୱଗୁଣରେ ଜ୍ଞାନର ବିକାଶ

ହେଲାକ୍ଷଣି କର୍ମବନ୍ଧନ ଖୋଲିଯାଏ । କଂସର ଅନୁଚରବର୍ଗଙ୍କ ପରି ରାଜସିକ ଓ ତାମସିକ ବୃତ୍ତିଗୁଡ଼ିକ ବିନାଶପ୍ରାପ୍ତ ହେଲେ କଂସରୂପୀ ମନ ଆପଣା ମନକୁ ଲୟ ହୁଏ । ସେତେବେଳେ ପରମାତ୍ମାରୂପୀ ଶ୍ରୀକୃଷ୍ଣ ହୃଦୟ ସିଂହାସନର ରାଜା ହୋଇ ମଥୁରାବାସୀଙ୍କ ପରି ସାଧକଙ୍କୁ ଶାନ୍ତି ଓ ଆନନ୍ଦ ବିତରଣ କରନ୍ତି । ଏହିସବୁ ତତ୍ତ୍ୱର ବାହ୍ୟରସ ଉପଭୋଗ ନିମିତ୍ତ ନାନାବିଧ ଉତ୍ସବର ଆୟୋଜନ । ଯେଉଁମାନେ ଭାରତର ଅନ୍ତରରାଜ୍ୟର ସନ୍ଧାନ ପ୍ରାପ୍ତ ହୋଇ ନାହାନ୍ତି, ସେମାନେ ଭାରତୀୟ ଉତ୍ସବାଦିକୁ ନିନ୍ଦା କରିଥାଆନ୍ତି ।

ଉତ୍ସବ ଅଳସକୁ ଉଦ୍‌ଯୋଗୀ, ଅଚେତନକୁ ଚେତନ, କଠୋରକୁ କୋମଳ କରେ, ଛିନ୍ନ ବିଚ୍ଛିନ୍ନକୁ ଏକତ୍ରିତ କରେ, ଜଡ଼କୁ ଗତିଯୁକ୍ତ କରେ, ନିଦ୍ରିତକୁ ଜାଗ୍ରତ କରେ,ବଦ୍ଧକୁ ମୁକ୍ତ କରେ, ବ୍ୟଥିତକୁ ଆନନ୍ଦଯୁକ୍ତ କରେ । ତେଣୁ ଉତ୍ସବର ଶକ୍ତି ଆଶ୍ଚର୍ଯ୍ୟ । ତାହା ହୀନକୁ ପ୍ରଧାନ କରେ, ଶୂନ୍ୟକୁ ପୂର୍ଣ୍ଣ କରେ, ଶତ୍ରୁର ମିତ୍ର କରେ । ସମାଜର ବିଭିନ୍ନ ଶ୍ରେଣୀର ବ୍ୟକ୍ତିମାନଙ୍କୁ ଏକତ୍ରିତ କରି ଭଗବତ୍‌ଭାବରେ ବିଭୋର କରିବା ନିମିତ୍ତ ହିନ୍ଦୁ ଋଷିମାନଙ୍କର ବିବିଧ ଉତ୍ସବର ଆୟୋଜନ ।

ସାତ୍ତ୍ୱିକ ଉତ୍ସବ ବ୍ୟତୀତ ହିନ୍ଦୁମାନେ କେବେହେଲେ ରାଜସିକ ଓ ତାମସିକ ଉତ୍ସବ କରନ୍ତି ନାହିଁ । ଧର୍ମ ହିଁ ହିନ୍ଦୁମାନଙ୍କର ପ୍ରାଣ । ହିନ୍ଦୁମାନଙ୍କର ଆଚାର ବ୍ୟବହାରରେ, ବିବାହ-ଶ୍ରାଦ୍ଧରେ, ସମାଜକ୍ଷେତ୍ରରେ—ସବୁଠାରେ ଧର୍ମ ବିଜଡ଼ିତ । ତେଣୁ ଉତ୍ସବଗୁଡ଼ିକ ଧର୍ମ ଭାବରେ ପରିପୂର୍ଣ୍ଣ । ବାହ୍ୟପ୍ରକୃତିର ଅବସ୍ଥା ଅନୁସାରେ ମନଃପ୍ରକୃତିକୁ ସଂଯତ କରିବା ନିମିତ୍ତ ଉତ୍ସବର ଆୟୋଜନ । ପ୍ରକୃତି ଚୈତନ୍ୟ ଶକ୍ତିଙ୍କୁ ଆଶ୍ରୟ କରି ଲୀଳା କରିଥାଆନ୍ତି । ତେଣୁ ପ୍ରାକୃତିକ ଉପାସନା ଏକାନ୍ତ ଆବଶ୍ୟକ ।



# ଲକ୍ଷ୍ୟ

ଲକ୍ଷ୍ୟ ସ୍ଥିର ନ କଲେ କୌଣସି କାର୍ଯ୍ୟ ଫଳପ୍ରସୂ ହୁଏ ନାହିଁ । ସଂସାରୀ ହୁଅ ବା ସନ୍ନ୍ୟାସୀ ହୁଅ, ଲକ୍ଷ୍ୟ ସ୍ଥିର ନ ହେଲେ କାହିଁରେ ଉନ୍ନତି ହେବ ନାହିଁ । ପ୍ରତ୍ୟେକ କାର୍ଯ୍ୟରେ ଲକ୍ଷ୍ୟ ସ୍ଥିର ନ ରହିଲେ ଉଡ଼ିବୁଲିଲା ଭଳି କେବଳ ସଂସାର ଛାଡ଼ି ଦେଶ-ବିଦେଶରେ ଘୂରିବୁଲିଲେ କିଛି ହେବ ନାହିଁ । ଲକ୍ଷ୍ୟ ସ୍ଥିର କରି ସଂସାର କର ବା ସନ୍ନ୍ୟାସ ଗ୍ରହଣ କର, ସବୁ ଦିଗ ଠିକ୍ ହେବ । ସେତେବେଳେ ସମଗ୍ର ଜଗତ୍‌ବିରୋଧୀ ହେଲେ ମଧ୍ୟ ଲକ୍ଷ୍ୟପଥରୁ କେହି ତୁମକୁ ଟଳାଇପାରିବେ ନାହିଁ । ଗୁରୁଦତ୍ତ ସାଧନାରେ ନିଷ୍ଠା ରଖି ଲକ୍ଷ୍ୟପଥରେ ଅଗ୍ରସର ହେବାକୁ ପଡ଼ିବ । 'ମନ୍ତ୍ରର ସାଧନ ଅବା ଶରୀର ପତନ'—ଏ କଥାର ଧାରଣା କର । ସଫଳ ହୁଅ ବା ନ ହୁଅ, ସେଦିଗକୁ ଆଦୌ ଦୃଷ୍ଟି ଦିଅ ନାହିଁ । ଜୀବନ ପର୍ଯ୍ୟନ୍ତ ପଣ କରି କର୍ମ କରିଯାଅ । ଆଜି ଏ କାର୍ଯ୍ୟ, କାଲି ସେ କାର୍ଯ୍ୟ—ଏ ଭାବରେ କାର୍ଯ୍ୟ କରିଗଲେ କାହିଁରେ ଫଳ ହୁଏ ନାହିଁ ।

ଯେ ସତ୍ୟ ଆଶ୍ରୟ କରିଛନ୍ତି, ତାଙ୍କର ଭୁଲଭ୍ରାନ୍ତି ଥିଲେ ସୁଦ୍ଧା କ୍ରମେ ସେସବୁ ଦୂର ହୋଇ ସତ୍ୟ ଲାଭ ହେବ । ତେଣୁ ଯେ ଯେଉଁ ପଥ ଧରନ୍ତୁ ପଛକେ ସତ୍ୟପ୍ରତି ଦୃଢ଼ ଅନୁରାଗ ଥିଲେ ନିଶ୍ଚୟ ସେ ଲକ୍ଷ୍ୟରେ ପହଞ୍ଚିପାରିବେ । ଶରୀରର ମଇଳାପରି ଅସତ୍ୟ ଝଡ଼ିପଡ଼ିବ; କେବଳ ଭାବଟିକଳ ରହିଯିବ ।

ପ୍ରଥମରୁ ଲକ୍ଷ୍ୟ ସ୍ଥିର କରି କର୍ମରେ ପ୍ରବୃତ୍ତ ହୁଅ; ତା ନ ହେଲେ ଜୀବନ ବିଫଳ ହୋଇଯିବ । ଯୋଗୀ ଓ ସନ୍ନ୍ୟାସୀଙ୍କର ଲକ୍ଷ୍ୟ ଏକ; କିନ୍ତୁ ପଥ ବିଭିନ୍ନ ।

ଜୀବର ଜୀବତ୍ୱ ସ୍ୱାଭାବିକ; ପୁଣି ଦେବତ୍ୱ ଅସ୍ୱାଭାବିକ । ଜୀବତ୍ୱ ସ୍ଥାନରେ ଶିବତ୍ୱ ପ୍ରତିଷ୍ଠା କରିବା ମାନବର ଲକ୍ଷ୍ୟ । ସେଥିପାଇଁ କ୍ଷୁଧା-ତୃଷ୍ଣା, କାମ-କ୍ରୋଧ ସହଜରେ ଆସିଥାଏ ଆଉ ଦୟା, ଭକ୍ତି, ପ୍ରେମ ଇତ୍ୟାଦି କଷ୍ଟ କରି ଆଣିବାକୁ ହୁଏ ।

ପଶୁତ୍ୱ ତ୍ୟାଗ କଲେ ମନୁଷ୍ୟତ୍ୱ ଲାଭ ହୁଏ । ତତ୍‌ପରେ ଦେବତ୍ୱ ଲାଭ ହୁଏ । କ୍ରମେ ଈଶ୍ୱରତ୍ୱ ଲାଭ ହୋଇ ପରିଶେଷରେ ବ୍ରହ୍ମତ୍ୱ ଲାଭ କରିବା ମାନବ ଜୀବନର ଲକ୍ଷ୍ୟ ।

ଯୋଗ, ଜପ, ତପ ପଛ କଥା । ପ୍ରଥମେ ଲକ୍ଷ୍ୟ ସ୍ଥିର କରି ପରେ କାର୍ଯ୍ୟରେ ପ୍ରବୃତ୍ତ ହୁଅ । ତୁମେ କଣ ଲୋଡୁଛ, ତାହା ପ୍ରଥମେ ବୁଝିରଖ । ଶ୍ରୀଗୁରୁଦେବଙ୍କ ନିକଟକୁ ଆସି ଜଣେ କହିଲେ, ''ମୁଁ ଚାରିବର୍ଷ ହେଲା ପ୍ରାଣାୟାମ କରୁଛି; କିଛି ଫଳ ହେଉ ନାହିଁ । ମୋତେ ପ୍ରାଣାୟାମକ୍ରିୟା ଶିଖାଇଦେବେ କି ?'' ଗୁରୁ ପଚାରିଲେ , ''ପ୍ରାଣାୟାମ କାହିଁକି କରୁଛ ?'' ସେ ଉତ୍ତର ଦେଇ କହିଲେ, ''ପ୍ରଣାୟାମ କଣ ଗୋଟିଏ ବଡ଼ ଯୋଗସାଧନ ନୁହେଁ ?'' ଗୁରୁ କହିଲେ ''ତାହା ଜାଣେ ବାବା ! କିନ୍ତୁ ଯୋଗାସାଧନ ଦ୍ୱାରା ତୁମର କ'ଣ ଲାଭ ହେବ କୁହ ତ ?'' ସେତେବେଳେ ସେ ଆଉ କିଛି ଉତ୍ତର ଦେଇପାରିଲେ ନାହିଁ । ଗୁରୁ ତହୁଁ ପଚାରିଲେ, ''ଆଚ୍ଛା, ତୁମେ କଣ ଭଗବାନଙ୍କୁ ଲୋଡୁଛ ? ଶାନ୍ତି ଖୋଜୁଛ ? ଆନନ୍ଦ ପାଇବାକୁ ବ୍ୟାକୁଳ ହେଉଛ ?'' ସେ ଆଗ୍ରହରେ କହିଲେ, ''ହଁ, ହଁ, ତାହା ହିଁ ମୋର ଆବଶ୍ୟକ ।'' ଗୁରୁ ସେତେବେଳେ କହିଲେ, ''ମୁଁ ଯଦି ତା ଅପେକ୍ଷା ସହଜ ପଥ ବତାଇଦିଏ, ଯଦ୍ଦ୍ୱାରା ଭଗବାନଙ୍କ ଠାରେ ତୁମର ଭକ୍ତି ହେବ, ପ୍ରାଣରେ ଶାନ୍ତି ପାଇବ ?'' ଶିଷ୍ୟ ସ୍ତବ୍‌ଧ ହୋଇ କହଲେ, ''ତାହା ତ ଉତ୍ତମ; କିନ୍ତୁ ଆଜକୁ ଚାରିବର୍ଷ ହେଲା ମୁଁ ପ୍ରାଣାୟାମ କରିଆସୁଛି, ତେବେ କଣ ସେହି ପ୍ରଣାୟାମ ଛାଡ଼ିଦେବାକୁ ହେବ ?''

ଦେଶ ଲୋକଙ୍କର ଆଜି ଏହି ଅବସ୍ଥା । କାହାରି ଲକ୍ଷ୍ୟ ସ୍ଥିର ନାହିଁ; କିନ୍ତୁ ବଡ଼ ବଡ଼ ସାଧନାରେ ପ୍ରବୃତ୍ତି ଅଛି । ସାଧନା ଛାଡ଼ି ସାଧ୍ୟପ୍ରତି କାହାର ମନ ଧାଉଁ ନାହିଁ ।

ସମସ୍ତେ ଆନନ୍ଦ ଲୋଡ଼ନ୍ତି । ଆନନ୍ଦ ପାଇବା ପାଇଁ ମନୁଷ୍ୟ ଭଲ-ମନ୍ଦ ସବୁ କରେ । କିନ୍ତୁ ବ୍ରହ୍ମାନନ୍ଦ ହିଁ ପୂର୍ଣ୍ଣ ଆନନ୍ଦ ।

ଲକ୍ଷ୍ୟ ଠିକ୍ ଥିଲେ ନାମଜପରେ କୌଣସି ଦୋଷ ରହିବ ନାହିଁ । ବୁଢ଼ୀର ପୁଅ ଗୋପାଳ ଜପିବାସ୍ଥଳେ ଟୋପାଳ ଜପକଲା; କିନ୍ତୁ ଉଚିତ୍ ସମୟରେ ସେ ଗୋପାଳଙ୍କର ହିଁ ଦର୍ଶନଲାଭ କଲା ।

ଜୀବନର ଲକ୍ଷ୍ୟ ସ୍ଥିର କରି କାର୍ଯ୍ୟ କରିଯିବା ଉଚିତ। ଅନ୍ୟଥା କାର୍ଯ୍ୟ କରିବା ବୃଥା। ଅଧିକାଂଶ ସାଧକ ଯାଗ, ଯୋଗ, ଜପ, ତପ କରନ୍ତି, ସତ୍ୟ; ମାତ୍ର ସେମାନେ ଏସବୁ କାହିଁକି କରୁଛନ୍ତି, ତାହା ମଧ୍ୟ ସେମାନଙ୍କର ଅଜ୍ଞାତ। ଜୀବନର ଉଦ୍ଦେଶ୍ୟ କ'ଣ, ଜୀବନର ଲକ୍ଷ୍ୟ କ'ଣ ଏମାନେ ତାହାର ବିନ୍ଦୁ ବିସର୍ଗ ଜାଣନ୍ତି ନାହିଁ। ଜୀବନର ଲକ୍ଷ୍ୟ ସ୍ଥିର ନ କଲେ କେବେହେଲେ ଯୋଗ ବା ତପସ୍ୟା ଦ୍ୱାରା କିଛି ଫଳ ଲାଭ ହୋଇପାରିବ ନାହିଁ। ଯେଉଁମାନଙ୍କର ଜୀବନର ଲକ୍ଷ୍ୟ ସ୍ଥିର ହୋଇଛି, ସେମାନଙ୍କ ଜୀବନର ଧନ୍ୟ। ସେମାନେ ଯଦି ଦୁଷ୍କର୍ମରେ ମାତିଥାନ୍ତି, ତଥାପି ଲକ୍ଷ୍ୟହୀନ ଯୋଗ ବା ତପସ୍ୟାଠାରୁ ସେହି ବ୍ୟକ୍ତି ବହୁ ଉଚ୍ଚରେ। ଯାହାଙ୍କର ଲକ୍ଷ୍ୟ ସ୍ଥିର, ସେ କେବେହେଲେ ଭୋଗ-ସୁଖରେ ଅଧିକ ଦିନ ଆବଦ୍ଧ ହୋଇ ରହିପାରିବେ ନାହିଁ। ଲକ୍ଷ୍ୟଆଡ଼କୁ ଦୃଷ୍ଟିଦେଲେ ତାଙ୍କର ପ୍ରାଣ ଆକୁଳ ହୋଇଉଠିବ।

ଯେଉଁ ସେବାରେ ଜ୍ଞାନ, ପ୍ରେମ ଓ ଭକ୍ତି ଲାଭ ହୁଏ, ତାହା ହିଁ ଶ୍ରେଷ୍ଠ।

''ଏହି ଦେହର ସ୍ଥିତି କାଳରେ ହିଁ ସତ୍ୟ ଲାଭ କରି ପ୍ରକୃତ ଆନନ୍ଦର ଅଧିକାରୀ ହେବି''—ଏହିଭଳି ଦୃଢ଼ପ୍ରତିଜ୍ଞା ଓ ସଂକଳ୍ପ ନେଇ ସତ୍ୟପଥରେ ଅଗ୍ରସର ହେବା ହିଁ ଜୀବନର ଲକ୍ଷ୍ୟ ହେବା ଉଚିତ୍। ସଂକଳ୍ପସିଦ୍ଧି ପଥରେ କ୍ଷୁଦ୍ର ସ୍ୱାର୍ଥକୁ ବିସର୍ଜନ ଦେବାକୁ ପଡ଼ିବ। ଏହି ଲକ୍ଷ୍ୟ ଠିକ୍ ରଖିପାରିଲେ ଏହି ଦେହସ୍ଥିତି କାଳରେ ହିଁ ସତ୍ୟ ଲାଭ ହୋଇପାରିବ।''

ଶକ୍ତିସାଧକ ଶକ୍ତିଲାଭ ନିମିତ୍ତ ସାଧନାରେ ପ୍ରବୃତ୍ତ ହୋଇ ସିଦ୍ଧଦଶାରେ ଦେବୀଙ୍କ ଦର୍ଶନ ଲାଭକରିବା ସମୟରେ ଯଦି ତାଙ୍କୁ ପ୍ରେମଭକ୍ତି କିମ୍ବା ମୁକ୍ତି ପ୍ରଦାନ କରିବାକୁ ପ୍ରାର୍ଥନା କରନ୍ତି, ତେବେ ସେହି ଶକ୍ତି ତାଙ୍କୁ ତାହା କେବେ ପ୍ରଦାନ କରିପାରିବେ ନାହିଁ। କାରଣ, ସେହି ସାଧନ କେବଳ ଶକ୍ତିଲାଭ ଲକ୍ଷ୍ୟରେ ସଂକଳ୍ପ କରି ସାଧନାରେ ବ୍ରତୀ ହୋଇଥିଲେ। ତେଣୁ ସାଧକ ଭଗବାନଙ୍କୁ ଯେଉଁ ଲକ୍ଷ୍ୟରେ ଭଜନ କରିବେ, କେବଳ ସେ ତାହା ହିଁ ଲାଭ କରିବେ। ଯାହାଙ୍କର ଲକ୍ଷ୍ୟ ପ୍ରେମଭକ୍ତି, ସେ ଭଗବାନଙ୍କୁ ପ୍ରେମଘନବିଗ୍ରହ ରୂପରେ ଭାବିବା ଦରକାର। ସାଧକଙ୍କ ଭାବ ଓ ଲକ୍ଷ୍ୟ ଠିକ୍ ନ ହେଲେ ବିକ୍ଷିପ୍ତ ଚିନ୍ତା, ବିକ୍ଷିପ୍ତ ଭାବନା ଦ୍ୱାରା

କିଛି ଫଳ ଲାଭ ହୁଏ ନାହିଁ। ଯାହାଙ୍କର ଭାବ ଓ ଲକ୍ଷ୍ୟ ଠିକ୍ ହୋଇଛି, ତାଙ୍କର ସାଧନ ଜଗତ୍‌ରେ କୌଣସି ଚିନ୍ତା ନାହିଁ।

ଅର୍ଜୁନ ଲକ୍ଷ୍ୟବିଦ୍ଧ କରିବାକୁ ଯାଇ କେବଳ ପକ୍ଷୀର ଚକ୍ଷୁଗୋଲକ ବ୍ୟତୀତ ଅନ୍ୟ କିଛି ଦେଖିପାରି ନ ଥିଲେ। ଆମେ ଯଦି ଭଗବାନଙ୍କୁ ଲାଭ କରିବାକୁ ଯିବାବେଳେ ସମସ୍ତ ବିଷୟ ଭୁଲିଯାଇ ତାଙ୍କ ପ୍ରତି ଲକ୍ଷ୍ୟ ରଖିପାରିବା, ତେବେ ତତ୍‌କ୍ଷଣାତ୍ ଭଗବାନଙ୍କ ଦର୍ଶନ ପାଇବା। ଭଗବାନଙ୍କ ବ୍ୟତୀତ ଅନ୍ୟ କିଛି ସ୍ମୃତିପଟରେ ଜାଗିଲେ ସାଧକ ଲକ୍ଷ୍ୟଭ୍ରଷ୍ଟ ହୋଇଥାନ୍ତି।

ବିଶ୍ୱାସ ହିଁ ଲକ୍ଷ୍ୟ। କିପରି ଭଗବତ୍ ବିଶ୍ୱାସ ଲାଭ ହେବ, ସେଥିନିମିତ୍ତି ଯେତେ ସାଧନ ଭଜନ, ଯେତେ ତପସ୍ୟା। ବିଶ୍ୱାସ ଆସିଲେ ତତ୍‌କ୍ଷଣାତ୍ ନିର୍ଭରତା ଆସିଯିବ। ଯେଉଁମାନଙ୍କର ବିଶ୍ୱାସ ନାହିଁ, ନିର୍ଭରତା ନାହିଁ, ସେମାନଙ୍କୁ ବିଚାରପଥ ଅବଲମ୍ବନ କରିବାକୁ ହେବ। ମନ, ବୁଦ୍ଧି ମାର୍ଜିତ ନ ହେଲେ ବିଚାରବସ୍ତୁକୁ ଧାରଣା କରିହେବ ନାହିଁ। ତେଣୁ ଆଚାରଶୁଦ୍ଧି ନ ହେଲେ ବିଚାରର ଲକ୍ଷ୍ୟ ମଧ୍ୟ ଭୁଲ ହୋଇଯିବ। ଏହି କାରଣରୁ ଯେପରି ବିଶ୍ୱାସ ଲାଭ ହେବ, ଗୁରୁଜନମାନଙ୍କ ଠାରୁ ସେହି ଉପାୟ ଶିକ୍ଷା କରିବାକୁ ପଡ଼ିବ ଏବଂ ସେମାନଙ୍କ ପ୍ରଦର୍ଶିତ ମାର୍ଗରେ ଗତି କରିବାକୁ ହେବ। ଭୟରେ, ବିସ୍ମୟରେ କିମ୍ବା ଭକ୍ତିରେ ସାଧକଙ୍କୁ ଜଣକ କଥାରେ ବିଶ୍ୱାସ କରି ଲକ୍ଷ୍ୟପଥରେ ଅଗ୍ରସର ହେବାକୁ ପଡ଼ିବ। ଯେ ଅପରକୁ ନ ମାନନ୍ତି, ସେ ମଧ୍ୟ ନିଜକୁ ମାନନ୍ତି। ତେଣୁ ନିଜ ଅନ୍ତର ଯାହାଙ୍କୁ ଗୁରୁ ବୋଲି ମାନିବ, ତାଙ୍କରି କଥାରେ ବିଶ୍ୱାସ କରି ଚାଲିବାକୁ ପଡ଼ିବ।

ସୁଖ-ଦୁଃଖର ଚକ୍ର କେବଳ ଘୂରୁଛି। ଏହା ମଧ୍ୟରେ ସେ ନିଶ୍ଚଳ ହୋଇ ବସିଛନ୍ତି, ତାଙ୍କୁ ହିଁ ଭଗବାନ କୁହାଯାଏ। ତେଣୁ ଚାଲିବାଦିଗକୁ ମନ ଦେଇ ସେହି ଭଗବାନ୍‌ଙ୍କ ପ୍ରତି ଲକ୍ଷ୍ୟ ରଖି ଚାଲିବାକୁ ହେବ। ଚକ୍ରର ଘୂର୍ଣ୍ଣନ ମଧ୍ୟରେ ରହି ଲକ୍ଷ୍ୟ ଠିକ୍ କରିବା କଷ୍ଟସାଧ୍ୟ ହେଲେ ମଧ୍ୟ ଲକ୍ଷ୍ୟ କରି ଗତି କଲେ ସିଦ୍ଧି ଲାଭ ଘଟିବ, ଅନ୍ୟଥା ନୁହେଁ।

ମନର ଚତୁର୍ଦ୍ଦିଗରେ କେତେ ପ୍ରକାର ଭାବନା ଆସେ ଏବଂ ଚାଲିଯାଏ। ଏହି ସମୟରେ ସୁନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ସ୍ଥିର ହୋଇ ବସିରହିଲେ ମନ ସହଜରେ

ସ୍ଥିରଭାବ ଧାରଣ କରେ । ସୁଖ-ଦୁଃଖରେ ଅଭିଭୂତ ବା ଚଞ୍ଚଳ ନ ହୋଇ ଲକ୍ଷ୍ୟରେ ଚିତ୍ତ ତନ୍ମୟ ଥିଲେ ପ୍ରକୃତ ଆନନ୍ଦର ଆସ୍ୱାଦନ ମିଳି ପାରିବ ।

ପଶୁତ୍ୱ ପରିହାର କରି ପ୍ରଥମେ ମନୁଷ୍ୟତ୍ୱ ଲାଭ, ତତ୍ପରେ ଦେବତ୍ୱ, ତା'ପରେ ଈଶ୍ୱରତ୍ୱ, ଅବଶେଷରେ ବ୍ରହ୍ମତ୍ୱଲାଭ ହିଁ ମାନବ-ଜୀବନର ଉଦ୍ଦେଶ୍ୟ । ଯେ ଏହି ଭାବରେ ସିଦ୍ଧି ଲାଭ କରିଛନ୍ତି, ତାଙ୍କ ଓ ଭଗବାନଙ୍କ ମଧ୍ୟରେ କିଛି ମାତ୍ର ପ୍ରଭେଦ ନାହିଁ । ଏପରି ମହାପୁରୁଷଙ୍କର ମଧ୍ୟ ଅଭାବ ନାହିଁ । ଯାହାଙ୍କ ଠାରେ ଉକ୍ତ ଚତୁର୍ବିଧ ଆଦର୍ଶ ପ୍ରତିଷ୍ଠିତ ଅଛି, ତାଙ୍କୁ ହିଁ ଆଦର୍ଶ ବୋଲି ଧରି ନେଇ ଜୀବନ ଗଠନ କରିବା ସମସ୍ତଙ୍କର କର୍ତ୍ତବ୍ୟ ।



# ମନ

## ମନର ବିଶ୍ରାମ

ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ ।
ବନ୍ଧାୟ ବିଷୟାସକ୍ତଂ ମୁକ୍ତୈର୍ନିର୍ବିଷୟଂ ସ୍ମୃତମ୍ ॥

ମନ ହିଁ ମନୁଷ୍ୟର ବନ୍ଧନ ଏବଂ ମୋକ୍ଷର କାରଣ; କାରଣ ମନ ବିଷୟାସକ୍ତ ହେଲେ ବନ୍ଧନର ହେତୁ ହୁଏ ଏବଂ ବିଷୟରେ ବୈରାଗ୍ୟ ଜନ୍ମିଲେ ମୁକ୍ତି ଲାଭ ହୁଏ ।

ରାଜାକରୈ ରାଜବଶ, ଯୋଦ୍ଧା କରୈ ରଣଜୟ ।
ଆପନ୍ ମନ୍‌କୋ ବଶ୍ କରୈ ଯୋ, ସବ୍‌କା ସେରାଞ୍ଜହ ॥

ଆପଣା ମନକୁ ଜୟ କରି ବଶୀଭୂତ କରିବା ବଡ଼ କଠିତ । ଯେ ମନୋଜୟ କରନ୍ତି, ତାଙ୍କର ମାନବ-ଜୀବନ ହିଁ ସାର୍ଥକ । ମନ ସ୍ଥିର ନ ହେଲେ କୌଣସି କାର୍ଯ୍ୟ ହୁଏ ନାହିଁ । ଯୋଗସାଧନର ଉଦ୍ଦେଶ୍ୟ—ଚିତ୍ତବୃତ୍ତି ନିରୋଧପୂର୍ବକ ମନୋଜୟ । ଆତ୍ମାର ଚଞ୍ଚଳ ଭାବକୁ ମନ କୁହାଯାଏ ।

ଯେଉଁ ବୃତ୍ତି ଯେତେବେଳେ ପ୍ରବଳ ହୁଏ, ସେତେବେଳେ ମନ ଓ ଦେହ ତଦାକାରାକାରିତ ହୋଇଯାଏ । କ୍ରୋଧ ହେଲେ ଦେହ କ୍ରୋଧମୂର୍ତ୍ତି ଧାରଣ କରେ, କାମରେ କାମମୂର୍ତ୍ତି ଧରେ । ସେହିପରି ଆନନ୍ଦ ସମୟରେ ଦେହ ତଦାକାରାକାରିତ ହୋଇଯାଏ । ସେତେବେଳେ ସେହି ଅବସ୍ଥା ସହଜରେ ଛାଡ଼ିଦେବାକୁ ଇଚ୍ଛା ହୁଏ ନାହିଁ, କାରଣ, ତାହା ସ୍ୱରୂପ ଅବସ୍ଥା ।

ପରିଶ୍ରମ ପରେ ଶରୀର ବିଶ୍ରାମ କଲେ ବିଶେଷ ସୁଖ ହୁଏ; କିନ୍ତୁ ଏହି ମନକୁ ଯୁଗଯୁଗାନ୍ତ କାଳରୁ କାମ କରାଇ ମାରୁଛ; କ୍ଷଣକପାଇଁ ମଧ୍ୟ ସେ ବିଶ୍ରାମ ପାଇଁ ନାହିଁ । ମନ ବିଶ୍ରାମ ପାଇଲେ ଅର୍ଥାତ୍ ମନ ଚିନ୍ତାଶୂନ୍ୟ ହୋଇପାରିଲେ ଅନିର୍ବଚନୀୟ ଆନନ୍ଦରେ ହୃଦୟ ପୂର୍ଣ୍ଣ ହେବ ।

## ସଂଶୟର ହେତୁ

କେହି କେହି ପ୍ରଶ୍ନ କରନ୍ତି, ମନରେ ସଂଶୟ କାହିଁକି ହୁଏ ? ଏହାର ଉତ୍ତର ଆଉ କଅଣ ହେବ ? ଯେ ମନସ୍ତତ୍ତ୍ୱ ଅବଗତ ଅଛନ୍ତି, ସେ ଜାଣନ୍ତି ଯେ ଅନ୍ତଃକରଣର ସଂଶୟାତ୍ମିକା ବୃତ୍ତିର ନାମ ମନ । ସୁତରାଂ, ମନ ସର୍ବଦା ସଂଶୟପୂର୍ଣ୍ଣ । ଏଥିପାଇଁ ଲୋକେ ଦୃଢ଼ଭାବରେ କହିଥାନ୍ତି—''ମନ କଥାରେ ମୁଁ ଆଉ ଚଳିବି ନାହିଁ ।'' ମୁଁ ଯେତେବେଳେ ମନର ଅତୀତ, ଯେତେବେଳେ ଯେଉଁ ଭାବ ମନରେ ଜାଗୁ ପଛେ ସେଥିରେ ମୁଁ କାହିଁକି ବିଚଳିତ ହେବି ?

ଅନ୍ତଃକରଣର ନିଶ୍ଚୟାତ୍ମିକ ବୃତ୍ତିର ନାମ ବୁଦ୍ଧି । ବୁଦ୍ଧି ପୁଣି ଆହୁରି ଭୟଙ୍କର । ମନରେ ସଂଶୟ ଉପସ୍ଥିତ ହେଲେ ବୁଦ୍ଧି ବା ଇଚ୍ଛାନୁସାରେ ତାହାର ମୀମାଂସା କରିନିଏ । ସେତେବେଳେ ସେହି ମୀମାଂସା ଅନୁଯାୟୀ ମନ ତା କାମ କରିଯାଏ । ସୁତରାଂ, ବୁଦ୍ଧିର କାର୍ଯ୍ୟ ଆହୁରି ଜଟିଳ । ସେ ଅନ୍ୟକୁ ବିପଦରେ ପକାଏ; କିନ୍ତୁ ନିଜେ ଦୂରରେ ରହି ମଜାଟିକକ ଉପଭୋଗ କରେ । ସୁତରାଂ, ବୁଦ୍ଧିର ବୁଦ୍ଧି ଆବଶ୍ୟକ । ବୁଦ୍ଧି ଯେତେବେଳେ ସତ୍ତ୍ୱରେ ପ୍ରତିଷ୍ଠିତ ହେବ, ସେତେବେଳେ ତାହାଦ୍ୱାରା ଜ୍ଞାନ ପ୍ରକାଶିତ ହେବ ।

ଯେତେ ଦିନଯାଏ ମନ ସ୍ଥିର ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ନିୟମ, ସଂଯମ । ମନ ସ୍ଥିର ହେଲାମାତ୍ରେ ନିୟମ ସଂଯମର ଆବଶ୍ୟକତା ଆଉ ରହେ ନାହିଁ । ପକ୍ଷୀ ପୋଷା ମାନିଗଲେ ତାକୁ ଆଉ ପିଞ୍ଜରାବଦ୍ଧ କରି ରଖିବାକୁ ହୁଏ ନାହିଁ ।

## ବୁଦ୍ଧିର ଚତୁରତା

ପିଲା ଧରିବସିଲା—''ବାପା, ତୁମେ ଘୋଡ଼ା ହୁଅ, ମୁଁ ଚଢ଼ିବି ।'' ବାପା ବୋଧହୁଏ ଡରାଇବା ପାଇଁ କହିଲେ—''ମନୁଷ୍ୟ ଘୋଡ଼ା ହୁଏ ନାହିଁ ।'' ମା ସେତେବେଳେ କହିଲେ—''ଆହା, ମୋ କୋଳପିଲାଟା ଅଳି କରୁଛି, ଟିକିଏ ଘୋଡ଼ା ହେଉନାହଁ କାହିଁକି ? ଘୋଡ଼ା ହେଲେ କଣ କିଛି ଦୋଷ ଲାଗିଯିବ ?'' ବାପା ଅଗତ୍ୟା ଘୋଡ଼ା ହେଲେ । ପିଲା ତାଙ୍କ ପିଠିରେ ବସି ଚାବୁକ୍ ମାଇଲା । କହିଲା—''ବାପା, ତୁମେ ହିଁ ହିଁ ରବ କର ।'' ବାପା ଇତସ୍ତତଃ ହେଉଥିବା ଦେଖି ମା' ପୁଣି କହିଲେ—''ପିଲାଟା ଏପରି ଅଳି କରୁଛି ତ, ତୁମେ ଟିକିଏ

ହିଁ ହିଁ କରିଦେଲେ କଅଣ ହୋଇଯିବ ?'' ବାପା ଆଉ କରିବେ କ'ଣ ? ସେ ହିଁ ହିଁ ରବ କରିବାକୁ ଲାଗିଲେ। ପିଲା ଚାବୁକ୍ ମାରି ଆନନ୍ଦ ଉପଭୋଗ କଲା। ମା ଛିଡ଼ାହୋଇ ଏ ଲୀଳା ଦେଖି ହସିବାକୁ ଲାଗିଲେ। ବାପା କିନ୍ତୁ ଟିକିଏ ଦୃଢ଼ ହୋଇଥିଲେ ପିଲାକୁ ଧମକ ଦେବା ସଙ୍ଗେ ସଙ୍ଗେ ମା'କୁ ମଧ୍ୟ ଧମକ ଦେଇପାରିଥାନ୍ତେ। କଦାପି ଘୋଡ଼ା ହୋଇ ଅଭିନୟ କରନ୍ତେ ନାହିଁ।

ବାପା ଜୀବ, ମା ବୁଦ୍ଧି, ପିଲା ମନ। ଜୀବର ମଧ୍ୟ ଏପରି ଦଶା ଉପସ୍ଥିତ ହୁଏ। ମନ ଯାହା ଇଚ୍ଛା କରେ, ବୁଦ୍ଧି ତାକୁ ସମର୍ଥନ କରିଯାଏ। ଜୀବ ତାହା ଅବିଚାର ଭାବରେ କରିଥାଏ। ମନର ଜବରଦସ୍ତି ଓ ବୁଦ୍ଧିର ଚତୁରତାରେ ଯଦି ଜୀବ ଭୁଲି ନ ଯାଇ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିପାରନ୍ତା, ତାହାହେଲେ ତାର ଆଉ ଦୁଃଖ ରହନ୍ତା ନାହିଁ।

## ସଂଯମ ଅଭ୍ୟାସ

ଯଦି ସଂଯମ ଦ୍ୱାରା ମନକୁ ଗୋଟିଏ ବିଷୟରେ ଏପରି ନିବଦ୍ଧ କରାଯାଏ ଯେ ସେତେବେଳେ ତତ୍‌ବ୍ୟତୀତ ଅନ୍ୟ କୌଣସିଥିରେ ମନ ତୃପ୍ତ ହୁଏ ନାହିଁ, ସେତେବେଳ ସେହି ଅବସ୍ଥାକୁ ସମାଧି କୁହାଯାଏ। ସମାଧିରେ ଶରୀର ନିରପେକ୍ଷ ହୋଇ ମନ ଧ୍ୟେୟ ବିଷୟରେ ତନ୍ମୟ ହୋଇଯାଏ। ସେ ସମୟରେ ସେହି ଧ୍ୟେୟ ବସ୍ତୁକୁ ନିଜ ଶରୀର ଭଳି ବା ତଦପେକ୍ଷା ଆହୁରି ସମ୍ୟକ ରୂପେ ଚାଳିତ ବା ଆୟତ୍ତ କରାଯାଇପାରେ। ସମାଧି ଦ୍ୱାରା କୌଣସି ବସ୍ତୁକୁ କ୍ରମଶଃ ଆୟତ୍ତ କରିବାର ନାମ ସଂଯମ।

ସଂଯମବଳ କ୍ରମେ ବର୍ଦ୍ଧିତ କରିପାରିଲେ ଜ୍ଞାନ ଓ ଶକ୍ତିର ସୀମା ଆଉ ରହେ ନାହିଁ। ତାଦୃଶ ବଳିଷ୍ଠ ଓ ସ୍ୱାଧୀନ ମନଦ୍ୱାରା ଶବ୍ଦାଦି ଭୂତମାନଙ୍କର ଓ ଚକ୍ଷୁରାଦି ଇନ୍ଦ୍ରିୟମାନଙ୍କର ବାହ୍ୟ ଓ ଆଭ୍ୟନ୍ତର ସମସ୍ତ ଧର୍ମ ପୁଙ୍ଖାନୁପୁଙ୍ଖ ରୂପେ ଜ୍ଞାତ ହୁଏ ଓ ସମ୍ୟକ୍ ଭାବରେ ଆୟତ୍ତ କରାଯାଏ। ସେତେବେଳେ ଭୂତ ଓ ଇନ୍ଦ୍ରିୟବର୍ଗଙ୍କୁ କରାମଳକବତ୍ ଇଚ୍ଛାଦ୍ୱାରା ଅନୁପ୍ରବେଶ ପୂର୍ବକ ସେମାନଙ୍କ ଆକାର ପ୍ରକାରକୁ ଅଭୀଷ୍ଟରୂପରେ ପରିବର୍ତ୍ତନ କରାଯାଇପାରେ।

ମନ ସଂଯମ କରିପାରିଲେ ଯାହା ଇଚ୍ଛା, ତାହା ଦେଖାଯାଏ; କିନ୍ତୁ ସ୍ପଷ୍ଟରୂପରେ ଦେଖିବା କଷ୍ଟକର ହୁଏ, କାରଣ କାହା ଉପରେ କି ସୂତ୍ର ଧରି ମନ-ସଂଯମ କରିବ ? ନିଜ ସଂସ୍କାର ଅନୁଯାୟୀ ସଂଯମ କଲେ କେତେକ ପରିମାଣରେ ନିଜ

ସଂସ୍କାର ଅନୁଯାୟୀ ଦୃଷ୍ଟିଗୋଚର ହୁଏ, ପୁଣି କେତେକ ପରିମାଣରେ ସତ୍ୟ ମଧ୍ୟ ଦେଖାଯାଏ। ମନର ସବୁ ଅଂଶ ବେଷ୍ଟନୀ ଭିତରେ ଆବଦ୍ଧ ନୁହେଁ; ଏହି ମନ ଜଗତ୍ ସାରା ବ୍ୟାପି ରହିଅଛି।

ବାକ୍‌ସଂଯମ ନ ହେଲେ ମନ-ସଂଯମ ହେବ ନାହିଁ। ବାକ୍‌ସଂଯମ ହିଁ ଚିତ୍ତସଂଯମର ପୂର୍ବାବସ୍ଥା। ସୁତରାଂ, କଥା କହିବାବେଳେ ଖୁବ୍ ସାବଧାନ ଓ ସଂକୁଚିତ ହେବା ଆବଶ୍ୟକ।

## ନିର୍ଜନତାର ଅର୍ଥ

ପ୍ରକୃତ ଦର୍ଶନ କରିବାକୁ ଇଚ୍ଛା କଲେ ଭୂଲୋକ ଉପରକୁ ଉଠିବାକୁ ହେବ। ବଣ କିମ୍ବା ପାହାଡ଼କୁ ଗଲେ ମନ ସଂଯମ ହେବ ନାହିଁ। ଗୁରୁକୃପା ଲାଭ କରି କେତେକ ପରିମାଣରେ ଲକ୍ଷ୍ୟ ସ୍ଥିର କରିବାପରେ ସାଧନପଥରେ କିଛି ଦୂର ଅଗ୍ରସର ହୋଇ ନିର୍ଜ୍ଜନବାସ କଲେ ଫଳ ହେବ। ତାହା ନ କରି କେବଳ ସଂସାର ଛାଡ଼ିଦେଇ ବଣକୁ ଗଲେ ସେଠାରେ ସଂସାରକୁ ଆହୁରି ନିବିଡ଼ ଭାବରେ ଧରି ବସିରହିବ। ସୁତରାଂ, ସର୍ବପ୍ରଥମେ ମନ-ସଂଯମ ଆବଶ୍ୟକ। ମନ ସ୍ଥିର ହେଲାପରେ ଘରେ ବସିରହ ବା ବଣ-ଜଙ୍ଗଲ, ପାହାଡ଼-ପର୍ବତକୁ ଯାଅ, ସେଥିରେ କିଛି ବାଧା ହେବ ନାହିଁ।

ନିର୍ଜନ କାରାବାସର ବିଧାନ ଅଛି। ତାହା ଏକ ମାସରୁ ଅଧିକ ସମୟ ପାଇଁ ଦିଆଯାଏ ନାହିଁ। ଏହି ମାସକ ରହିବା ମଧ୍ୟ ଅତିଶୟ କଷ୍ଟକର ହୁଏ। ସାଧାରଣ ଲୋକ କେତେ ଦିନ ନିର୍ଜ୍ଜନବାସରେ ରହିବା ପରେ ତାର ଆଖି ରକ୍ତବର୍ଣ୍ଣ ହୋଇଯାଏ, ସେ ଏକପ୍ରକାର ବାତୁଳ ହୋଇଯାଏ। ସୁତରାଂ, ମନ ଉପରେ ସଂଯମ ନ ରହିଲେ ନିର୍ଜ୍ଜନରେ ରହିବା ଦ୍ୱାରା କିଛି ହେବ ନାହିଁ, କିନ୍ତୁ ସାଂସାରିକ କୋଳାହଳ ଠାରୁ ଦୂରରେ ରହିପାରିଲେ କେତେକ ପରିମାଣରେ ଶାନ୍ତି ଆସେ।

ଉପଯୁକ୍ତ ଅଧିକାରୀ ନ ହେଲେ ଶ୍ରୀଗୁରୁଦେବଙ୍କ ନିକଟରେ ବାସ କରିବାରେ ବିପଦ ଅଛି। ଯେଉଁମାନେ ଶ୍ରୀଗୁରୁଦେବଙ୍କ ନିକଟରେ ରହନ୍ତି, ସେମାନଙ୍କ ମଧ୍ୟରୁ ଅନେକ ଲକ୍ଷ୍ୟ ଭୁଲିଯାଇ ବଡ଼ ବଡ଼ କଥା ଶିଖନ୍ତି। ଅବଶେଷରେ ସେମାନଙ୍କ ହୃଦୟ ମରୁଭୂମିରେ ପରିଣତ ହୋଇଯାଏ। ସେତେବେଳେ ସେମାନେ ଏ କୂଳ ସେ କୂଳ, ଦୁଇ କୂଳ ହରାଇବସନ୍ତି। ସଂସାରର କାହିଁରେ ସେମାନଙ୍କ ମନ

ଲାଗେ ନାହିଁ । ଏଆଡ଼େ ମଧ୍ୟ ମନ ଯାଏ ନାହିଁ । ଏହି ମଧ୍ୟବର୍ତ୍ତୀ ସ୍ଥାନରୁ ସେମାନଙ୍କର ପତନ ହୋଇଯାଏ । ଅତଏବ ସାବଧାନ ରହିବା ଆବଶ୍ୟକ ।

## ବାସନାର ବନ୍ଧନ

ବାସନା ହିଁ ଜନ୍ମମୃତ୍ୟୁର କାରଣ । ଯାହାଙ୍କର କାମନା-ବାସନା ଯେତେ ଅଧିକ, ସେ ସେତେ ବନ୍ଧନର ଆୟୋଜନ କରନ୍ତି । ସୁତରାଂ, କୌଣସି ବାସନା ଜାତ ହେଲାବେଳେ ବିଶେଷ ଭାବରେ ସତର୍କ ରହିବାକୁ ପଡ଼ିବ । ନ ହେଲେ ନିଜ କର୍ମଦ୍ୱାରା ନିଜେ ବାନ୍ଧି ହୋଇ ରହିବ । ଯେତେବେଳେ ଯେଉଁ ବାସନା ଜାତ ହେବ, ଭଗବାନ ତାହା କ୍ରମେ କ୍ରମେ ପୂରଣ କରିଦେବେ; କାରଣ ସେ କଳ୍ପତରୁ । ମାତ୍ର ବାସନା ପୂରଣ ନ ହେବାଯାଏ ଜ୍ଞାନ ହେବ ନାହିଁ । ଆଧ୍ୟାତ୍ମିକ କ୍ଷେତ୍ରରେ ଯୋଗ କରିବ କି ସାଧନ କରିବ, ଏପରି କୌଣସି ସଂକଳ୍ପ କେବେହେଲେ କର ନାହିଁ; କଲେ, ସେହି ସଂକଳ୍ପ ସିଦ୍ଧ ନ ହେବା ପର୍ଯ୍ୟନ୍ତ ଗୁରୁକୃପା ଉପଲବ୍ଧି ହୋଇପାରିବ ନାହିଁ । ଉପନିଷଦ୍‌ରେ ମଧ୍ୟ ଏହି କଥା ଅଛି—

''ନାଶାନ୍ତ ମାନସୋ ବାପି ପ୍ରଜ୍ଞାନେ ନୈବମାପ୍ନୁୟାତ୍ ।''

ଅଶାନ୍ତ ମାନସରେ ଅର୍ଥ, ଯାହାଙ୍କର ସାଧନ ସଂକଳ୍ପ ରହିଛି ।

ଠିକ୍ କାମଶୂନ୍ୟ ହୋଇପାରିବ ନାହିଁ । ତେବେ ଯେଉଁ କର୍ମ ନିଜ ସ୍ୱାର୍ଥନିମିତ୍ତ କରାଯାଏ, ତାହା ସକାମ; ଯାହା ପ୍ରେମ ସହିତ ଅପରନିମିତ୍ତ କରାଯାଏ, ତାହା ନିଷ୍କାମ ।

ଚିତ୍ତରେ ତରଙ୍ଗ ରହିଥିଲେ ଜଗତର ସକଳ ତରଙ୍ଗରେ ତାହା ଧକ୍‌କା ଖାଇ ଫେରିଯାଏ । ପୁଣି ନିଜ ଚିତ୍ତ ସ୍ଥିର ହୋଇଗଲେ ଜଗତ-ରହସ୍ୟ ଆପେ ଆପେ ପ୍ରକାଶ ପାଏ । ଚିତ୍ତକୁ ଉଦାର କର, ଚିତ୍ତକୁ ବୁଝ, ତାହାହେଲେ ସବୁ ଠିକ୍ ହୋଇଯିବ ।

## ଚିତ୍ତସ୍ଥିର

ଯେ ଚିତ୍ତଶୁଦ୍ଧି ପ୍ରୟାସୀ, ସମ୍ବାଦପତ୍ର ପାଠ କରିବା ତାଙ୍କ ପକ୍ଷରେ ଉଚିତ୍ ନୁହେଁ; କାରଣ ଚିତ୍ତକୁ ଯେ ପରିମାଣରେ ଅବାନ୍ତର ବିଷୟ ଯୋଗାଇବ, ତାହା ସେତିକି ବିକ୍ଷିପ୍ତ ହୋଇପଡ଼ିବ । ଅବଶେଷରେ ତାକୁ ସ୍ଥିର କରିବା କଠିନ ହେବ । ଏଣୁ ଅଧିକ ଶାସ୍ତ୍ର ପଢ଼ିବା ମଧ୍ୟ ଦୋଷାବହ । ଜଣେ ନିରକ୍ଷର ବ୍ୟକ୍ତିଙ୍କୁ କେତେ

ଦିନ ନିର୍ଜ୍ଜନରେ ରଖିଲେ ତାଙ୍କ କ୍ଷୁଦ୍ର ମନ ଶ୍ରୀଘ୍ର ସାମ୍ୟ ହୋଇଆସିବ; କିନ୍ତୁ ଜଣେ ଶିକ୍ଷିତ ଲୋକଙ୍କର ତାହା ହେବ ନାହିଁ । ତାଙ୍କ ମନରେ ନାନା ଅବାନ୍ତର କଥା ଖେଳିବ ।

ମନ ଚିନ୍ତା କରିବାକୁ ସୁଖ ପାଏ । ତାକୁ ଅବାନ୍ତର ବିଷୟ ଦେଲେ ସେ ଚଞ୍ଚଳ ହୋଇ ଧାଇଁବ । ତାର ତୃପ୍ତି ହେବ ନାହିଁ; କିନ୍ତୁ ପଦାର୍ଥ ପରି ପଦାର୍ଥ ତାକୁ ଥରେ ଧରାଇଦେଲେ ଚିତ୍ତ ତାହା ଛାଡ଼ିବାକୁ ଆଉ ଇଚ୍ଛା କରିବ ନାହିଁ ।

କାରଣ ଅବସ୍ଥାକୁ ଗଲେ ମନ ନଷ୍ଟ ହୋଇଯାଏ ଅର୍ଥାତ୍ କାରଣ ଅବସ୍ଥାରେ ମନର କୌଣସି କ୍ରିୟା ରହେ ନାହିଁ, ତଥାପି ଅନୁଭୂତି ନଷ୍ଟ ହୁଏ ନାହିଁ; ବରଂ ଆହୁରି ଅଧିକ ବୃଦ୍ଧି ପାଏ; କାରଣ, ଅନୁଭୂତି ହିଁ ସ୍ୱରୂପ ଅବସ୍ଥା । ସୁତରାଂ, ମନ ଲୟ ହେଲେ ମଧ୍ୟ ଅନୁଭୂତି କେବେହେଲେ ଲୟ ହୁଏ ନାହିଁ ।

ମନ ସ୍ୱାଭାବିକ ଭାବରେ ପ୍ରବୃତ୍ତି ପଥରେ ଧାବିତ ହୋଇଥାଏ । ସାଧନା ଦ୍ୱାରା ତାକୁ ନିବୃତ୍ତି ଆଡ଼କୁ କ୍ରମେ ଫେରାଇ ଆଣିବାକୁ ହୁଏ । ତାହା ହେଲେ ଯାଇ ଚିତ୍ତ ସ୍ଥିର ହେବ ।

ନିର୍ଦ୍ଦିଷ୍ଟ ସ୍ଥାନରେ ସାଧନା କରିବା ଉଚିତ୍ । ତାହାହେଲେ ସେହି ସ୍ଥାନରେ କ୍ରମେ କ୍ରମେ ଶକ୍ତି ସଞ୍ଚାରିତ ହେବ । କ୍ରମେ ଏପରି ହେବ ଯେ, ସେ ସ୍ଥାନରେ ବସିବା ମାତ୍ରେ ଚିତ୍ତ ଅପେ ଆପେ ସ୍ଥିର ହୋଇଆସିବ ।

ମନରେ କୌଣସି ଉଦ୍‌ବେଗ ଜାତ ହେଲେ ପ୍ରାର୍ଥନା କର । ମନେ ମନେ ଭଗବାନଙ୍କୁ ଜଣାଅ, ସବୁ ଗୋଳମାଳ ତୁଟିଯିବ ।

ଶ୍ରୀଗୁରୁଦେବଙ୍କ ନିକଟକୁ ଆସି କହୁଛ, ମନ ସ୍ଥିର କରି ତ ଭଗବାନଙ୍କୁ ଡାକିପାରୁ ନାହିଁ । ତେବେ ମୋର କିପରି କଅଣ ହେବ ? କିନ୍ତୁ ଏହା ଗୋଟିଏ ମସ୍ତବଡ଼ ଭୁଲ୍ । ତୁମେ 'ମନ' କହୁଛ କାହାକୁ ? ତୁମର ଚଞ୍ଚଳ ସ୍ୱଭାବଟା ତ ମନ ! ମନ ତ ଅସ୍ଥିର ରହିବ ! ମନ ସ୍ଥିର କରିବା ପାଇଁ ତ ସାଧନା ଆବଶ୍ୟକ ! ଯୋଗ କହ, ଜପ କହ, ତପ କହ, ଯାହା କିଛି ସବୁ ଏହି ମନକୁ ହିଁ ସ୍ଥିର କରିବା ନିମିତ୍ତ । ପ୍ରଥମେ ଯଦି ମନ ସ୍ଥିର କରି ସାଧନା କରିବାକୁ ହେବ, 'ତେବେ ସାଧନର ପ୍ରୟୋଜନ ଆଉ ରହିଲା କେଉଁଠି ? ମନ ସ୍ଥିର ହେଲାକ୍ଷଣି ତାହା ଆତ୍ମା ହୋଇଯିବ । ତାହା ହେଲେ ତୁମେ ସବୁ ପାଇଯିବ, ଆଉ ସାଧନ କରିବ କଅଣ ?'

## ମନର ଅବଲମ୍ବନ

ମନେ କର, ତୁମେ ଆଉ ମୁଁ ମହାଁମୁହିଁ ହୋଇ ବସିଅଛୁଁ। ବର୍ତ୍ତମାନ ଆମ ମଝିରେ ଯଦି ଗୋଟିଏ ଚକ୍ର ଖୁବ୍ ବେଗରେ ଘୂରିବ, ତେବେ ତୁମେ ମୋତେ ଦେଖିପାରିବ ନାହିଁ; କିନ୍ତୁ ଚକ୍ରଟା ସ୍ଥିର ହୋଇଗଲେ ମୋତେ ଅତି ସହଜରେ ତୁମେ ଦେଖିପାରିବ। ତୁମକୁ ଆଉ କୌଣସି ପ୍ରକାର ଚେଷ୍ଟା କରି ଦେଖିବାକୁ ହେବ ନାହିଁ।

ସେହିପରି ଭଗବାନ ଓ ତୁମ ମଧ୍ୟରେ ଏହି ଚଞ୍ଚଳ ମନର ଚକ୍ରଟି ରହିଛି। ଏହା ଘୂରୁଛି ବୋଲି ତୁମେ ଭଗବାନଙ୍କୁ ଦେଖିପାରୁ ନାହଁ। ଯେଉଁଦିନ ଏହା ବନ୍ଦ ହୋଇଯିବ, ସେହିଦିନ ହିଁ ତୁମେ ଭଗବାନଙ୍କୁ ଦେଖିପାରିବ। ତେଣୁ ଭଗବାନଙ୍କୁ ଦେଖିବାର ସାଧନା ହେଉଛି—ଏହି ଚଞ୍ଚଳ ମନକୁ ସ୍ଥିର କରିବାର ସାଧନା।

ଅତି ସ୍ୱଚ୍ଛ ସରୋବରରେ ଜଳର ନିମ୍ନ ଦେଶରେ ଗୋଟିଏ ରତ୍ନ ରହିଛି। ସରୋବର ଜଳ ସ୍ୱଚ୍ଛ। ରତ୍ନଟି ମଧ୍ୟ ଉଜ୍ଜ୍ୱଳ; କିନ୍ତୁ ଜଳରେ ଯଦି ତରଙ୍ଗ ଉଠେ, ଜଳ ଯଦି ତରଙ୍ଗାୟିତ ହେଉଥାଏ, ତେବେ ରତ୍ନଟିକୁ କେହି ଦେଖିପାରିବ ନାହିଁ; ମାତ୍ର ଜଳଟା ସ୍ଥିର ହେଲାକ୍ଷଣି ରତ୍ନଟିର ସନ୍ଧାନ ମିଳିଯିବ। ସେହିପରି ମନ ସ୍ଥିର ହେଲାକ୍ଷଣି ଭଗବାନଙ୍କର ସାକ୍ଷାତ ପାଇଯିବ। ତେଣୁ ସ୍ଥିର ମନରେ ଡାକିଲେ ତାଙ୍କୁ ପାଇବ। ମନ ଅସ୍ଥିର ଥିଲେ ଡାକିବାର ଧୈର୍ଯ୍ୟ ରହିବ ନାହିଁ।

ମନ ତ ଥରକୁ ଥର ଲକ୍ଷ୍ୟବସ୍ତୁରୁ ଖସି ପଳାଇବ। ତାକୁ ଯଥା- ସ୍ଥାନକୁ ଫେରାଇଆଣିବା ନିମିତ୍ତ ଯେଉଁ ଚେଷ୍ଟା, ଯେଉଁ ଯତ୍ନ, ତାହାକୁ ସାଧନା କୁହାଯାଏ। ମନ କେବେ ନିଷ୍କ୍ରିୟ ହୋଇ ରହିପାରେ ନାହିଁ। ଗୋଟାଏ କିଛି ଅବଲମ୍ବନ ଧରି ସେ ରହିଥିବ। ଯେତେବେଳେ ଜାଗ୍ରତ ଅଛ, ସେତେବେଳେ ମନ ଯେପରି ତୁମକୁ ପାଞ୍ଚ ଆଡ଼କୁ ଟାଣିନେଇ ଯାଉଛି, ସେହିପରି ଯେତେବେଳେ ଶୋଇପଡ଼ିବ, ସେତେବେଳେ ମଧ୍ୟ ସେହି ମନର କବଳରୁ ତୁମେ ନିସ୍ତାର ପାଇବ ନାହିଁ। ସ୍ୱପ୍ନ ଭିତରେ ମଧ୍ୟ ମନ ତୁମକୁ ନେଇ ଏଣେତେଣେ ଘୂରାଇବ। ସୁଷୁପ୍ତି ଅବସ୍ଥାରେ ସବୁ ଜଡ଼ ହୋଇଯାଏ। ତେଣୁ ଏହି ମନକୁ ଲକ୍ଷ୍ୟବସ୍ତୁ ଆଡ଼କୁ ଫେରାଇ ଆଣିବାକୁ ତୁମର ସବୁ ଚେଷ୍ଟା ଓ ସମସ୍ତ ପ୍ରକାର ଯତ୍ନ କରିବା ଆବଶ୍ୟକ।

ବରଂ ସବୁବେଳେ ସାଂସାରିକ ବିଷୟ ନେଇ ମନ ଭଲ ଥାଏ। ସେତେବେଳେ ଯାହା କିଛି ଚିନ୍ତା ଭାବନା, ତାହା ଗୋଟିଏ ନିର୍ଦ୍ଦିଷ୍ଟ ଦିଗରେ।

ତାର ଗୋଟିଏ ପରିମାଣ ଅଛି। ହୁଏତ ମନ ଟଙ୍କା-ପଇସା କଥା ଭାବୁଛି, ନ ହେଲେ ପିଲାପିଲିଙ୍କ କଥା ଭାବୁଛି ବା ଅନ୍ୟ କିଛି ଭାବୁଛି; କିନ୍ତୁ ଏହିସବୁ ସାଂସାରିକ ଚିନ୍ତାରୁ ମନକୁ ଫେରାଇ ଆଣିବାକୁ ଗଲେ ଅସୁବିଧାରେ ପଡ଼ିବାକୁ ହୁଏ। ଥରକ ଚେଷ୍ଟାରେ ମନ ଏକମୁଖୀ ହେବ ନାହିଁ। ଅଥଚ ତୁମେ ମନକୁ ସବୁ ଦୈନନ୍ଦିନ ଚିନ୍ତାରୁ ଫେରାଇଆଣି ଏକମୁଖୀ କରିବାକୁ ଭାବୁଛ। ଏପରି ଅବସ୍ଥାରେ ମନର କିଛି ଗୋଟିଏ ନିର୍ଦ୍ଦିଷ୍ଟ ଅବଲମ୍ବନ ନ ଥିଲେ ତାହାର ଚଞ୍ଚଳତା ଆହୁରି ବଢ଼ିଯିବ।

ଯେଉଁମାନେ ମନ ସ୍ଥିର କରିବାକୁ ଚେଷ୍ଟା କରନ୍ତି, ସେମାନେ ବିଶେଷ ଭାବରେ ଲକ୍ଷ୍ୟ କରିଥିବେ ଯେ ସ୍ୱାଭାବିକ ଅବସ୍ଥାରେ ମନଟା ବରଂ ଭଲ ଥାଏ; କିନ୍ତୁ ଭଗବାନ୍‌ଙ୍କୁ ଡାକିବାକୁ ଯିବାକ୍ଷଣି ମନ ଯେପରି ଅଧିକ ଚଞ୍ଚଳ ହୋଇଉଠେ। ସେତେବେଳେ ଏପରି ସବୁ ଭାବନା, ଏଭଳି ସବୁ ଚିନ୍ତା ଆସି ମନ ଭିତରେ ପ୍ରବେଶ କରେ ଯେ ସାଧାରଣ ଅବସ୍ଥାରେ ସେସବୁ ଭାବନା କୌଣସି ଦିନ ହୁଏତ ତାଙ୍କର ମନେ ପଡ଼ି ନଥିଲା। ତାହା ତ ନିଶ୍ଚୟ ହେବ। ଏହି ମନଟି ତ ତୁମର ଆଜିକାଲିକାର ଜିନିଷ ନୁହେଁ! ଏହି ଭଣ୍ଡାରରେ ତୁମର କେତେ ସଂସ୍କାର ଘନୀଭୂତ ହୋଇ ରହିଛି, ତାର କଣ ଠିକଣା ଅଛି ? ଆଜି ଯେତେବେଳେ ଉପସ୍ଥିତ ଭାବନା, ବର୍ତ୍ତମାନର ଚିନ୍ତାଗୁଡ଼ିକ ତୁମେ ରୋଧ କରିଦେବ, ସେତେବେଳେ ମନ ତା ଭଣ୍ଡାରରୁ ଗୋଟାଏ କିଛି ବାହାର କରି ତାକୁ ଧରି ତୁଳା ଭିଣିଲାପରି ଭିଣିବ।

## ପ୍ରତ୍ୟାହାର ଓ ସମାଧି

ମନ ଥରକୁ ଥର ଚଞ୍ଚଳ ହେଉଥିବ, ତୁମେ ମଧ୍ୟ ତାକୁ ଥରକୁ ଥର ଫେରାଇଆଣି ଲକ୍ଷ୍ୟବସ୍ତୁରେ ସ୍ଥିର କରାଉଥିବ। ଏହାକୁ ପ୍ରତ୍ୟାହାର ସାଧନା କୁହାଯାଏ। ମନଟା କେତେବେଳେ ଚାଲିଯାଏ, ତାହା ତ ତୁମେ ଜାଣିପାରିବ ନାହିଁ, କାରଣ ତାହା ଜାଣିପାରୁଥିଲେ ମନ ଆଉ ଚଞ୍ଚଳ ହୁଅନ୍ତା ନାହିଁ। କିନ୍ତୁ ଯେତେବେଳେ ମନେ ପଡ଼ିବ ଯେ ମନଟା ଲକ୍ଷ୍ୟବସ୍ତୁରୁ ଚାଲିଯାଇଛି, ସେତେବେଳେ ପୁଣି ତାକୁ ଫେରାଇଆଣି ଯନ୍ତାରେ ପୂରାଇଦେବ।

ଦୃଷ୍ଟିସାଧନ କଲେ ମନ ସ୍ଥିର ହୁଏ। ବୃକ୍ଷ, ଆକାଶ, ଜଳ ବା ଅଗ୍ନିପ୍ରତି ଏକ ଦୃଷ୍ଟି ସ୍ଥାପନା କରି ଦୃଷ୍ଟିସାଧନ କରିବାକୁ ହୁଏ।

ଶରୀରକୁ ମୃତବତ୍ କଲେ ମଧ୍ୟ ଚିତ୍ତ ସ୍ଥିର ହୁଏ ନାହିଁ; ବରଂ ଅଦାନ୍ତ, ଅଶାନ୍ତ ମନ ଅନାୟତ୍ତ ହୋଇ ସ୍ୱପ୍ନାବସ୍ଥା ପରି ଅଧିକତର ଚଞ୍ଚଳ ହୋଇଉଠେ। ବସ୍ତୁତଃ ଶରୀର ଓ ଇନ୍ଦ୍ରିୟ ସହିତ ମନର ଚରମ ସ୍ଥିରତାର ନାମ ସମାଧି। ବାହ୍ୟ ଇନ୍ଦ୍ରିୟ ସ୍ଥିର କରି ଯେତେବେଳେ ଧ୍ୟାତା ନିଜକୁ ଭୁଲି କେବଳ ମାତ୍ର ସେହି ଧ୍ୟେୟବସ୍ତୁରେ ବିଦ୍ୟମାନତା ଉପଲବ୍ଧି କରିପାରନ୍ତି, ସେତେବେଳେ ସେହି ଅବସ୍ଥାକୁ ସମାଧି କୁହାଯାଏ।

ଇଚ୍ଛାପୂର୍ବକ ସ୍ଥୈର୍ଯ୍ୟ ଅଭ୍ୟାସ କରୁ କରୁ ଏହା ସିଦ୍ଧ ହୁଏ ବୋଲି ସିଦ୍ଧବ୍ୟକ୍ତିଙ୍କର ଏହି ଅବସ୍ଥାକୁ ଯିବା ନ ଯିବା ସମ୍ପୂର୍ଣ୍ଣ ଇଚ୍ଛାଧୀନ। ସମାଧି-ସିଦ୍ଧିରେ ଜ୍ଞାନ ଓ ଶକ୍ତିର ସୀମା ନଥାଏ। ଏକାଗ୍ରଭୂମିକ ଚିତ୍ତରେ ତତ୍ତ୍ୱଜ୍ଞାନ ଆସିଲେ ତାହାକୁ ସଂପ୍ରଜ୍ଞାତ ସମାଧି କୁହାଯାଏ। ତାହାହିଁ ମୁକ୍ତିର ଗୌଣ କାରଣ।

ଜୀବନ୍ମୁକ୍ତ ସିଦ୍ଧମାନଙ୍କର ବନ ଓ ନଗର ଉଭୟ ସମାନ। ତେବେ ସାଧନ ସମୟରେ ବିଜନ ସ୍ଥାନରେ ରହି ସାଧନା କରିବା ଏକାନ୍ତ ପ୍ରୟୋଜନ। ଦୁଷ୍କାର୍ଯ୍ୟ ତ୍ୟାଗ କରିବା ଅପେକ୍ଷାକୃତ ସହଜ; କିନ୍ତୁ ଦୁଶ୍ଚିନ୍ତା ତ୍ୟାଗ କରିବା ଅତୀତ କଷ୍ଟକର। ଫଳତଃ ଯେଉଁମାନେ ନିଜ ଅନ୍ତରଶୁଦ୍ଧିରେ ସାଫଲ୍ୟ ଲାଭ କରିଛନ୍ତି, ସେହିମାନେ ହିଁ ବିଜନରେ ରହିପାରନ୍ତି। ନିତାନ୍ତ ଅଜ୍ଞ ଲୋକେ ସମ୍ଭବତଃ ମନେ କରନ୍ତି, ବିଜନ ସ୍ଥାନକୁ ଗଲାମାତ୍ରେ ସମସ୍ତ ପ୍ରଲୋଭନ ଦୂର ହୋଇଯିବ; କିନ୍ତୁ ତାହା ନୁହେଁ। ତାଦୃଶ ସ୍ଥାନରେ ଅନ୍ତର୍ଦୃଷ୍ଟି ପରାୟଣ ମହାତ୍ମାମାନେ ପ୍ରଲୋଭନର ମୂଳୀଭୂତ ସଂସ୍କାର ସହିତ ପ୍ରକୃତ ଯୁଦ୍ଧ କରନ୍ତି। ଗୃହରେ ରହ ବା ବଣରେ ରହ, ସତ୍‌ସଙ୍ଗ କର ବା ଅସତ୍‌ସଙ୍ଗ କର, ଚିତ୍ତ ନିରପେକ୍ଷ ନ ହେଲେ ବା ସ୍ଥିର ନ ହେଲେ ଜୀବନରେ କେହି କିଛି କରିପାରିବେ ନାହିଁ।

ମନକୁ ଏପରି ଭାବରେ ଗଢ଼ିବାକୁ ହେବ ଯେ ତାହା ଯେପରି ଇନ୍ଦ୍ରତ୍ୱ, ବ୍ରହ୍ମତ୍ୱ ପାଇଲେ ମଧ୍ୟ ତାହାକୁ ତୁଚ୍ଛଜ୍ଞାନ କରିବ। ସେତେବେଳେ ଯାଇ ମାନବର ପୂର୍ଣ୍ଣତ୍ୱ।

## ସତ୍ୟଦର୍ଶନ

ମନକୁ ସ୍ଥିର କରିବା ପାଇଁ ଜପ, ଧ୍ୟାନ, ନାମ ଇତ୍ୟାଦିର ପ୍ରୟୋଜନ। ସ୍ଥିର ଓ ଶୁଦ୍ଧଚିତ୍ତରେ ଭଗବତ୍‌ଭାବ ଫୁଟିଉଠେ।

ବୈଜ୍ଞାନିକମାନେ କେବଳ ଜଡ଼କୁ ଧରି କାରବାର କରୁଛନ୍ତି । ସେମାନେ ଜୀବନକୁ ବୁଝାଇବାକୁ ଯାଇ ଜଡ଼ ଓ ପ୍ରାଣର ପାର୍ଥକ୍ୟଟିକକ ଦେଖାଇଛନ୍ତି; କିନ୍ତୁ ପ୍ରାଣ କଅଣ, ତାହା ସେମାନେ ବୁଝିପାରି ନାହାନ୍ତି । ହିନ୍ଦୁମାନେ କହନ୍ତି, ପ୍ରାଣ ଆତ୍ମାର ଶକ୍ତି ।

ଏହି ବିଜ୍ଞାନ ମନୁଷ୍ୟକୁ କେବଳ ବହିର୍ମୁଖୀ କରିଦିଏ । ବୈଜ୍ଞାନିକମାନେ ଯାହା ଜାଣନ୍ତି, ତାହା ଅପୂର୍ଣ୍ଣ । ଆଜି ଜଣେ ଯାହା ସିଦ୍ଧାନ୍ତ କରିଗଲେ, କିଛି ଦିନପରେ ଆଉ ଜଣେ ଆସି ସେ ସିଦ୍ଧାନ୍ତକୁ ଓଲଟାଇ ଦେଲେ । କିନ୍ତୁ ଏମାନଙ୍କର ଚିତ୍ତର ଏକାଗ୍ରତା ଅଛି । ଏହି ବୈଜ୍ଞାନିକମାନେ ସବୁଆଡୁ ମନକୁ ଟାଣିଆଣି ଯାହା ଜାଣିବାକୁ ଇଚ୍ଛା କରନ୍ତି, ତାହାର ତତ୍ତ୍ୱ ବୁଝିବାକୁ ଚେଷ୍ଟା କରନ୍ତି । ତେଣୁ ସେମାନଙ୍କ ଭିତରେ ଶକ୍ତିର ଗୋଟିଏ ସାଧନା ଚାଲିଥାଏ—ତାହା ସଂଯମ ସାଧନା ।

କିନ୍ତୁ ଏହି ସଂଯମ ସାଧନାରେ ସତ୍ୟଦର୍ଶନ ହୁଏ ନାହିଁ । ହିନ୍ଦୁମାନଙ୍କର ସଂଯମ ପ୍ରୟୋଗ ଆହୁରି ଉଚ୍ଚରେ । ତଦ୍ଦ୍ୱାରା କୌଣସି ବସ୍ତୁକୁ ଜାଣିବାକୁ ହେଲେ, ସେ ବିଷୟରେ ମନକୁ ପ୍ରଥମେ ଏକାଗ୍ର କରି ତା'ପରେ ନିରୁଦ୍ଧ କରି ସମାଧି ଆଣିବାକୁ ହୁଏ । ତେବେ ଯାଇ ସେଥିରୁ ସତ୍ୟ ଫୁଟିଉଠେ । ଏମାନେ କେବଳ ମନକୁ ଏକାଗ୍ର କରନ୍ତି; କିନ୍ତୁ ମନକୁ ନିରୁଦ୍ଧ ନ କଲେ ତ ସତ୍ୟ ଜାଗିବ ନାହିଁ; କାରଣ, ମନରେ ସଂସ୍କାର ରହିଯିବ । ସୁତରାଂ, ଏକାଗ୍ର ମନରେ ଯେଉଁ ଦର୍ଶନ ହେବ, ସେଥିରେ ତୁମ ସଂସ୍କାରର ଛବି ରହିଯିବ ।

ଧରିନିଅ ଏକ ଝୁଲା । ଏହା ସମ୍ବନ୍ଧରେ ସତ୍ୟ ଜାଣିବାକୁ ହେଲେ ପ୍ରଥମେ ସବୁଆଡୁ ମନକୁ ଗୋଟାଇ ଆଣି ଏଥିରେ ଧାରଣ କରିବାକୁ ହେବ । ଏହା ପ୍ରଥମ ସୋପାନ । ତା'ପରେ ଯେତେବେଳେ ତନ୍ମୟତାରେ ମନ ତଦାକାରାକାରିତ ହୋଇଯିବ, କେବଳ ଝୁଲାଟା ମନରେ ଜାଗିବ, ସେତେବେଳେ ତାହା ଦ୍ୱିତୀୟ ସୋପାନ । ଏହା ଧ୍ୟାନର ଅବସ୍ଥା ବା ଏକାଗ୍ରଭାବ; କିନ୍ତୁ ତା'ପରେ ଯଦି ମନକୁ ନିରୁଦ୍ଧ କରିପାର, ଝୁଲାଟି ସହିତ ଯଦି ତୁମର ଏକାତ୍ମଭାବ ହୋଇଯାଏ, ତାହାହେଲେ ତା'ସମ୍ବନ୍ଧରେ ଯାହା ସତ୍ୟ, ତାହା ଜାଣିପାରିବ । ସେତେବେଳେ ଏହି ଝୁଲାଟିର ତତ୍ତ୍ୱ ଜଣାପଡ଼ିଯିବ । ତେଣୁ ଆମ ମତରେ ଜଗତର ସବୁ ଜିନିଷର ଚାରିଗୋଟି ରୂପ ଅଛି—ସ୍ଥୁଳ, ସୂକ୍ଷ୍ମ, କାରଣ ଓ ତୁରୀୟ । ତୁରୀୟକୁ ନ ଗଲେ ସତ୍ୟଦର୍ଶନ ହୁଏ ନାହିଁ; କିନ୍ତୁ ପାଶ୍ଚାତ୍ୟ ବିଜ୍ଞାନ ଯେଉଁ ପଥ ଧରି ଚାଲିଚି, ତାହା ଠିକ୍ । ଜଡ଼କୁ

ଜାଣିବାକୁ ହେଲେ ତାହାର ଉପାୟ ସେହିପରି ହେବା ଆବଶ୍ୟକ। ଅନ୍ୟଥା ଅଧ୍ୟାତ୍ମ୍ୟଦୃଷ୍ଟିରେ ଦେଖିବାକୁ ଗଲେ ଏତେ ବଡ଼ ଜିନିଷ ଭାସିଉଠିବ ଯେ, ତାହା ନିକଟରେ ଏସବୁ ତୁଚ୍ଛ ବୋଲି ମନେ ହେବ; କିନ୍ତୁ ଏହି ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କର ଅନୁସନ୍ଧାନ ଆଉ ଅଧିକ ଦୂର ଅଗ୍ରସର ହୋଇପାରିବ ନାହିଁ।

## ଭଗବତ୍ ବିଚାର

ଯେତେ ଦିନଯାଏ କାମ, କ୍ରୋଧ ଥିବ, ସମୟେ ସମୟେ ସେମାନେ ମନରେ ଉଦୟ ହେଉଥିବେ। ମନରେ ଉଦୟ ହେଲେ ତାହା ଅପରାଧ ନୁହେଁ। ଉଦୟ ହେଲାମାତ୍ରେ ଯଦି ନିବାରଣର ଚେଷ୍ଟା କରାଯାଏ, ତେବେ ତାହା ପାପ ନୁହେଁ। ସେଥିରେ ଇଚ୍ଛାପୂର୍ବକ ଆମୋଦସହ ଯୋଗଦେବା ହିଁ ପାପ।

ମନର ଅଭିସନ୍ଧି ଅନୁସାରେ ଧର୍ମ ଅଧର୍ମ ନିରୂପିତ ହୁଏ। ମନୁଷ୍ୟ ସମାଜ ଯାହାକୁ ପାପ ବା ପୁଣ୍ୟ ବୋଲି ସ୍ଥିର କରିଛି, ଭଗବାନ ସେଥିରେ ପ୍ରଭାବିତ ହୋଇ ବିଚାର କରନ୍ତି ନାହିଁ। ସେ ମନୁଷ୍ୟର ହୃଦୟ ଦେଖି କରିଥାନ୍ତି।

ମାରିଲେ ଯେ ହିଂସା ହେଲା, ତାହା ନୁହେଁ। ହିଂସା ଯଦି ଅନ୍ତରରେ ଥାଏ ଏବଂ କ୍ରୋଧପୂର୍ବକ ଅଥବା ନିଜର ତୃପ୍ତି ପାଇଁ ଯଦି ବଧ କରାଯାଏ, ତେବେ ତାହା ହୁଏ ହିଂସା। ଅନ୍ତରରେ ହିଂସା ଥିଲେ ଲୀଳାଦର୍ଶନ ହୁଏ ନାହିଁ। ଯଦି କିଛି ସମୟ ପାଇଁ ହୃଦୟ ହିଂସାଶୂନ୍ୟ ହୁଏ, ତେବେ ଲୀଳାଦର୍ଶନ ହୋଇପାରେ।

ମନୋଲୟ ଆମର ଉଦ୍ଦେଶ୍ୟ ନୁହେଁ। ମନୋଲୟ ହେଲେ ଯେ ଭଗବାନ ମିଳିବେ, ତାହାର ନିଶ୍ଚୟତା ନାହିଁ। ଭଗବାନଙ୍କ ସହିତ ସାକ୍ଷାତ୍ ସଂଯୋଗ କରାଇବାକୁ ଶ୍ରୀଗୁରୁଦେବଙ୍କ ଭିନ୍ନ ଅନ୍ୟ କାହାରି କ୍ଷମତା ନାହିଁ। ଅଦ୍ୱୈତବାଦୀ ଆଚାର୍ଯ୍ୟ ଶଙ୍କର ମଧ୍ୟ ଏ କଥାକୁ ସ୍ୱୀକାର କରିଛନ୍ତି।

ମନ, ବୁଦ୍ଧି, ଚିତ୍ତ, ଅହଂ—ଅନ୍ତଃକରଣର ଏହି ଚତୁର୍ବିଧ ଅବସ୍ଥାଭିତରୁ ମନଠାରୁ ଚିତ୍ତ ସୂକ୍ଷ୍ମ। ଚିତ୍ତକ୍ଷେତ୍ରରେ ବିଷୟ-ବାସନାର ଯୋଗ ହେଲେ ମନର ସୃଷ୍ଟି ହୁଏ। ଯେପରି ସରୋବରର ସ୍ଥିରଜଳରେ ଗୋଟିଏ ଢେଲା ପକାଇଲେ ତରଙ୍ଗର ସୃଷ୍ଟି ହୁଏ, ସେହିପରି ଚିତ୍ତ ମଧ୍ୟରେ ବିଷୟର ଯୋଗ ହେଲେ ମନର କ୍ରିୟା ହୁଏ। ଚିତ୍ତ ହିଁ ପ୍ରକୃତି। ମନ ଜଡ଼ ନୁହେଁ କିମ୍ବା ଚେତନ ନୁହେଁ। ତେଣୁ

ମନର ସ୍ୱରୂପ ଅଚିନ୍ତନୀୟ । ଯେପରି ରଙ୍ଗମଞ୍ଚର ନଟ ବିଭିନ୍ନ ଭୂମିକାରେ ବିଭିନ୍ନ ରୂପ ଧାରଣ କରି ଭିନ୍ନ ଭିନ୍ନ ପ୍ରକାର ଅଭିନୟରେ ଭିନ୍ନ ଭିନ୍ନ ନାମ ଧାରଣ କରିଥାଆନ୍ତି, ମନ ମଧ୍ୟ ସେହିପରି କର୍ମଭେଦରେ ବହୁ ନାମ ଧାରଣ କରେ । ତେଣୁ ଏ ଜଗତ୍ ମନର ସୃଷ୍ଟି । ସମଷ୍ଟି ମନ ହିଁ ବ୍ରହ୍ମ । ଚିତ୍ ପ୍ରତିବିମ୍ବିତ ଚିଦାଭାସ ହିଁ ଚିତ୍ତ ବା ଜୀବ । ଏହି କାରଣରୁ ଚିତ୍ତ ବା ଜୀବ ବ୍ରହ୍ମ । ଏହି ଜୀବଜଗତ୍ ବ୍ରହ୍ମଙ୍କର ହିଁ ବିକାଶ । ବ୍ରହ୍ମଙ୍କ ବ୍ୟତୀତ ଦ୍ୱିତୀୟ ବସ୍ତୁ ଏ ଜଗତରେ କିଛି ନାହିଁ । ସେ ଏକ ଏବଂ ଅଦ୍ୱିତୀୟ ।

ମନ ସ୍ୱଚ୍ଛ ସ୍ଫଟିକ ସଦୃଶ । ମନ ନିକଟରେ କୌଣସି ବିଷୟ ଉପସ୍ଥିତ ହେଲେ ମନ ତଦାକାରାକାରିତ ହୋଇଯାଏ । 'ମୋ ଘର, ମୋ ସଂସାର' ଏହିପରି ଚିନ୍ତା କରି ମନ ଯେପରି ତଦାକାରାକାରିତ ହୁଏ, 'ମୁଁ ଭଗବାନ' ଏହି ଚିନ୍ତାଫଳରେ ମନ ମଧ୍ୟ ଭଗବତ୍‌ସାରୂପ୍ୟ ଲାଭ କରେ । ତେଣୁ ବିଚାରଦ୍ୱାରା ସଂସ୍କାର ନଷ୍ଟ କରି ମନ-ସ୍ଥିର୍-ସାଧନାରେ ବ୍ରତୀ ହେବା ଦରକାର ।

ଚତୁର୍ଦ୍ଦିଗର ତୁମୁଳ ଆଲୋଡ଼ନ ଦେଖି ମନରେ ନାନାପ୍ରକାର ଉଦ୍‌ବେଗ, ଅଶାନ୍ତି ଓ ଭୟ ଜାତ ହେବା ସ୍ୱାଭାବିକ । ପ୍ରତି ମୂହୂର୍ତ୍ତରେ କାଳର ପ୍ରଚଣ୍ଡ ଆଘାତରେ ଗ୍ରହ-ନକ୍ଷତ୍ରଠାରୁ ଆରମ୍ଭ କରି ଜଗତର ପ୍ରତ୍ୟେକ ଅଣୁ ପରମାଣୁ ସ୍ଥାନଚ୍ୟୁତ ହେଉଛନ୍ତି । ସେତେବେଳେ ଚଞ୍ଚଳ ସ୍ୱଭାବ ବିଶିଷ୍ଟ ମନକୁ ସ୍ଥିର କରିବା ଅତିଶୟ କଠିନ; କିନ୍ତୁ, ସୁଖ-ଦୁଃଖ, ଭଲ-ମନ୍ଦ, ସମ୍ପଦ-ବିପଦ, ନିନ୍ଦା-ସ୍ତୁତି, ଅତ୍ୟାଚାର ଓ ସମାଦରରେ କେହି ଯଦି ଅଭିଭୂତ ନ ହୋଇ ଧୀର ସ୍ଥିର ଭାବରେ ଦ୍ରଷ୍ଟା ଆସନରେ ବସି ଭଗବାନଙ୍କ ଲୀଳା ବୋଲି ମନେ କରି ସ୍ଥିର ଭାବରେ ଦର୍ଶନ କରନ୍ତି, ତେବେ ସେହି ସାଧନର ରଙ୍ଗମଞ୍ଚର ଦୃଶ୍ୟପଟ୍ଟ ପରିବର୍ତ୍ତନ ଜନିତ ଆନନ୍ଦଭଳି ଲୀଳାନନ୍ଦ ଉପଲବ୍‌ଧ ହେବ । ଆନନ୍ଦ ଉପଲବ୍‌ଧି ଉଦ୍ଦେଶ୍ୟରେ ବିଶ୍ୱନାଥଙ୍କର ଏହି ସୃଷ୍ଟିଲୀଳା । ଏଥିରେ ଚଞ୍ଚଳତା ପ୍ରକାଶ କଲେ ଲୀଳାଦର୍ଶନରୁ ବଞ୍ଚିତ ହେବାକୁ ପଡ଼ିବ ।

କାମ, କ୍ରୋଧ, ଲୋଭ ସବୁ ମନଭିତରେ; ଇନ୍ଦ୍ରିୟମାନଙ୍କର କିଛି ଦୋଷ ନାହିଁ । ଇନ୍ଦ୍ରିୟରେ ମନସଂଯୋଗ ନ ହେଲେ କେହି କେବେ କୁକର୍ମ କରନ୍ତି

ନାହିଁ। ପ୍ରଥମେ ମନକୁ ସ୍ଥିରକର, ତେବେ ଦେଖିବ, ସମସ୍ତେ ମସ୍ତକ ଅବନତ କରିଛନ୍ତି। ଯେ ମନ ଜୟ କରିଛନ୍ତି, ସମଗ୍ର ଜଗତ୍ ତାଙ୍କର କରତଳଗତ।

ଯେତେ ସୁଖ ପାଇଲେ ମଧ୍ୟ ଦୁଇଟି ଦେହ କେବେ ଏକ ହୋଇପାରିବ ନାହିଁ; କିନ୍ତୁ ସାଧନା ଦ୍ୱାରା ଦୁଇଟି ମନ କାହିଁକି, ସମଗ୍ର ଜଗତର ମନ ସହିତ ଆମର ମନ ଏକ ହୋଇପାରିବ। ସମସ୍ତଙ୍କ ଅନ୍ତର ସହିତ ଯୋଗ ରଖିଲେ ମାନବ ଅନ୍ତର୍ଯ୍ୟାମୀ ହୁଏ। ସମସ୍ତଙ୍କ ସହିତ ଯେତେବେଳେ ଯୋଗ ହେବା ସମ୍ଭବ, ସେପରି କ୍ଷେତ୍ରରେ ନିଜର ପ୍ରିୟତମଙ୍କ ସହିତ ଯୋଗ ରଖିବା ଅତି ସହଜ।

ମନ ନିସ୍ତେଜ ଓ ଜଡ଼ବତ୍ ନିଶ୍ଚେଷ୍ଟ ଥିଲେ ସେହି ସୁଯୋଗରେ ପାପଚିନ୍ତା ପ୍ରବେଶ କରିବାର ବିଶେଷ ସମ୍ଭାବନା। ସେତେବେଳେ ତୁମଦ୍ୱାରା ଶୁଭକାର୍ଯ୍ୟ ସମ୍ପନ୍ନ ନ ହୋଇ ମନ୍ଦ କାର୍ଯ୍ୟ ହେବାର ବିଶେଷ ସମ୍ଭାବନା; କାରଣ, ମନ ସ୍ୱତଃ ପ୍ରବୃତ୍ତି ପଥରେ ଧାବିତ ହୁଏ। ବାଧ୍ୟ କରି ତାକୁ ନିବୃତ୍ତିପଥରେ ଚଳେଇବାକୁ ପଡ଼େ। ସାମାନ୍ୟ କାରଣରୁ ଟିକିଏ କୋହଳ ହେଲେ ମନ ପୁଣି ପ୍ରବୃତ୍ତିପଥକୁ ଧାବିତ ହେବ। ଜଡ଼ତ୍ୱ ଦୂର କରିବାକୁ ହେଲେ ତାହାର ବିପରୀତ ବୃତ୍ତି ସାତ୍ତ୍ୱିକ ଆନନ୍ଦର ଏବଂ ସାତ୍ତ୍ୱିକ ଜ୍ଞାନର ଅନୁଶୀଳନରେ ମନକୁ ନିଯୁକ୍ତ କରିବାକୁ ପଡ଼ିବ। ମନେ ରଖିବ, ଶୂନ୍ୟମନରେ କୁଚିନ୍ତା ପ୍ରବେଶ କରେ। ଆଶଙ୍କା-ଉଦ୍‌ବେଗଯୁକ୍ତ ମନ ମଧ୍ୟ ତାହା। କର୍ମ ଭିତରେ ରହି ମନକୁ ସାତ୍ତ୍ୱିକ ଆନନ୍ଦରେ ପୂର୍ଣ୍ଣ ରଖିବା ଦରକାର। ସାତ୍ତ୍ୱିକଭାବନା ଫଳରେ ଭଗବତ୍ ପ୍ରେରଣା ଜାଗେ।



# ସଂସ୍କାର

## ଆସକ୍ତି

ଜଗତ୍‌ରେ ଯେ ଯେଉଁ କର୍ମ କରନ୍ତୁ ପଛକେ, ତାଙ୍କର କେତେଗୁଡ଼ିଏ ସଂସ୍କାର ସଂଗୃହୀତ ହୋଇ ରହେ । ସଂସ୍କାର ତିନି ପ୍ରକାର—ଇଚ୍ଛାର ସଂସ୍କାର, କର୍ମର ସଂସ୍କାର ଓ ଜ୍ଞାନର ସଂସ୍କାର । ସଗୁଣ ବ୍ରହ୍ମପର୍ଯ୍ୟନ୍ତ ସଂସ୍କାରର ସମଷ୍ଟି । ପାପପୁଣ୍ୟ, ଧର୍ମାଧର୍ମ ଯାହା କିଛି କରାଯାଏ, ତାହାଦ୍ୱାରା ଅନୁରୂପ ସଂସ୍କାର-ରାଶି ବୃଦ୍ଧି ପାଇଥାଏ । ଏ ଜୀବନ କେତେଗୁଡ଼ିଏ ସଂସ୍କାରର ସମଷ୍ଟି ମାତ୍ର । ଯେ ଯେପରି କାର୍ଯ୍ୟ କରନ୍ତି, ମୃତ୍ୟୁପରେ ତାଙ୍କର ସେହି ସଂସ୍କାର ଅନୁରୂପରେ ଭୋଗ ଓ ପୁନର୍ଜନ୍ମ ହୁଏ ।

ସଂସ୍କାରକୁ ସାଧାରଣ କଥାରେ ବାସନା କୁହାଯାଏ । ତେଣୁ ଜନ୍ମ-ଜନ୍ମାନ୍ତରର ବାସନା ଫଳରେ ମନୁଷ୍ୟକୁ ଜନ୍ମ-ମୃତ୍ୟୁ, ସୁଖ-ଦୁଃଖ, ରୋଗ-ଶୋକ ଭୋଗ କରିବାକୁ ପଡ଼େ ।

ଆଶା କରିଥିଲି, ତଦ୍‌ଯୋଗ୍ୟ ବସ୍ତୁ ମଧ୍ୟ ପାଇଥିଲି; କିନ୍ତୁ ଭୋଗ କରିପାରି ନାହିଁ—ଏହା ଆସକ୍ତି ।

କେବଳ ଆଶା କରିଥିଲି, ତଦ୍‌ଯୋଗ୍ୟ ବସ୍ତୁ ପାଇଁ ନାହିଁ କିମ୍ବା ଭୋଗ ମଧ୍ୟ କରିନାହିଁ—ଏହା ସଂସ୍କାର । ଏହି ସଂସ୍କାରବଶରେ ଜନ୍ମମୃତ୍ୟୁ ସାଧିତ ହୁଏ ।

ସଂସାରରେ ଦେଖାଯାଏ, ଯାହାଙ୍କର କୌଣସି ବନ୍ଧନର ସାମଗ୍ରୀ ନାହିଁ, ସେ ମଧ୍ୟ ଆସକ୍ତିରେ ଜଡ଼ିତ ହୋଇ ରହିବାକୁ ଇଚ୍ଛା କରନ୍ତି । ନିଜ କୁଳରେ କେହି ନ ଥିଲେ ବିରାଡ଼ିକୁ ବିଭା ଦେଇ ସଂସାର-ସୁଖ-କାମନା ପୂର୍ଣ୍ଣ କରନ୍ତି । ଏପରି ମଧ୍ୟ ଦେଖାଯାଏ ଯେ ଅତୁଳ ଐଶ୍ୱର୍ଯ୍ୟ ଭିତରେ ରହି ସୁଦ୍ଧା କୌଣସି ଲୋକ ଶାନ୍ତି ପାଉ ନାହାନ୍ତି । ତାଙ୍କ ମନ ତୀବ୍ର ବୈରାଗ୍ୟରେ ପୂର୍ଣ୍ଣ । ଭୋଗପ୍ରତି ଦୃଷ୍ଟିପାତ କରିବାକୁ ତାଙ୍କର ଆଦୌ ଇଚ୍ଛା ହେଉନାହିଁ । ଅବଶେଷରେ ହୁଏତ ଗୃହସଂସାର ଛାଡ଼ି ସେ ଚାଲିଯାନ୍ତି । ଏସବୁ ସଂସ୍କାରର ଫଳ । ସଂସ୍କାର ଜୀବର ଏକମାତ୍ର ସଙ୍ଗୀ । ଏହି କାରଣରୁ ସତ୍‌ସଂସ୍କାର ଲାଭନିମିତ୍ତ ଜୀବନବ୍ୟାପୀ ଉଦ୍ୟମ କରିଯିବା ଆବଶ୍ୟକ ।

ସଂସ୍କାର ଏତେ ପ୍ରବଳ ଯେ ଇଚ୍ଛା ନ ଥିଲେ ମଧ୍ୟ ବଳେ ବଳେ ତାହା କାର୍ଯ୍ୟ କରାଇନିଏ। ଦଉଡ଼ି ଦେଖି ସାପ ବୋଲି ଚମକିପଡ଼ିଲି, ପରେ ଦଉଡ଼ି ବୋଲି ଜାଣିଲି; ଅଥଚ ଛାତିର ଦମ୍ ଦମ୍ ବନ୍ଦ ହେଉନାହିଁ। ମଶା କାମୁଡ଼ିଲା; ମଶା ମାରିବାକୁ ଅତର୍କିତଭାବରେ ହାତ ଚାଲିଗଲା; କିନ୍ତୁ ହାତ ଯାହାର, ତାର ସେଦିଗରେ ଦୃଷ୍ଟି ନାହିଁ।

## ସଂସାର ଓ ବୈରାଗ୍ୟ

ଆସକ୍ତ ଗୃହୀଙ୍କ ଅପେକ୍ଷା ଭଣ୍ଡ ସନ୍ନ୍ୟାସୀଙ୍କୁ ଶ୍ରେଷ୍ଠ ବୋଲି କୁହାଯାଇପାରେ। ଭଣ୍ଡ ହେଲେ ମଧ୍ୟ ତାଙ୍କର ପବିତ୍ର ବେଶଥାଏ ବୋଲି ପାପକାର୍ଯ୍ୟରୁ ବିରତ ହୁଅନ୍ତି ଅଥବା ସମାଜ ନିକଟରେ ପ୍ରତିଷ୍ଠା ନଷ୍ଟ ହୋଇଯିବ ବୋଲି ସେ ପାପରୁ ନିବୃତ୍ତ ହେବାକୁ ଚେଷ୍ଟା କରନ୍ତି। ଅତି ଗୋପନ ନ କରି ବା ଭୟ ନ କରି ଅନ୍ୟାୟ କରିବାପାଇଁ ତାଙ୍କର ସୁବିଧା ନାହିଁ। ତା ଫଳରେ ତାଙ୍କର ପାପ ଅପେକ୍ଷା ସାଧୁବେଶର ସଂସ୍କାର ପ୍ରବଳତର ହୁଏ। ତେଣୁ ଇହଜନ୍ମରେ ତାଙ୍କର ପତନ ହେଲେ ସୁଦ୍ଧା ଭାବୀ ଜନ୍ମରେ ସାଧୁ ହୋଇ କିମ୍ବା ଉନ୍ନତ ସଂସ୍କାର ଘେନି ସେ ଜନ୍ମ ଗ୍ରହଣ କରନ୍ତି।

କିନ୍ତୁ ଗୃହୀମାନଙ୍କ ପକ୍ଷରେ କୌଣସି ଲୋକଲଜ୍ଜାର ଭୟ ନାହିଁ। ତେଣୁ ଅନେକ ସମୟରେ ସେମାନେ ଅବାଧରେ ପାପରେ ଲିପ୍ତ ହୁଅନ୍ତି। ତା'ଫଳରେ ସେମାନଙ୍କର ପାପର ସଂସ୍କାର ପରିପକ୍ୱତା ଲାଭ କରେ।

ଏହା ସତ୍ତ୍ୱେ ଭଣ୍ଡାମିର କୁଫଳ ନିଶ୍ଚୟ ମିଳିବ। ଭଣ୍ଡିବା ଉଦ୍ଦେଶ୍ୟରେ ଯେ ସଂସାର ତ୍ୟାଗ କରନ୍ତି, ସମସ୍ତଙ୍କଠାରୁ ସେ ଅଧମ। ସଂସାରର ଅନିତ୍ୟତା ଓ ଜଗତ ରହସ୍ୟ ଯେ ଜ୍ଞାନବଳରେ ବୁଝିଛନ୍ତି, ପ୍ରବୃତ୍ତି-ତାଡ଼ନାରେ ବା ଗୁଣର ବିକାରଦ୍ୱାରା ଦିନେ ହଠାତ୍ ତାଙ୍କର ପତନ ହୋଇପାରେ; କିନ୍ତୁ ପରକ୍ଷଣରେ ତାଙ୍କର ପ୍ରବଳ ଅନୁତାପ ଆସିବ। ଏହି ଶ୍ରେଣୀର ଲୋକଙ୍କ ଉନ୍ନତି ଅବଧାରିତ।

ପୂର୍ବଜନ୍ମର ଜ୍ଞାନର ସଂସ୍କାରବଳରେ ବଡ଼ଲୋକଙ୍କର ବୈରାଗ୍ୟ ଜାତ ହୋଇଥାଏ। ଭାସ୍କରାନନ୍ଦ ସ୍ୱାମୀ କହିଛନ୍ତି, ''ମୁଁ ସମସ୍ତଙ୍କୁ ସମାନଭାବରେ କୃପା କରେ। ବିଶେଷଭାବରେ କାହାକୁ କୃପା କରିବାକୁ ହେଲେ ବଡ଼ ଲୋକଙ୍କୁ ହିଁ କରିବି।'' ଜଣେ ପ୍ରଶ୍ନ କଲେ, ''କାହିଁକି? ଦୁଃଖୀ ଲୋକଙ୍କୁ ହିଁ କୃପା କରିବା

ଉଚିତ।'' ସ୍ୱାମିଜୀ ଉତ୍ତର ଦେଲେ, ''ଅଧିକାଂଶ ସମୟରେ ଗରିବଙ୍କର ଭୋଗ ଆଡ଼କୁ ପ୍ରବୃତ୍ତି ଯାଏ। କାରଣ, ଭୋଗର ଉପକରଣ ସେମାନେ ପାଇ ନାହାନ୍ତି। ସେମାନଙ୍କୁ କୃପା କଲେ ମୋ ପାଖରେ ସେମାନେ ପ୍ରକୃତ ବସ୍ତୁ ନ ଲୋଡ଼ି ଭୋଗର ଉପକରଣ ଲୋଡ଼ିପାରନ୍ତି; କିନ୍ତୁ ବଡ଼ଲୋକମାନେ ଭୋଗ କରି ଭୋଗସୁଖ ଉପଲବ୍ଧି କରିସାରିଥାଆନ୍ତି। ସେମାନଙ୍କୁ ଯଦି ମୁଁ କୃପା କରେ, ଭୋଗୀ ଲୋକଙ୍କ ଆବଶ୍ୟକ ସାମଗ୍ରୀ ସେମାନେ କଦାପି ଲୋଡ଼ିବେ ନାହିଁ। ଜ୍ଞାନ-ବୈରାଗ୍ୟ ପାଇବାକୁ ସେମାନେ ଇଚ୍ଛା କରିବେ, ସତ୍ୟ ଲାଭପାଇଁ ବ୍ୟଗ୍ର ହେବେ। ଏଇଥିପାଇଁ କହୁଥିଲି, ବିଶେଷ କୃପା କରିବାକୁ ହେଲେ କହେ ବଡ଼ ଲୋକଙ୍କୁ ହିଁ କୃପା କରିବି।''

## ସ୍ୱଭାବ

ମୁସଲମାନ୍‌ମାନେ ହିନ୍ଦୁଙ୍କର ଦେବମୂର୍ତ୍ତି ଭାଙ୍ଗିଲେ ସୁଦ୍ଧା ଅନେକ ସମୟରେ ଦେଖାଯାଏ ଯେ ସେମାନଙ୍କର କିଛି କ୍ଷତି ହୁଏ ନାହିଁ। ସଂସ୍କାର ଏହାର କାରଣ। ମୁସଲମାନମାନେ ଜାଣନ୍ତି ଉକ୍ତ ଦେବମୂର୍ତ୍ତିର କୌଣସି ଯେ ମୂଲ୍ୟ ନାହିଁ। ତାହା କେବଳ ପଥର ବା ମାଟି। ସେଥିରେ ଦେବତା ରହିପାରନ୍ତି ବୋଲି ସଂସ୍କାର ସେମାନଙ୍କର ଆଦୌ ନାହିଁ। ତେଣୁ ସେମାନଙ୍କ ଉପରେ କୌଣସି କୁଫଳ ଫଳେ ନାହିଁ। ହିନ୍ଦୁମାନଙ୍କ ପକ୍ଷରେ କିନ୍ତୁ ସେପରି ନୁହେଁ। ଦେବମୂର୍ତ୍ତିକୁ ଅବଜ୍ଞା କରି ହିନ୍ଦୁମାନେ ହାତେ ହାତେ ଫଳ ପାଇଥିବାର ଅନେକ ଘଟଣା ଶୁଣାଯାଏ। ହିନ୍ଦୁସନ୍ତାନଙ୍କର ବାଲ୍ୟକାଳରୁ ହିଁ ଦେବତା ସଂସ୍କାର ଅସ୍ଥିମଜ୍ଜାରେ ଜଡ଼ିରହିଛି। ତେଣୁ ଦେବତାଙ୍କୁ ଅବଜ୍ଞା କଲେ ସେମାନଙ୍କର ନିସ୍ତାର ନାହିଁ। ସଂସ୍କାରର ଫଳ ଅବଶ୍ୟ ଫଳିବ। ଚରିତ୍ର ସଂଶୋଧନ କରାଯାଇପାରେ; କିନ୍ତୁ ସ୍ୱଭାବ ପରିବର୍ତ୍ତନ ବଡ଼ କଷ୍ଟକର। କାରଣ, ସ୍ୱଭାବ ସ୍ୱ-ଭାବ, ତାହା ଜନ୍ମଜନ୍ମାନ୍ତରର ସଂସ୍କାରର ଫଳ।

ଯେ ଯେଉଁ ମାର୍ଗରେ ଗତି କରି ସତ୍ୟରେ ପହଞ୍ଚନ୍ତି, ସେ ତାହା ପସନ୍ଦ କରନ୍ତି, ତାହା ଅନୁମୋଦନ କରନ୍ତି—ଏହା ତାଙ୍କର ସ୍ୱଭାବ, ସଂସ୍କାର ନୁହେଁ। ସାଧୁମାନଙ୍କର ସଂସ୍କାର ନ ଥାଏ, କିନ୍ତୁ ସ୍ୱଭାବର ଦାଗ ଟିକିଏ ହେଲେ ରହିଥାଏ।

ସଂସ୍କାର ଲିଭାଇଦେବା ବଡ଼ କଠିନ। ଏହା କୋଜପରି। ଗୋଟିଏ ମୁଖ ଛଡ଼ାଇବାକୁ ଗଲେ ଅନ୍ୟ ମୁଖରେ ଏହା କାମୁଡ଼ିଧରେ।

ସଂସର୍ଗଗୁଣରେ ଜୀବନର ଉନ୍ନତି-ଅବନତି ହୁଏ । ତୁମେ ଯେତେ ସାବଧାନ ହୁଅ ପଛକେ, ଆଲକାତରା ଲଗାଯାଇଥିବା ଘରେ ପ୍ରବେଶ କଲେ ଶରୀରର କୌଣସି-ନା-କୌଣସି ଗୋଟିଏ ସ୍ଥାନରେ ଟିକିଏ ହେଲେ ଦାଗ ଲାଗିବ ହିଁ ଲାଗିବ । ତେଣୁ ଅନେକ ସାଧୁ-ସନ୍ନ୍ୟାସୀ ମାୟାମୋହାଚ୍ଛନ୍ନ ସଂସାରୀ ଲୋକଙ୍କ ସହିତ ମିଶିବାକୁ ଇଚ୍ଛା କରନ୍ତି ନାହିଁ ।

ପ୍ରସ୍ତର କ୍ଷୟ ହୋଇଯାଏ; କିନ୍ତୁ ପ୍ରସ୍ତରରେ ଅଙ୍କିତ ଗଭୀର ଦାଗ ସହଜରେ ପୋଛା ଯାଇପାରେନାହିଁ । ସେହିପରି ମୃତ୍ୟୁ ହେବ; କିନ୍ତୁ ସଂସ୍କାର ଦୂର ହେବ ନାହିଁ ।

## ସ୍ଥୂଳ ଓ ଜ୍ଞାନର ସଂସ୍କାର

ଜନ୍ମଗ୍ରହଣ ସମୟରେ ପୂର୍ବଜନ୍ମର ସ୍ଥୂଳ ସଂସ୍କାର ନ ଥାଏ, କେବଳ ଜ୍ଞାନସଂସ୍କାର ଥାଏ । ସୁତରାଂ ଜ୍ଞାନପଥରେ ଯେ ଯେତେ ଅଗ୍ରସର ହୋଇଥାନ୍ତୁ ପଛକେ, ତାଙ୍କର ସେହି ସଂସ୍କାରଟିକକ ରହିଥାଏ । ଏହି କାରଣରୁ ଦେଖାଯାଏ ଯେ ପିଲାଦିନରୁ କେହି କେହି ସଦାଚାରୀ ଆଉ କେହି କେହି କଦାଚାରୀ । ପୋକଜୋକ ଦେଖିଲେ କିଏ ମାରିଦିଅନ୍ତି; କିଏ ଫୁଲପତ୍ର ଧରି ପୂଜା କରିବସନ୍ତି । ଏସବୁ ପୂର୍ବଜନ୍ମର ସ୍ଥୂଳସଂସ୍କାର ନୁହେଁ; ଏସବୁ ଭୋଗର ସଂସ୍କାର । ମରଣର ପରପାରିରେ ତାଙ୍କର ଭୋଗ ଯେପରି ହୋଇଛି, ସଂସ୍କାରବଳରେ ସେ ସେହିପରି ଆଚରଣ କରିଥାନ୍ତି । ସେ ଭୋଗ ମଧ୍ୟ ସ୍ୱକର୍ମାଧୀନ ।

ଜ୍ଞାନ ଲାଭ ହେଲାପରେ ମଧ୍ୟ ବ୍ୟାବହାରିକ ଆଚରଣର ପରିବର୍ତ୍ତନ ହୁଏନାହିଁ । ପିଲାଦିନରୁ ଦେଶ-କାଳ-ପାତ୍ରଭେଦରେ ଯାହାଙ୍କର ଯେଉଁପରି ସ୍ୱଭାବ ଗଠିତ ହୁଏ, ତାଙ୍କର ସେହିପରି ସ୍ୱଭାବ ଅକ୍ଷୁଣ୍ଣ ରହିଥାଏ ।

ଭାବସମାଧି ହେଲେ ମନ ଉପରକୁ ଉଠିଯାଇପାରିବ ନାହିଁ । ସଂସ୍କାରମୁକ୍ତ ଜ୍ଞାନସମାଧି ନ ହେଲେ ପ୍ରକୃତ ସମାଧି ହୁଏ ନାହିଁ । ଚିତ୍ତ ସ୍ଥିର ହେଲାପରେ ସଂସ୍କାର ଅନୁଯାୟୀ ଭାବ ଫୁଟିଉଠେ । ଜ୍ଞାନଲାଭ ପୂର୍ବରୁ ସମାଧି ହେଲେ ବା ସତ୍ୟଦର୍ଶନ ହେଲେ ପାଗଳ ହୋଇଯିବାର ଆଶଙ୍କା ରହିଛି । ଅଧିକାରୀ ହୋଇ ନଥିଲେ ସତ୍ୟଦର୍ଶନ ଫଳରେ ଲୋକ ନାସ୍ତିକ ହୋଇଯାଏ; ତା ନ ହେଲେ ତାଙ୍କଠାରେ ବିପରୀତ ବୁଦ୍ଧିର ଉଦୟ ହୁଏ ।

ମିଥ୍ୟା କଥା କାହାକୁ ଶିକ୍ଷା ଦେବାକୁ ପଡ଼େ ନାହିଁ। ଏହା ସହଜାତ ସଂସ୍କାର। ଯୁବକପ୍ରତି ଯୁବତୀର ଯେଉଁ ଆକର୍ଷଣ, ତାହା ମଧ୍ୟ ସହଜାତ; କିନ୍ତୁ ନାରୀପ୍ରତି ନାରୀର ଆକର୍ଷଣ ଶିକ୍ଷା ଦେବାକୁ ପଡ଼େ।

ଜନ୍ମାନ୍ତରୀଣ ସଂସ୍କାର ପୂର୍ବଜନ୍ମର ଫଳ। ମନୁଷ୍ୟର ଗୁଣ ଓ କର୍ମ ଅଧିକାଂଶ ଜନ୍ମାନ୍ତରୀଣ ସଂସ୍କାରର ଫଳ। ସଂସ୍କାର ହିଁ ଜୀବର ବନ୍ଧନ। ଚିତ୍ତଗଗନରେ ବହୁ ଜନ୍ମର ସଂସ୍କାର ପୁଞ୍ଜୀଭୂତ ହୋଇ ରହିଛି। ଜ୍ଞାନାଗ୍ନିଦ୍ୱାରା ସେହି ସଂସ୍କାରସବୁକୁ ଭସ୍ମୀଭୂତ କରି ନିଜ ସ୍ୱରୂପରେ ଅବସ୍ଥାନ କରିବା ହିଁ ସାଧନାର ମୁଖ୍ୟ ଉଦ୍ଦେଶ୍ୟ। ଯେତେ ସାଧନ-ଭଜନ କଲେ ସୁଦ୍ଧା ସଂସ୍କାର ଦୂର ନ ହେଲେ କିଛି ଉପଲବ୍ଧି ହୋଇପାରିବ ନାହିଁ। ଯେ ଯେତେ ସଂସ୍କାର (ପୂର୍ବଧାରଣା) ପରିବର୍ତ୍ତନ କରିପାରିଛନ୍ତି, ସେ ସେତେ ଉନ୍ନତ ଓ ଭଗବନାଙ୍କର ସେ ସେତିକି ନିକଟବର୍ତ୍ତୀ। ସଂସ୍କାର-ଆବରଣଦ୍ୱାରା ଆମର ସ୍ୱରୂପ ଆବୃତ ଥିବାରୁ ଆମେ ଭଗବାନଙ୍କଠାରୁ ଦୂରରେ ଅଛୁଁ ବୋଲି ଭ୍ରମଧାରଣା ସୃଷ୍ଟି ହେଉଛି।

ଅହଂତ୍ୱ-ସଂସ୍କାରରେ ଜୀବ ଆବଦ୍ଧ। 'ମୋ ଘର', 'ମୋ ସଂସାର' ଏଭଳି ଭାବନାଫଳରେ ଚିତ୍ତରେ ଏପରି ଦୃଢ଼ ସଂସ୍କାର ହୋଇଯାଏ ଯେ ଘର-ସଂସାରଠାରୁ ନିଜର ପୃଥକ ଅସ୍ତିତ୍ୱବୋଧ ଲୋପ ପାଇଯାଏ। ସେହି ଘରଉପରେ କିଛି ବ୍ୟାଘାତ ହେଲେ ସେ ନିଜେ ମରେ କିମ୍ବା ଅପରକୁ ମାରିପକାଏ। ସଂସ୍କାର ନଷ୍ଟ କରିବାର ପ୍ରଧାନ ଉପାୟ ବିଚାର। ଜ୍ଞାନପଥରେ ବିଚାର ହିଁ ପ୍ରଧାନ ଅବଲମ୍ବନ।

ଉଚ୍ଚବଂଶରେ ଜନ୍ମ ହୋଇ ଶିକ୍ଷିତ ହୋଇ ମଧ୍ୟ କେତେ ଲୋକ ପଶୁଭଳି ଆଚରଣ କରିଥାନ୍ତି; ଏହା ହିଁ ସେମାନଙ୍କ ପୂର୍ବଜନ୍ମର ସଂସ୍କାର। ପୂର୍ବଜନ୍ମର ସଂସ୍କାରଦ୍ୱାରା ଚାଳିତ ହେବାସମୟରେ ଜୀବ ଇହଜନ୍ମର ସଂସ୍କାର ମଧ୍ୟ ସଞ୍ଚୟ କରିଥାଏ।

ଯେଉଁସବୁ ଆତ୍ମା ମୁକ୍ତ ହୋଇଯାଆନ୍ତି, ସେମାନଙ୍କର ଯେଉଁ ସଂସ୍କାର ଓ ବୃତ୍ତି ଥାଏ, ସେହିସବୁ ଲୋକଙ୍କଭଳି ଲୋକ ସୃଷ୍ଟି କରିବାକୁ ହେଲେ ବିଧାତା ସେହି ସଂସ୍କାର ଓ ବୃତ୍ତିଗୁଡ଼ିକ ଦ୍ୱାରା ସେହିପରି ଲୋକ ସୃଷ୍ଟି କରିଥାନ୍ତି।

କେହି ଭଲ ବା ମନ୍ଦ କାର୍ଯ୍ୟ କରିବାକୁ ଯିବାବେଳେ ପାରିପାର୍ଶ୍ୱିକ ସତ୍ କିମ୍ବା ଅସତ୍ ସଂସ୍କାର ଅର୍ଥାତ୍ ସତ୍ ଓ ଅସତ୍ ପରମାଣୁଗୁଡ଼ିକ ପ୍ରବେଶକରି

ତଦନୁରୂପ ଉତ୍ତେଜିତ କରିଥାଏ। ମହାପୁରୁଷମାନେ ମୁକ୍ତ ହୋଇଗଲେ ମଧ୍ୟ ଜଗତର ହିତ ନିମିତ୍ତ ସର୍ବତ୍ର ବିଦ୍ୟମାନ ଥାନ୍ତି। ଉପଯୁକ୍ତ ଆଧାର ପାଇଲା ମାତ୍ରେ ନିଜର ଶକ୍ତି ସଞ୍ଚାର କରିଥାନ୍ତି। ଯେଉଁମାନେ ଜ୍ଞାନୀ, ସେମାନେ ଜ୍ଞାନୀମାନଙ୍କୁ ଏବଂ ଯେଉଁମାନେ ଭକ୍ତ, ସେମାନେ ଭକ୍ତମାନଙ୍କୁ ସାହାଯ୍ୟ କରିଥାନ୍ତି। ତେଣୁ ପୂର୍ବପୁରୁଷମାନେ ବଂଶର ମଙ୍ଗଳନିମିତ୍ତ ଚେଷ୍ଟା କରିଥାନ୍ତି। ଏହି ଭବରଙ୍ଗମଞ୍ଚରେ ଗୋଟିଏ ସଂସ୍କାର ରୂପ ପୋଷାକ ପରିଧାନ କରି କେତେ ଆତ୍ମା ଅଭିନୟ କରି ଚାଲିଯାଉଛନ୍ତି। ଅଭିନେତାଙ୍କର ପରିବର୍ତ୍ତନ ହେଉଛି, ସଂସ୍କାରର ପରିବର୍ତ୍ତନ ହେଉ ନାହିଁ।

ଏହି ଯେଉଁ ପରିଦୃଶ୍ୟମାନ ସ୍ଥୂଳଜଗତ୍—ଏହା ମନର ପୁଞ୍ଜୀଭୂତ ସଂସ୍କାର ମାତ୍ର। ସଂସ୍କାର ହିଁ ସବୁ ରୋଗର ମୂଳ। ତେଣୁ ଆର୍ଯ୍ୟ ଋଷିମାନେ ସଂସ୍କାରପରିବର୍ତ୍ତନ ନିମିତ୍ତ ବିଶେଷ ଚେଷ୍ଟା କରିଛନ୍ତି। ପ୍ରଥମେ କୁସଂସ୍କାର ଦୂର କରି ସୁସଂସ୍କାର ଅର୍ଜନ କରିବାକୁ ପଡ଼େ। ତତ୍ପରେ ତାହା ମଧ୍ୟ ତ୍ୟାଗ କରି ନିଜ ସ୍ୱରୂପରେ ଅବସ୍ଥାନ କରିବାକୁ ହୁଏ। ଏହା ହିଁ ଆର୍ଯ୍ୟଶିକ୍ଷାର ମୂଳନୀତି। ସମସ୍ତ ସଂସ୍କାରମୁକ୍ତ ହୋଇ ଆତ୍ମଜ୍ଞାନରେ ପ୍ରତିଷ୍ଠିତ ହୋଇପାରିଲେ ପ୍ରହ୍ଲାଦଙ୍କପରି ତୁମ ନିକଟରେ ବିଷ ମଧ୍ୟ ଅମୃତରେ ପରିଣତ ହୋଇଯିବ।



# କାମ

## ଅତୃପ୍ତି

ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ ।
କାମତ୍ର କ୍ରୋଧସ୍ତଥା ଲୋଭସ୍ତସ୍ମାଦେତ ତ୍ରୟଂ ତ୍ୟଜେତ୍ ॥

କାମ, କ୍ରୋଧ ଓ ଲୋଭ—ଏହି ତିନୋଟି ନରକର ଦ୍ୱାରସ୍ୱରୂପ । ଏ ତିନିଙ୍କୁ ପରିତ୍ୟାଗ କରିବା ଆବଶ୍ୟକ । ତିନିଗୋଟି ଶତ୍ରୁଙ୍କ ମଧ୍ୟରେ ସର୍ବପ୍ରଧାନ ଶତ୍ରୁ କାମ । କାମ ହିଁ ସବୁ ଦୁଃଖକର କାର୍ଯ୍ୟର ପ୍ରବର୍ତ୍ତକ । କାମଦ୍ୱାରା ପ୍ରାଣୀର ବିଷମ ଅନର୍ଥ ଉପସ୍ଥିତ ହୁଏ । କାମ ବିବେକ-ଶକ୍ତିକୁ ପ୍ରକାଶିତ କରାଇଦିଏ ନାହିଁ । କାମ ଅବିଚାରସିଦ୍ଧ, ସବୁ ଦୁଃଖର ହେତୁ । ତେଣୁ ଏହି କାମକୁ ପରିହାର କରିବା ସର୍ବପ୍ରଧାନ କର୍ତ୍ତବ୍ୟ । ଅବିବେକୀମାନେ ବିଷୟ ଭୋଗ କରିବା ସମୟରେ କାମକୁ ମିତ୍ର ବୋଲି ମନେ କରନ୍ତି ସତ; କିନ୍ତୁ ପରିଣାମରେ ସେଥିପାଇଁ ଦୁଃଖ ଭୋଗ କରିବାକୁ ପଡ଼ିଥାଏ । କାମର ଏହି ପରିଣାମ ଜାଣି ଜ୍ଞାନୀମାନେ ତାହାକୁ ନିତ୍ୟ ବୈରୀ ବୋଲି ମନେ କରନ୍ତି ।

କାମ ଇଚ୍ଛା ଓ ତୃଷ୍ଣାରୂପରେ ଜୀବମାନଙ୍କୁ ଶତ୍ରୁପରି ଉତ୍ତେଜିତ କରାଇଥାଏ । କାଷ୍ଠ ଘୃତାଦିର ଆହୁତିଦ୍ୱାରା ଅଗ୍ନି ଯେପରି ନିବୃତ୍ତ ନ ହୋଇ ଅଧିକରୁ ଅଧିକ ଉତ୍ତେଜିତ ହୁଏ, ସେହିପରି ଅଶେଷବିଧ ଭୋଗ କଲେ ମଧ୍ୟ କାମ ତୃପ୍ତିଲାଭ ନକରି ଅଧିକ ଉତ୍ତେଜିତ ହୁଏ । ନିବୃତ୍ତି ବ୍ୟତୀତ କାମରୂପୀ ବୈରୀକୁ ନିପାତ କରିବାର ଅନ୍ୟ ଉପାୟ ନାହିଁ । କାମ ଅପରିମିତଭୋଜୀ । ଯଥେଷ୍ଟ ଭୋଗ୍ୟବସ୍ତୁ ପାଇଲେ ମଧ୍ୟ ଏହାର ଉଦରପୂର୍ତ୍ତି ହୁଏ ନାହିଁ ବା ତୃପ୍ତି ହେବାର ସମ୍ଭାବନା ନାହିଁ । କାମୁକ ବ୍ୟକ୍ତି ଯଦି ପୃଥିବୀର ସମସ୍ତ ଶସ୍ୟ, ସୁବର୍ଣ୍ଣାଦି ଧନ, ଗୋ-ଅଶ୍ୱାଦି ପଶୁ, ପରମା ସୁନ୍ଦରୀ ସ୍ତ୍ରୀ ଆଦି ଭୋଗ୍ୟ ପଦାର୍ଥ ପ୍ରାପ୍ତ ହୁଅନ୍ତି, ତାହା ହେଲେ ମଧ୍ୟ ତାଙ୍କର ତୃପ୍ତି ଲାଭ ହୁଏ ନାହିଁ । ଏସବୁ ବିଚାର କରି କାମନା ପରିତ୍ୟାଗ କରିବା ବିଧେୟ ।

ଚକ୍ଷୁରାଦି ଜ୍ଞାନେନ୍ଦ୍ରିୟ, ହସ୍ତପଦାଦି କର୍ମେନ୍ଦ୍ରିୟ ଏବଂ ସଂକଳ୍ପସ୍ୱରୂପ ମନ ଓ ନିଶ୍ଚୟାତ୍ମିକ ବୁଦ୍ଧିକୁ ଅବଲମ୍ବନ କରି କାମ ଜ୍ଞାନକୁ ଆବୃତ କରିଥାଏ; ଦେହାଭିମାନୀ ଜୀବକୁ ମୋହାଭିଭୂତ କରିଥାଏ ।

ଯେପରି ପର୍ବତ ଦୁର୍ଗ-ଆଦି ରାଜାମାନଙ୍କର ଅଧିଷ୍ଠାନକ୍ଷେତ୍ର, ସେହିପରି ଇନ୍ଦ୍ରିୟମାନେ ମଧ୍ୟ କାମର ପ୍ରଶସ୍ତ ଆଶ୍ରୟସ୍ଥଳ । ଇନ୍ଦ୍ରିୟଗୁଡ଼ିକ ବଶୀଭୂତ ହେଲେ କାମ ସ୍ୱତଃ ବିନଷ୍ଟ ହୋଇଯାଏ । ଇନ୍ଦ୍ରିୟ ବଶୀଭୂତ ହେଲେ ମନ ଓ ବୁଦ୍ଧି ମଧ୍ୟ କ୍ରମେ କ୍ରମେ ବଶୀଭୂତ ହୋଇଆସେ । କାରଣ, ବାହ୍ୟ ଇନ୍ଦ୍ରିୟପ୍ରବୃତ୍ତିଦ୍ୱାରା ହିଁ ମନ ଓ ବୁଦ୍ଧି ମଳିନ ହୋଇ ଅନର୍ଥ ଘଟାଇଥାନ୍ତି । କାମହିଁ ଜ୍ଞାନ ଓ ବିଜ୍ଞାନର ପଥ ରୁଦ୍ଧ କରି ମୁଖ୍ୟତଃ ପାପର ସୂଚନା କରିଥାଏ । ଅତଏବ କାମକୁ ମହାଅନର୍ଥକାରୀ ଅପରାଧୀଙ୍କ ଭଳି ଦଣ୍ଡ ପ୍ରଦାନ କରିବା ଓ ବିନାଶ କରିବା କର୍ତ୍ତବ୍ୟ । ତାହା ନ ହେଲେ ଭୋଗଦ୍ୱାରା କାମ ଶାନ୍ତ ହୁଏ ନାହିଁ ।

## ନିବୃତ୍ତି

କାମର ନିବୃତ୍ତି ହେବାକ୍ଷଣି ପୁରୁଷାର୍ଥ ସିଦ୍ଧ ହୋଇଥାଏ । ଅତଏବ ସମସ୍ତଙ୍କର କାମନିବୃତ୍ତି ନିମିତ୍ତ ଯତ୍ନର ସହିତ ଇନ୍ଦ୍ରିୟ-ସଂଯମ ଅଭ୍ୟାସ କରିବା ବିଧେୟ । ଇନ୍ଦ୍ରିୟ-ସଂଯମ ଓ ରିପୁ-ଦମନ କରି ନ ପାରିଲେ ଧର୍ମପଥରେ ଅଗ୍ରସର ହେବା ସୁଦୂରପରାହତ । ଯେଉଁମାନଙ୍କର ଇନ୍ଦ୍ରିୟ ଦମିତ ଓ ଚିତ୍ତ ଶମିତ ହୋଇନାହିଁ, ସେମାନେ ସର୍ବଶାସ୍ତ୍ରବିତ୍ ହେଲେ ମଧ୍ୟ ଘୋର ମୂର୍ଖ ।

ଆହାର, ନିଦ୍ରା, ମୈଥୁନ—ଏହି ତିନୋଟିଙ୍କ ମଧ୍ୟରେ କେବଳ ମୈଥୁନ ତ୍ୟାଗ କଲେ ଯେ ଯଥେଷ୍ଟ, ତାହା ନୁହେଁ । ବାଳକ ଓ ବୃଦ୍ଧଙ୍କର ମୈଥୁନ ନାହିଁ । ତାହାହେଲେ ସେମାନେ ତ ଯୋଗୀ ହୋଇଯାଆନ୍ତେ ? ପଶୁ ପୂରା ଆହାର କରେ, ପକ୍ଷୀ ପେଟ ପୂରାଇ ଖାଏ ଓ ଶୁଏ । ମନୁଷ୍ୟ ମଧ୍ୟ ଏହି ନିୟମରେ ଚାଲିଲେ ତାର ଆଉ ଅଧିକ କ'ଣ ହେଲା ?

ଆମୋଦଛଳରେ ମଧ୍ୟ କାମ, କ୍ରୋଧ ବା ମିଥ୍ୟାର ଆଶ୍ରୟ ନିଅ ନାହିଁ । କାରଣ, କୌତୂକଛଳରେ ଯାହା ଦୁଇ ଚାରିଦିନ କରିବ, ତାହା ତୁମର ଅଭ୍ୟାସ ବା ସଂସ୍କାରରେ ପରିଣତ ହୋଇଯିବ ।

ଅମୂଲ୍ୟ ମାନବ-ଜୀବନ ଲାଭ କରି ବାସନା କାମନାର ଦାସ ହୋଇ ପ୍ରଧାନ ଦାବିଗୁଡ଼ିକ ନଷ୍ଟ କରିଦିଅ ନାହିଁ; ପରମପଦରୁ ଭ୍ରଷ୍ଟ ହୁଅ ନାହିଁ ।

ଚିତ୍ତମଧ୍ୟରେ ଯେଉଁସବୁ ପ୍ରବୃତ୍ତି ଅଛି, ସେମାନଙ୍କୁ ଦମନ କରିବାକୁ ଚେଷ୍ଟା କରି ମୁଁ ଯଦି ଅକ୍ଷମ ହୁଏ, ସେଥିରେ ମୋର ଧର୍ମ ନଷ୍ଟ ହେବ ନାହିଁ । କେବଳ ଆତ୍ମା ମଳିନ ହେବ, ସ୍ଫୂର୍ତ୍ତିହୀନ ହେବ । ସମ୍ପୂର୍ଣ୍ଣ ଇଚ୍ଛାସହକାରେ ପାପାଚରଣ କଲେ ଅଧର୍ମ ହୁଏ । ସାଧନ କରିବା ସଙ୍ଗେ ସଙ୍ଗେ ଚେଷ୍ଟା କରିଯାଉଛି, ଏ ଅବସ୍ଥାରେ ଯଦି ପ୍ରବୃତ୍ତି ପ୍ରବଳ ହୁଏ, ସେଥିପାଇଁ ମୋର ଆଉ କି ବଳ ଅଛି ? ବାରମ୍ବାର ସଂଗ୍ରାମ କରିଯିବାକୁ ହେବ । ଯେତେଦିନ ସଂଗ୍ରାମ ଚାଲିଥିବ, ଆତ୍ମାକୁ ପାପ ଛୁଇଁପାରିବ ନାହିଁ । କେବଳ ଦୁର୍ବଳତା ହେତୁ ଆତ୍ମା ମଳିନତାପ୍ରାପ୍ତ ହୁଏ ।

କାମକୁ ମାୟା କୁହାଯାଏ । ସତ୍ତ୍ୱ, ରଜଃ ଓ ତମଃ—ଏହି ତିନୋଟି ଗୁଣ ମାୟାଠାରୁ ଉତ୍ପନ୍ନ । ଯେତେଦିନଯାଏ ତ୍ରିଗୁଣ ରହିବ, ଜୀବଉପରେ କାମ ଆଧିପତ୍ୟ କରିବ ହିଁ କରିବ । ଏଥିପାଇଁ ତ୍ରିଗୁଣାତ୍ମକ ତ୍ରିଦେବଙ୍କଠାରୁ ଆରମ୍ଭ କରି ସିଦ୍ଧ ଯୋଗୀମାନଙ୍କପର୍ଯ୍ୟନ୍ତ କାମକୁ ନଷ୍ଟ କରିଥାନ୍ତି ।

କାମ ଛାଡ଼ିବି, କ୍ରୋଧ ଛାଡ଼ିବି, ଲୋକେ ସାଧୁ କହିବେ—ଏପରି ଅଭିମାନ ସବୁଠାରୁ ବଡ଼ ଶତ୍ରୁ ।

ଚତୁର୍ଦ୍ୱାର ସଂଯମ କରିବା ଦରକାର ଅର୍ଥାତ୍ ହସ୍ତ, ବାକ୍, ଜଠର ଓ ଉପସ୍ଥ ସଂଯମ କରିବା ଆବଶ୍ୟକ । ଯେଉଁମାନଙ୍କର ଏହିସବୁ ଦ୍ୱାରା ରକ୍ଷିତ ହୋଇନାହିଁ, ସେମାନଙ୍କର ସମସ୍ତ କର୍ମ ବିଫଳ ହୋଇଯାଏ ।

ଯାହାଙ୍କଠାରେ ଯାହା ଅଛି, ସେହି ଲୋକ ତାହା ହିଁ ଲୋଡ଼ିଥାନ୍ତି; ଏହା ସ୍ୱାଭାବିକ । ତେଣୁ କାମିନୀ ଦେଖିଲେ କାମୁକ ବ୍ୟକ୍ତିଙ୍କର କାମୋଦ୍ରେକ ହୁଏ ।

ଦେହ ବୃଦ୍ଧ ହୁଏ; କିନ୍ତୁ ବୃତ୍ତିଗୁଡ଼ିକ ବୃଦ୍ଧ ହୁଅନ୍ତି ନାହିଁ । ତେଣୁ ବୃଦ୍ଧବ୍ୟକ୍ତି ମଧ୍ୟ କାମ, କ୍ରୋଧ ପ୍ରଭୃତି ରିପୁମାନଙ୍କ ବଶୀଭୂତ ହେବାର ଦେଖାଯାଏ ।

## ପ୍ରେମ

କାମ ଓ ପ୍ରେମ ଏକା କଥା । କାରମ ଉତ୍କର୍ଷ ପ୍ରେମ । ଯାହାଙ୍କର କାମ ନାହିଁ, ସେ କୌଣସି କାଳରେ ହେଲେ ପ୍ରେମର ଅଧିକାରୀ ହୋଇପାରିବେ ନାହିଁ । ତେଣୁ ନପୁଂସକ ବ୍ୟକ୍ତି ଯୋଗ, ଯାଗ ବା ଭଗବତ୍ ସାଧନର ଅଧିକାରୀ ହୋଇପାରନ୍ତି ନାହିଁ । କାରଣ, କାମହୀନ ବ୍ୟକ୍ତିଙ୍କର ହୃଦୟ ନୀରସ, ବନ୍ଧୁର; ସେଥିରେ ସଦ୍‌ବୃତ୍ତିର ଉନ୍ମେଷ ହୁଏ ନାହିଁ ।

କାମରେ ଅବସାଦ ଆସେ; କିନ୍ତୁ ପ୍ରେମରେ ଉତ୍ତେଜନା ବଢ଼େ। ସେ ଉତ୍ତେଜନା କିନ୍ତୁ ସୁଖପ୍ରଦ। କାମ ନଷ୍ଟ ହେଉ, ଏହା ଠିକ୍ ନୁହେଁ। କାମ ରହୁ, କିନ୍ତୁ ତ୍ରିଗୁଣାତୀତ ହୋଇ ରହିଥାଉ। ଉପାସନା, ସାଧନ ଭଜନ ଯାହା କିଛି ଅଛି, ତାହାସବୁ ଏହି କାମ। କିନ୍ତୁ ସେତେବେଳେ ଏହାର ନାମ ହୁଏ ପ୍ରେମ।

ସତ୍ତ୍ୱଗୁଣ ବୃଦ୍ଧି କର। କାମ ଅବସାଦ ଆଣି ତମୋଗୁଣ ବୃଦ୍ଧି କରେ ଓ ମାନବକୁ ଅଧଃପତିତ କରିପକାଏ। କାମ ଇନ୍ଦ୍ରିୟମାନଙ୍କଦ୍ୱାରା ପରିଚାଳିତ ହେବାରୁ ହୃଦୟରେ ଘନୀଭୂତ ହୋଇପାରେ ନାହିଁ। ଏଥିପାଇଁ ହୃଦୟ ଶୁଷ୍କ ଓ ନୀରସ ହୋଇଯାଏ; ପ୍ରେମର ବିକାଶ ହୁଏନାହିଁ।

ବୀର୍ଯ୍ୟରକ୍ଷାଦ୍ୱାରା ଶରୀର ନୀରୋଗ ହୁଏ ଏବଂ ସୁସ୍ଥିର ହୁଏ। ଯଦି କୌଣସି କାରଣରୁ ଶୁକ୍ରରକ୍ଷା ନ ହୁଏ, ତଦ୍ଦ୍ୱାରା ମୁକ୍ତିରେ ବ୍ୟାଘାତ ହୁଏ ନାହିଁ; ସାଧନପଥରେ ବିଘ୍ନ ଜାତ ହୁଏ। ଏଥିପାଇଁ ବୀର୍ଯ୍ୟରକ୍ଷା ନିତାନ୍ତ ପ୍ରୟୋଜନ। ପ୍ରାଣାୟାମ ଓ ବୀର୍ଯ୍ୟରକ୍ଷା କେବଳ ଶରୀର ଓ ମନକୁ ସୁସ୍ଥିର କରେ।

## ଆହାର

ଆହାର ସମ୍ବନ୍ଧରେ ସମୟ ଓ ପରିମାଣ ଠିକ୍ ରଖିବା ନିତାନ୍ତ ଦରକାର। ପରିମାଣ ଓ ସମୟ ପ୍ରତିଦିନ ଠିକ୍ ରହିଲେ ଶରୀରସମ୍ବନ୍ଧରେ କୌଣସି ଚିନ୍ତା ରହିବ ନାହିଁ।

ଭଜନ କର ଓ ଭୋଜନ ଛାଡ଼, କାମ କମିଯିବ। କାମ କମିଗଲେ ପ୍ରଥମେ ଯନ୍ତ୍ରଣା ଏତେ ଅଧିକ ହେବ ଯେ ତାହା ସହ୍ୟ କରିବା କଠିନ ହେବ। ମେରୁଦଣ୍ଡଟି କରତରେ କାଟିଲାପରି ଲାଗିବ; ପରେ କିନ୍ତୁ ଆନନ୍ଦ ଦେବ।

ମତ୍ସ୍ୟ ଆହାର କଲେ ତମୋଗୁଣ ବଢ଼ିଥାଏ; କାମ ବୃଦ୍ଧି ହୁଏ।

ଯେଉଁମାନଙ୍କର ସ୍ୱପ୍ନଦୋଷ ହୁଏ, ସେମାନେ ଶୟନକାଳରେ ଭଗବାନଙ୍କର ମାତୃବାଚକ ନାମ ଲେଖି ତକିଆତଳେ ରଖିଦେଇ ନିଦ୍ରା ଯିବେ। ଯେତେବେଳେ ଯାଏ ନିଦ୍ରା ନ ହେବ, ନାମ ଜପ କରିବ। ଶଯ୍ୟାରେ ତୁଳସୀପତ୍ର ରଖିବେ।

କାମନା ମାତ୍ରକେ ଦୁଃଖରୁ ଜାତ। ସୁତରାଂ, କାମନା ତ୍ୟାଗ ନ କଲେ ଆନନ୍ଦ ଲାଭ ହେବ ନାହିଁ। ସ୍ଥୁଳକାମନା ଅପେକ୍ଷା ସୂକ୍ଷ୍ମ-କାମନା ଆହୁରି ପ୍ରବଳ। ଏହା ସବୁ ଜୀବ-ହୃଦୟରେ ଅଲକ୍ଷିତ ଭାବରେ ନିହିତ ଥାଏ ବୋଲି ଏମାନଙ୍କର ଗତିବିଧି ବୁଝି ହୁଏ ନାହିଁ।

ନିମ୍ବପତ୍ରଦ୍ୱାରା ଉତ୍ତେଜନା କମିଯାଏ । ପ୍ରତ୍ୟହ ତିନିଗୋଟି କଅଁଳ ନିମ୍ବପତ୍ର ଚୋବାଇ ଖାଇ ଅଳ୍ପ ଜଳପାନ କଲେ ଭଲ ଫଳ ହୁଏ ।

କାମ-କାମନା ମନସ୍ଥିରତାର ପରିପନ୍ଥୀ । କେବଳ ମନର ବାହ୍ୟ ଭୋଗଉପକରଣ ସଂଗୃହୀତ ହେଲେ ଜୀବକୁ ସୁଖଶାନ୍ତି ମିଳେ ନାହିଁ । ଭୋଗ୍ୟ ଉପକରଣ ଯେତେ ଅଧିକ ମିଳିବ, ମନ ସେତିକି ଅସ୍ଥିର ହେବ । ତେଣୁ ଯେ କୌଣସି ଗୋଟିଏ ବାହ୍ୟବସ୍ତୁଉପରେ ମନର ଆସକ୍ତି ଥିଲେ ଯେତେ ଧ୍ୟାନ-ଧାରଣା କଲେ ମଧ୍ୟ ସେଥିରେ କେବେହେଲେ ଶାନ୍ତି ମିଳିବ ନାହିଁ । କାମନାରୂପ ଅଶୁଚିକୁ ପରିତ୍ୟାଗ କରି ଠାକୁରଙ୍କ ଘରକୁ ଯିବାକୁ ପଡ଼େ । ବାହ୍ୟଶୁଚି ସଙ୍ଗେ ସଙ୍ଗେ କାମନା-ମଳିନ ଅନ୍ତରକୁ ଶୁଦ୍ଧ କରି ସାଧନ କରିବାକୁ ହେବ ।

କାମନା ତ୍ୟାଗ କରି ଧ୍ୟାନଧାରଣା କରିବା ଦରକାର ବୋଲି ସଂସାରାଶ୍ରମ ତ୍ୟାଗ କରିବାକୁ ହେବ—ଏପରି ଉପଦେଶ କେବେହେଲେ ଦିଆଯାଇ ନାହିଁ । ଗୃହୀ, ସନ୍ନ୍ୟାସୀ ସମସ୍ତେ ମନ ସ୍ଥିର କରିବାନିମିତ୍ତ ସାଧନ ଅଭ୍ୟାସ କରିବା ବିଧେୟ । ସମସ୍ତଙ୍କୁ କାମନା-ବାସନା ତ୍ୟାଗ କରିବାକୁ ଉପଦେଶ ଦିଆଯାଇଛି । କେବେହେଲେ କର୍ମତ୍ୟାଗ କରିବାକୁ କୁହାଯାଇ ନାହିଁ ।

କାମ ଅପକାରୀ ନୁହେଁ । ଆମେ ତାହାର ସଦ୍‌ବ୍ୟବହାର ଜାଣୁ ନାହିଁ ବୋଲି ଯେତେ ଦୁର୍ଗତି । କାମକୁ ପ୍ରେମରେ ରୂପାନ୍ତରିତ କରାଯାଇପାରେ ।

ବ୍ରହ୍ମଚର୍ଯ୍ୟ ପାଳନଦ୍ୱାରା କାମ ଦମନ କରାଯାଏ । ବ୍ରହ୍ମଚର୍ଯ୍ୟର ପ୍ରକୃତ ଅର୍ଥ ବୁଝି ନିୟମ-ସଂଯମ ପ୍ରତିପାଳନ କରିବାକୁ ହେବ । ସର୍ବଦା ଶୁଚିସମ୍ପନ୍ନ ହେବା ନିତାନ୍ତ ଦରକାର । ସାତ୍ତ୍ୱିକ ଓ ପରିମିତ ଆହାର ମଧ୍ୟ କାମଜୟର ସହାୟକ । ନିୟମିତଭାବରେ ତ୍ରିସନ୍ଧ୍ୟା ଭଗବତ୍‌ଉପାସନା ଏକାନ୍ତ କର୍ତ୍ତବ୍ୟ । ଇନ୍ଦ୍ରିୟଚାଞ୍ଚଲ୍ୟକର ଦୃଶ୍ୟ ଦେଖିବା, ତଦନୁକୂଳ ଆଳାପ ଆଲୋଚନା କରିବା, ସେହିଭଳି ପୁସ୍ତକ ପାଠ କରିବା ଓ ଶ୍ରବଣ କରିବା ଆଦୌ ଉଚିତ ନୁହେଁ । ଏହି ପ୍ରକାରରେ ସର୍ବାଙ୍ଗପରାୟଣ ହେଲେ ଯାଇ ବ୍ରହ୍ମଚର୍ଯ୍ୟାରେ ପ୍ରତିଷ୍ଠିତ ହୋଇପାରିବ ।

ଯେଉଁସବୁ ଜାତି ଧ୍ୱଂସପଥରେ ଅତି ଦ୍ରୁତ ଧାବିତ ହେଉଛନ୍ତି, ଜନ୍ମନିରୋଧ କରିବା ପ୍ରବୃତ୍ତି ସେମାନଙ୍କଠାରେ ଜାଗିଉଠେ—ଏହା ନୀଚ ପ୍ରବୃତ୍ତି । ସଂଯମ ସାଧନା ବା କାମଜୟଦ୍ୱାରା ଜନ୍ମନିରୋଧ ସହଜରେ ସାଧିତ ହୁଏ ।

ଦେହାତ୍ମବାଦୀ ମାନବ ବହୁ ଜନ୍ମପର୍ଯ୍ୟନ୍ତ ଅବିଦ୍ୟାମୋହିତ ଥିବାରୁ ଆତ୍ମାର ଦେହସହିତ ସମ୍ମିଶ୍ରଣ ହୋଇଯାଇଛି । ତେଣୁ ଯାହାଙ୍କର ସ୍ତ୍ରୀ-ଦେହ, ସେ ନିଜକୁ ସ୍ତ୍ରୀ ମନେ କରିଥାନ୍ତି ଏବଂ ଯାହାଙ୍କର ପୁରୁଷ ଦେହ, ସେ ନିଜକୁ ପୁରୁଷ ମନେ କରନ୍ତି । ସାଧନାଦ୍ୱାରା ପରମହଂସତ୍ୱ ଲାଭ ନ ହେବାପର୍ଯ୍ୟନ୍ତ ସ୍ତ୍ରୀ-ପୁରୁଷଭାବ ତିରୋହିତ ହୋଇପାରିବ ନାହିଁ ।

ତ୍ୟାଗଦ୍ୱାରା ଭୋଗ କରାଯାଏ, ଆସକ୍ତିଦ୍ୱାରା ନୁହେଁ । ପ୍ରେମ ନିମିତ୍ତ କାମକୁ ତ୍ୟାଗ କରିବାକୁ ହେବ, ସୁଖନିମିତ୍ତ ଦୁଃଖ ତ୍ୟାଗ କରିବାକୁ ପଡ଼ିବ, ବଡ଼ ନିମିତ୍ତ ଛୋଟକୁ ତ୍ୟାଗ କରିବାକୁ ହେବ । ନିଜକୁ ପୂର୍ଣ୍ଣ କରିବା ନିମିତ୍ତ ତ୍ୟାଗ ଏକାନ୍ତ ଆବଶ୍ୟକ । ଖଣ୍ଡ ବା ସଂକୀର୍ଣ୍ଣତାପ୍ରତି ଆସକ୍ତିର ନାମ କାମ, ସମଷ୍ଟିପ୍ରତି ଆସକ୍ତିର ନାମ ପ୍ରେମ ।

ଜ୍ଞାନ ହିଁ ତପସ୍ୟାର ମୂଳ । ତାହାର ବାଧା ହେଉଛି କାମରିପୁ । ଅସଂଯତ ଚିତ୍ତରେ ସାମ୍ୟଭାବ ନଷ୍ଟ ହୁଏ । ତେଣୁ ବ୍ରହ୍ମଚର୍ଯ୍ୟ ବା ଆତ୍ମସଂଯମ ଦ୍ୱାରା ଜ୍ଞାନପଥର ବାଧା ଅପସାରିତ ହୋଇଥାଏ । ସତ୍ୟପ୍ରତି ଅକପଟ ଆକର୍ଷଣ ଏବଂ ପ୍ରବୃତ୍ତି ଦମନ କରିବାର ପ୍ରବଳ ଇଚ୍ଛା, ଏହି ଦୁଇଟି ଦୈବୀଶକ୍ତି ଯେଉଁଠାରେ ବିଦ୍ୟମାନ, ସିଦ୍ଧି ସେହିଠାରେ ଅନାୟାସଲଭ୍ୟ ।

କାମନା-ବାସନା ଉପରେ ଆଧିପତ୍ୟ କରିପାରିଲେ ହିଁ ସମସ୍ତ ଜଗତ୍ ଜୟ କରିପାରିବ । ତୁମର ସୂକ୍ଷ୍ମାତିସୂକ୍ଷ୍ମ ବାସନା କେବେହେଲେ କ୍ଷୁଦ୍ର ନୁହେଁ;—ଏହାହିଁ ଜଗତ୍‌ର ବୀଜ । ଗୋଟିଏ ବାସନା-ବୀଜରୁ ଗୋଟିଏ ବ୍ରହ୍ମାଣ୍ଡର ମଧ୍ୟ ସୃଷ୍ଟି ହୋଇପାରେ । ତେବେ ଯଦି କେହି ଜଗତକୁ ବଶୀଭୂତ କରିବାକୁ ଇଚ୍ଛା କରନ୍ତି, ତାହାହେଲେ ତାଙ୍କୁ ସଂସାରବୃକ୍ଷର ବୀଜରୂପୀ ବାସନାକୁ ନିଜର ଆୟତ୍ତାଧୀନରେ ରଖିବାକୁ ହେବ । ନୀଚ କାମନା ପରିତ୍ୟାଗ କଲେ ଉଚ୍ଚ ଭାବନା ମନରେ ଜାଗ୍ରତ ହୁଏ । ଅପରକୁ ସତ୍ୟ କଥା ଶୁଣାଇବାପୂର୍ବରୁ ପ୍ରଥମେ ନିଜକୁ ସେହି ସତ୍ୟବାଣୀ ଶୁଣାଅ; ତାହା ନ ହେଲେ ପ୍ରତାରିତ ହେବ ।

କାମ-ବାସନା ଶରୀରରେ ଓ ମନରେ ଗୋଟିଏ ଉତ୍ତେଜନା ସୃଷ୍ଟି କରେ । ସେତେବେଳେ ସେହି ଉତ୍ତେଜନାଟା ସୁଖକର ବୋଲି ବୋଧ ହୁଏ । ଏହା

ଏକପ୍ରକାର କୁ-ଅଭ୍ୟସ । କାମନାର ଭୋଗ ଗୋଟିଏ ଅତି ମନ୍ଦ ଅଭ୍ୟାସ । ଯେଉଁ କାମନାରେ ଉତ୍ତେଜନା ନାହିଁ ଅଥଚ ଆନନ୍ଦ ଅଛି, ତାହା ହିଁ ସ୍ୱରୂପାନନ୍ଦ ।

କାମ-ଉତ୍ତେଜନାରେ ଚିତ୍ତ ସଙ୍କୁଚିତ ହୋଇଯାଏ । ଚିତ୍ତରେ ଏକପ୍ରକାର ଜ୍ୱାଳା ସୃଷ୍ଟି ହୁଏ । ଭୋଗ୍ୟବସ୍ତୁ ଦେଖିଲେ ଯେ ତାକୁ ଭୋଗ କରିବାକୁ ହେବ, ଏଭଳି ଭ୍ରମଧାରଣାରୁ ସାଧକଙ୍କର ପତନ ହୁଏ । ତେଣୁ ସ୍ୱସୁଖବାଞ୍ଛା ତ୍ୟାଗ କରି ଅପରର ଆନନ୍ଦରେ ସୁଖୀ ହେବା ହିଁ ଯଥାର୍ଥ କାମଦମନ । ଉକ୍ତଭାବରେ ସମଷ୍ଟି-ଆନନ୍ଦରେ ଆନନ୍ଦିତ ହୋଇ ଅମୃତତ୍ୱ ଲାଭ କରିବାକୁ ହେବ । ନିଜକୁ ଶିବସ୍ୱରୂପ ବୋଲି ଜ୍ଞାନ କଲେ ଜଗତର ବିଷ ମଧ୍ୟ ତୁମକୁ ଅମୃତ ବୋଲି ବୋଧ ହେବ । କାମାଦି ରିପୁଜୟର ଏହା ହିଁ ଯଥାର୍ଥ ପଥ । ଏହି ଉଦ୍ଦେଶ୍ୟରେ ଇନ୍ଦ୍ରିୟଦମନ କରିବାପାଇଁ ଶାସ୍ତ୍ରର ନିର୍ଦ୍ଦେଶ । ଭୋଗ-ସ୍ମୃତିରେ ଇନ୍ଦ୍ରିୟମାନେ ବିକଳ ଓ ଉତ୍ତେଜିତ ହୋଇଉଠନ୍ତି । ତେଣୁ କାମକୁ ବଶୀଭୂତ ବା ଜୟ କରି ମୃତ୍ୟୁଞ୍ଜୟ ହୋଇ ଦ୍ରଷ୍ଟା-ଆସନରେ ବସି ଜଗତ୍‌ପ୍ରତି ଦୃଷ୍ଟିପାତ କଲେ ଦେଖିବ, ସବୁ ଆନନ୍ଦମୟ ବୋଲି ବୋଧ ହେବ ।

ଯେଉଁମାନେ କର୍ମ୍ମୀ, ସେମାନଙ୍କର କର୍ମ୍ମମଧ୍ୟରେ ହଠାତ ଅବସାଦ ଆସିଯାଏ । କାମ କରିବାକୁ ଆଉ ମନ ବଳେ ନାହିଁ । ଉତ୍ସାହ, ଆନନ୍ଦ ଲୋପ ପାଇଯାଏ । ଏହାର ମୂଳ କାରଣ ହେଉଛି ଅଭିମାନ ଓ କାମନା । କୌଣସି କୁ-ଅଭିପ୍ରାୟ ନେଇ କାର୍ଯ୍ୟ କରିବାକୁ ଗଲେ ଏଭଳି ବିପଦ ଘଟେ । ଅଭିମାନବଶରୁ ଯେ କର୍ମ କରୁଥିଲେ, ଅଭିମାନରେ ଆଘାତ ଲାଗିଲେ ସେ କର୍ମ ତ୍ୟାଗ କରିଦିଅନ୍ତି । ତେଣୁ ଅନାସକ୍ତ ହୋଇ କର୍ମ କରିଯିବା ଦରକାର ।

କେବଳ ନିଜର ଭାବନା ନେଇ କେବେହେଲେ ରହିବନାହିଁ । ଜଗତ୍‌କଥା ଟିକିଏ ଚିନ୍ତା କର । ଅନେକଙ୍କର ଧାରଣା, ଜଗତ୍‌ର ଉପକାର କରିବା ସମସ୍ତଙ୍କର କର୍ତ୍ତବ୍ୟ, କିନ୍ତୁ ଏହା ହେଲେ ମଧ୍ୟ ଆମର ସେ ଶକ୍ତି ନାହିଁ ଅଥଚ ଜଗତର ଶୁଭଚିନ୍ତା କଲେ ତା'ଫଳରେ ସାଧକଙ୍କର ବିଶେଷ ଉପକାର ହେବା ନିଶ୍ଚିତ । ତୁମେ ସାକ୍ଷାତ୍‌ଭାବରେ କାହାର କିଛି ଉପକାର କରି ନ ପାରିଲେ ମଧ୍ୟ ସମସ୍ତଙ୍କ କଲ୍ୟାଣ କାମନା କରିବାରେ ତ ତୁମର କିଛି ବାଧା ନାହଁ! ଯେ ଅପରର କଲ୍ୟାଣ କାମନା କରନ୍ତି, ସେ ମଧ୍ୟ ସେ କଲ୍ୟାଣରେ ଅଂଶଭାଗୀ ହୁଅନ୍ତି । କାରଣ ନିଜେ

କଲ୍ୟାଣମୟ ନ ହେଲେ ଅପରର କଲ୍ୟାଣ କାମନା କରିବା କେବେହେଲେ ସମ୍ଭବପର ହୁଏ ନାହିଁ। ତେଣୁ କଲ୍ୟାଣ-କାମନାକାରୀଙ୍କର ପ୍ରଭୂତ ମଙ୍ଗଳ ସାଧିତ ହୋଇଥାଏ। ଯାହାଙ୍କପାଇଁ କଲ୍ୟାଣ କାମନା କରିବ, ସେଥିରେ ମଧ୍ୟ ତାଙ୍କର ବିଶେଷ ଉପକାର ହେବ। ବିଶ୍ୱନାଥ ସର୍ବଦା ଜଗତ୍‌ର କଲ୍ୟାଣ କାମନା କରୁଛନ୍ତି। ତେଣୁ ଆମେ ତାଙ୍କ ସହିତ ଏକୀଭୂତ ହୋଇ କଲ୍ୟାଣ କାମାନ କଲେ ଆମର ନିଶ୍ଚୟ କଲ୍ୟାଣ ହେବ, ଆମେସମସ୍ତେ କଲ୍ୟାଣମୟ ହୋଇଯିବୁ। ଆମ ମାଧ୍ୟମରେ ଭଗବତ୍‌ପ୍ରେରଣା ଜାଗ୍ରତ ହେବ। ଏହା ହିଁ ଜଗତ୍‌ର ସତ୍ୟ ଓ ନିତ୍ୟ ଉପକାର।



# ସୁଖ
## ତ୍ରିବିଧ ସୁଖ

ଏହି ପରିଦୃଶ୍ୟମାନ ଜଗତ୍‌ରେ ଉଚ୍ଚ ଶ୍ରେଣୀର ଜୀବ ମନୁଷ୍ୟଠାରୁ ଆରମ୍ଭ କରି ଅତି ନିମ୍ନଶ୍ରେଣୀର ଜୀବ କୀଟ-ପତଙ୍ଗାଦିଙ୍କ ପର୍ଯ୍ୟନ୍ତ ଏପରି କି ବୃକ୍ଷ ଲତାଦି ମଧ୍ୟ ସୁଖନିମିତ୍ତ ସର୍ବଦା ବ୍ୟସ୍ତ । ସୁଖ-ଆଶା ସମସ୍ତେ କରନ୍ତି—କିନ୍ତୁ ଏ ସୁଖ କ'ଣ ? ସୁଖୀ କାହାକୁ ଦେଖିଛ କି ? ଯେ ଟଙ୍କା-ପଇସା ପାଇଲେ ସୁଖୀ ହେବେ ବୋଲି ବିବେଚନା କରନ୍ତି; ସେ ତାହା ପାଇଲେ ମଧ୍ୟ ସୁଖୀ ହୋଇପାରନ୍ତି ନାହିଁ । ଯେ ମାସିକ ଦଶ ଟଙ୍କା ପାଆନ୍ତି, ସେ ପନ୍ଦର ଟଙ୍କା ପାଇଲେ ମଧ୍ୟ ସୁଖୀ ନ ହୋଇ ପଞ୍ଚବିଂଶତି ମୁଦ୍ରା ଆଶାରେ ଉଦ୍‌ବିଗ୍ନ ହୋଇ ଅସୁଖୀ ହୁଅନ୍ତି । ଦରିଦ୍ରମାନେ ଲୋଡ଼ନ୍ତି ସେମାନେ ମଧ୍ୟବିତ୍ତ ହେବେ ଓ ମଧ୍ୟବିତ୍ତମାନେ ଆଶା କରନ୍ତି, ସେମାନେ ଧନୀ ହେବାପାଇଁ, ଧନୀ ରାଜା ହେବାକୁ, ରାଜା ବ୍ରହ୍ମା ହେବାପାଇଁ ଇଚ୍ଛା କରନ୍ତି; ବ୍ରହ୍ମା ବିଷ୍ଣୁପଦ ଲୋଡ଼ନ୍ତି–ତେଣୁ ସୁଖ କାହିଁ ?

ଧନ କହ, ଜନ କହ, ଐଶ୍ୱର୍ଯ୍ୟ କହ, ରୂପ ବୋଲ, ଗୁଣ ବୋଲ ସବୁଠାରେ ଏହି ଏକା ପ୍ରକାର ଅତୃପ୍ତି । ସ୍ୱର୍ଗ, ମର୍ତ୍ତ୍ୟ, ରସାତଳର ଅଧୀଶ୍ୱର ରାବଣ ମଧ୍ୟ ଚନ୍ଦ୍ରିକାଶାଳିନୀ, ବସନ୍ତଯାମିନୀ ମଧ୍ୟଭାଗରେ ନିଜର ଯୂଥିକା ଶଯ୍ୟା ଏବଂ ଯୌବନସୌନ୍ଦର୍ଯ୍ୟବତୀ ଦେବକାମିନିବୃନ୍ଦଙ୍କୁ ପରିତ୍ୟାଗ କରି ସୀତାଙ୍କ ରୂପ ଦେଖି ସୁଖୀ ହେବାନିମିତ୍ତ ଅଶୋକବନକୁ ଦଉଡ଼ିଥିଲା । ସୀତାଙ୍କୁ ପାଇଥିଲେ ହୁଏତ ଦିନେ ଦୁଇଦିନପରେ ତାହା ମଧ୍ୟ ଅସୁଖର କାରଣ ହୋଇଥାନ୍ତା । ସୁଖର ଉତ୍କଟ ଲାଳସାରେ ରାବଣର ଅସଂଯତ ଚିତ୍ତ ନାନାଆଡ଼େ ଘୂରିବୁଲୁଥିଲା । ଦିଲ୍ଲୀର ପ୍ରବଳ ପ୍ରତାପୀ ମୋଗଲ ବାଦଶାହଗଣ ମଣିମୟ ମୟୂରସିଂହାସନରେ ବସି ମଧ୍ୟ ସୁଖୀ ହୋଇପାରି ନ ଥିଲେ । ତେବେ ସୁଖ କାହାକୁ କହନ୍ତି ?

ସୁଖ ତିନି ପ୍ରକାର । ଯେଉଁ ସୁଖରେ ଅଭ୍ୟାସ ବଶରୁ ଆସକ୍ତ ହେବାକୁ ହୁଏ ଏବଂ ଯାହା ଲାଭ କଲେ ଦୁଃଖର ଅବସାନ ହୋଇଥାଏ, ଯାହା ଆରମ୍ଭରୁ ବିଷପରି ଏବଂ ପରିଣାମରେ ଅମୃତସଦୃଶ ପ୍ରତୀୟମାନ ହୁଏ, ଯଦ୍ଦ୍ୱାରା ଆତ୍ମବିଷୟଣୀ

ବୁଦ୍ଧିର ପ୍ରସନ୍ନତା ଜନ୍ମେ; ତାହା ସାତ୍ତ୍ୱିକ ସୁଖ ନାମରେ ଅଭିହିତ । ବିଷୟ ଓ ଇନ୍ଦ୍ରିୟାଦିର ସଂଯୋଗବଶରୁ ଯାହା ପ୍ରଥମେ ଅମୃତତୁଲ୍ୟ ଓ ପରିଶେଷରେ ବିଷବତ୍ ପ୍ରତୀୟମାନ ହୁଏ, ତାହା ରାଜସ ସୁଖ । ଯାହା ଆରମ୍ଭରେ ଓ ପରିଣାମରେ ଆତ୍ମାର ମୋହ ସମ୍ପାଦନ କରେ, ଯାହା ନିଦ୍ରା, ଆଳସ୍ୟ ଓ ପ୍ରମାଦରୁ ସମୁତ୍ଥିତ, ତାହା ତାମସିକ ସୁଖ । ଏହି ତ୍ରିବିଧ ସୁଖ ପ୍ରକୃତ ସୁଖଠାରୁ ସ୍ୱତନ୍ତ୍ର । ସାତ୍ତ୍ୱିକ, ରାଜସିକ, ତାମସିକ ଏଗୁଡ଼ିକ ସୁଖର ବିଶେଷଣ । ଅତଏବ ବିଶେଷଣହୀନ କେବଳ ବିଶେଷ୍ୟ ବା ନିରବଚ୍ଛିନ୍ନ ସୁଖ ଅଛି । ଜଗତ୍‌ର ପ୍ରତି ଜୀବ ସେହି ସୁଖନିମିତ୍ତ ବ୍ୟସ୍ତ ଓ ଲାଳାୟିତ କିନ୍ତୁ ତୃଷାର୍ତ୍ତ ଜୀବ ଯେପରି ମରୀଚିକାପ୍ରତି ଜଳଭ୍ରମରେ ଧାବମାନ ହୁଏ, ସମସ୍ତେ ସେହିପରି ସୁଖ-ଆଶାରେ ଧାବିତ ହୁଅନ୍ତି । ଜୀବମାତ୍ରେ ସୁଖସ୍ପୃହାର ଅଧୀନ । ଦାତା ସୁଖନିମିତ୍ତ ଦାନ କରୁଛନ୍ତି, ଗ୍ରହୀତା ସୁଖନିମିତ୍ତ ହାତ ପତାଉଛନ୍ତି । ରାଜରାଜେଶ୍ୱର ରାଜପ୍ରାସାଦରୁ ଉଚ୍ଚତମ ଆସନରେ ଆସୀନ ହୋଇ ସୁଖନିମିତ୍ତ ମଥାରେ ମୁକୁଟ ପିନ୍ଧୁଛନ୍ତି । ରାଜପଥର କାଙ୍ଗାଳ ମଧ୍ୟ ପର୍ଣ୍ଣକୁଟୀରରେ ବସି ସୁଖଆଶାରେ ତୃଣଶଯ୍ୟା ରଚନା କରୁଅଛି ।

## ସୁଖ କାହିଁ ?

କେହି ସୁଖପିପାସାରେ ବୋତଲସ୍ଥ ଦ୍ରବ୍ୟବହ୍ନିଆଡ଼କୁ ଦୃଷ୍ଟିପାତ କରୁଅଛି ଏବଂ ପୃଥିବୀର ଯାବତୀୟ ରୂପ, ରସ ଓ ବିଳାସ ଯେପରିକି ଗୋଟିଏ ଶ୍ୱାସ ଓ ଗୋଟିଏ ଗ୍ରାସରେ ଉଦରସ୍ଥ କରି ଆପଣାର ଦୁସ୍ତର ବାସନାର ପରିତୃପ୍ତି କରିବ ବୋଲି ପାଗଳ ହେଉଛି । ପୁଣି ସର୍ବଜନ-ହିତୈଷି ସାଧୁ ସୁଖତୃପ୍ତିର ଅଜ୍ଞାତ ଅନୁଶାସନରେ ଦୀନଦୁଃଖୀମାନଙ୍କର ଦୁଃଖମୋଚନ ଚିନ୍ତାରେ ବୁଡ଼ିରହୁଛନ୍ତି । ଅଥବା ନିଜ ଭୋଜ୍ୟ ଅନ୍ନର ଅଂଶ ଅନ୍ୟକୁ ଦେଉଛନ୍ତି । ପ୍ରୀତି ଓ କୃତଜ୍ଞତାର ରସାସ୍ୱାଦରେ ଦୁହେଁ ସକଳ ଭାବନା ଭୁଲିଯାଉଛନ୍ତି । ତାହାହେଲେ ସୁଖୀ କିଏ ? ସୁଖ କାହିଁ ?

ସେଦିନ ଯେଉଁ କୁସୁମକାନ୍ତ ଶିଶୁକୁ କୋଳରେ ଧରି ତାର ମୃଦୁ ମଧୁର ହାସ୍ୟାଧର ଦର୍ଶନ କରି ପିତାକୁ ଆନନ୍ଦରେ ବିହ୍ୱଳ ହେବାରେ ଦେଖିଥିଲି, ସହସା ଦିନେ ବାଟରେ ଯାଉ ଯାଉ ଦେଖିଲି, ସେହି ଶିଶୁର ମୃତଦେହ ବକ୍ଷ ଉପରେ ରଖି ଚକ୍ଷୁଜଳରେ ବକ୍ଷ ଭସାଇ ଦେଇ ସେହି ପିତା ଶ୍ମଶାନ ଅଭିମୁଖରେ ଚାଲିଛନ୍ତି ।

ଆଜି ବରବେଶରେ ବିବାହବାଜଣା ମଧ୍ୟରେ ଜଗତ୍‌କୁ ସୁଖମୟ ଦେଖି ଯେ ବିବାହ କରିବାକୁ ଯାଉଛି, ଦୁଇ ବରଷପରେ ହୁଏତ ସେହି ଯୁବକ ନିଜର ସ୍ତ୍ରୀକୁ

ଅନ୍ୟାଭିଳାଷିଣୀ ଦେଖି ସଂସାରରୁ ବିଦାୟ ନେବାନିମିତ୍ତ ଅଭିଳାଷ କରୁଛନ୍ତି। ଆଜି ଯେ ଅପରିମିତ ଆହାର କରୁଛନ୍ତି, କାଲି ସେ ଅମ୍ଳ-ଅଜୀର୍ଣ୍ଣରେ ଜୀର୍ଣ୍ଣ-ଶୀର୍ଣ୍ଣ ହୋଇ ହତାଶବ୍ୟଞ୍ଜକ ଦୀର୍ଘଶ୍ୱାସରେ ଅନୁତପ୍ତ ହେଉଛନ୍ତି। ତେଣୁ କହୁଥିଲି, ସୁଖ କେଉଁଠାରେ ?

ବିଷୟେନ୍ଦ୍ରିୟ ସଂଯୋଗଜନିତ ମନର ଏକପ୍ରକାର ବିକାରକୁ ସୁଖ କୁହାଯାଏ, କିନ୍ତୁ ସଂସାରର ସବୁ କ୍ଷଣଭଙ୍ଗୁର।

ଯେଉଁ ରାଜ୍ୟରେ ନିବୃତ୍ତିକୁ ସଙ୍ଗରେ ରଖି ଉତ୍ପତ୍ତି ଦେଖାଦିଏ, ମୃତ୍ୟୁକୁ ସଙ୍ଗରେ ଧରି ଜନ୍ମ ଆସେ, ସେଠାରେ ସୁଖ ଯେ ପରିଣାମରେ ଦୁଃଖ, ଏଥିରେ ବିଚିତ୍ରତା କଅଣ ? ଫଳରେ ସାଂସାରିକ ସୁଖର ପରିଣାମ ଦୁଃଖର ଜନନୀ। ଏଥିରେ ସ୍ଥାୟୀ ସୁଖ ହୋଇ ନ ପାରେ। ମୁସଲମାନ କହ, ଖ୍ରୀଷ୍ଟିୟାନ୍ କହ, ଜୈନ କହ, ବୌଦ୍ଧ କହ, ସମସ୍ତଙ୍କର ଉଦ୍ଦେଶ୍ୟ ସୁଖଲାଭ। ସୁଖହିଁ ଜୀବନର ଆଶା ଓ ସୁଖହିଁ ଜୀବର ଆକାଂକ୍ଷା।

## ସୁଖ ଏକମାତ୍ର ଲକ୍ଷ୍ୟବସ୍ତୁ

ଜଗତ୍‌ରେ ଏପରି ଦ୍ୱିତୀୟ ବସ୍ତୁ କେହି ଖୋଜି ପାଇବେ ନାହିଁ, ଯାହାପାଇଁ କ୍ଷୁଦ୍ରକୀଟରୁ ଆରମ୍ଭ କରି ସର୍ବଶ୍ରେଷ୍ଠ ପ୍ରାଣୀ ମାନବପର୍ଯ୍ୟନ୍ତ ଲାଳାୟିତ। ସଦ୍ୟଜାତ ଶିଶୁଠାରୁ ଆରମ୍ଭ କରି ସ୍ଥବିର ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ସମାନ ଭାବରେ ଗୋଟିଏ ବସ୍ତୁପାଇଁ ଅଭିଳାଷୀ। ସେ ବସ୍ତୁଟି ସୁଖ। ଅନୁସନ୍ଧାନ କଲେ ଦେଖାଯାଏ, ଏକଛତ୍ରାଧିପତି ସମ୍ରାଟଙ୍କ ଠାରୁ କୁଟୀରବାସୀ ଭିଖାରି ପର୍ଯ୍ୟନ୍ତ ସମସ୍ତେ ଆଶା-ଆକାଂକ୍ଷାର ତୀବ୍ର ଦଂଶନରେ ନିୟତ ଅସ୍ଥିର। ଧନଜନରେ, ରୂପ-ଐଶ୍ୱର୍ଯ୍ୟରେ, ଖ୍ୟାତି-ପ୍ରତିପତ୍ତିରେ, କାହିଁରେ ହେଲେ ମନୁଷ୍ୟ ତୃପ୍ତିଲାଭ କରିପାରେ ନାହିଁ। କେହି ଗୋଟିଏ ବିଷୟରେ ଟିକିଏ ସୁଖୀ ହେଲେ ମଧ୍ୟ ଅନ୍ୟ ପାଞ୍ଚଗୋଟି ବିଷୟରେ ନିରନ୍ତର ମନକଷ୍ଟରେ କାଳ କଟାଇଥାନ୍ତି। କାହାର ବିଷୟ-ସମ୍ପତ୍ତି, ଖ୍ୟାତି-ପ୍ରତିପତ୍ତିର ଅଭାବ ନାହିଁ; କିନ୍ତୁ ପୁତ୍ରମୁଖଦର୍ଶନ-ଅଭାବରେ ତାଙ୍କର ସକଳ ସୁଖ ନିରାନନ୍ଦରେ ପରିଣତ ହେଉଅଛି। ଯାହାଙ୍କର ପୁତ୍ର-ପୌତ୍ରାଦିର ଅଭାବ ନାହିଁ, ସେ ପ୍ରାତଃକାଳରେ ଉଠି ସେମାନଙ୍କୁ କଅଣ ଖାଇବାକୁ ଦେବେ, ଏହି ଭାବନାରେ ମ୍ରିୟମାଣ। ବନ୍ଧ୍ୟାନାରୀ ପୁତ୍ର-ଅଭାବରେ ନିଜକୁ ଶତ ଧିକ୍‌କାର ଦେଉଛି, ପୁଣି ପୁତ୍ରବତୀ ଗୁଣଧର ପୁତ୍ରମାନଙ୍କ ବ୍ୟବହାରରେ ନିୟତ ମୃତ୍ୟୁକାମନା

କରୁଅଛି । କେହି କେହି ସବୁ ବିଷୟରେ ସୌଭାଗ୍ୟବାନ୍ ହୋଇ ମଧ୍ୟ ରୋଗଯନ୍ତ୍ରଣାରେ ଛିନ୍ନକଣ୍ଠ କପୋତୀପରି ଛଟପଟ ହେଉଛନ୍ତି । ତେଣୁ କହୁଥିଲି, ସୁଖୀ କିଏ ?

## ଦୁଃଖର ନିବୃତ୍ତି

ଜଣେ ସଂସାରର ସବୁ ପ୍ରକାର ସୁଖରେ ସୁଖୀ ହୋଇ ମଧ୍ୟ ସେ ଚିରଦିନ ପାଇଁ ସୁଖୀ ହୋଇପାରନ୍ତି ନାହିଁ । ଜୀବ ଲୋଡ଼େ ନିରବଚ୍ଛିନ୍ନ ସୁଖ । ଦୁଃଖର ଆତ୍ୟନ୍ତିକ ନିବୃତ୍ତି କରି ସେ ପୂର୍ଣ୍ଣସୁଖର ଆଶା କରେ; କିନ୍ତୁ ମାନବୀୟ ଉପାୟ ଦ୍ୱାରା ଦୁଃଖର ଆତ୍ୟନ୍ତିକ ନିବୃତ୍ତି ହୁଏ ନାହିଁ, ଅର୍ଥାତ୍ ଔଷଧାଦି ପ୍ରୟୋଗରେ ରୋଗାଦିର ବିନାଶ ଓ ଧନାଦି ପ୍ରାପ୍ତିରେ ଚିତ୍ତରେ ଶାନ୍ତି ସଂପୂର୍ଣ୍ଣ ଭାବରେ ଆସେ ନାହିଁ । ଔଷଧଦ୍ୱାରା ରୋଗ ଆରୋଗ୍ୟ ସବୁ ସ୍ଥାନରେ ହୁଏ ନାହିଁ; ହେଲେ ମଧ୍ୟ ପୁନରାୟ ରୋଗ ଦେଖାଦିଏ । ଧନାଦି ଦ୍ୱାରା ଅଭାବଯନ୍ତ୍ରଣା ବିଦୂରୀତ ହୁଏ ନାହିଁ, ଅଥବା ସାମୟିକ ବିଦୂରୀତ ହୋଇ ପୁନରାୟ ସମଧିକ ଦୁଃଖ ଉପସ୍ଥିତ ହୁଏ । ପୁତ୍ର ଜାତ ନ ହେଲେ ଦୁଃଖ, ହେଲେ ତା'ର ଶରୀର ନୀରୋଗ ରହିବା ଆବଶ୍ୟକ, ପୁଣି ତା'ର ପ୍ରାର୍ଥନା ପୂରଣ କରିବା ଦରକାର; ତା'ର ସ୍ୱଭାବ ଚରିତ୍ର ଉତ୍ତମ କରିବା ଦରକାର । ଏହିସବୁର ଅଭାବ ଘଟିଲାମାତ୍ରେ ଦୁଃଖର ଉତ୍ପତ୍ତି ହୁଏ । ଏସବୁ ଛାଡ଼ିଦେଲେ ମଧ୍ୟ ତା'ର ମରଣ-ଆଶଙ୍କା, ଭବିଷ୍ୟତ ବିପଦ-ଆଶଙ୍କା ପ୍ରଭୃତି ଥାଏ ।

ଲୌକିକ କୌଣସି ଉପାୟ ଦ୍ୱାରା ଦୁଃଖର ନିବୃତ୍ତି ହୁଏ ନାହିଁ । ଆମେ ଯେ ସମୟ ସମୟରେ ନିବୃତ୍ତି ହେଲା ବୋଲି ମନେ କରୁ, ସେହି ନିବୃତ୍ତି ଦୁଃଖର ଅନୁସରଣ କରିଥାଏ; କିନ୍ତୁ ମନୁଷ୍ୟ କଅଣ ଲୋଡ଼େ ଦୁଃଖ ଫେରିଆସୁ ? ଏହା ତାର ଇଚ୍ଛା ନୁହେଁ । ମନୁଷ୍ୟର ଇଚ୍ଛା, ଦୁଃଖର ଏକାବେଳକେ ତିରୋଧାନ ଓ ନିରବଚ୍ଛିନ୍ନ ସୁଖର ଆବିର୍ଭାବ । ସୁଖ ଲାଭ କରି କୃତକୃତାର୍ଥ ହେବାକୁ ହେଲେ ସର୍ବାଗ୍ରେ ସୁଖର ସ୍ୱରୂପ ଜାଣିବା ଆବଶ୍ୟକ । ଏକମାତ୍ର ସୁଖ ହିଁ ଜଗତର ଚେତନ-ଅଚେତନ ସମସ୍ତ ଜୀବଙ୍କର ଅଭିଳଷିତ ବସ୍ତୁ । ଜଗତର ସମସ୍ତେ ସୁଖକାମନାରେ କାର୍ଯ୍ୟ କରିଥାନ୍ତି । ଅତଏବ ସୁଖ ହିଁ ପ୍ରୟୋଜନ; କିନ୍ତୁ ସୁଖର ସ୍ୱରୂପ ଜାଣିବା ଆବଶ୍ୟକ ।

## ସୁଖଲାଭ

ସୁଖର ଅର୍ଥ–ସୁ=ଉତ୍ତମ+ଖ (ଜ୍ଞାନର) ଇନ୍ଦ୍ରିୟ—ଇନ୍ଦ୍ରିୟ ଆତ୍ମାର ଶକ୍ତିବିଶେଷ। ଆତ୍ମଶକ୍ତି ଓ ଜ୍ଞାନର ସ୍ଫୁର୍ତ୍ତି, ତୃପ୍ତି ଓ ସାମଞ୍ଜସ୍ୟ ହିଁ ସୁଖ।

ବର୍ତ୍ତମାନ ଦେଖିବାକୁ ହେବ, କିପରି ଏହି ସୁଖ ଲାଭ ହୋଇପାରିବ ? ଏ ସଂସାରରେ କେହି କେବେ ନିଜର ବୁଦ୍ଧିର ଅଭାବ ଅଛି ବୋଲି ମନେ କରନ୍ତି ନାହିଁ। ସମସ୍ତେ ନିଜ ନିଜକୁ ମହାବୁଦ୍ଧିମାନ୍ ବୋଲି ଜାଣନ୍ତି; କିନ୍ତୁ ବୁଦ୍ଧିମାନ୍ ବ୍ୟକ୍ତି ତ ସୁଖୀ ନୁହଁନ୍ତି! ଧନ, ଯଶଃ ସମସ୍ତଙ୍କର ଅଛି। କିଏ ଭଲ ଚଟି ଯୋତା ତିଆରି କରିପାରେ ବୋଲି ଯଶ ପାଏ, କାହାର ଡକାୟତି-ସମ୍ବନ୍ଧରେ ମଧ୍ୟ ଅନେକ ପ୍ରଶଂସା ଶୁଣାଯାଏ। କିନ୍ତୁ ଅମୁକ ଲୋକ ସୁଖୀ ବୋଲି କେହି ଆନନ୍ଦ ପ୍ରକାଶ କରୁଥିବାର ଶୁଣାଯାଏ ନାହିଁ। ସମସ୍ତେ ସୁଖବାଞ୍ଛା କରନ୍ତି; କିନ୍ତୁ ସେହି ସୁଖ ଧର୍ମରୁ ହିଁ ସମ୍ଭବ ହୁଏ।

ସୁଖ ବାଞ୍ଛତି ସର୍ବୋହି ତଚ୍ଚ ଧର୍ମସମୁଦ୍ଭବମ୍।
ତସ୍ମାଦ୍ଧର୍ମଃ ସଦା କାର୍ଯ୍ୟଃ ସର୍ବବର୍ଣ୍ଣୈଃ ପ୍ରଯତ୍ନତଃ॥

ଅତଏବ ସବୁ ପ୍ରକାର ଯତ୍ନସହିତ ସମସ୍ତଙ୍କୁ ଧର୍ମାଚରଣ କରିବାକୁ ହେବ। ଧର୍ମାଚରଣରେ ଇନ୍ଦ୍ରିୟ ଶକ୍ତିର ସମ୍ୟକ୍ ସ୍ଫୁର୍ତ୍ତି, ତୃପ୍ତି ଓ ସାମଞ୍ଜସ୍ୟ ସାଧିତ ହୋଇ ସର୍ବବିଧ ଜଗତ୍‌ର ଯଥାର୍ଥ ତତ୍ତ୍ୱରୂପୀ ଆତ୍ମାକୁ ଉପଲବ୍ଧି କଲେ ଯାଇ ଆତ୍ମାର ସୁଖ ହୁଏ। ସେହି ସୁଖ ସ୍ଥାୟୀ।

ସୁଖପାଇଁ ସମସ୍ତେ ଲାଳାୟିତ। ସେମାନେ ଯେଉଁ କାର୍ଯ୍ୟ କରନ୍ତି, ଏକମାତ୍ର ସୁଖଲାଭ ତାହାର ଉଦ୍ଦେଶ୍ୟ। କିନ୍ତୁ ଦୁଃଖର ବିଷୟ ହେଉଛି—ଯେ ପ୍ରକୃତ ସୁଖ କେଉଁଠାରେ ଏବଂ କିପରି, ଏହା ଅଳ୍ପ କେତେ ଜଣ ତତ୍ତ୍ୱଜ୍ଞ ମହାପୁରୁଷଙ୍କ ଭିନ୍ନ ଅନ୍ୟ କେହି ଅବଗତ ନୁହଁନ୍ତି। ସଂସାର ସୁଖାସକ୍ତ କ୍ଷୁଦ୍ର ଚିତ୍ତ ବ୍ୟକ୍ତିସକଳ ଅଜ୍ଞାନତା ହେତୁ ଧନ ଓ ପୁତ୍ରକନ୍ୟା ପ୍ରଭୃତି ସାଂସାରିକ ଅନିତ୍ୟ ବସ୍ତୁଗୁଡ଼ିକ ପ୍ରକୃତ ସୁଖର ଆକର ବିବେଚନା କରି ଶାନ୍ତିଶୂନ୍ୟ ହୃଦୟରେ ଚିରଜୀବନ ସେମାନଙ୍କର ସେବା କରନ୍ତି; କିନ୍ତୁ ତତ୍ତ୍ୱଜ୍ଞ ମହାତ୍ମାମାନେ ସେହିସବୁ କ୍ଷଣବିନାଶୀ ବସ୍ତୁକୁ ନିତ୍ୟାନ୍ତ ଦୁଃଖପୂର୍ଣ୍ଣ ଓ ଅଶାନ୍ତିକର ଜାଣି ସେସବୁରେ ସୁଖର କାମନା କରନ୍ତି ନାହିଁ। ପାର୍ଥିବ ଅଭୀଷ୍ଟ ସଫଳ ହେଲେ ମନୁଷ୍ୟର ପ୍ରକୃତ ସୁଖ ଲାଭ ହୁଏ ନାହିଁ, ଆଶାର ସଂପୂର୍ଣ୍ଣ ଅଭାବ ହିଁ ମାନବପକ୍ଷରେ ପ୍ରକୃତ ସୁଖଲାଭର ଅବସ୍ଥା। କାରଣ, ଦେଖାଯାଏ ଯେ

ଗୋଟିଏ ଆଶା ପୂର୍ଣ୍ଣ ନହେଉଣୁ ପୂର୍ବାପେକ୍ଷା ବଳବତ୍ତର ଦଶଟି ନୂତନ ଆଶା ଆସି ସେଠାରେ ଉପସ୍ଥିତ ହୁଏ । ଏହିସବୁ ଆଶାର ସଫଳତା ସହିତ ଆଶା କ୍ରମେ ବୃଦ୍ଧି ପାଇଥାଏ । ସୁତରାଂ ଆଶାଗ୍ରସ୍ତ ବ୍ୟକ୍ତି ଚିତ୍ତର ଅସ୍ଥିରତା ବା ବ୍ୟାକୁଳତା ହେତୁ କେବେହେଲେ ସୁଖ-ଶାନ୍ତି ଲାଭ କରିପାରନ୍ତି ନାହିଁ । ଅଧିକନ୍ତୁ, ଯଦି କୌଣସି ଗୋଟିଏ ଆଶା ସବିଶେଷ ଚେଷ୍ଟା ସତ୍ତ୍ୱେ ସଫଳ ନ ହୁଏ ଅଥବା କୌଣସି ଗୋଟିଏ ଆୟତ୍ତାଧୀନ ବସ୍ତୁ ବିନଷ୍ଟ ହୋଇଯାଏ, ତାହାହେଲେ ଆଶାଭଙ୍ଗଜନିତ ଦାରୁଣ କ୍ଳେଶରେ ଅନେକ ସମୟରେ ତାଙ୍କ ହୃଦୟ ଭଗ୍ନ ଓ ଅବସନ୍ନ ହୋଇଯାଏ । ସୁତରାଂ, ଆଶା ହିଁ ବଳବତୀ କଷ୍ଟ ଏବଂ ଆଶାତ୍ୟାଗ ହିଁ ପରମ ସୁଖ ।

## ଯଥାର୍ଥ ସୁଖ

ସଂସାରର ସୁଖମାତ୍ରେ ହିଁ ଦୁଃଖମିଶ୍ରିତ । ନିରବଚ୍ଛିନ୍ନ ସୁଖ ସଂସାରର କୌଣସି ପଦାର୍ଥରେ ନାହିଁ; କିନ୍ତୁ ଧାର୍ମିକ ବ୍ୟକ୍ତିମାନେ ଯେଉଁ ପଥରେ ଗମନ କରନ୍ତି, ସେଠାରେ ନିରବଚ୍ଛିନ୍ନ ସୁଖ ହିଁ ବିଦ୍ୟମାନ । ସାଧକମାନେ ଯେଉଁ ମୁକ୍ତିଲାଭ ନିମିତ୍ତ ସର୍ବଦା ଯତ୍ନ କରନ୍ତି, ଦୁଃଖର ଆତ୍ୟନ୍ତିକ ଅଭାବ ହିଁ ତାହାର ସ୍ୱରୂପ । ଯେଉଁସବୁ ଶାସ୍ତ୍ର ଈଶ୍ୱରଙ୍କ ଅସ୍ତିତ୍ୱ ପର୍ଯ୍ୟନ୍ତ ସ୍ୱୀକାର କରିନାହାନ୍ତି, ସେମାନେ ମଧ୍ୟ ବିଭିନ୍ନ ପ୍ରକାର ଦୁଃଖ କବଳରୁ ପରିତ୍ରାଣ ଲାଭନିମିତ୍ତ ମନୁଷ୍ୟମାନଙ୍କୁ ମୁକ୍ତି ସାଧନ କରିବା ପାଇଁ ବାରମ୍ବାର ଉପଦେଶ ଦେଇଛନ୍ତି । ଏହି ରୋଗଶୋକ ଜରା ମୃତ୍ୟୁମୟ ସଂସାରରେ ଜନ୍ମ ଗ୍ରହଣକରି ପ୍ରକୃତ ଜ୍ଞାନୀ ବ୍ୟକ୍ତିମାନେ ମୁକ୍ତିରୂପ ନିରାନନ୍ଦ ସ୍ଥାନ ଲାଭ କରିବା ନିମିତ୍ତ ଚିରକାଳ ଯତ୍ନ କରିଯାଇଛନ୍ତି, କିନ୍ତୁ ଏମାନଙ୍କ ମଧ୍ୟରେ ଯେଉଁମାନେ ଆନନ୍ଦର ପ୍ରସ୍ରବଣ ମୁକ୍ତିଦାତା ପରମେଶ୍ୱରଙ୍କର ଶରଣାପନ୍ନ ନ ହୋଇ ଅନ୍ୟ ଉପାୟରେ ମୁକ୍ତି ଅନ୍ୱେଷଣ କରିଛନ୍ତି, ସେମାନେ ବହୁ ସାଧନା ଦ୍ୱାରା ସ୍ୱପ୍ନ ପରି ସୁଖଦୁଃଖବର୍ଜ୍ଜିତ ଏକପ୍ରକାର ଅବସ୍ଥା ଆନୟନ କରିବାକୁ କ୍ଷମ ହୋଇଛନ୍ତି ସତ୍ୟ; ମାତ୍ର ନିରତିଶୟ ଆନନ୍ଦ ଉପଭୋଗରୂପ ଯଥାର୍ଥମୁକ୍ତିର ଅବସ୍ଥା ଲାଭ କରି ସେମାନେ କୃତାର୍ଥ ହୋଇପାରି ନାହାନ୍ତି । ଅତଏବ ଯେଉଁମାନେ ପ୍ରକୃତ ସୁଖ ଲୋଡ଼ନ୍ତି, ସେମାନେ ସୁଖସ୍ୱରୂପ ଭଗବାନଙ୍କର ଶରଣାପନ୍ନ ହେବା ଦରକାର । ତା ନ ହେଲେ ସଂସାରରେ ସୁଖ ଅନ୍ୱେଷଣ କରିବା ମରୀଚିକାରେ ଜଳ ଅନ୍ୱେଷଣ କରିବାଭଳି ବୃଥା ହେବ ।

ସାଂସାରିକ ସୁଖ ସ୍ଥାୟୀ ନ ହେଲେ ମଧ୍ୟ ସେଥିରେ ଯେ ସୁଖର ଅଂଶ ବା କଣା ଅଛି, ଏଥିରେ ସନ୍ଦେହ ନାହିଁ। ବିଷୟାନନ୍ଦ ବ୍ରହ୍ମାନନ୍ଦର ଦ୍ୱାର ସ୍ୱରୂପ। ବିଷୟ ଭୋଗକରି ମନୁଷ୍ୟ ସୁଖନିମିତ୍ତ ଧାବିତ ହୁଏ; ତାର ପୂର୍ଣ୍ଣାନନ୍ଦର ସଂସ୍କାର ଜାଗିଉଠେ। ଆତ୍ୟନ୍ତିକ ଦୁଃଖନିବୃତ୍ତିର ନାମ ହିଁ ପୂର୍ଣ୍ଣସୁଖ। ସଂପୂର୍ଣ୍ଣ ରୂପେ ଦୁଃଖ ନିବୃତ୍ତି ନ ହୋଇ ଯେଉଁ ସୁଖ ଲାଭ ହୁଏ ତାହା ପୂର୍ଣ୍ଣସୁଖ ନୁହେଁ; ସୁଖର କଣା ମାତ୍ର। ଜୀବ ସେହି କଣାଟିକକ ପାଇଁ କାଙ୍ଗାଳ ହୋଇ ଏତେତେଣେ ଘୂରିବୁଲେ; କିନ୍ତୁ ତାର ତୃଷା ମେଣ୍ଟେ ନାହିଁ। ପ୍ରାଣଭରା ପିପାସାବେଳେ ଟୋପିଏ ଜଳ ବା କି ଦରକାରରେ ଆସିବ ?

ଆମେମାନେ ପୂର୍ଣ୍ଣ ପଦାର୍ଥ। ଆନନ୍ଦ କ'ଣ ତାହା ଆମେ ଜାଣୁ। ଆମମାନଙ୍କ ପୂର୍ବାନୁଭୂତିରେ ତାହା ସଂସ୍କାରରୂପେ ବିରାଜିତ ଅଛି। ଆମେମାନେ ସେହି ସୁଖ ଆଶାରେ ପ୍ରଧାବିତ। ବୈଷୟିକ ଆନନ୍ଦ ପରମାନନ୍ଦ ଠାରୁ ବାସ୍ତବିକ ସ୍ୱରୂପତଃ ବିଶେଷ କିଛି ଅଭିନ୍ନ ପଦାର୍ଥ ନୁହେଁ। ପରମାନନ୍ଦ ପୂର୍ଣ୍ଣ, ବିଷୟାନନ୍ଦ ତାହାର କଣା। ଅଳ୍ପତ୍ୱ, ମହତ୍ତ୍ୱ ବ୍ୟତୀତ ତାର ଆଉ କୌଣସି ପ୍ରଭେଦ ନାହିଁ। ପରମାନନ୍ଦ ଯାହା, ଜୀବ ତାହା ଜାଣେ; ତେଣୁ ତାର କଣାମାତ୍ର ନେଇ ସେ ମୁଗ୍ଧ ହେବ ବା କହିଁକି ? ସେହି କାରଣରୁ ଯେତେସବୁ କ୍ଷୁଦ୍ର ସୁଖ ଉପସ୍ଥିତ ହେଲେ ମଧ୍ୟ ତାହା ତାର ଆକାଂକ୍ଷିତ ହୁଏ। ଆକାଂକ୍ଷା ଥିବାଯାଏ ସୁଖ ନାହିଁ।

## ବ୍ରହ୍ମାନନ୍ଦ ହିଁ ସୁଖ

ଆତ୍ମା ପରମାତ୍ମାଙ୍କର ଅଂଶ। ସେ ଆନନ୍ଦ ଆସ୍ୱାଦ ଜାଣେ। ଜୀବ ଅବିଦ୍ୟା-ବନ୍ଧନରେ ଆତ୍ମବିସ୍ମୃତ; କିଛି ଜାଣେ ନାହିଁ, କିଛି ବୁଝେ ନାହିଁ। ତଥାପି ସୁଖନିମିତ୍ତ ସେ ଲାଳାୟିତ। ଜୀବମାତ୍ରେ ସୁଖସ୍ପୃହାର ଅଧୀନ। ତେଣୁ ବ୍ରହ୍ମାନନ୍ଦ-ଅନୁଭୂତି ପାଇଁ ଜୀବ ପ୍ରଧାବିତ।

ଅଭାବ ହିଁ ଦୁଃଖ। ଏହି ଅଭାବ ତ୍ରିବିଧ—ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ। କୌଣସି ଅବସ୍ଥାରେ ମାନବର ଶାରୀରିକ ବା ମାନସିକ ଅଭାବ ବିଦୂରିତ ହୁଏ ନାହିଁ। ବ୍ରହ୍ମାନନ୍ଦ ବ୍ୟତୀତ ଆଧ୍ୟାତ୍ମିକ ଅଭାବ ଦୂର ହୁଏ ନାହିଁ। ତେଣୁ ବୈଷୟିକ ସବୁ ପ୍ରକାର ସୁଖରେ ସୁଖୀ ହେଲେ ମଧ୍ୟ କାହାରି ହେଲେ ସୁଖ-ଆଶା ନିବୃତ୍ତ ହେଉ ନାହିଁ। କିପରି ବା ହେବ ? ସଂସାରର ସମସ୍ତ ସୁଖ ଅଂଶ

ମାତ୍ର । ଜୀବ କିନ୍ତୁ ପୂର୍ଣ୍ଣସୁଖର କାଙ୍ଗାଳ । ବ୍ରହ୍ମାନନ୍ଦ ତୁଳନାରେ ରାଜଐଶ୍ୱର୍ଯ୍ୟ ମଧ ତୁଚ୍ଛ । କେବଳ ଏକମାତ୍ର ଧର୍ମାଚରଣରେ ସେ ସୁଖ-ସମ୍ଭୋଗ କରାଯାଇପାରେ ।

ଯେଉଁମାନଙ୍କର ଚିତ୍ତ ଶୁଦ୍ଧ ହୋଇଅଛି, ଯେଉଁମାନେ ଅ-ବିକଳ, ସମଗ୍ର ଅବୟବ ସମୃଦ୍ଧ, ଉପଭୋଗ-ଉପକରଣଯୁକ୍ତ, ମନୁଷ୍ୟଲୋକରେ ସେହିମାନେ ହିଁ କେବଳ ସୁଖୀ । ଅତଏବ ଯଥାର୍ଥ ସୁଖୀ ହେବାକୁ ଇଚ୍ଛା କଲେ ସୁଖସ୍ୱରୂପ ସଚ୍ଚିଦାନନ୍ଦଙ୍କର ଚରଣତଳେ ସର୍ବାବଚ୍ଛେଦରେ ଶରଣ ଗ୍ରହଣ କରି ନିଜ ନିଜର ବର୍ଣ୍ଣାଶ୍ରମୋଚିତ ଧର୍ମ ପ୍ରତିପାଳନପୂର୍ବକ ମରଜଗତରେ ଅମରତ୍ୱ ଲାଭ ଓ ମାନବଜୀବନର ପୂର୍ଣ୍ଣତ୍ୱ ସାଧନ କରିବାକୁ ହେବ ।

ଦୁଃଖ ହିଁ ଭକ୍ତମାନଙ୍କର ପରୀକ୍ଷା । ଭକ୍ତମାନଙ୍କ ଦୃଢ଼ତା ପରୀକ୍ଷା-ନିମିତ୍ତ ଭକ୍ତଙ୍କ ଉପରେ ଅନେକ ସମୟରେ ନାନାବିଧ ଅତ୍ୟାଚାର-ଅବିଚାର ହୋଇଥାଏ । ତେଣୁ କୁନ୍ତୀଦେବୀ ଭଗବାନଙ୍କୁ ସର୍ବଦା ଦୁଃଖ ପ୍ରଦାନ କରିବାକୁ ପ୍ରାର୍ଥନା କରିଥିଲେ । କାରଣ, ସୁଖରେ ମାନବ ଭଗବାନଙ୍କୁ ଭୁଲିଯାଏ । ଭକ୍ତମାନେ ତାଙ୍କୁ ସ୍ମରଣ କରୁଥିବାହେତୁ ଦୁଃଖ ପାଇଲେ ମଧ କାତରତା ପ୍ରକାଶ କରନ୍ତି ନାହିଁ ।

ଆକର୍ଷଣ-ବିକର୍ଷଣ ଦ୍ୱାରା ଜୀବନ ପରିଚାଳିତ । ସେଥିରୁ ସୁଖ-ଦୁଃଖ, ସମ୍ପଦ-ବିପଦର ସୃଷ୍ଟି । ଗୋଟିକୁ ପରିତ୍ୟାଗ କରି ଅନ୍ୟଟି ରହିପାରେ ନାହିଁ । ସୁଖ-ଦୁଃଖ, ଜ୍ୱାଳା-ଯନ୍ତ୍ରଣା ମହାପୁରୁଷଙ୍କର ଅଛି, ସତ୍ୟ; ମାତ୍ର ସେ ସେଥିରେ ଉଦ୍‌ବିଗ୍ନ ହୁଅନ୍ତି ନାହିଁ । ଯାହାକୁ ଆମେ ଅମଙ୍ଗଳ ବୋଲି ଭାବୁଁ, ତାହା ଆମର ମଙ୍ଗଳନିମିତ୍ତ ଉଦ୍ଦିଷ୍ଟ । ସେଥିରେ ସାଧକଙ୍କର ସାହସ ବୃଦ୍ଧି ପାଏ; ସତର୍କତାର ଶିକ୍ଷା ମିଳେ । ମାନବ ଜଳରେ ବୁଡ଼ି ଜଳରୁ ଉଦ୍ଧାର ପାଏ । ଦୁଃଖଦ୍ୱାରା ମାନବର ଆତ୍ମଶକ୍ତି ଜାଗ୍ରତ ହୁଏ । ବିରହ ଦ୍ୱାରା ମିଳନ ସୁଖ ଅନୁଭୂତ ହୋଇଥାଏ ।

ମନକୁ ଇଷ୍ଟଚିନ୍ତାରେ ନିମଗ୍ନ ନ ରଖିଲେ ଦୁଃଖ-କଷ୍ଟରେ ସେ ନିଶ୍ଚୟ ମୂହ୍ୟମାନ ହୋଇପଡ଼ିବ । ତେଣୁ ସବୁଠାରେ ଇଷ୍ଟଭାବନା କରିବା ଦୁଃଖନିବୃତ୍ତିର ପ୍ରଧାନ ଉପାୟ । ନିଜର ମନ, ବୁଦ୍ଧି ପ୍ରଭୃତି ବିକୃତ ଧାରଣା ପୋଷଣ କରି ବାହ୍ୟ ବିଷୟପ୍ରତି ଆକୃଷ୍ଟ ହେଉଥିବାରୁ ମାନବ ଦୁଃଖ ଭୋଗ କରେ । ଏହି ମନ, ବୁଦ୍ଧିର ରୂପାନ୍ତର ଘଟାଇପାରିଲେ ମାନବ ମୁକ୍ତ ଓ ସଦାନନ୍ଦ ଅବସ୍ଥା ଲାଭ କରି ପରମସୁଖରେ କାଳାତିପାତ କରିପାରିବ ।

ଜଗତ୍‌ରେ ସେ ଯେତେ ଉଚ୍ଚ ଅଧିକାରୀ, ଦୁଃଖ ଅର୍ଥାତ୍ ଉନ୍ନତିରେ ବାଧା ମଧ୍ୟ ତାଙ୍କ ନିକଟରେ ସେତିକି ବିରାଟ । ଶକ୍ତ ବା ସମର୍ଥ ବୋଲି ଭଗବାନ୍ ତାଙ୍କୁ ବିପଦରେ ପକାଇ ଯୋଗ୍ୟ କରିନିଅନ୍ତି । ବିପଦରେ ପଡ଼ିଲେ ସାଧକଙ୍କର ଆତ୍ମଶକ୍ତିର ବିକାଶ ହୋଇଥାଏ । ତେଣୁ ବାଧା-ବିଘ୍ନ, ଦୁଃଖ-ବିପଦ ହିଁ ସମ୍ପଦର ନିଦାନ । ତଦ୍ଦ୍ୱାରା ମହାଶକ୍ତିଙ୍କର ଜାଗରଣ ହୋଇଥାଏ ।

ଚିତ୍ତଶୁଦ୍ଧି ହେଉଛି ଭଗବାନଙ୍କର ମନ୍ତ୍ରପୂତ ଧୂଳିସଦୃଶ । ତେଣୁ ଉତ୍ତମ ଅଧିକାରୀ ଭଗବାନଙ୍କ ନିକଟରେ କିଛି ପ୍ରାର୍ଥନା କରନ୍ତି ନାହିଁ । ସେ ପ୍ରଥମେ ଚିତ୍ତଶୁଦ୍ଧିର ସାଧନା କରି ଚିତ୍ତ ପରିଷ୍କାର କରି ରଖନ୍ତି । ସେ ଜାଣନ୍ତି ଯେ ମନ୍ତ୍ରପୂତ ଧୂଳି ପକାଇଦେଲେ ସର୍ପ ଯେଉଁଠାରେ ଥିଲେ ମଧ୍ୟ ଗୁଣିଆ ନିକଟରେ ଆସି ଉପସ୍ଥିତ ହେବ । ଚିତ୍ତଶୁଦ୍ଧିଟି ଯେପରି ଭଗବାନ୍‌ଙ୍କର ମନ୍ତ୍ରପୂତ ଧୂଳିସଦୃଶ । ଭଗବାନ୍ ଅନ୍ତର ମଧ୍ୟରେ ଅଛନ୍ତି । କେବଳ ବାସନା-କାମନାରୂପ ଅନ୍ତରାୟ ଦୂର କରିଦିଅ, ସେ ତତ୍‌କ୍ଷଣାତ୍ ଦର୍ଶନ ଦାନ କରି କୃତାର୍ଥ କରିବେ । ଏହା ହିଁ ସହଜ ସରଳ ପଥ; କିନ୍ତୁ ଅଧିକାଂଶ ମାନବ ଏହାର ବିପରୀତ ପଥରେ ଗତି କରି ପ୍ରତାରିତ ହୁଅନ୍ତି ।

ସ୍ମୃତି ହିଁ ଜଗତର ସବୁ ଦୁଃଖର ମୂଳ । ଅତୀତ କଥା ଭୁଲିଗଲେ କେହି କେବେ ଜଗତ୍‌ରେ ଦୁଃଖ-ଯନ୍ତ୍ରଣା ଭୋଗ କରୁ ନ ଥାଆନ୍ତେ । ପଶୁମାନଙ୍କର ସୁଖ-ଦୁଃଖ, ମାନ-ଅଭିମାନବୋଧ ନାହିଁ । ମାନବ ଚେତନ; ତେଣୁ ତା'ଭିତରେ ସୁଖ-ଦୁଃଖବୋଧ ପୂର୍ଣ୍ଣ ମାତ୍ରାରେ ବିଦ୍ୟମାନ । ସୁତରାଂ, ଯାହାଙ୍କର ଅଭିମାନ ନାହିଁ, ତାଙ୍କୁ ପ୍ରକୃତ ମନୁଷ୍ୟ କୁହାଯାଏ । ଏହାକୁ କହନ୍ତି ଜୀବନ ଥାଉଁ ଥାଉଁ ମୃତ । ଦେବାଧିଦେବ ମହାଦେବ ଭୋଳାନାଥ ହୋଇ ବସିଛନ୍ତି, ତା ନ ହେଲେ ସଂହାରକର୍ତ୍ତାଙ୍କୁ ଦୁଃଖକଷ୍ଟ ଅଭିଭୂତ କରିପକାଉଥାନ୍ତା । ଜଗତ୍‌ରେ ସବୁ ଅପରିବର୍ତ୍ତିତ ଥିବ ଅଥଚ ଆମ ଅନ୍ତର ପରିବର୍ତ୍ତିତ ହେଉଥିବ, ତେବେ ଜଗତ୍ ମଧୁମୟ ବୋଲି ବୋଧ ହେବ ।

ଦୁଃଖ ଯେପରି ତାଙ୍କର ପରୀକ୍ଷା, ସୁଖ ମଧ୍ୟ ସେହିପରି ତାଙ୍କର ପରୀକ୍ଷା । ତାଙ୍କ ଲୀଳାନିମିତ୍ତ ଏହି ଦେହ, ମନ, ପ୍ରାଣର ସୃଷ୍ଟି; ସେହି ଲୀଳାର ଅନ୍ତରାଳରେ ଲୀଳାମୟଙ୍କୁ ଦର୍ଶନ କରିବା ହିଁ ଜୀବନର ସାର୍ଥକତା । ତେଣୁ ସେ ଦେହସଙ୍ଗରେ ଜରା-ବ୍ୟାଧି ମଧ୍ୟ ଦେଇଛନ୍ତି । ମନ ଉପରେ କେତେ ଦୁଃଖ-ଅଶାନ୍ତିର ବୋଝ

ଲଦିଦେଇଛନ୍ତି । ପ୍ରାଣ ଭିତରେ କେତେ ହତାଶା, ଅବସାଦ ପୂରାଇ ରଖିଛନ୍ତି । ଏଥିପାଇ ଦେହ, ମନ, ପ୍ରାଣର ସୁଖ ନେଇ ସେଥିରେ ଲିପ୍ତ ରହ ନାହିଁ, ସେଥିରେ ଆସକ୍ତ ହୋଇପଡ଼ ନାହିଁ । ତାହା ଉପରେ ନିର୍ଭର କରିବା ପରିବର୍ତ୍ତେ ତାଙ୍କ ଉପରେ ବିଶେଷ ଭରସା ରଖ । କାରଣ, ଏହିସବୁ ଅନିତ୍ୟ । ସୁନ୍ଦର ସ୍ୱାସ୍ଥ୍ୟ ଅତର୍କିତ ଜରାବ୍ୟାଧିରେ ନଷ୍ଟ ହୋଇଯାଏ । ମନ-ପ୍ରାଣରେ ନାନାବିଧ ଅଶାନ୍ତି ଆସେ । ଯାହାଙ୍କ ନିମିତ୍ତ ସେ ଏସବୁ ଦାନ କରିଛନ୍ତି, ତାହାରି ଅନୁକୂଳରେ ସେସବୁକୁ ନିୟୋଜିତ କର । ପ୍ରତିକାର୍ଯ୍ୟରେ ତାଙ୍କ ସେବାରେ ଲାଗିବ ବୋଲି ଏହି ଦେହ; ତାଙ୍କ ଚିନ୍ତାରେ ତାଙ୍କରି ଲୀଳା ଆସ୍ୱାଦନ କରିବା ନିମିତ୍ତ ମନ; ତାଙ୍କ ବିରାଟ ରୂପକୁ ହୃଦୟରେ ଧାରଣ କରିବା ପାଇଁ ପ୍ରାଣର ସୃଷ୍ଟି । ଯେତେବେଳେ ଏକଥା ଭୁଲିଯାଇ ସଂସାର ଭୋଗରେ ସେମାନଙ୍କୁ ନିୟୋଜିତ କରିବ, ସେତେବେଳେ ଭଗବାନଙ୍କଆଡୁ ଦୁଃଖର ଅଙ୍କୁଶାଘାତ ତୁମ ଉପରେ ପତିତ ହେବ । ତେଣୁ ସେ ସୁଖ ପଛରେ ଦୁଃଖ, ଭଲ ପଛରେ ମନ୍ଦ ରଖିଛନ୍ତି । ସୁତରାଂ, ନିଜର ଦେହ, ମନ, ପ୍ରାଣକୁ ତାଙ୍କୁ ସମର୍ପଣ କରି ତାଙ୍କ ସେବାରେ ସେମାନଙ୍କୁ ନିୟୋଜିତ କରିପାରିଲେ ନିରବଚ୍ଛିନ୍ନ ସୁଖ ଲାଭ ହେବ ।

ହୃତ୍‌ପିଣ୍ଡ ପ୍ରତିକ୍ଷଣ ସ୍ପନ୍ଦିତ ହେଉଥିବାରୁ ଜୀବନ ଚାଲୁଛି । ତାହା ସ୍ଥିର ହେଲେ ହିଁ ମୃତ୍ୟୁ । ଯେଉଁ ମୁହୂର୍ତ୍ତରେ ଦୁଃଖର ସ୍ପନ୍ଦନ ସମ୍ପୂର୍ଣ୍ଣ ନୀରବ ହୋଇଯିବ, ଜୀବନର ଉନ୍ନତି ଚେଷ୍ଟା ସେହି ମୁହୂର୍ତ୍ତରେ ହିଁ ରୁଦ୍ଧ ହୋଇଯିବ । ତାହା କେବେ ସାଧକଙ୍କର କାମ୍ୟ ନୁହେଁ ।

ସୁଖ-ଦୁଃଖରେ, ଆଘାତ-ଉତ୍ତେଜନାରେ ନିଜକୁ ସଂଯତ ରଖିବା ହିଁ ସାଧନା । ସଂଯମରେ ଶକ୍ତି ବୃଦ୍ଧିପାଏ । କ୍ଷୋଭରେ ଶକ୍ତିର ଅପବ୍ୟୟ ହୁଏ । ଅନ୍ତରରେ ଆଧ୍ୟାତ୍ମିକ ବଳ ସଞ୍ଚିତ ହେଲେ ଏହି ସାମଞ୍ଜସ୍ୟ ଆସିଥାଏ ।

## ସୁଖର ମୂଳରୋପଣ

ଯାହା ଦେଖୁଛ, ତାହା ତୁମ ହୃଦୟର ପ୍ରତିଛବି । ଯାହା ଶୁଣୁଛ, ତାହା ତୁମ ଅନ୍ତରର ପ୍ରତିଧ୍ୱନି । ଏହି ଜଗତ ଜଣକ ପାଖରେ ମଧୁମୟ ଓ ଅନ୍ୟ ଜଣଙ୍କ ନିକଟରେ ବିଷମୟ ବୋଲି ବୋଧହୁଏ କାହିଁକି ? ତାର କାରଣ, ଯେ ଯେପରି ଚିନ୍ତା କରନ୍ତି, ସେ ସେହିପରି ଫଳ ପାଆନ୍ତି ।

ତୁମ ମୁଖର ଆକୃତି ଯେପରି ହେବ, ଦର୍ପଣରେ ସେହିପରି ପ୍ରତିଛବି ଦେଖାଯିବ; ତୁମେ ଯେପରି କଥା କହିବ, ସେପରି ପ୍ରତିଧ୍ୱନି ଶୁଣିବ । ତେଣୁ ସଂସାରକୁ ସୁଖମୟ କରିବାକୁ ହେଲେ ସଂସାରର ସବୁ ବସ୍ତୁକୁ ଭଲ କରିବାର ଚେଷ୍ଟା ନ କରି ନିଜ ଅନ୍ତରକୁ ଶୁଦ୍ଧ, ଦେବଭାବାପନ୍ନ କରିବାକୁ ଚେଷ୍ଟା କରିବାକୁ ହେବ । ତାହାହେଲେ ଦେଖିବ, ଜଗତ୍ ଓଲଟିଯାଇଛି; ସବୁ ଭଲ ହୋଇ ରହିଛି । ସେତେବେଳ ତୁମେ ମଧ ପ୍ରାଚୀନ ଋଷିଙ୍କ ସ୍ୱରରେ ସ୍ୱର ମିଳାଇ କହିବ–

‘‘ଓଁ ମଧୁବାତା ଋତାୟତେ, ମଧୁ କ୍ଷରନ୍ତି ସିନ୍ଧବଃ । ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ । ଓଁ ମଧୁନକ୍ତ ମୃତୋଷସୋ ମଧୁମତ୍ ପାର୍ଥିବଂ ରଜଃ ।’’



# ନାମ

## ଭାବ ଗ୍ରହଣ

ଭଗବାନ ଏକ, କିନ୍ତୁ ବିଭିନ୍ନ ଦେଶର, ବିଭିନ୍ନ ସମାଜର ଭାଷାଭେଦରେ ଯେପରି ଜଳର ନାମ ଜଲ୍, ପାଣି, ୱାଟର, ଏକାୟା ପ୍ରଭୃତି ବିଭିନ୍ନ ନାମ ହୋଇଛି, ସେହିପରି ସର୍ବବ୍ୟାପୀ, ସର୍ବଭୂତାନ୍ତରାତ୍ମା ଭଗବାନଙ୍କୁ ଦେଶଭେଦରେ, ଭାଷାଭେଦରେ କେହି ଭଗବାନ ବା କାଳୀ, କୃଷ୍ଣ, ଶିବ ଇତ୍ୟାଦି, କେହି ଆଲ୍ଲା, କେହି ଗଡ୍, କେହି ବା ଅନ୍ୟ କୌଣସି ନାମରେ ଡାକିଥାନ୍ତି । ନାନାଦେଶର ବିଭିନ୍ନ ସଂପ୍ରଦାୟ ଏକ ଭଗବାନଙ୍କୁ ନାନା ରୂପରେ ପିତା, ମାତା, ପ୍ରଭୁ ଓ ପୁତ୍ର ପ୍ରଭୃତି ନାନାଭାବରେ ଉପାସନା କରିଥାନ୍ତି । ଭାବଗ୍ରାହୀ ଭଗବାନ ମଧ୍ୟ ସାଧକଙ୍କ ଭାବ ବୁଝି ସେହି ରୂପରେ କୃପା କରନ୍ତି । ତେଣୁ ଗୀତା କହେ–

"ଯେଂ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ ।"

ଧର୍ମର ଏହା ହିଁ ଉଚ୍ଚ ଓ ଉଦାର ଶିକ୍ଷା । ଅନନ୍ତ, ଭାବମୟ ଭଗବାନଙ୍କ ଉପାସନାର ସୁବିଧାନିମିତ୍ତ ସାଧକମାନଙ୍କ କର୍ତ୍ତୃକ ଭିନ୍ନ ଭିନ୍ନ ସଂପ୍ରଦାୟରେ ଭିନ୍ନ ଭିନ୍ନ ନାମ ଓ ଭିନ୍ନ ଭିନ୍ନ ରୂପର କଳ୍ପନା ହୋଇଅଛି । ହିନ୍ଦୁଶାସ୍ତ୍ରରେ ମଧ୍ୟ ତାହା ହିଁ ଦୃଷ୍ଟ ହୁଏ–

ଚିନ୍ମୟସ୍ୟା ଦ୍ୱିତୀୟସ୍ୟ ନିଷ୍କଳସ୍ୟାଶରୀରିଣଃ
ଉପାସକାନାଂ କାର୍ଯ୍ୟାର୍ଥେ ବ୍ରହ୍ମଣୋ ରୂପକଳ୍ପନା ॥

ବ୍ରହ୍ମ ଚିନ୍ମୟ, ଅଦ୍ୱିତୀୟ, ମାୟାତୀତ ଓ ଅଶରୀରୀ ହେଲେ ମଧ୍ୟ ଉପାସକମାନଙ୍କ କାର୍ଯ୍ୟସାଧାନ ନିମିତ୍ତ ତାଙ୍କର ରୂପ କଳ୍ପନା କରାଯାଇଥାଏ, କିନ୍ତୁ ସମସ୍ତଙ୍କର ଲକ୍ଷ୍ୟ ଏକ ଅଦ୍ୱିତୀୟ ପରମବ୍ରହ୍ମ ।

ପ୍ରତ୍ୟେକ ସଂପ୍ରଦାୟର ସ୍ଥୁଳବୁଦ୍ଧିବିଶିଷ୍ଟ ବ୍ୟକ୍ତିମାନେ ଏହି ମର୍ମ ରହସ୍ୟ ଓ ମହାନ୍ ସତ୍ୟ ହୃଦୟଙ୍ଗମ କରି ନ ପାରି ନିଜ ନିଜ ସଂପ୍ରଦାୟର ନାମ ଓ ରୂପକୁ

ସତ୍ୟ ମନେ କରି ଅନ୍ୟାନ୍ୟ ନାମ ଓ ରୂପ-ଉପାସକମାନଙ୍କର ନରକର ବ୍ୟବସ୍ଥା କରିଥାଆନ୍ତି । ଜଗତ୍‌ର ସଭ୍ୟ ଓ ଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ ଏହି ମୋହରୁ ନିଷ୍କୃତି ପାଇନାହାନ୍ତି; ତେଣୁ ଦେଖାଯାଏ, ସେମାନେ ଧର୍ମପ୍ରଚାର ନାମରେ ପ୍ରକୃତରେ ଅପର ଧର୍ମର ନିନ୍ଦା କରନ୍ତି । ନିତାନ୍ତ ଛୋଟ ଶିଶୁମୁଖରେ ତିକ୍ତ ଦ୍ରବ୍ୟ ଦେବାକ୍ଷଣି ସେ ବିରକ୍ତ ହୋଇ ମୁଖ ଫେରାଇନିଏ, ପୁଣି ମିଷ୍ଟଦ୍ରବ୍ୟ ଦେଲେ ତୁଷ୍ଟ ହୋଇ ଆଗ୍ରହର ସହିତ ଭୋଜନ ଇଚ୍ଛା ପ୍ରକାଶ କରେ । ସେହିପରି ଧର୍ମପ୍ରଚାରକମାନେ ନିଜ ନିଜ ଧର୍ମର ମଧୁରତ୍ୱ ମାନବ ସମାଜରେ ପ୍ରକାଶ କରନ୍ତୁ । ଯଦି କେହି ସ୍ୱଧର୍ମର ତିକ୍ତ ଆସ୍ୱାଦରେ ବିରକ୍ତ ହୋଇଥାନ୍ତି, ତେବେ ସେ ଆଗ୍ରହରେ ତୁମ ଧର୍ମର ମଧୁର ଆସ୍ୱାଦନିମିତ୍ତ ଧାବିତ ହେବେ ।

କିନ୍ତୁ ଧର୍ମପ୍ରଚାର ନାମରେ ଧର୍ମନିନ୍ଦା କରି ନିଜ ଧର୍ମର ଗୌରବ ହାନି କର ନାହିଁ । ଯେଉଁମାନେ ନିଜ ଧର୍ମର ମହିମା ବୁଝନ୍ତି ନାହିଁ, ସେହିମାନେ ହିଁ ଅପରଧର୍ମର ନିନ୍ଦା କରିଥାଆନ୍ତି । ଧର୍ମନିନ୍ଦା କରିବା ଉଚିତ୍ ନୁହେଁ । ଧର୍ମନାମରେ ରକ୍ଷଣଶୀଳତାରେ ମହାପାତକ ହୁଏ । ଧର୍ମନିନ୍ଦା ନରକର କାରଣ । ସମସ୍ତଙ୍କର ଭାବିବା ଉଚିତ୍ ଯେ, ଯେ ଯେଉଁ ନାମରେ ଡାକନ୍ତୁ, ଯେଉଁ ଭାବରେ ଭାବନ୍ତୁ, ଯେପରି କ୍ରିୟାର ଅନୁଷ୍ଠାନ କରନ୍ତୁ ତାହାର ଉଦ୍ଦେଶ୍ୟ କଅଣ ? ସେ ଅବଶ୍ୟ ଭଗବାନଙ୍କ ବ୍ୟତୀତ ତୁମର କି ମୋର ଉପାସନା କରୁ ନାହାନ୍ତି ।

## ଭାବବୋଧର ସାର୍ଥକତା

ନାମରେ କଅଣ ଅଛି ? ତାହା କେତେଗୋଟି ଅକ୍ଷରର ସମଷ୍ଟି ମାତ୍ର । ନାମରେ ସେହି ଏକ ଏବଂ ଅଦ୍ୱିତୀୟ ଭଗବାନଙ୍କର ଭାବସମୂହ ହୃଦୟରେ ଉଦିତ ହୁଏ ବୋଲି ନାମର ଏତେ ମାହାତ୍ମ୍ୟ । ନାମରେ ସେହି ଅନନ୍ତ ଭାବମୟ ଭଗବାନଙ୍କୁ ହିଁ ସ୍ମରଣ କରାଯାଇଥାଏ । କେବଳ ଭଗବାନଙ୍କ ନାମ ବୋଲି ନୁହେଁ, ଶବ୍ଦମାତ୍ରକେ ତାହାରି ଲକ୍ଷ୍ୟବସ୍ତୁକୁ ସ୍ମରଣ କରାଇଦିଏ । 'ସାପ' ଶବ୍ଦଟି ଦୁଇଟି ଅକ୍ଷର ମାତ୍ର । ସେଥିରେ ଭୟର କାରଣ କଅଣ ଅଛି ? ତଥାପି ସେହି ଶବ୍ଦଟି ଶୁଣିବାକ୍ଷଣି ସେହି ଭାଷାଭାଷୀ ଚମକି ଉଠିବେ; ତାଙ୍କର ଛାତି ଥରିଉଠିବ । କାରଣ, ସେ ଜାଣନ୍ତି, ସେହି ଶବ୍ଦରେ ବିଷଧର ଓ ପ୍ରାଣନାଶକ ଏକ ଭୀଷଣ ଜନ୍ତୁକୁ ଲକ୍ଷ୍ୟ କରାଯାଉଛି । ପୁଣି ସେହି ଭାଷା-ଅନଭିଜ୍ଞ ଜଣେ ଇଂରେଜ ତାହା ଶୁଣିଲେ ସେଥିପ୍ରତି ସେ ଆଦୌ ଭ୍ରୂକ୍ଷେପ କରିବେ ନାହିଁ ।

ତେଣୁ ହରିନାମରେ ମହାପାତକୀ ହିନ୍ଦୁ ଉଦ୍ଧାର ପାଉଛି । କୋଟି କୋଟି ବାର 'ହରି' 'ହରି' ବୋଲି ଉଚ୍ଚାରଣ କରି ସୁଦ୍ଧା କୌଣସି ମୁସଲମାନ୍‌ଙ୍କର କିଛି ହୋଇପାରିବ ନାହିଁ; କିନ୍ତୁ ସେ ଆଲ୍ଲା ବୋଲିବା ମାତ୍ରକେ ପ୍ରେମରେ ପୁଲକିତ ହୋଇଯିବେ । ଖ୍ରୀଷ୍ଟିୟାନ ତାହା ଶୁଣିଲେ ହସି ହସି ବିଦ୍ରୂପର ତରଙ୍ଗ ଖେଳାଇଦେବେ । ସେମାନେ ପରସ୍ପର ଜାଣନ୍ତି ନାହିଁ ଯେ ସେହି ଭିନ୍ନ ଭିନ୍ନ ଶବ୍ଦରେ ଏକ ପରମେଶ୍ୱରଙ୍କୁ ହିଁ ଲକ୍ଷ୍ୟ କରାଯାଇଛି ।

ଯେଉଁମାନେ ଜାଣିଛନ୍ତି, ଆଲ୍ଲା, ହରି କିମ୍ବା ଗଡ୍ ଯେ କୌଣସି ନାମ ଶୁଣିବାମାତ୍ରେ ସେମାନଙ୍କର ସେହି ଅନନ୍ତ ପରମ ପୁରୁଷଙ୍କ ସ୍ମୃତି ଜାଗ୍ରତ ହୋଇ ହୃଦୟ ଭକ୍ତିରସରେ ଆପ୍ଳୁତ ହେବ । ତେଣୁ କହୁଛି, ନାମରେ କିଛି ନାହିଁ, ତାହା ଶବ୍ଦମାତ୍ର; କିନ୍ତୁ ତାର ଲକ୍ଷ୍ୟବସ୍ତୁକୁ ହିଁ ଆରାଧନା କରିବାର କଥା ।

## ରସ ଆସ୍ୱାଦନ

ହରିନାମ-ରାଜ୍ୟରେ ଅଧିକାର ଅନଧିକାର ବିଚାର ନାହିଁ । ତୁମେ ପାପୀ ବୋଲି ଏ ରାଜ୍ୟରେ ନିରାଶ ହେବାର କୌଣସି କାରଣ ନାହିଁ । ଆମେ ପାପୀ, ଆମେ ଅନ୍ଧ, ଏଥିପାଇଁ ହରିନାମ ଆମର ଅବଲମ୍ବନ । ଆମେ ପୀଡ଼ିତ, ଏଥିପାଇଁ ଔଷଧ ଆମର ଭରସା । ପାତକୀମାନେ ହିଁ ଜଗତ୍‌ରେ ହରିନାମ ଅଧିକ ପ୍ରଚାର କରିଯାଇଛନ୍ତି; ଯେଉଁମାନେ ଭକ୍ତ, ସେମାନେ ପାରନ୍ତି ନାହିଁ । ମହାପ୍ରଭୁ ଶ୍ରୀଗୌରାଙ୍ଗଦେବ 'ହ' ଏହି ଅକ୍ଷରଟି ଉଚ୍ଚାରଣ କରୁ କରୁ ପ୍ରେମାବେଶରେ ମୂର୍ଚ୍ଛିତ ହୋଇ ପଡୁଥିଲେ । ତାଙ୍କ କଣ୍ଠ ଅବରୁଦ୍ଧ ହୋଇଆସୁଥିଲା, ସେ ଆଉ 'ରି' ଉଚ୍ଚାରଣ କରିପାରୁ ନଥିଲେ । ସୁତରାଂ, ଜୀବନରେ ସେ ଖୁବ୍ ଅଳ୍ପ ହରିନାମ ଉଚ୍ଚାରଣ କରିଛନ୍ତି । ଯବନ ହରିଦାସ ହିଁ ଲକ୍ଷ ଲକ୍ଷ ବାର ହରିନାମ ଜପ କରି ଜଗତ୍‌ରେ ହରିନାମର ମାହାତ୍ମ୍ୟ ପ୍ରଚାର କରିଯାଇଛନ୍ତି । ମହାମାପୀ ଜଗାଇ, ମାଧାଇ ଭୈରବନାଦରେ 'ହରିବୋଲ' ବୋଲି କହି ଦେଶକୁ ସଚେତନ କରାଇଗଲେ । ତେଣୁ କହୁଛି– ହରିନାମ ପାପୀତାପୀଙ୍କର ଆଶା-ଭରସାର ସ୍ଥଳ । କାରଣ, ପତିପପାବନ 'ହରି' ଶବ୍ଦର ଏପରି ଗୁଣ ଅଛି ଯେ ତାହା ଉଚ୍ଚାରିତ ହେବାକ୍ଷଣି ଦେହ, ମନ ଓ ଆତ୍ମା ପବିତ୍ର ହୋଇଯାଏ ।

କେହି କେହି କହନ୍ତି– କେବଳ ମୁଖରେ 'ହରି' 'ହରି' ବୋଇଲେ ଯଦି ଜଗତ୍‌ରେ ସଦ୍‌ଗତି ହେଉଥାନ୍ତା, ତେବେ ଚିନି ଶବ୍ଦ ଉଚ୍ଚାରଣ କଲେ ତ ମୁଖ

ମଧୁର ହେଉଥାନ୍ତା ! ଚିନି ନ ଖାଇ କେବଳ ଚିନି ଚିନି କହିଲେ କିଛି ହେବ ନାହିଁ । ଯଦି ଦେହ, ମନ, ଆତ୍ମାକୁ ପବିତ୍ର କରିବାକୁ ହେବ, ହରିଶବ୍ଦର ପ୍ରତିପାଦ୍ୟ ପଦାର୍ଥକୁ ଅନୁଭବ କରି ତାଙ୍କ ସହିତ ସାକ୍ଷାତ୍‌କାର କରିବାକୁ ହେବ । ତା ନ ହେଲେ କେବଳ ବାହାରେ ଶବ୍ଦ ଉଚ୍ଚାରଣ କଲେ କଅଣ ହେବ ? ଚିନି ରହିଲା ଦୂରରେ, ହରି ରହିଲେ ବାହାରେ । ତାଙ୍କ ସହିତ କୌଣସି ସମ୍ବନ୍ଧ ନାହିଁ । ତେବେ ତୁମଠାରେ ତା'ର କ୍ରିୟା ବା କିପରି ହେବ ? ଏ କଥା ଯେଉଁମାନେ କହନ୍ତି, ମୁଁ ସେମାନଙ୍କୁ ସଂକ୍ଷେପରେ ଉତ୍ତର ଦେଉଛି–

ତୁମ ସମ୍ମୁଖରେ ଗୋଟିଏ ତେନ୍ତୁଳିଗଛ ଅଛି । ବାନର ତେନ୍ତୁଳି ଗଛରେ ବସି ତେନ୍ତୁଳି ଖାଉଛି । ତୁମେ ତେନ୍ତୁଳି ଖାଉନାହଁ । ତୁମ ସହିତ ତେନ୍ତୁଳିର କୌଣସି ସମ୍ବନ୍ଧ ନାହିଁ । ତଥାପି ବାନର ତେନ୍ତୁଳି ଖାଇବା ଦେଖି ତୁମ ପାଟିରୁ ଲାଳ ବହେ କାହିଁକି ? ତୁମ ପାଖରେ କେହି ଯଦି କୋଳି ଆଚାର ବା ଆମ୍ବ ଆଚାର କଥା କହନ୍ତି, ତେବେ ତୁମ ମୁହଁରୁ ଲାଳ ବାହାରେ ନାହିଁକି ? ତୁମ ମୁଖରେ ତ ଆଚାର ନାହିଁ । ତେବେ ଆଚାର ଶବ୍ଦ ଶୁଣି ତୁମ ମୁଖ ଲାଳପୂର୍ଣ୍ଣ ହୁଏ କିପରି ? ବାହାରେ ଆଚାର ରହିଲା; କେବଳ ଶବ୍ଦ ଉଚ୍ଚାରଣରେ ତୁମଠାରେ କ୍ରିୟା ହେଲା କିପରି ? ଏହାର କାରଣ, କୌଣସି ସମୟରେ ତେନ୍ତୁଳି ଓ ଆଚାର ତୁମେ ଖାଇ ତାର ଆସ୍ୱାଦ ପାଇଛି । ତେଣୁ ତେନ୍ତୁଳି ଓ ଆଚାରର ପୂର୍ବସ୍ୱାଦୁ କଥା ମନେ ହୋଇ ତୁମ ପାଟିରୁ ଲାଳ ବାହାରିଲା ।

ମନେକର, ତୁମେ କେବେହେଲେ ସିଂହଗର୍ଜ୍ଜନ ଶୁଣିନାହଁ । ସୁତରାଂ, ତାହାର ସଂସ୍କାର ମଧ୍ୟ ନାହିଁ; କିନ୍ତୁ ଅକସ୍ମାତ୍ ଯଦି ଗିରିକନ୍ଦରରେ ତୁମେ ସେହି ଧ୍ୱନି ଶୁଣିବାକୁ ପାଅ, ତେବେ ତତ୍‌କ୍ଷଣାତ୍ ଭୟରେ ମୂର୍ଚ୍ଛିତ ହୋଇଯାଅ କାହିଁକି ? ସେହି ଶବ୍ଦକାରୀ ସିଂହକୁ ତ ତମେ କେବେହେଲେ ଦେଖି ନାହଁ; ତା'ର ଶବ୍ଦର କୌଣସି ଅର୍ଥ ତୁମେ ବୁଝିନାହଁ, ତେବେ ତା ଗର୍ଜ୍ଜନରେ ତୁମେ କାହିଁକି ମୂର୍ଚ୍ଛିତ ହେଲ ? ଯେପରି ସିଂହଗର୍ଜ୍ଜନର ସ୍ୱଭାବଗତ ଶକ୍ତିଦ୍ୱାରା ତୁମ ଶରୀର-ମନର ଧର୍ମ, ଲକ୍ଷଣ ଓ ଅବସ୍ଥାର ପରିବର୍ତ୍ତନ ହୋଇଅଛି, ସେହିଭଳି ହରିଶବ୍ଦର ଏପରି ପ୍ରକୃତିଗତ ଶକ୍ତି ଅଛି ଯେ ଅର୍ଥ ନ ବୁଝିଲେ ମଧ୍ୟ, ଭାବରେ ନ ବୁଡ଼ିଲେ ମଧ୍ୟ ତାହାର ଶକ୍ତି ତୁମ ମନରେ କ୍ରିୟା କରିବ, ତୁମ ମନକୁ ମତାଇପାରିବ । ଅର୍ଥ ବ୍ୟତୀତ ଶବ୍ଦର ସ୍ୱାଭାବିକ ଗୁଣ ଆମେ ସ୍ୱୀକାର କରିବାକୁ ବାଧ୍ୟ ।

ତୁମ ସମ୍ମୁଖରେ ଯଦି ରଣବାଦ୍ୟ ବାଜିଉଠେ, ତୁମେ ମହାଦୁର୍ବଳ ହୋଇଥିଲେ ମଧ୍ୟ ସେ ରଣବାଦ୍ୟର ଶବ୍ଦଗୁଣରେ ତୁମ ଶିରାପ୍ରଶିରାର ରକ୍ତ ଉଷ୍ଣ ହୋଇଯିବ । ତୁମର ଯୁଦ୍ଧ କରିବାର ଇଚ୍ଛା ହେବ ହିଁ ହେବ । ବିଷଧର ସର୍ବ ଗର୍ଜନ କରି ତୁମକୁ କାମୁଡ଼ିବାକୁ ଆସୁଛି । ଏପରି ସମୟରେ ଯଦି କେହି ମୋହନ ସ୍ୱରରେ ବଂଶୀ ବଜାଇବେ, ତେବେ ସର୍ପ ମୁଗ୍ଧ ହୋଇ ତାହା ଶୁଣିବ । ତାର ହିଂସାପ୍ରବୃତ୍ତି କୁଆଡ଼େ ଉଭେଇଯିବ । ସର୍ପ ଆଉ ତାନ୍‌ସେନଙ୍କର ପ୍ରପୌତ୍ର ନୁହେଁ ଯେ ବଂଶୀଧ୍ୱନିର ତାଳ, ଲୟ ବୁଝି ସେ ମୋହିତ ହୋଇଗଲା । କୌଣସି ଭାବ ସେ ବୁଝିଲା ନାହିଁ । ତେବେ ସାମାନ୍ୟ ବଂଶୀଧ୍ୱନିରେ ସର୍ପର ହିଂସାପ୍ରବୃତ୍ତି ଉଡ଼ିଗଲା କିପରି ? ନା, ସେ ଶବ୍ଦର ପ୍ରକୃତିଗତ ଶକ୍ତିଗୁଣରେ ସେ ମୁଗ୍ଧ ଓ ପାଗଳ ହେଲା ? ସେହିପରି ହରିଶବ୍ଦର ପ୍ରକୃତିଗତ ଶକ୍ତି ଗୁଣରେ ମୁଗ୍ଧ ହୋଇ ଭକ୍ତି ଲାଭ କରାଯାଇପାରେ ।

## ଭକ୍ତିଲାଭ

ତାଙ୍କ ନାମ ବ୍ୟତୀତ ଭକ୍ତି ଲାଭ କରିବା ସହଜସାଧ୍ୟ ନୁହେଁ । ଭକ୍ତି ବହୁ ଦୁଃସାଧ୍ୟ ତପସ୍ୟାର ଫଳ । ହରିନାମ ଦ୍ୱାରା ଭକ୍ତି ଲାଭ ହୁଏ । ଅତଏବ ଭକ୍ତିପୂର୍ବକ ହେଉ ଅଥବା ବିନା ଭକ୍ତିରେ ହେଉ, ହରିନାମ ଜପ କଲାମାତ୍ରେ ପାପୀଙ୍କର ଉଦ୍ଧାର ହେବ । ହରିନାମରେ ଏପରି ପ୍ରକୃତିଗତ ଗୁଣ ନିହିତ ଅଛି ଯେ ତାହା ପ୍ରଭାବରେ ପାପ, ତାପ ଆପଣା ମନକୁ ଦୂର ହୋଇଯିବ । ହରିନାମର ଶକ୍ତି ଅସୀମ ।

ରାତ୍ରିକାଳରେ ପ୍ରକାଣ୍ଡ ଅଟ୍ଟାଳିକା ମଧ୍ୟରେ ନିବିଡ଼ ଅନ୍ଧକାର; ସେହି ଅନ୍ଧକାର ଦୂର କରିବାକୁ ଯଦି ପ୍ରକାଣ୍ଡ, ସ୍ଥୁଳକାୟ ହସ୍ତିଯୂଥ ନିଯୁକ୍ତ କର, ତେବେ ତା'ର ଗୋଟିଏ କଣିକା ମଧ୍ୟ ବିନଷ୍ଟ ହେବ ନାହିଁ; କିନ୍ତୁ ଗୋଟିଏ କ୍ଷୁଦ୍ର ଦୀପଶିଖା ସେହି ପ୍ରକାଣ୍ଡ ଅଟ୍ଟାଳିକାବ୍ୟାପୀ ଅନ୍ଧକାର ସ୍ତୂପକୁ କେଉଁଆଡ଼େ ଦୂର କରିଦେବ । ଦୀପଶିଖାର ଆକାର କ୍ଷୁଦ୍ର ହେଲେ ମଧ୍ୟ ତାହାର ଶକ୍ତି ଗୁଣରେ ଅନ୍ଧକାର ପଳାୟନ କରିବ । ସେହିପରି ନାମର ଦୀପଶିଖାରେ, ତାର ଜ୍ୱଳନ୍ତ ଅଗ୍ନିରେ ଦେହ, ମନ, ପ୍ରାଣର ପାପତାପ ପୋଡ଼ିଜଳି ପାଉଁଶ ହୋଇଯିବ । ହରିନାମ ହିଁ ଅନ୍ଧର ଯଷ୍ଟି । ଏହା କଳଘଡ଼ିପରି ମନକୁ ମନ ଘୂରି ଅନ୍ଧକୁ ସୁପଥରେ ପରିଚାଳିତ କରେ ।

ଭଗବାନ ତୁମକୁ ଅନ୍ଧ ଦେଖି ନାମର ଯଷ୍ଟି ପ୍ରଦାନ କରିଛନ୍ତି । ଏହା ଅବଲମ୍ବନ କର । 'ହରି' କହିବାକୁ ଆଳସ୍ୟ କରନାହିଁ । ସମୟ ଥାଉଁ ଥାଉଁ ନାମ ଅବଲମ୍ବନ କର । ନାମର ବଳଠାରୁ ବଡ଼ ବଳ ଆଉ କିଛି ନାହିଁ । ନାମ ହିଁ ବସ୍ତୁର ପ୍ରାପକ । ରାମନାମ ବଳରେ ହନୁମାନ ସାଗର ଲଙ୍ଘନ କରିଥିଲେ; କିନ୍ତୁ ସାଗର ପାର ହେବାକୁ ସ୍ୱୟଂ ଶ୍ରୀରାମଚନ୍ଦ୍ରଙ୍କୁ ମଧ୍ୟ କଷ୍ଟସାଧ୍ୟ ସେତୁ ବାନ୍ଧିବାକୁ ପଡ଼ିଥିଲା ।

ସୁତରାଂ, ଭଗବାନ ସାଧକ-ହୃଦୟର ଅର୍ନ୍ତପ୍ରଦେଶର ଭାବ ଓ ଭକ୍ତି ଟିକକପ୍ରତି ଲକ୍ଷ୍ୟ କରିଥାନ୍ତି । ତେଣୁ ହିନ୍ଦୁ ତାଙ୍କୁ ଭାବଗ୍ରାହୀ ଜନାର୍ଦ୍ଦନ ବୋଲି କହିଥାଏ । ପ୍ରକୃତରେ ତାଙ୍କର କୌଣସି ନିର୍ଦ୍ଦିଷ୍ଟ ନାମ-ରୂପ ନାହିଁ । ଯେ ଯେଉଁ ନାମରେ ଡାକନ୍ତି, ଯେପରି ଭାବନ୍ତି, ସେ ତାଙ୍କୁ ସେହି ଭାବରେ, ସେହି ରୂପରେ ଦେଖାଦେଇ କୃତାର୍ଥ କରନ୍ତି ।

## ସର୍ବାର୍ଥସିଦ୍ଧି

ନାମ ଗ୍ରହଣ କଲେ ସର୍ବାର୍ଥ ସିଦ୍ଧ ହୋଇଥାଏ । ଯାହାଙ୍କର ଲକ୍ଷ୍ୟ ଯାହା, ନାମ ତାଙ୍କୁ ନେଇ ସେହି ଲକ୍ଷ୍ୟସ୍ଥଳରେ ପହଞ୍ଚାଇଦିଏ । ନାମ ଦ୍ୱାରା ବ୍ରହ୍ମଜ୍ଞାନୀ ବ୍ରହ୍ମଜ୍ଞାନ ଲାଭ କରିଥାନ୍ତି, ଭକ୍ତ ଭଗବାନଙ୍କୁ ଲାଭ କରନ୍ତି । ଯେ ଯେଉଁ ଉଦ୍ଦେଶ୍ୟରେ ନାମ ଗ୍ରହଣ କରନ୍ତୁ ପଛକେ ତାଙ୍କର ସେହି ଉଦ୍ଦେଶ୍ୟ ନିଶ୍ଚୟ ସଫଳ ହେବ ।

ନାମ ଓ ନାମୀ ଅଭେଦ । ନାମଜପରେ ଯେତେବେଳେ ଉନ୍ମାଦନା ଆସିବ, ସେତେବେଳେ ତୁମ ଦେହରେ ଅବସାଦ ଆସିବ ସତ୍ୟ; ତଥାପି କିଏ ଯେପରି ତୁମ ଭିତରୁ ନାମରାଶି ଠେଲିଦେଉଛି । ତୁମେ ନାମ ଛାଡ଼ିବାକୁ ଇଚ୍ଛା କରୁଛ ଅଥଚ କିଏ ଯେପରି ଜୋର୍ ଜବରଦସ୍ତି କରି ତୁମ ଭିତରେ ନାମ ସ୍ମରଣ କରୁଛି । ପ୍ରକୃତରେ ନାମ ଯାହାର, ସେ ନାମ ଗାନ କରନ୍ତି, ଜୀବ ଗୋଟିଏ ଉପଲକ୍ଷ୍ୟ ମାତ୍ର ।

ନାମ ସଙ୍ଗେ ସଙ୍ଗେ ଧ୍ୟାନ କରିବା ସାଧକଙ୍କର ଇଚ୍ଛାଧୀନ । ଧ୍ୟାନର ମୂର୍ତ୍ତି ସହଜରେ ପ୍ରକାଶ ହୁଏ ନାହିଁ । ନାମ ନେଲେ ଯେଉଁ ମୂର୍ତ୍ତି ଆପେ ଆପେ ପ୍ରକାଶ ପାଏ, ତାହାର ବିଶେଷ ଶକ୍ତି ଥାଏ । ସେ ମୂର୍ତ୍ତି ସଜୀବ ଓ ପୂର୍ଣ୍ଣ ବୋଲି ଧାରଣା ଜାତ ହୁଏ । ସେଥିରେ ଏକାବେଳକେ ଚିତ୍ତ ମଗ୍ନ ହୋଇଯାଏ ।

କୀର୍ତ୍ତନରେ ଭଗବାନଙ୍କର ଗୁଣାନୁବାଦ କରାଯାଏ । ସେଥିରେ ସାରୂପ୍ୟ ଲାଭ ହୋଇପାରେ; କିନ୍ତୁ ନାମ ଧରିଲେ ସର୍ବାଭୀଷ୍ଟ ସିଦ୍ଧ ହୁଏ ।

ନାମଜପ ଅତି ପ୍ରୟୋଜନ । ସାଧନା ମାତ୍ରେ ତା ମୂଳରେ ଜପ । ଧ୍ୟାନରେ ସ୍ଥୂଳଜ୍ଞାନ ଯିବାମାତ୍ରେ ନିଜର ସଂସ୍କାର ଜାଗିଉଠେ; ଧ୍ୟାନର ମୂର୍ତ୍ତି ଆଉ ନଥାଏ । ସୁତରାଂ, ଜପର ସୂତ୍ରର ଧରା ନ ପଡ଼ିଲେ ଧ୍ୟାନରେ ସଫଳତା ଆସିବ ନାହିଁ ।

## ହରିନାମର ଅର୍ଥ

ପ୍ରଥମ ଅନୁସନ୍ଧାନବେଳେ ନାମ ଜାଣିବା ଏକମାତ୍ର ଉପାୟ । ବିଦେଶକୁ ଚିଠି ଦେଲେ ନାମ ପ୍ରୟୋଜନ । କାହା ଘରକୁ ଯିବାକୁ ହେଲେ ନାମ ପଚାରି ଯିବାକୁ ହୁଏ । ପରିଚୟ ହୋଇଗଲେ ସମ୍ମୁଖରେ ବସି ନାମ ଘୋଷିବାକୁ ହୁଏ ନାହିଁ; ସେବା, ଖେଳ ଓ ଆନନ୍ଦ କରାଯାଏ ।

କଳିର ଦୁରବସ୍ଥା ଜାଣି ମହାପୁରୁଷମାନେ 'ହରିନାମ ସର୍ବଯଜ୍ଞ'–ଏହି ବ୍ୟବସ୍ଥା ଦେଇଛନ୍ତି । ଯେଉଁ ନାମରେ ଉଦ୍ଧାର ହେବାକୁ ହୁଏ, ତାହା ହିଁ ହରିନାମ । ବ୍ରାହ୍ମଣମାନଙ୍କର ଗାୟତ୍ରୀ ମନ୍ତ୍ର ମଧ୍ୟ ହରିନାମ । ହରି, ରାମ, ଦୁର୍ଗା, ବିଷ୍ଣୁ, ଗାୟତ୍ରୀ ସମସ୍ତ ହରିନାମ ମଧ୍ୟରେ ଗଣ୍ୟ ।

ଗୋଟିଏ ନାମରେ ନିଷ୍ଠା ହେଲେ ପରିବର୍ତ୍ତନର ପ୍ରୟୋଜନ ହୁଏ ନାହିଁ । 'ଏହିପରି ନାମ ନେଲେ ମୋର ସୁବିଧା ହେବ'—ଏ ଭାବନା ପ୍ରଶସ୍ତ ନୁହେଁ । ଏହା ଋଷିମାନଙ୍କର ମଧ୍ୟ ମତ ନୁହେଁ ।

ନାମ ଅକ୍ଷର ନୁହେଁ, ଶକ୍ତି ହିଁ ନାମ । କେବଳ ନାମ ନେଲେ ବସ୍ତୁର ଆସ୍ୱାଦ ମିଳେ ନାହିଁ । ନାମ ଓ ନାମୀ ଅଭେଦ । ନାମ ସହିତ ନାମୀକୁ ବୁଝିବାକୁ ଯତ୍ନ କରିବାକୁ ହେବ ।

କଳିଯୁଗରେ କେବଳ ନାମ ଅବଲମ୍ବନ ପ୍ରତ୍ୟେକ ଉପାସନାର ବ୍ୟବସ୍ଥା । କେବଳ ଭଗବାନ୍‌ଙ୍କର ଶରଣାପନ୍ନ ହୋଇ ନାମ ନେଲେ ପ୍ରବୃତ୍ତି ଦମିତ ହୁଏ । ନାମ ନେଇ ନେଇ ଯେଉଁ ଅବସ୍ଥା ହୁଏ ବା ଯେଉଁ ଦର୍ଶନ ହୁଏ, ତାହା ଧରିରଖିବାକୁ ଧାରଣା କୁହାଯାଏ ।

କଳିକାଳରେ ଦାନ ଅନ୍ଧକାରରେ ଯଷ୍ଟିସ୍ୱରୂପ ଓ ନାମ ଆଲୋକ ସଦୃଶ । କଳିଯୁଗରେ ଜୀବଙ୍କର ନାମ ହିଁ ସମ୍ବଳ । ଯଦି ନାମମାହାତ୍ମ୍ୟ ବୁଝିବାକୁ ଇଚ୍ଛା କର, ତେବେ ଶିବ ହୁଅ । ନାମ ସ୍ମରଣର ଉଦ୍ଦେଶ୍ୟ ପ୍ରେମଲାଭ ।

## ଆନୁସଙ୍ଗିକ ଧର୍ମ

ନାମଜପରେ ଆତ୍ମସମର୍ପଣ ଓ ଦୀନତା ଆଣିବାକୁ ହେବ । ସେତେବେଳେ ଯାଇ ତାଙ୍କର କୃପା ହେବ ।

ନାମର ସ୍ଫୁରଣ ନ ହେଲେ କେହି ନାମ ନେଇପାରିବେ ନାହିଁ । ନାମର ବିକାଶ ନିମିତ୍ତ ହିଁ ନାମଗ୍ରହଣ । ତାହା ନିର୍ଜ୍ଜନରେ ନେବା ହିଁ ଉଚିତ୍ । ଯେପରି ସ୍ୱାମୀସୋହାଗିନୀ ଯୁବତୀ ସ୍ୱାମୀଙ୍କ ନାମ ନେଇପାରନ୍ତି ନାହିଁ, ସ୍ୱାମୀଙ୍କ ନାମ ଉଚ୍ଚାରଣ ବେଳେ ତାଙ୍କ ଛାତି ଥରିଉଠେ, ସେହିପରି ନାମୀଙ୍କୁ ଯେ ନିଜର ବୋଲି ଜାଣିପାରିଛନ୍ତି, ସେ ମୁଖରେ ନାମ ଉଚ୍ଚାରଣ କରିପାରନ୍ତି ନାହିଁ । ଥରେ ନାମ ଉଚ୍ଚାରଣ କରିବା ମାତ୍ରେ ତାଙ୍କ ଅଙ୍ଗରେ ହର୍ଷ, ପୁଲକ, ରୋମାଞ୍ଚ ପ୍ରଭୃତି ସାତ୍ତ୍ୱିକ ଲକ୍ଷଣଗୁଡ଼ିକ ପ୍ରକଟିତ ହୁଏ । ନାମ କରୁ କରୁ ପ୍ରେମ ହୁଏ ।

ଯେତେଦିନଯାଏ ତ୍ରିଗୁଣର ଅଧୀନ ଥିବ, ସେତେଦିନପର୍ଯ୍ୟନ୍ତ ଗୁଣ ଅନୁସାରେ ବାଧ ହୋଇ ଚଳିବାକୁ ହେବ । ଯଦି ଭଗବତ୍‌ନାମ ଅବଲମ୍ବନ କରିଥାଅ, ତେବେ କ୍ରମେ ତ୍ରିଗୁଣ ନଷ୍ଟ ହୋଇ ଶୁଦ୍ଧ ଆତ୍ମତତ୍ତ୍ୱ ପ୍ରକାଶ ପାଇବା ଆରମ୍ଭ ହେବ ।

ସଂଶୟ ଆତ୍ମାର ଗୋଟିଏ ଅବସ୍ଥା । ଅନ୍ତରରେ କାମ, କ୍ରୋଧ, ଲୋଭ ପ୍ରଭୃତି ଥିଲେ କୌଣସି ପ୍ରକାରେ ତାହା ଅତିକ୍ରମ କରିହୁଏ ନାହିଁ । ଏକମାତ୍ର ନାମଦ୍ୱାରା ସମସ୍ତ ପାପ, ସମସ୍ତ ସଂଶୟ ନଷ୍ଟ ହୋଇପାରେ । ସେତେବେଳେ ଆପଣା ମନକୁ ବିଶ୍ୱାସ ଆସିଯାଏ ।

କର୍ମ କରିବା ବୃଥା ନୁହେଁ । କର୍ମ କରୁ କରୁ ଯଦି ଭଗବାନଙ୍କ ନାମ ନିଆଯାଏ, ତାହାହେଲେ ବାସନା ନଷ୍ଟ ହୋଇଯାଏ । ଯେଉଁମାନଙ୍କର ବାସନା ନଷ୍ଟ ହୋଇନାହିଁ, ସେମାନଙ୍କୁ ଦିନତମାମ ନାମ ନେବାକୁ ଦେଲେ ସୁଦ୍ଧା ସେମାନେ ତାହା ପାରିବେ ନାହିଁ । ବୃଥାଚିନ୍ତା, ପରନିନ୍ଦା, ବୃଥାଗଳ୍ପ, ବିବାଦ, ତର୍କ, ବିତର୍କ ଏଥିରେ ପୁଣି ତାସ୍, ପଶା, ଜୁଆ ଇତ୍ୟାଦିରେ ସେମାନେ ସମୟ କଟାଇଦିଅନ୍ତି ।

## ନାମରେ ରୁଚି

ଅନଧିକାରୀଙ୍କ ନିକଟରେ ନାମର ବ୍ୟାଖ୍ୟା କର ନାହିଁ, ତଦ୍ଦ୍ୱାରା ହିତରେ ବିପରୀତ ହେବ । ଯେ ତାଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରିପାରିଛନ୍ତି, 'ସେ ମୋର, ମୁଁ ତାଙ୍କର' ଏହା ଯାହାଙ୍କର ଭାବ, ସେହି କେବଳ ନାମର ଅଧିକାରୀ ।

ନାମରେ ରୁଚି ଜାତ ନ ହେଲେ ମୁହଁରେ ନାମ ସ୍ଫୁରିତ ହେବ ନାହିଁ। ତାହା ମଧ୍ୟ ତାଙ୍କରି କୃପା। ବୃଥା ନାମସ୍ମରଣରେ ହୃଦୟ କୋମଳ ନ ହୋଇ କଠିନ ହୋଇଯାଏ, ନାମରେ ଅଶ୍ରଦ୍ଧା ଜାତ ହୁଏ। ଯେତେବେଳେ ନାମନବା କାଳରେ ମୋର 'ମୁଁ' ତ୍ୱ ବା 'ଅହଂ'ତ୍ୱ ଭୁଲିଯିବ, ମୋର ବୋଲି କିଛି ରହିବ ନାହିଁ, ସେତେବେଳେ ପ୍ରକୃତ ନାମ ନିଆହେଲା ବୋଲି ଜାଣିବ।

ଉଚ୍ଚ ଅଧିକାରୀ ହିଁ ନାମ ନେବାପାଇଁ ଯୋଗ୍ୟ। କଞ୍ଚାକାଠ ଓ ବିଷୟାସକ୍ତ ଜୀବର ଏକ ଜିନିଷ। କଞ୍ଚାକାଠରେ ସହଜରେ ନିଆଁ ଲାଗେ ନାହିଁ। ବିଷୟାସକ୍ତ ଜୀବର ହୃଦୟ ସହଜରେ ଭଗବତ୍ ନାମରେ ମଜ୍ଜିପାରେ ନାହିଁ।

ନାମକୀର୍ତ୍ତନରେ ଟିକିଏ ଭାବସ୍ଥ ହୋଇ ନୃତ୍ୟ କରିବାକୁ ବର୍ତ୍ତମାନ ଧର୍ମ କହୁଛନ୍ତି। ଏହା ଯେ ଧର୍ମ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ସତ୍ୟ, ନ୍ୟାୟ, ଜୀବପ୍ରତି ଦୟା, ଗୁରୁଜନମାନଙ୍କୁ ଭକ୍ତି, ସତ୍‌ସଙ୍ଗରେ ସ୍ପୃହା, ପରସ୍ତ୍ରୀ–ଦର୍ଶନରେ ସାବଧାନତା, ପରଧନରେ ଅଲୋଭ–ଏଗୁଡ଼ିକ ଧର୍ମର ପ୍ରଥମ ଅଙ୍ଗ। ହରିନାମର ଫଳ ଫଳିବାକୁ ଆରମ୍ଭ କଲେ ଏହି ଫଳଗୁଡ଼ିକ ପ୍ରଥମରୁ ଦେଖାଦିଏ। ଏହା ନ ହେଲେ ଜୀବନରେ ଧର୍ମର ଆରମ୍ଭ ହୋଇ ନାହିଁ ବୋଲି ଜାଣିବ।

କୌଣସି ବସ୍ତୁଦ୍ୱାରା କିଛି ହୁଏ ନାହିଁ। କେବଳ ଭଗବତ୍‌ନାମ ହିଁ ସମସ୍ତ କ୍ରିୟାର ମୂଳ। ମାଦକଦ୍ରବ୍ୟ ଦ୍ୱାରା କ୍ରିୟା କରିବା ନିଷିଦ୍ଧ। ନାମ ଶ୍ରେଷ୍ଠ ମାଦକ।

## ଯୋଗନିଦ୍ରା

ନାମ-ମାହାତ୍ମ୍ୟ ବୁଝିପାରିଲେ ନିଦ୍ରା, ତନ୍ଦ୍ରା, ଜଡ଼ତା, ଆଳସ୍ୟ ଦୂରକୁ ପଳାଇଯାଏ। ଶ୍ୱାସ-ପ୍ରଶ୍ୱାସରେ ନାମ ଜପ କରିବା ପରମ ସାଧନ।

ଯୋଗନିଦ୍ରାର ଲକ୍ଷଣ– (୧) ନାମ ଜପ କରୁ କରୁ ସମସ୍ତ ଇନ୍ଦ୍ରିୟ କ୍ରିୟାରହିତ ହୋଇ ନିଦ୍ରାବସ୍ଥାପରି ହେବ; (୨) ନିଦ୍ରାଭାବ ଆସିଲେ ଥରେ ଥରେ ମଝିରେ ମଝିରେ ଏକପ୍ରକାର ଶବ୍ଦ ଶୁଣାଯିବ; (୩) ଭବିଷ୍ୟତ୍ ଅବସ୍ଥା ସ୍ୱପ୍ନପରି ଦେଖାଯିବ। ଶରୀରରେ କୌଣସି ଜ୍ଞାନ ରହିବ ନାହିଁ; କିନ୍ତୁ ଭିତରେ ଜ୍ଞାନ ରହିବ। ସେହିପରି ଅବସ୍ଥାରେ ଏକପ୍ରକାର ଭାଷା ଶୁଣିପାରିବ।

## ଅଜପା ସାଧନ

ପ୍ରକୃତ ସାଧନ ଶ୍ୱାସର ତାଳେ ତାଳେ ନାମ କରିବା । ତାହା ଅଭ୍ୟାସ ହେଲେ ବୀର୍ଯ୍ୟ ସ୍ଥିର ହୁଏ ଏବଂ ପ୍ରାଣାୟାମ ସ୍ୱାଭାବିକ ହୋଇଯାଏ । ତଥାପି ବୀର୍ଯ୍ୟରକ୍ଷା ନିମିତ୍ତ ଚେଷ୍ଟା କରିବାକୁ ହେବ ।

ଆତ୍ମସମର୍ପଣଭାବ ମୂଳରେ ନ ଥିଲେ ଜପ ହେବ ନାହିଁ । କେବଳ ମନେ ମନେ ଗୋଟାଏ କିଛି କହିବାକୁ ଜପ କୁହାଯାଏ ନାହିଁ । ମାଆକୁ ନ ଦେଖି ଶିଶୁ ଯେପରି ବ୍ୟାକୁଳ ହୋଇ ମାଆକୁ ଡାକେ, ସେ ଯେପରି ଜାଣେ ଯେ କେବଳ କାନ୍ଦି କାନ୍ଦି ଡାକି ମାଆର ମନରେ ମମତା ଅଣାଇବା ବ୍ୟତୀତ ଅନ୍ୟ ଉପାୟରେ ତାର ମା ଆସିବେ ନାହିଁ, ସେହିପରି ପ୍ରସନ୍ନ ହୋଇ ସମସ୍ତ ପ୍ରାଣ ଲୋଟାଇଦେଇ ଜପ କରିବାକୁ ହେବ । ଏହି ଜପ ସବୁ ସମୟରେ ହୋଇପାରେ । ଏଥିପାଇଁ ଶୁଚି-ଅଶୁଚି ବିଚାର କରିବାର କିଛି ପ୍ରୟୋଜନ ନାହିଁ । ନିଃଶ୍ୱାସ ଯେପରି ସର୍ବଦା ଚାଲୁଛି, ଯେତେଦିନ ବଞ୍ଚିଥିବ, ସେତେଦିନ ଯାଏ ଯେପରି ଅବିରାମ ଗତିରେ ନିଃଶ୍ୱାସ ଚାଲିଥିବ, ଜପ ମଧ୍ୟ ସେହିପରି ହେବା ଆବଶ୍ୟକ ।

ଏହା ମୂଳରେ ବୈଜ୍ଞାନିକ ଯୁକ୍ତି ମଧ୍ୟ ଅଛି । ନିଦ୍ରା, ମୃତ୍ୟୁ, ପ୍ରଳୟ—ଏ ତିନୋଟି ଆଚ୍ଛନ୍ନ ଭାବ । ଏମାନଙ୍କ ଆବର୍ତ୍ତରେ ପଡ଼ିଲେ କାହାରି ସ୍ୱାତନ୍ତ୍ର୍ୟ ରହେ ନାହିଁ । ସ୍ୱାତନ୍ତ୍ର୍ୟ ରହେ ନାହିଁ ବୋଲି ମନୁଷ୍ୟ ପ୍ରକୃତିର କ୍ରୀଡ଼ନକ ହୋଇଯାଏ । ପ୍ରକୃତିର ଆବର୍ତ୍ତରୁ ନିସ୍ତାର ପାଇବାକୁ ହେଲେ ନିଦ୍ରା ଜୟ କରିବାକୁ ହେବ । ଜପ ତାହାର ସହାୟକ । ମନୁଷ୍ୟ ମଲେ ସବୁ ଛାଡ଼ିଯାଏ, ସାଙ୍ଗରେ କିଛି ନିଏ ନାହିଁ । କେବଳ ମାତ୍ର ଶ୍ୱାସ ବା ପ୍ରାଣକୁ ଅବଲମ୍ବନ କରି ଆତ୍ମା ବାହାରିଯାଏ । ଅବିରାମ ଜପ ଦ୍ୱାରା ଯଦି ଶ୍ୱାସ ସହିତ ମନ୍ତ୍ରକୁ ଗୁନ୍ଥି ଦେଇପାରେ, ତେବେ ନିଦ୍ରା ଭିତରେ ଶ୍ୱାସର ତାଳେ ତାଳେ ଯେପରି ସେହି ମନ୍ତ୍ର ଜପ ହେବ, ସେହିପରି ମୃତ୍ୟୁ ସମୟରେ ମଧ୍ୟ ଆମ ସଙ୍ଗରେ ଯିବ ।

ମୃତ୍ୟୁ ବା ନିଦ୍ରା ସମୟରେ ଯଦି ମନ୍ତ୍ର ସ୍ମରଣ ଥାଏ, ତେବେ ଶ୍ରୀଗୁରୁଦେବ ମଧ୍ୟ ସ୍ମରଣ ହେଉଥିବେ । ତାଙ୍କୁ ସ୍ମରଣ କଲାମାତ୍ରେ ସେ ଆସି ପଥ ଦେଖାଇଦେବେ । ମୃତ୍ୟୁର ଆଚ୍ଛନ୍ନ ଭାବ ଦୂର ହୋଇଯିବ; ଜୀବନରୁ ମରଣକୁ ଯାତ୍ରା ନ କରି ଜୀବନରୁ ନବଜୀବନ ପଥରେ ଆମର ଯାତ୍ରା ଆରମ୍ଭ ହେବ । ସାଧନସୂତ୍ର ଦ୍ୱାରା ଇହଲୋକ ଓ ପରଲୋକର ସଂଯୋଗ ସଂଘଟିତ ହେବ ।

ପ୍ରତିଶ୍ୱାସରେ ନାମ କରିବା ଏକମାତ୍ର ଉପାୟ । ଦିନତମାମ୍ ନାମ କରିବା ଯାହାଙ୍କର ଅଭ୍ୟାସ ହୋଇଯିବ, ତାଙ୍କର କର୍ମ ଆପଣା ମନକୁ ଚାଲିଥିବ । ନାମ ନ ନେଲେ ହୁଏତ ପରନିନ୍ଦା ବା ପାପଚିନ୍ତାରେ ଦିନ କଟାଇବାକୁ ପଡ଼ନ୍ତା ।

ପ୍ରଥମେ ନିଃଶ୍ୱାସ ସହିତ ନାମ କରିବାକୁ ହୁଏ । ପରେ ସୁଷୁମ୍ନା ନାଡ଼ୀରେ ଯେଉଁ ଶ୍ୱାସ ବହେ, ତାହାସହିତ ଯୋଗ ହୁଏ ।

ସର୍ବାବସ୍ଥାରେ ଅବିଚଳିତ ରହି ଗୁରୁନାମର ଜୟ ଉଚ୍ଚାରଣ କରିପାରିଲେ ହିଁ ମାନବଜୀବନର ସିଦ୍ଧାବସ୍ଥା । ତୁମର କ୍ଷୁଦ୍ର ଇଚ୍ଛାକୁ ତାଙ୍କ ମହତୀ ଇଚ୍ଛାରେ ବୁଡ଼ାଇଦେଇ ନିଜର କର୍ତ୍ତବ୍ୟ ସମ୍ପାଦନ କରିଯାଅ ।

ସମ୍ପଦରେ ବିପଦରେ, ସୁଖରେ ଦୁଃଖରେ, ସର୍ବାବସ୍ଥାରେ କର୍ତ୍ତବ୍ୟ ସମ୍ପାଦନ କରିଯାଅ, ଯେପରି କୌଣସି ଅବସ୍ଥାରେ କେହି ତୁମକୁ ଲକ୍ଷ୍ୟଚ୍ୟୁତ କରି ନ ପାରନ୍ତି । ତୁମେମାନେ 'ଜୟଗୁରୁ' ନାମର ମହିମା ପ୍ରଚାର କରି ମରଜଗତ୍‌ରେ ଅମରତ୍ୱ ଲାଭ କର ।

ଭଗବାନଙ୍କ ପ୍ରତି ଭକ୍ତମାନଙ୍କର ଭାବ ଜାତ ହେଲେ ସେମାନଙ୍କର ତାଙ୍କ ନାମଗାନରେ ସଦା ରୁଚି ଜାତ ହୁଏ । ରୁଚିରୁ ଆନନ୍ଦ ମିଳେ । ଜଗତ୍‌ରେ କେବଳ ନାମ ଓ ରୂପ ଏହି ଦୁଇଟି ବିଭାବ । ନାମ-ରୂପର ଅନ୍ତରାଳରେ ତାଙ୍କର ଶାଶ୍ୱତରୂପ ବିରାଜିତ । ଜାଗତିକ ନାମ-ରୂପ ଦେଇ ଅରୂପଙ୍କୁ ଦେଖିହୁଏ ନାହିଁ । ନିଜର ଅହଂରୂପ ନାମରୂପକୁ ପ୍ରିୟତମଙ୍କ ପଦତଳେ ସମର୍ପଣ କରି ତାହାଙ୍କର ନାମ ରୂପର ପ୍ରତିଷ୍ଠା କରିବାକୁ ହେବ ।

ଯାହାଙ୍କୁ ଯେ ସୁଖ ପାଆନ୍ତି, ତାଙ୍କରି ନାମ ଓ ତାଙ୍କରି ରୂପ କେବଳ ତାଙ୍କ ନିକଟରେ ପ୍ରିୟ । ଭକ୍ତ କେବଳ ତାଙ୍କ ନାମ-ରୂପରେ ନିଜକୁ ନିମଜ୍ଜିତ କରିଦିଅନ୍ତି । ଏହା ହିଁ ଅଦ୍ୱୈତର ଅନୁଭୂତି ବା ମିଳନାନନ୍ଦ । ଆମର ଯେପରି ନାମ ରୂପ ରହିଛି, ଜଗତ୍‌ର ଯେପରି ନାମ ରୂପ ରହିଛି, ଆମ ପ୍ରିୟତମଙ୍କର ମଧ୍ୟ ସେହିପରି ନାମ-ରୂପ ନିତ୍ୟ ବିରାଜିତ । ଏହି ଦ୍ୱୈତ ଅନୁଭୂତିରେ ମିଳନ ପୂର୍ଣ୍ଣ ହୁଏ ନାହିଁ । ଦୁଇଟି ଅଣୁ ଏକତ୍ରିତ ହେଲେ ମଧ୍ୟ ମଧ୍ୟରେ ଯେପରି ବ୍ୟବଧାନ ରହିଯାଏ, ବିରହର ସନ୍ତାପ ଜଗାଇଦିଏ, ଏହା ମଧ୍ୟ ସେହିପରି ଅବସ୍ଥା; କିନ୍ତୁ ନିଜ ସ୍ଥାନ ସେ ଯେତେବେଳେ ଅଧିକାର କରିବସନ୍ତି, ସେତେବେଳେ ମିଳାନନ୍ଦରେ ଜଗତ୍

ପ୍ଲାବିତ ହୋଇଯାଏ । "ମୁଁ ନୁହେଁ—ଜଗତ୍‌ରେ ତୁମେ ହିଁ ବିରାଜିତ ଅଛ; ତୁମେ କେବଳ ମୋର, ମୁଁ ତୁମର"—ଏହା ହିଁ ଅଦ୍ୱୈତତତ୍ତ୍ୱ ।

ରୂପ ବା ନାମୀଙ୍କ ଠାରୁ ନାମ ବଡ଼ । ରୂପର ପିପାସାରେ ବିରହ-ଅଗ୍ନି ଜଳିଉଠେ । ରୂପରେ ଆନନ୍ଦ ନିହିତ । ରୂପଦର୍ଶନ ନିମିତ୍ତ ସମସ୍ତେ ଲାଳାୟିତ ହେଲେ ମଧ୍ୟ ରୂପଦର୍ଶନରେ ସାଧକ ତୃପ୍ତି ଲାଭ କରନ୍ତି ନାହିଁ । ରୂପର ଅଦର୍ଶନରେ ପୁନରାୟ ଅତୃପ୍ତି ବଢ଼ିଯାଏ । ତେଣୁ ରୂପଦର୍ଶନ ଦ୍ୱୈତ ଭାବର ଅନୁଭୂତି । ରୂପ ବହିରଙ୍ଗ । ଭକ୍ତ ଯାହାଙ୍କୁ ସୁଖ ପାଇବେ, ତାଙ୍କ ରୂପ ଗଠନ କରିବାକୁ ହେବ । ତାଙ୍କର ଅପେକ୍ଷା ନ ରଖି ଯଦି ସେହି ରୂପ ଭକ୍ତଙ୍କ ଚକ୍ଷୁରେ ପ୍ରତିଭାତ ହୋଇପାରେ, ତେବେ ତାହା ହିଁ ଭକ୍ତଙ୍କର କାମ୍ୟ । ତଥାପି ଏହି ଅନୁଭୂତ ଦ୍ୱୈତଭାବମୂଳକ । ଏଥିରେ କାମନା ଅଛି । ଭୋଗସୁଖରେ ତୃପ୍ତି ନ ଥାଏ । ତୃପ୍ତି ଥାଏ ସୃଜନ ସୁଖରେ । ନାମ ସେହି ରୂପସୃଷ୍ଟିର ମନ୍ତ୍ର । ଭକ୍ତ ଯାହାଙ୍କୁ ସୁଖ ପାଆନ୍ତି, ତାଙ୍କରି ରୂପ ଭକ୍ତଙ୍କର ନିଜସ୍ୱ । ତାଙ୍କରି ନାମଟି ଭକ୍ତଙ୍କର ଅନିର୍ବଚନୀୟ ସୃଷ୍ଟି । ନାମ ଗ୍ରହଣ କଲେ ଅନ୍ତରରେ ଆପଣା ମନକୁ ରୂପ ଫୁଟିଉଠେ । ତେଣୁ ନାମ ଭାବୁକଙ୍କର କଳ୍ପତରୁ । ହୃଦୟମନ୍ଥନ ଦ୍ୱାରା ଭକ୍ତ ସେହି ନାମାମୃତ ପ୍ରାପ୍ତ ହୋଇଥାନ୍ତି । ନାମ ଭକ୍ତଙ୍କର ନିଜସ୍ୱ । ତେଣୁ ନାମର ମହିମା ଅନିର୍ବଚନୀୟ ।

ନାମ ରୂପଠାରୁ ସୂକ୍ଷ୍ମ ଅର୍ଥାତ୍ ନାମୀଙ୍କର ସୂକ୍ଷ୍ମରୂପ ହେଉଛି ନାମ । ନାମ କେବଳ ଶବ୍ଦ ନୁହେଁ; ନାମ ସହିତ ନାମୀ ନିତ୍ୟ ବିରାଜିତ । ତାଙ୍କ ନାମର ଆଶ୍ରୟ ଓ ତାଙ୍କର ଆଶ୍ରୟ ଏକା କଥା । ଭକ୍ତ ଯେ ଭଗବାନଙ୍କୁ ସୁଖ ପାଆନ୍ତି, ତାହାର ସ୍ଥୂଳ ଅଭିବ୍ୟକ୍ତି ରୂପରେ ଏବଂ ତାଙ୍କର ସୂକ୍ଷ୍ମାତିସୂକ୍ଷ୍ମ ମାନସୀ ପ୍ରତିମା ହେଲେ ନାମ । ତେଣୁ ନାମ ସ୍ୱୟମ୍ଭୁ ଅନାଦିର ଆଦି ସ୍ଫୁରଣ । ଭାବର ସ୍ଫୁରଣ ହେଲାକ୍ଷଣି ନାମ ସ୍ୱତଃ ହୃଦୟ କନ୍ଦରରେ ଝଂକୃତ ହୋଇଉଠେ । ତେଣୁ ନାମ ଆଦି ସଂକଳ୍ପ ! ନାମର ପ୍ରଥମ ଅଭିବ୍ୟକ୍ତିରେ ଅହଂତ୍ୱ ଲୋପ ପାଇଯାଏ । ନାମର ପ୍ରତିଷ୍ଠା ପରମବ୍ୟୋମରେ । ଏହି ନିତ୍ୟ ଅଭିବ୍ୟକ୍ତି ପରଠାରୁ ନାମ ଅହଂସହିତ ଯୁକ୍ତ ହୋଇ ବାସନା ରୂପରେ ଫୁଟିଉଠେ । ନାମ ଦ୍ୱୈତ ଓ ଅଦ୍ୱୈତର ଯୁଗଳ ସମ୍ମେଳନ । ନାମର ପ୍ରେରଣା ଅନ୍ତରରେ କିପରି ଯେ ଜାଗ୍ରତ ହୁଏ, ତାହା କେହି କହିପାରନ୍ତି ନାହିଁ । ତେଣୁ ନାମ ଗୁଣରେ ଅଭିବ୍ୟକ୍ତ ହେଲେ ମଧ୍ୟ ମୂଳରେ ଗୁଣାତୀତ । ଏହି ସ୍ଥାନରେ ଭାବସହିତ ନାମର ସମ୍ପର୍କ । ଭାବ ଯେପରି ନିତ୍ୟ, ନାମ ମଧ୍ୟ ସେହିପରି

ନିତ୍ୟସିଦ୍ଧ । ନାମ ଭାବସ୍ଫୁରଣର ସହଚର । ଏହା ବର୍ଣ୍ଣସମଷ୍ଟି ନୁହେଁ । ସୃଷ୍ଟିର ଅତୀତ ଆଦି-ବାସନା ବା ଆନନ୍ଦର ପ୍ରଥମ ବ୍ୟଞ୍ଜନା ହିଁ ନାମ । ଚିତ୍ତ ଶୁଦ୍ଧ ହେଲେ ଏହି ସ୍ୱୟମ୍ଭୁନାମ ଆପଣା ମନକୁ ଚିତ୍ତରେ ଝଂକୃତ ହୋଇଉଠେ । ଏହା ଅନିଦାନ, ତେଣୁ ନିତ୍ୟବସ୍ତୁ । ଏହାର ପ୍ରେରୟିତା ମଧ୍ୟ ନିତ୍ୟ । ତେଣୁ ଏହା ଲୋକବୁଦ୍ଧିର ଅଗୋଚର ହେତୁ ଗୁପ୍ତ । ଏଥିପାଇଁ ଏହି ନାମ କେଉଁଠି ଥିଲା, କିଏ ଆଣିଲା, ଏ ରହସ୍ୟର ମୀମାଂସା କରିହୁଏ ନାହିଁ । ଦିନେ ଚଣ୍ଡୀଦାସ ଶ୍ରୀରାଧାଙ୍କ ମୁଖରେ ସେହି ନାମର ମହିମା ଜଗତ୍‌ବାସୀଙ୍କୁ ଶୁଣାଇଥିଲେ—

''ସଇ, କେବା ଶୋନାଇଲ ଶ୍ୟାମ-ନାମ,
କାନେର୍ ଭିତର୍ ଦିୟା ମରମେ ପଶିଲ ଗୋ
ଆକୁଲ କରିଲ ମୋର ପ୍ରାଣ ।''

ତେଣୁ ନାମ ଅନିର୍ବଚନୀୟ ବସ୍ତୁ । କିଏ ଶୁଣାଏ, କିଏ ଶୁଣେ, ତାହା କେହି କହିପାରନ୍ତି ନାହିଁ ।

ନାମରେ ରୁଚି, ଗୁଣଗାନରେ ଆସକ୍ତି ଏବଂ ତାଙ୍କ ବସତିସ୍ଥାନରେ ବାସ କରିବା ନିମିତ୍ତ ଆଗ୍ରହ । ରୁଚି, ଆସକ୍ତି ଓ ପ୍ରୀତି—ଏହା ପରସ୍ପର ଜଡ଼ିତ । ନାମରେ ରୁଚି ଜାତ ହେଲେ ଚିତ୍ତ ତାଙ୍କ ପ୍ରତି ଉନ୍ମୁଖ ହୁଏ । ଆସକ୍ତିରେ ଉନ୍ମୁଖ ଚିତ୍ତିକୁ ଫେରାଇ ଆଣିବା କ୍ଷମତା ରହେ ନାହିଁ । ପ୍ରୀତିରେ ଅବଶ ଚିତ୍ତ ଇଷ୍ଟଙ୍କ ଠାରେ ତନ୍ମୟ ହୋଇଯାଏ । ନାମଗାନରତ ଭକ୍ତଙ୍କର ଚିତ୍ତ ତାଙ୍କ ଗୁଣ ଶ୍ରବଣରେ ଆନନ୍ଦଯୁକ୍ତ ହୁଏ । ଗୁଣ ଶ୍ରବଣ କରୁ କରୁ ତାଙ୍କ ମଧୁର ରୂପ ସୂକ୍ଷ୍ମ ଭାବରେ ଚିତ୍ତରେ ରେଖାପାତ କଲେ । ରୂପରେ ତାହାର ସ୍ଥୂଳ ଅଭିବ୍ୟକ୍ତି ।

ରୂପର ପିପାସା ସମସ୍ତଙ୍କ ଅନ୍ତରରେ ବିରାଜିତ । ଇଷ୍ଟଙ୍କୁ ସମସ୍ତେ ଦର୍ଶନ କରିବାକୁ ଇଚ୍ଛା କରନ୍ତି । ଏହି ଦର୍ଶନର ଉପାୟ ନାମ । ନାମ ନେଲେ ତାଙ୍କ ଅନିର୍ବଚନୀୟ ଗୁଣରାଶି ସାଧକଙ୍କ ଅନ୍ତରରେ ଫୁଟିଉଠେ ଏବଂ ସେହି ଗୁଣ ଘନୀଭୂତ ହୋଇ ରୂପରେ ଅଭିବ୍ୟକ୍ତ ହୁଏ । ତେଣୁ ଭକ୍ତ ଇଷ୍ଟଗୁଣ ଶ୍ରବଣରେ ସର୍ବଦା ତନ୍ମୟ ରହନ୍ତି । ତେବେ ସେହି ଗୁଣଶ୍ରବଣ ପ୍ରତି ଆସକ୍ତି, ରୂପରେ ପରଣିତ ହୋଇ ସାଧକଙ୍କର ଚକ୍ଷୁ-କର୍ଣ୍ଣର ବିବାଦ ଭଞ୍ଜନ କରିଦିଏ । ନାମର ଏପରି ଆଶ୍ଚର୍ଯ୍ୟ ମହିମା ଯେ ଯେଉଁମାନେ ନାମ ନେବେ, ସେମାନଙ୍କର ଗୁଣ-

ଶ୍ରବଣ ଓ ଗୁଣଗ୍ରହଣ ଶକ୍ତି ବୃଦ୍ଧି ପାଇବ । ତେଣୁ ଭକ୍ତମାନେ କେବେହେଲେ ନାମ ପରିତ୍ୟାଗ କରିବା ଉଚିତ୍ ନୁହେଁ । ଗୁଣ-ସଂଗ୍ରହରେ ନାମର ଆଶ୍ଚର୍ଯ୍ୟ ପଟୁତ୍ୱ । ଦାର୍ଶନିକମାନଙ୍କ ମତରେ ସୃଷ୍ଟିର ଆଦିମକ୍ଷଣରେ ମହାକାଶ ସ୍ପନ୍ଦିତ ହୋଇ ନାମର ଅଭିବ୍ୟକ୍ତ ହୋଇଥିଲା । ସେହି ନାମ ଧରି ଧାତାଙ୍କର ମାନସପଟରେ ଗୁଣ, ରୂପରେ ବସ୍ତୁର ସୂକ୍ଷ୍ମସତ୍ତା ଜାଗ୍ରତ ହୋଇଉଠିଲା ଏବଂ ପରିଶେଷରେ ତାହା ରୂପରେ ପରିଣତ ହୋଇଗଲା । ଆଦି ସ୍ପନ୍ଦନ ହିଁ ଭାବ, ରୂପ ତାହାର ଚରମ ପରିଣତି ବା ଘନୀଭୂତ ପ୍ରକାଶ । ତେଣୁ ଅନାଦିର ଆଦି ନାମ 'ଗୁରୁ' । ବାସ୍ତବ ଜୀବନରେ ତାହାରି ପୁନରାବୃତ୍ତି ହୋଇଥାଏ ମାତ୍ର ।

ରୂପମଧ୍ୟରେ, ଭାବମଧ୍ୟରେ ବିରହର ବେଦନା ନିହିତ । ଚିତ୍ତ ଉଜ୍ଜ୍ୱଳ ବା ଶୁଦ୍ଧ ହେଲେ ଇଷ୍ଟସମାଗମର ଆଭାଷଯୁକ୍ତ ଯେଉଁ ଆନନ୍ଦର ସ୍ଫୁରଣ ହୁଏ, ତାହାର ଅପର ନାମ ଭାବ । ତେଣୁ ସେ ନାମୀ, ସେ ଗୁଣୀ ଏବଂ ସେ ହିଁ ଭାବରୂପୀ । ଯାହାଙ୍କୁ ଦେଖିଲେ, ଯାହାଙ୍କ ନାମ ଶୁଣିଲେ ପ୍ରାଣରେ ତରଙ୍ଗର ସୃଷ୍ଟି ହୁଏ, ଯାହାଙ୍କର ନାମ ସ୍ୱତଃ ନେବାକୁ ଇଚ୍ଛା ହୁଏ, ସେ ହେଉଛନ୍ତି ଭକ୍ତର ଭଗବାନ । ତେଣୁ ଭଗବାନ ମନୁଷ୍ୟଗୁରୁଙ୍କ ଭିତରେ ଲୁକ୍‌କାୟିତ ରହିଥାନ୍ତି ।

ଅଭାବବୋଧ ରଖି ଭାବର ସାଧନା କରାଯାଏ ନାହିଁ । ତେଣୁ ତପସ୍ୟା, ସଂଯମ, ବୈରାଗ୍ୟ ଦ୍ୱାରା ପାର୍ଥିବ ଅଭାବ ମୋଚନ କରି ଭାବରାଜ୍ୟରେ ପ୍ରବେଶ କରିବାକୁ ହୁଏ ।

ଯେତେପ୍ରକାର ନାମ ଅଛି, ତନ୍ମଧ୍ୟରେ 'ଗୁରୁ' ନାମ ଶ୍ରେଷ୍ଠ । ଏଥିପାଇଁ 'ଜୟଗୁରୁ' ନାମ, ମହାମନ୍ତ୍ର ଓ ସିଦ୍ଧନାମ ମଧ୍ୟରେ ଗଣ୍ୟ ।



# ମନ୍ତ୍ର

## ବୀଜ ଚେତନ

''ମନନାତ୍ ତ୍ରାୟତେ ଯସ୍ମାତ୍ ତସ୍ମାନ୍ମନ୍ତ୍ରଂ ପ୍ରକୀର୍ତ୍ତିତେ।''

ଯାହା ମନନ କଲେ ଏହି ଭବଜ୍ୱାଳାରୁ ପରିତ୍ରାଣ ମିଳିବ, ତାହାର ନାମ ମନ୍ତ୍ର। ପ୍ରତ୍ୟେକ ଦେବତାଙ୍କର ଗୋଟିଏ ଗୋଟିଏ ମନ୍ତ୍ର ଅଛି। ତାହାକୁ ବୀଜମନ୍ତ୍ର କୁହାଯାଏ। ସିଦ୍ଧ ଜୀବନ୍ମୁକ୍ତ ମୁନି-ଋଷିମାନେ ସମାଧି-ଅବସ୍ଥାରେ ଏସବୁ ମନ୍ତ୍ର ଉଦ୍ଧାର କରିଯାଇଛନ୍ତି। ଦେବତା ମାତ୍ରକେ ବ୍ରହ୍ମଙ୍କ ଶକ୍ତି-ବିଶେଷ। ଗୁଣ ଓ ଭାବର ତାରତମ୍ୟରେ ଦେବତାମାନଙ୍କର ବିଭିନ୍ନ ନାମ ହୋଇଅଛି। ରାଧାକୃଷ୍ଣଙ୍କ ମୂର୍ତ୍ତିରେ ପ୍ରେମ ଓ ମଧୁରଭାବ ଉଜ୍ଜ୍ୱଳ ରୂପରେ ଫୁଟିଉଠିଛି। ପୁଣି ଶିବ-ଶକ୍ତିଙ୍କ ମୂର୍ତ୍ତିରେ ସଂହାରିଣୀ ଓ ପାଳିନୀ-ଶକ୍ତିଙ୍କର ବିଶେଷ ବିକାଶ।

ମନୁଷ୍ୟର ଗୋଟିଏ ରାଶିନାମ ଥାଏ ଏବଂ ପିତା-ମାତା ପ୍ରଭୃତି ଦେଇଥିବା ଗୋଟିଏ ଡାକନାମ ମଧ୍ୟ ଥାଏ, କିନ୍ତୁ ସାଧାରଣତଃ ଲୋକେ ଏହି ଡାକନାମରେ ପରିଚିତ ହୁଅନ୍ତି। ରାଶିନାମଟି ଗୋପନୀୟ ରହିଯାଏ। ଶାସ୍ତ୍ରୀୟ କାର୍ଯ୍ୟାନୁଷ୍ଠାନ ସମୟରେ ଏହି ରାଶି ନାମର ଆବଶ୍ୟକତା ଦେଖାଯାଏ।

ସେହିପରି ରାମ, କୃଷ୍ଣ, ଶିବ, ଦୁର୍ଗା ପ୍ରଭୃତି ଦେବଦେବୀଙ୍କର ଗୋଟିଏ ଗୋଟିଏ ଗୁହ୍ୟ ନାମ ଅଛି। ଏହି ନାମ ବୀଜମନ୍ତ୍ର। ବୀଜ ପ୍ରଥମ କି ବୃକ୍ଷ ପ୍ରଥମ? ଏ ପ୍ରଶ୍ନର ସମାଧାନ ତୁମ-ଆମ ଭିତରେ ହୋଇ ନ ପାରିଲେ ମଧ୍ୟ ଯୋଗୀମାନେ ଏହାର ଶେଷ ସିଦ୍ଧାନ୍ତରେ ପହଞ୍ଚିଛନ୍ତି। ଯେଉଁମାନଙ୍କର ଦିବ୍ୟଦୃଷ୍ଟି ଲାଭ ହୋଇଛି, ସେମାନେ ବୀଜ ଓ ବୃକ୍ଷକୁ ସ୍ୱତନ୍ତ୍ରଭାବରେ ଦେଖନ୍ତି ନାହିଁ; କାରଣ, ବୀଜ ଓ ବୃକ୍ଷ ସ୍ୱରୂପତଃ ଏକ; ସ୍ଥୂଳଦୃଷ୍ଟିରେ ଭିନ୍ନ ଭିନ୍ନ ପ୍ରତୀତ ହୁଏ ମାତ୍ର। ଯାହା କେବେ ନ ଥିଲା, ତାହା କେବେ ଦେଖାଯିବ ନାହିଁ। ଯଦି ଗୋଟିଏ କ୍ଷୁଦ୍ର ବଟବୀଜମଧ୍ୟରେ ବିଶାଳ ବଟବୃକ୍ଷ ତା'ର ପ୍ରକାଣ୍ଡ କାଣ୍ଡ ପ୍ରଭୃତି ଧରି ସୁପ୍ତ

ନ ଥାଆନ୍ତା, ତେବେ ସ୍ଥୁଳରେ ତାହା କେବେହେଲେ ପ୍ରକାଶିତ ହୋଇପାରନ୍ତା ନାହିଁ। ସୂକ୍ଷ୍ମରୁ ସ୍ଥୁଳର ପ୍ରକାଶ। ସୂକ୍ଷ୍ମ ଅବ୍ୟକ୍ତ, ସ୍ଥୁଳ ବ୍ୟକ୍ତ।

ଯେବେ କୌଣସି ଯୋଗୀ ସ୍ୱୀୟ ଯୋଗବଳରେ ଏହି ବୃକ୍ଷକୁ ସଂକୁଚିତ କରନ୍ତି, ତେବେ ଏହି ବିଶାଳ ବଟବୃକ୍ଷ ପୁନରାୟ ବୀଜାକାର ଧାରଣ କରିବ। ତୁମେ ଆମେ ଏ ରହସ୍ୟ ଭେଦ କରିପାରିବା ନାହିଁ; କାରଣ, ଆମେମାନେ ସ୍ଥୁଳରେ ପ୍ରତିନିୟତ ବାସ କରୁଥାଇଁ। ଏହି ବୀଜ ଓ ବୃକ୍ଷର ଭେଦବୁଦ୍ଧି ଯେତେବେଳେ ଅବଗତ ହୋଇ ଉଭୟ ଏକ ବୋଲି ଦୃଢ଼ ଧାରଣା ଜନ୍ମିବ, ସେତେବେଳେ ଯାଇଁ ବୀଜମନ୍ତ୍ର ଓ ତତ୍‌ପ୍ରତିପାଦ୍ୟ ଦେବତାଙ୍କୁ ଆମେ ଅଭିନ୍ନ ଭାବିପାରିବା ଏବଂ ସେତିକିବେଳେ ମନ୍ତ୍ର ଜପରେ ଦେବତାଙ୍କର ପ୍ରକୃତ ଆରାଧନା ହେବ।

କହିପାର, ବୀଜ ଜଡ଼ବସ୍ତୁ, ଏହାସହିତ ଦେବତାଙ୍କର ସମ୍ବନ୍ଧ ରହି ନ ପାରେ; କିନ୍ତୁ ଏ ଜଗତ୍‌ର ସଜୀବ ବସ୍ତୁ ଏକାବେଳକେ ଜଡ଼ ନୁହେଁ। ଯଦି ଏକାବେଳେ ଜଡ଼ ହୋଇଥାନ୍ତା, ତେବେ ସେ ବୀଜ କେବେହେଲେ ଅଙ୍କୁରିତ କିମ୍ବା ବର୍ଦ୍ଧିତ ହୋଇପାରନ୍ତା ନାହିଁ। ଯେଉଁଠାରେ ପ୍ରାଣର ସ୍ପନ୍ଦନ ଅଛି, ସେହିଠାରେ ଚୈତନ୍ୟ ବ୍ୟକ୍ତ ଅଥବା ଅବ୍ୟକ୍ତଭାବରେ କାର୍ଯ୍ୟ କରୁଛନ୍ତି।

## ଭାବର ପ୍ରତୀକ

କିନ୍ତୁ ବୀଜ ଏକାବେଳକେ ଜଡ଼ ନ ହେଲେ ମଧ୍ୟ ମନ୍ତ୍ର ତ ଶବ୍ଦ ମାତ୍ର। ଶବ୍ଦ ଜଡ଼; ଦେବତାଙ୍କ ସହିତ ଶବ୍ଦର ସମ୍ବନ୍ଧ କ'ଣ? ଶବ୍ଦ ଭାବର ପ୍ରତୀକ ମାତ୍ର। ପୁଣି ଦେବତା ଭାବବ୍ୟଞ୍ଜକ ଘନୀଭୂତ ଭାବର ପ୍ରକାଶ ମାତ୍ର। ଶବ୍ଦ ତାହାର ପ୍ରକାଶକ। ତାହାର ଆନୁସଙ୍ଗିକ ଭାବ ବ୍ୟତୀତ ଶବ୍ଦ ରହି ନ ପାରେ। ଶବ୍ଦ ଓ ଭାବର ଭେଦ ଅଚିନ୍ତନୀୟ। ଜଗତର ଯାବତୀୟ ଜୀବଙ୍କଭିତରେ ଏହି ଭାବ ଅଳ୍ପ-ବିସ୍ତର ବିଦ୍ୟମାନ। ଗାଭୀ ହମ୍ବାରବ କଲେ ବତ୍ସା ତାର ସମୀପସ୍ଥ ହୁଏ। ଶବ୍ଦ ହିଁ ଭାବର ପ୍ରତୀକ ବୋଲି ବାରଦୀର ଲୋକନାଥ ବ୍ରହ୍ମଚାରୀ ବାଘୁଣୀସହିତ ଭାବ ବିନିମୟ ଓ ସଖ୍ୟ ସ୍ଥାପନ କରିପାରିଥିଲେ।

ଭାବ ବାହାରକୁ ଆସିବାକ୍ଷଣି ଶବ୍ଦରୂପରେ ପ୍ରକାଶ ପାଏ। ଟିକିଏ ତଳେଇ ଦେଖିଲେ ପ୍ରତୀୟମାନ ହୁଏ ଯେ ଏ ଜଗତ୍ ଜଣକର ଭାବର ଉତ୍ସ ବା ସ୍ଥୁଳପ୍ରକାଶ ମାତ୍ର।

ସବୁ ଦେବତା ଭାବର ପ୍ରତୀକ; ତେଣୁ ପ୍ରତିଦେବତାଙ୍କ ବୀଜ ପୃଥକ୍। ଅବଶ୍ୟ ଦେବତାମାନେ ବିଭିନ୍ନ ଭାବର ପ୍ରତୀକ ହେଲେ ମଧ୍ୟ ଯେ କୌଣସି ଦେବତାଙ୍କୁ ଶ୍ରୀଭଗବାନ୍‌ଙ୍କସହ ଅଭେଦଭାବରେ ଉପାସନା କଲେ ଭଗବାନଙ୍କ ଉପାସନା ହୁଏ। ଏକମାତ୍ର ପ୍ରଣବ ହିଁ ଭଗବାନ୍‌ଙ୍କର ବାଚକ। ଭଗବତ୍‌ଭାବର ବିଶେଷ ବିଶେଷ ଅବସ୍ଥା ଅନୁସାରେ ବୀଜ ବିଭିନ୍ନ। ଏହିସବୁ ବୀଜକୁ କେହି ସୃଷ୍ଟି କରି ନାହାନ୍ତି। ଯଦି କେହି କହନ୍ତି, କୌଣସି ଋଷି ଏହିସବୁ ବୀଜ ସୃଷ୍ଟି କରିଛନ୍ତି, ତାହାହେଲେ ସମସ୍ତ ତତ୍ତ୍ୱ ନଷ୍ଟ ହୋଇଯିବ; କାରଣ, ଶ୍ରୀଭଗବାନ୍ କହିଛନ୍ତି ''ମନ୍ତ୍ରୋଽହଂ''। ସୁତରାଂ, ମନ୍ତ୍ରର କେହି ସ୍ରଷ୍ଟା ନାହାନ୍ତି।

ଋଷିମାନେ ଭାବରେ ବିଭୋର ହୋଇ ସମାଧି-ଅବସ୍ଥାରେ ଥିବାବେଳେ ସେହିସବୁ ଭାବର ପ୍ରତୀକ ମନ୍ତ୍ର ସେମାନଙ୍କଦ୍ୱାରା ତଦବସ୍ଥାରେ ଦୃଷ୍ଟ ହୋଇଥିଲେ। ଋଷିମାନେ ଦ୍ରଷ୍ଟା ମାତ୍ର। ସେହିମାନେ ଏସବୁ ମନ୍ତ୍ରର ଉଦ୍‌ଯାପନ କରି ବୀଜଗୁଡ଼ିକର ସଜୀବତା ଆନୟନପୂର୍ବକ ଜଗତ୍‌ରେ ଏକ ଏକ ସମୟରେ ଲୁପ୍ତପ୍ରାୟ ଭାବଧାରା ପ୍ରବହମାନ ରଖିଗଲେ; ସୁତରାଂ, ବୀଜମନ୍ତ୍ର ଅନାଦି ଓ ଅନିତ୍ୟ ଏବଂ ଭାବଭେଦରେ ବୀଜ ଅନନ୍ତ।

ହିନ୍ଦୁମାନଙ୍କର ବୀଜମନ୍ତ୍ରଗୁଡ଼ିକ ଯୁଗ୍ମାତ୍ମକ। ହରି ଏବଂ ହ୍ରୀଁ ମୂଳରେ ଏକ। ହ (ଶିବ)+ର (ମିଳନ)+ଇ=ଶକ୍ତି=ହରି। ପୁଣି ହ (ଶିବ)+ର (ମିଳନ)+ଇ (ଶକ୍ତି)=ହ୍ରୀ+ (ନାଦବିନ୍ଦୁ)=ହ୍ରୀଁ।

## ଗୁରୁମୁଖନିଃସୃତ ମନ୍ତ୍ର

ମନ୍ତ୍ରଭାବ ସଂହତି ହେଲେ ମଧ୍ୟ ମହାପୁରୁଷଙ୍କ ମୁଖନିଃସୃତ ନ ହେଲେ ସାଧକଙ୍କ ନିକଟରେ ତଥା ସଂପୂର୍ଣ୍ଣ ନିର୍ଜ୍ଜୀବ। ଏହି ନିର୍ଜ୍ଜୀବ ମନ୍ତ୍ର ଯେଉଁ ଭାବରେ ଯେତେ କାଳ ଜପ କଲେ ମଧ୍ୟ ଏହା କେବେହେଲେ ସଜୀବତା ପ୍ରାପ୍ତ ହୋଇପାରିବ ନାହିଁ। ବଟବୀଜ କାକ-ଉଦରରୁ ବାହାରିବାପରେ ପଥରରେ ପଡ଼ିଲେ ମଧ୍ୟ ଗଛ ହୁଏ; କିନ୍ତୁ ତା' ପୂର୍ବରୁ ହୁଏ ନାହିଁ। ମାତ୍ର ଯେ କୌଣସି ବୀଜ ତୁମେ ଜପ କଲେ ମଧ୍ୟ ଦୃଢ଼ତାପାଇଁ ପୁନରାୟ କରିବାକୁ ହେଉଛି ଯେ ତାହା ଗୁରୁବାକ୍ୟଲବ୍‌ଧ ହେବା ଆବଶ୍ୟକ।

ଗୁରୁଦେବଙ୍କ କଥା ଶୁଣି ଅନେକ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଘଟକ-ନିୟୋଗ କଥା ଭାବି ନାସିକା କୁଞ୍ଚନ କରନ୍ତି, କିନ୍ତୁ ଆମେମାନେ ଯଦି ସଂପୂର୍ଣ୍ଣ

ଗଣତାନ୍ତ୍ରିକ ମୁସଲମାନ ଧର୍ମ ଆଲୋଚନା କରିବା, ଯେଉଁ ଧର୍ମାବଲମ୍ବୀଗଣ ପୌରହିତ୍ୟକୁ ଆଦୌ ସ୍ଥାନ ଦେଇ ନାହାନ୍ତି, ତେବେ ଦେଖିବା ଯେ, ସେମାନେ ମଧ୍ୟ ଗୁରୁପଦ୍ଧତିକୁ ସ୍ୱୀକାର କରି ନେଇଛନ୍ତି ।

ଶ୍ରୀଗୁରୁଦେବଙ୍କ ନିକଟରୁ ଏହି ବୀଜମନ୍ତ୍ର ଲାଭ କରି ତାଙ୍କ ନିର୍ଦ୍ଦେଶ ଅନୁସାରେ ସାଧନ କରୁ କରୁ ତାଙ୍କରି କୃପାରୁ ମନ୍ତ୍ରସିଦ୍ଧି ହୁଏ । ମନ୍ତ୍ର ସିଦ୍ଧ ହେଲାକ୍ଷଣି ସେ ମହାପୁରୁଷ ହୋଇଯାଆନ୍ତି । କେବଳ ଜପଦ୍ୱାରା ମନ୍ତ୍ରସିଦ୍ଧି ଲାଭ ହୁଏ, କିନ୍ତୁ ମନ୍ତ୍ରର ଅର୍ଥବୋଧ ଓ ମନ୍ତ୍ର ଚୈତନ୍ୟ କରି ନ ପାରିଲେ ତାହାର ଫଳ ପାଇବା ଅସମ୍ଭବ ।

## ମନ୍ତ୍ରାର୍ଥ

ମନ୍ତ୍ର ଏବଂ ମନ୍ତ୍ରର ପ୍ରତିପାଦ୍ୟ ଦେବତାଙ୍କର ଯେଉଁ ଅଭେଦ ଜ୍ଞାନ, ତାହାର ନାମ ମନ୍ତ୍ରାର୍ଥ, ଯେପରି ବୀଜ ଓ ବୃକ୍ଷ । ବୀଜମଧ୍ୟରେ ବୃକ୍ଷ ନିହିତ, ତାହା ଜଣାଯାଏ ନାହିଁ; କିନ୍ତୁ ଉପଯୁକ୍ତ ଜଳ, ବାୟୁ ଓ ତାପ ସଂଯୁକ୍ତ ହେଲେ ସେହି ବୀଜରୁ ବୃକ୍ଷର ଅଙ୍କୁର ନିର୍ଗତ ହୁଏ । ଯତ୍ନ ଓ ଚେଷ୍ଟାଫଳରେ କାଳକ୍ରମେ ସେହି ଅଙ୍କୁର ମହାମହୀରୁହରେ ପରିଣତ ହୁଏ ।

ପୂର୍ବରୁ କହିଛି, ଗୁରୁ ଯେଉଁ ମନ୍ତ୍ର ଦିଅନ୍ତି, ତାହାକୁ ବୀଜମନ୍ତ୍ର କୁହାଯାଏ । ତୁମର ଗୋଟିଏ ଆମ୍ରଗଛ ଆବଶ୍ୟକ । ମୋର ଗୋଟିଏ ଫଳନ୍ତି ଗଛ ଅଛି । ତୁମେ ଆସି ମାଗିଲେ ମୁଁ ତାହା ଦେଇପାରିବି ନାହିଁ । ପୁଣି ଗଛଟି ଦେଲେ ମଧ୍ୟ ପ୍ରକୃତିର ନିୟମବିରୁଦ୍ଧରେ ତାକୁ ନେଇ ଅନ୍ୟଠାରେ ଲଗାଇଲେ ସେ ବଞ୍ଚିବ ନାହିଁ; ତେଣୁ ତାହା ତୁମର ଫଳଦାୟୀ ହେବ ନାହିଁ । ସୁତରାଂ, ତୁମକୁ ସେହି ଗଛର ମଞ୍ଜିଟିଏ ଦେବାକୁ ହେବ । ତାହା ସଙ୍ଗେ ସଙ୍ଗେ ଯେଉଁ ପ୍ରଣାଳୀଦ୍ୱାରା ଏହି ବୀଜ ଅଙ୍କୁରିତ ହେବାକୁ ହେବ ଅର୍ଥାତ୍ ଯେଉଁ ପ୍ରକାରରେ ଯତ୍ନ ଓ ସଂରକ୍ଷଣ କରିବାକୁ ପଡ଼ିବ, ତାହା କହିଦେବାକୁ ହେବ ।

ପୁଣି ମୋ ଉପଦେଶମତେ ତୁମେ କାର୍ଯ୍ୟ କଲେ ଏହି ବୀଜ ବୃକ୍ଷରେ ପରିଣତ ହେବ । ଶ୍ରୀଗୁରୁଦେବ ଶିଷ୍ୟଙ୍କୁ ଇଷ୍ଟଦେବଙ୍କର ବୀଜମନ୍ତ୍ର ଦେଇଦିଅନ୍ତି । ସେହି ବୀଜମନ୍ତ୍ରକୁ କିପରି ଭାବରେ ଚୈତନ୍ୟ କରି ଜପ କରିବାକୁ ହେବ, ତାହାର ପ୍ରଣାଳୀ ସେ କହିଦିଅନ୍ତି ଓ ଦେଖାଇଦିଅନ୍ତି । ଶିଷ୍ୟ ଶ୍ରୀଗୁରୁଦେବଙ୍କ ଉପଦେଶ ଅନୁସାରେ କାର୍ଯ୍ୟ କଲେ ଏବଂ ନିୟମିତ ଯତ୍ନ ଓ ଚେଷ୍ଟା କଲେ, ସେତେବେଳେ ଏହି ବୀଜରୁ ଇଷ୍ଟମୂର୍ତ୍ତିଙ୍କର ସ୍ଫୁରଣ ହୁଏ ।

## ମନ୍ତ୍ରଚୈତନ୍ୟ

କୁଣ୍ଡଳିନୀ ଶକ୍ତିକୁ ଜାଗରିତା କରି ହୃତ୍‌ପଦ୍ମରେ ସ୍ଥିର ଆସନରେ ବସାଇ ମନ୍ତ୍ର ଜପ କରିବା ପ୍ରଣାଳୀକୁ ମନ୍ତ୍ରଚୈତନ୍ୟ କୁହାଯାଏ । ଯୋଗଶାସ୍ତ୍ରରେ ଯାହାକୁ ମୂଳାଧାର ପଦ୍ମ କୁହାଯାଏ, ତାହା କୁଣ୍ଡଳିନୀର ସ୍ଥାନ; ସହସ୍ରାର ପୁରୁଷର ସ୍ଥାନ । ଏହି କୁଣ୍ଡଳିନୀ ହିଁ ସାଂଖ୍ୟର ପ୍ରକୃତି ।

ଶାସ୍ତ୍ରରେ କୁଣ୍ଡଳିନୀଶକ୍ତିକୁ ନିଦ୍ରିତା କୁହାଯାଇଛି । ଏହା ରୂପକ । ନିଦ୍ରିତା ଅର୍ଥ ସେ ତାଙ୍କ ସ୍ୱରୂପଚ୍ୟୁତା, ଅଜ୍ଞାନରେ ଆବରିତା । ସେ ଚୈତନ୍ୟରୁ ବିଚ୍ଛିନ୍ନ ହୋଇପଡ଼ିଛନ୍ତି । ଜଡ଼ ଓ ଚୈତନ୍ୟର ମିଳନରେ ଉଭୟଙ୍କର ଅସ୍ତିତ୍ୱବୋଧ ଆସିଥାଏ । ଏହି ଶରୀରରେ ଚୈତନ୍ୟ ଓ ଶକ୍ତି ଉଭୟେ ବିରାଜିତ । ତଥାପି ଆମର ସୁସ୍ପଷ୍ଟ ପ୍ରତୀତି ଜନ୍ମୁନାହିଁ କାହିଁକି ? ଶକ୍ତି ଓ ଚୈତନ୍ୟଙ୍କର ବିଚ୍ଛେଦହେତୁ ଏ ଦୁହିଙ୍କର ଅସ୍ତିତ୍ୱର ଉପଲବ୍ଧି ହୁଏ ନାହିଁ । ପୁଣି ଚୈତନ୍ୟ ଓ ଶକ୍ତିଙ୍କର ମିଳନ କରାଇପାରିଲେ ଅର୍ଥାତ୍ ଅଜ୍ଞାନଆବରିତ ଶକ୍ତି ଜ୍ଞାନସହିତ ମିଳିତ ହେଲାକ୍ଷଣି ସେ ତାଙ୍କ ସ୍ୱରୂପକୁ ଫେରି ଆସନ୍ତି । ସେତିକିବେଳେ ଚୈତନ୍ୟ ଓ ଶକ୍ତିଙ୍କର ଅସ୍ତିତ୍ୱବୋଧ ହୁଏ ।

ମନେକର, ଏହି ଗୃହମଧ୍ୟରେ ଗବାକ୍ଷ-ରନ୍ଧ୍ର ଦେଇ ସୂର୍ଯ୍ୟଦେବଙ୍କର ଗୋଟିଏ କ୍ଷୀଣରଶ୍ମି ପତିତ ହେଉଅଛି; କିନ୍ତୁ ଏହି ରଶ୍ମିରେଖା ଦେଖାଯାଉ ନାହିଁ । ଯେଉଁଠାରେ ମାଟିରେ ରଶ୍ମିର ସଂଯୋଗ ଘଟିଛି, ସେହିଠାରେ ଗୋଟିଏ କ୍ଷୁଦ୍ର ଗୋଲାକାର ଆଲୋକ ଦେଖାଯାଉଛି । ତା'ପରେ ଗୃହମଧ୍ୟରେ ଟିକିଏ ଧୂଆଁ କରାହେଲା; କିନ୍ତୁ ଧୂଆଁ ହେବାକ୍ଷଣି ଆଲୋକ ଦେଖାଗଲା ନାହିଁ । ଯେତେବେଳେ ଧୂଆଁ ରଶ୍ମିରେଖା ସହିତ ମିଳିତ ହେଲା, ସେତେବେଳେ ସୁଦୀର୍ଘ ଗୋଟିଏ ଧୂଆଁର ରେଖା ଦେଖାଗଲା । ଏହି ରଶ୍ମି ଏହିରୂପରେ ଏହି ଗୃହମଧ୍ୟରେ ଥିଲା; କିନ୍ତୁ ଦୃଷ୍ଟିଗୋଚର ହେଉ ନଥିଲା । ଧୂଆଁ ମଧ୍ୟ ଦେଖାଯାଉ ନ ଥିଲା । ଯେତେବେଳେ ଧୂଆଁ ଓ ରଶ୍ମିର ଯୋଗ ହେଲା, ସେତିକିବେଳେ ଉଭୟଙ୍କର ଅସ୍ତିତ୍ୱବୋଧ ଆସିଗଲା ।

ସେହିପରି ପ୍ରକୃତି ବା ଶକ୍ତି ଓ ପୁରୁଷ ବା ଚୈତନ୍ୟଙ୍କର ସାନ୍ନିଧ ଘଟିଲେ ଉଭୟଙ୍କର ଅସ୍ତିତ୍ୱବୋଧ ଜାଗିଉଠେ । ଜଡ଼ର ସଂଯୋଗ ହେଲେ ଚୈତନ୍ୟଙ୍କର ଅସ୍ତିତ୍ୱବୋଧ ଅନୁଭୂତ ହୁଏ ।

## ଜପର ପ୍ରଣାଳୀ

ପ୍ରକୃତି ବା ଶକ୍ତି ପରିଣାମୀ। ପରିଣାମୀ କହିଲେ ଯେପରି ଦୁଧର ପରିମାଣରେ ଦଧି, ଘୋଳ, ଛେନା ଇତ୍ୟାଦି, ସେହିପରି ପ୍ରକୃତି ବା ଶକ୍ତିର ପରିଣାମରେ ଜଗତ୍‌ରେ ଯାହା ଦେଖୁଛ, ସବୁ ସୃଷ୍ଟପଦାର୍ଥ ମାତ୍ରେ ପ୍ରକୃତିର ପରିଣାମର ଫଳ। ମୂଳ ପରିଣାମ ସାତଗୋଟି। ସେଥିରୁ ଅନନ୍ତ କୋଟି ପରିଣାମ ଜାତ ହୋଇଛି। ଅହଂତତ୍ତ୍ୱ ପୁଣି ପଞ୍ଚତନ୍ମାତ୍ର ତତ୍ତ୍ୱ—ଏହା ହିଁ ମୂଳତଃ ସାତଗୋଟି ପରିଣାମ। ଏଥିରୁ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି ହୋଇଛି।

ମୂଳାପ୍ରକୃତି କ୍ଷୋଭପ୍ରାପ୍ତା ହେଲେ ତାଙ୍କର ପରିଣାମ ଘଟେ। ଏହି ଦେହରେ ମଧ୍ୟ ସେ ପରିଣାମପ୍ରାପ୍ତ ହୋଇ ରହିଛନ୍ତି। ପ୍ରକୃତି ପରମପୁରୁଷଙ୍କଠାରୁ ବିଚ୍ୟୁତ ହୋଇ ସୂକ୍ଷ୍ମରୁ କ୍ରମେ ସ୍ଥୁଳତମ ପୃଥିବୀ-ତତ୍ତ୍ୱକୁ ପରିଣାମ ପ୍ରାପ୍ତ ହୋଇ ଏହି ଶରୀରର ସ୍ଥୁଳ ଓ ସୂକ୍ଷ୍ମ ସବୁ ପ୍ରକାର କାର୍ଯ୍ୟ ବିଧାନ କରୁଛନ୍ତି।

ମୂଳାଧାର ପୃଥ୍ୱୀ ତତ୍ତ୍ୱର ସ୍ଥାନ। ଏହି ସ୍ଥାନ ସମସ୍ତ ଶକ୍ତିର ଆଧାର। ସହସ୍ରାରରେ ଚୈତନ୍ୟଙ୍କ ସ୍ଥାନ। ଶକ୍ତି ସେହି ସ୍ଥାନରୁ ବିଚ୍ୟୁତା ହୋଇ ମୂଳାଧାରରେ କେନ୍ଦ୍ରୀଭୂତା ହୋଇ ରହିଛନ୍ତି। ଏହିଠାରୁ ବିପରୀତକ୍ରମେ ଉତ୍‌ଥାପନ କରି ତାଙ୍କୁ ନେଇ ସହସ୍ରାରରେ ଚୈତନ୍ୟଙ୍କ ସହିତ ମିଳିତ କରାଇପାରିଲେ ଜୀବର ଅବିବେକିତା ଦୂର ହୁଏ। ଏହି କୁଣ୍ଡଳିନୀ ଶକ୍ତଙ୍କୁ ଜାଗରିତା କରି, ଚୈତନ୍ୟଯୁକ୍ତ କରି ଇଷ୍ଟମନ୍ତ୍ର ଜପ କରିବାକୁ ହୁଏ। ଜପ ସମୟରେ ବାଚ୍ୟ-ବାଚକ ସମ୍ବନ୍ଧରେ ବୀଜ ଓ ଇଷ୍ଟଦେବତାଙ୍କର ଅଭେଦଜ୍ଞାନ ଅଟଳ ରଖିବାକୁ ହେବ।

ମନ୍ତ୍ରଜପ ସମୟରେ ମନ, ପରମ ଶିବ, ଶକ୍ତି ଓ ବାୟୁ ପୃଥକ୍ ପୃଥକ୍ ରହିଥିଲେ ମନ୍ତ୍ର ସିଦ୍ଧ ହୁଏ ନାହିଁ। ଗୁରୁପଦିଷ୍ଟ ମୁଦ୍ରାସାହାଯ୍ୟରେ ଶ୍ୱାସର ତାଳେ ତାଳେ ଜପ କରିବାକୁ ହେବ। ଟିକିଏ ଚିନ୍ତା କରି ଦେଖିଲେ ଶ୍ୱାସର ତାଳେ ତାଳେ ମନ୍ତ୍ରଜପ ଭିତରେ ପ୍ରାଣାୟାମ କ୍ରିୟାଟି ଖୁବ୍ ପ୍ରଚ୍ଛନ୍ନଭାବରେ ସଂରକ୍ଷିତ ହୋଇଛି। ଏହିପରି ତାଳେ ତାଳେ ଜପଦ୍ୱାରା ଶ୍ୱାସର ଗୋଟିଏ ପରିମାଣ ନିର୍ଦ୍ଦିଷ୍ଟ ହୋଇଯାଏ ଏବଂ କ୍ରମେ ଶ୍ୱାସ ଛୋଟ ହୋଇ ଭିତରେ ବହମାନ ହେବାରୁ ପ୍ରାଣବାୟୁର ଆୟାମ ବା ବିସ୍ତାର ଲାଭ ହୁଏ।

ଗୁରୁ-ଉପଦିଷ୍ଟ ମୁଦ୍ରାବିଶେଷଯୋଗରେ କୁଣ୍ଡଳିନୀ ଶକ୍ତିକୁ ଶିବ-ସମନ୍ୱିତ କରି ଜପ କରିବାକୁ ହେବ। ମନ, ଶିବ, ଶକ୍ତି ଓ ବାୟୁକୁ ଧରି ମନ୍ତ୍ରଜପରେ ମଗ୍ନ ରହିବାକୁ ପଡ଼ିବ।

ସଭକ୍ତି ମନ୍ତ୍ରଜପ ଭାବର ସାଧନା ମାତ୍ର । ଭଗବାନଙ୍କୁ ଯେଉଁଠାରେ ଅଞ୍ଜଳି ଦେଲେ ମଧ୍ୟ ସେହିଠାରେ ତାଙ୍କର ଅଙ୍ଗଦ୍ୟୁତି ସାଧକଙ୍କ ହୃଦୟର ମାଳିନ୍ୟ ନାଶ କରେ । ଭକ୍ତିଯୋଗରେ ମନ୍ତ୍ରଜାପକ ହେଲେ ବାହ୍ୟଜଗତରେ ଯାହା କିଛି ସୌନ୍ଦର୍ଯ୍ୟ ଦେଖିବାକୁ ପାଇବ, ସାଧନ ସମୟରେ ସେହିସବୁ ସୌନ୍ଦର୍ଯ୍ୟର ସମଷ୍ଟିରେ ତୁମ ଇଷ୍ଟଦେବୀଙ୍କୁ କଳ୍ପନାଦ୍ୱାରା ଫୁଟାଇ ସେଥିରେ ମନକୁ ବ୍ୟାପୃତ ରଖିବା ଦରକାର ।

## ସିଦ୍ଧିଲାଭର ଉପାୟ

ଏହିପରି ଭାବିତ ହୋଇପାରିଲେ ମନ୍ତ୍ରଜପଦ୍ୱାରା ସାଧକଙ୍କର ଇଷ୍ଟଦେବତା ଜଗନ୍ମୟ ମନୋମୟ ମୂର୍ତ୍ତିରେ ଆବିର୍ଭୂତ ହୁଅନ୍ତି; କିନ୍ତୁ ଦୃଢ଼ତାର ଅଭାବ ଥିଲେ ସାଧକଙ୍କର ସମସ୍ତ ଶ୍ରମ ପଣ୍ଡ ହୋଇଯାଏ । ମନର୍ ବଳ ଓ ସଂକଳ୍ପର ଦୃଢ଼ତା ଅଭାବରୁ କେହି ଅଭୀଷ୍ଟଲାଭରେ କୃତକାର୍ଯ୍ୟ ହୁଅନ୍ତି ନାହିଁ । ଯେଉଁ ସାଧକମାନଙ୍କର ସିଦ୍ଧିଲାଭ ଲକ୍ଷ୍ୟ, ସେମାନେ ବୁଦ୍ଧଦେବଙ୍କପରି ଦୃଢ଼ତା ଅବଲମ୍ୱନ କରିବା ଦରକାର ।

ନିର୍ଜ୍ଜନ ମନୋରମ ସ୍ଥାନରେ ଦୃଢ଼ସଂକଳ୍ପ କରି ବସିବାକୁ ହେବ । ''ସିଦ୍ଧି ଲାଭ ନ କରି ଆସନ ତ୍ୟାଗ କରିବ ନାହିଁ''—ଏହିପରି ଦୃଢ଼ତା ସହକାରେ ସଂଯତବାକ୍ ହୋଇ ପୁଷ୍ଟିକର ସାତ୍ତ୍ୱିକ ଆହାର ଗ୍ରହଣ କରି ଶରୀରକୁ ସାଧନତତ୍ପର କରିବାକୁ ପଡ଼ିବ ।

ଏବଂବିଧ ସାଧକଙ୍କର ସାଧନ ସମୟରେ ଶରୀର ରୋମାଞ୍ଚିତ ହୁଏ, ନେତ୍ରରୁ ଅଶ୍ରୁଧାରା ବହିବାକୁ ଆରମ୍ଭ କଲେ, ମଧ୍ୟ ମଧ୍ୟରେ ନୂପୁରଧ୍ୱନିଦ୍ୱାରା ଇଷ୍ଟଦେବତାଙ୍କ ଅସ୍ତିତ୍ୱବୋଧ ହୁଏ । କିଛି ଦିନପରେ ତାଙ୍କ ସମ୍ମୁଖରେ ଏହି ସ୍ଥୂଳଜଗତ୍‌ଟା ପ୍ରହେଳିକାପରି ଉଭେଇଯାଇ ଗୋଟିଏ ଅଭିନବ ଭାବରାଜ୍ୟର ଆବିର୍ଭାବ ହୁଏ । ସେତେବେଳେ ସାଧକଙ୍କର ଭବ-ବନ୍ଧନ ଘୁଞ୍ଚିଯାଏ ।

ମନ୍ତ୍ରଜପ ନକଲେ କ'ଣ ସିଦ୍ଧି ଲାଭ ହୁଏନାହିଁ ? ହୁଏ । ଉଚ୍ଚତମ ଅଧିକାରୀଙ୍କର ମନ୍ତ୍ରଜପର ପ୍ରୟୋଜନ ନାହିଁ । ଉଚ୍ଚତମ ଅଧିକାରୀ ଧ୍ୟାନସ୍ଥ ହୋଇ ଚିନ୍ତାତରଙ୍ଗଗୁଡ଼ିକୁ ଦୂର କରି ମନକୁ ଶୂନ୍ୟ କରିପାରିଲେ ତତ୍‌କ୍ଷଣାତ୍ ସତ୍ୟ ପ୍ରତିଫଳିତ ହୁଏ ।

ସ୍ୱଧର୍ମପରାୟଣ ହିନ୍ଦୁମାନଙ୍କମଧ୍ୟରୁ ଅନେକେ ମନ୍ତ୍ର ଜପ କରନ୍ତି; କିନ୍ତୁ କେହି ଫଳ ପାଆନ୍ତି ନାହିଁ କାହିଁକି ? ଜପ-ରହସ୍ୟ ସାଧନ ଓ ଜପସମର୍ପଣ ବ୍ୟତୀତ ମନ୍ତ୍ରସିଦ୍ଧି ହୁଏ ନାହିଁ । ସୁତରାଂ, ଜପର ଫଳ ପ୍ରାପ୍ତହେବା ଅସମ୍ଭବ ।

ବିଧିପୂର୍ବକ ମନ୍ତ୍ରରହସ୍ୟାଦି ସମ୍ପାଦନ ଓ ପ୍ରାଣରୂପ ମଣିପୁରଚକ୍ରରେ ତାହାର କ୍ରିୟାଦି ନ କଲେ କେବେହେଲେ ମନ୍ତ୍ରଚୈତନ୍ୟ ହେବ ନାହିଁ । ସୁତରାଂ ପ୍ରାଣହୀନ ଦେହପରି ପ୍ରାଣହୀନ ମନ୍ତ୍ର ଜପକଲେ ମଧ୍ୟ କୌଣସି ଫଳ ଲାଭ ହେବନାହିଁ । ଅଚୈତନ୍ୟ ମନ୍ତ୍ର କେବଳ ବର୍ଣ୍ଣ ମାତ୍ର । ଲକ୍ଷକୋଟି ସଂଖ୍ୟାରେ ଅଚୈତନ୍ୟ ମନ୍ତ୍ର ଜପକଲେ ମଧ୍ୟ କୌଣସି ଫଳଲାଭ ହୁଏନାହିଁ ।

ତେବେ ମାଳିଝୁଲି ଧରି କେବଳ ବାହ୍ୟାଡ଼ମ୍ବର ଓ ଅନୁଷ୍ଠାନ କଲେ ମନ୍ତ୍ରଜପରେ ଫଳ ଫଳିବ କିପରି ? କିନ୍ତୁ କେତେଜଣ ବା ଦୀକ୍ଷାସହିତ ମନ୍ତ୍ରଚୈତନ୍ୟାଦି ଶିକ୍ଷା ଦେଇଥାନ୍ତି ? ଦୁଃଖର ବିଷୟ, ବର୍ତ୍ତମାନ ସମୟରେ ଶିଷ୍ୟଙ୍କର ପଥପ୍ରଦର୍ଶକ ଗୁରୁ ପ୍ରାୟ ଦେଖାଯାଆନ୍ତି ନାହିଁ । ଦୀକ୍ଷାର ଉଦ୍ଦେଶ୍ୟ ଗୁରୁ ଓ ଶିଷ୍ୟ କେହିହେଲେ ବୁଝନ୍ତି ନାହିଁ । ଦୀକ୍ଷାଦ୍ୱାରା ଦିବ୍ୟଜ୍ଞାନ ଲାଭ ହୁଏ, ପାପ କ୍ଷୟ ହୁଏ ଏବଂ ବନ୍ଧନ ଦୂର ହୁଏ; କିନ୍ତୁ ଦୀକ୍ଷା ଗ୍ରହଣ କରି କେତେଜଣଙ୍କର ବା ସେ ଉଦ୍ଦେଶ୍ୟ ସାଧିତ ହେଉଛି ?

## ଯୋଗ୍ୟ ଉପଦେଷ୍ଟା

ସେ ଉଦ୍ଦେଶ୍ୟ ସାଧିତ ହେବ ବା କିପରି ? ବ୍ୟବସାୟୀ ଗୁରୁ ସଂପ୍ରଦାୟଙ୍କ ମଧ୍ୟରେ ଶିଷ୍ୟମାନଙ୍କର ଅଜ୍ଞାନ-ଅନ୍ଧକାର ଦୂର କରି ସେମାନଙ୍କର ଉଦ୍ଧାର-ଅଭିଳାଷୀ ଗୁରୁ ଅତି ବିରଳ । ଯେଉଁ ବ୍ୟକ୍ତି ବନ୍ଧନଦଶାରେ ପଡ଼ି ନିଜେ ହାତଗୋଡ଼ ସଂଚାଳନ କରିପାରୁ ନାହାନ୍ତି, ସେ ପୁଣି ଅପରର ବନ୍ଧନ କିପରି ମୋଚନ କରିପାରିବେ ? ଗୁରୁଦେବ ନିଜେ ଅନ୍ଧକାରରେ ରହି ତହଳ-ବିକଳ ହେଉଛନ୍ତି । ସେ ପୁଣି ଶିଷ୍ୟମାନଙ୍କୁ ପଥ ଦେଖାଇବେ ବା କିପରି ? ପ୍ରକୃତ ପଥ କେହି ଦେଖି ନ ପାରି ଅତୋଭ୍ରଷ୍ଟ ତତୋଭ୍ରଷ୍ଟ ହେଉଛନ୍ତି । ଏହାର ଏକମାତ୍ର କାରଣ ଉପଯୁକ୍ତ ଉପଦେଷ୍ଟାଙ୍କ ଅଭାବ । କେହି କେହି କୁଳଗୁରୁ ତ୍ୟାଗଜନିତ ମହାପାପ-ପଙ୍କରେ ନିମଜ୍ଜିତ ହେବା ଆଶଙ୍କାରେ ହ୍ରସ୍ୱଦୀର୍ଘବୋଧ-ବିବର୍ଜିତ ଷଣ୍ଢତୁଲ୍ୟ ଗଣ୍ଡମୂର୍ଖଙ୍କ ଚରଣରେ ଲୁଣ୍ଠିତ ହୋଇ ମଧ୍ୟ ହୃଦୟର କୁଣ୍ଠାଭାବ ଦୂର କରିପାରୁ ନାହାନ୍ତି ।

ବର୍ତ୍ତମାନ ଯୁଗରେ ମନ୍ତ୍ରଜପହିଁ ଶ୍ରେଷ୍ଠସାଧନା । ଭଗବାନ କହିଛନ୍ତି– "ଯଜ୍ଞାନାଂ ଜପଯଜ୍ଞୋଽସି" । ସୁକର୍ମ ଓ କୁକର୍ମ କ୍ଷୟନିମିତ୍ତ ମନ୍ତ୍ରଜପଠାରୁ ଅନ୍ୟ କୌଣସି ସୁଗମ ପନ୍ଥା ନାହିଁ । ମନ୍ତ୍ରରେ ସିଦ୍ଧିଲାଭ କରିବାକୁ ହେଲେ ଯେ କ୍ଷର ଓ ଅକ୍ଷରରୁ ଉତ୍ତମ ଓ ପୁରୁଷୋତ୍ତମ ବା ଶ୍ରୀଗୁରୁଦେବ, ଯେ ସଂସାର-ବୃକ୍ଷର ମୂଳ

ବା କାରଣ, ତାଙ୍କରି ରୂପ ନିରବଚ୍ଛିନ୍ନଭାବରେ ଧ୍ୟାନ କରି ତାଙ୍କରି ନାମ ନେବାକୁ ହେବ। ନାମ ଓ ରୂପ ଅଭେଦ ହୋଇଥିବାରୁ ପ୍ରଥମେ ନାମସ୍ମରଣ ଅର୍ଥାତ୍ ଗୁରୁନାମସ୍ମରଣ, ଗୁରୁମୂର୍ତ୍ତିର ଚିନ୍ତନ, ଉଭୟ ସାଧିତ ହୋଇଥାଏ। ତେଣୁ ପ୍ରଥମେ ନାମ, ପରେ ରୂପ। ଜପଦ୍ୱାରା ବ୍ରହ୍ମଲୋକର ନିମ୍ନସ୍ତରରେ ସାଧକଙ୍କର ଅବସ୍ଥାନ ହୁଏ। ଫଳରେ ଜଡ଼ବସ୍ତୁର ଆସକ୍ତି ଲୋପ ପାଇଯାଏ। ଜପଜନିତ ଦୁଃଖଭୋଗରେ କର୍ମ କ୍ଷୟ ହୁଏ। ସେତେବେଳେ ଇହଲୋକ ଓ ପରଲୋକର ବ୍ୟବଧାନ ଲୋପ ପାଇଯାଏ। ସାଧକଙ୍କ ନିକଟରେ କୃପାଦ୍ୱାର ଉଦ୍‌ଘାଟିତ ହୋଇଥାଏ।

ସଦ୍‌ଗୁରୁ, ତାଙ୍କ ନାମ ଏବଂ ଭଗବାନ ଅଭେଦ। ତେଣୁ ଗୁରୁକୃପା ଲାଭ କରିପାରିଲେ ସହଜରେ ମନ୍ତ୍ରସିଦ୍ଧି ହୋଇଥାଏ। ସଦ୍‌ଗୁରୁଙ୍କ କୃପା ହିଁ ଭଗବତ୍‌କୃପା। ସାଧନା ସହିତ ସଂଯମ ନ ଥିଲେ କେବେହେଲେ କୃପା ଉପଲବ୍‌ଧ ହୁଏ ନାହିଁ। ଗୁରୁ ସବୁସମୟରେ କୃପା କରିବାନିମିତ୍ତ ପ୍ରସ୍ତୁତ ଅଛନ୍ତି। ସ୍ୱାମୀ ବିବେକାନନ୍ଦ ତାଙ୍କ ଗୁରୁ ରାମକୃଷ୍ଣଦେବଙ୍କୁ ତାଙ୍କ ମୃତ୍ୟୁପରେ ମଧ୍ୟ ପରୀକ୍ଷା କରିବାରୁ କ୍ଷାନ୍ତ ହୋଇନାହାନ୍ତି ଏବଂ ସେ ପରୀକ୍ଷାରେ ଜଗତ୍‌ର ମହାପୋକାର ସାଧିତ ହୋଇଛି।

ଯେଉଁମାନେ ଏକମାତ୍ର ସଦ୍‌ଗୁରୁଙ୍କୁ କେନ୍ଦ୍ର କରି ତାଙ୍କରି ସେବାନିରତ ଥାଇ, ତାଙ୍କ ଆଦେଶ ପ୍ରତିପାଳନ, କରି ତାଙ୍କ ନିଷ୍କାମକର୍ମରେ ଆତ୍ମନିୟୋଗ କରିଛନ୍ତି, ସେମାନଙ୍କର ବିନା ସାଧନାରେ ମଧ୍ୟ ସିଦ୍ଧିଫଳ ଲାଭ ହୁଏ। ଅଗ୍ନି ସଂସ୍ପର୍ଶରେ ଅଙ୍ଗାର ଯେପରି ଅଗ୍ନିମୟ ହୋଇଯାଏ, ସେହିପରି ଶ୍ରୀଗୁରୁଦେବଙ୍କ ଶକ୍ତି ଧୀରେ ଧୀରେ ସେବକଙ୍କଭିତରେ ପ୍ରବେଶ କରି ସେମାନଙ୍କୁ ସ୍ୱରୂପଜ୍ଞାନ ପ୍ରଦାନ କରେ। ସଂଯମଦିଗକୁ ଦୃଷ୍ଟିପାତ ନ କରି, ନିଷ୍କାମକର୍ମରେ ଯୋଗ ନଦେଇ କେବଳ କୃପାଉପରେ ନିର୍ଭରକରି ବସିରହିଲେ ସେମାନଙ୍କର ସ୍ନାୟୁ ଓ ପେଶୀଗୁଡ଼ିକ ଅକର୍ମଣ୍ୟ ହୋଇଯାଏ। ସେମାନେ କର୍ମପ୍ରବଣ ନ ହୋଇ କେବଳ ଭାବପ୍ରବଣ ହେବାଫଳରେ ଶକ୍ତି ଧାରଣ କରି ନ ପାରି ବିକୃତ ମସ୍ତିଷ୍କ ହୋଇପଡ଼ନ୍ତି। ଏହା କାପୁରୁଷତାର ନାମାନ୍ତର।

ସେ ଯନ୍ତ୍ରୀ, ଆମେ ଯନ୍ତ୍ର। ତାଙ୍କ କୃପା ସବୁବେଳେ ଆମ ଉପରେ ବର୍ଷିତ ହେଉଅଛି। ସଂଯତ ଚିତ୍ତରେ ହିଁ ସେହି କୃପାବାରି ରକ୍ଷିତ ହୁଏ। ଭାଗ୍ୟବଶରୁ ଯେଉଁମାନେ ସିଦ୍ଧଗୁରୁ ଓ ସିଦ୍ଧମନ୍ତ୍ର ଲାଭ କରିବେ, ସେମାନେ ତାହା ଶ୍ରବଣମାତ୍ରକେ କିଛି ବିଚାର ନ କରି ଗ୍ରହଣ କରିବା ଆବଶ୍ୟକ।

ମନ ଓ କାନ ନାନା ଦିଗକୁ ଆକୃଷ୍ଟ; ଏଣେ କିନ୍ତୁ ମାଳା ଜପରେ ବିରାମ ନାହିଁ । ଏହି ଶ୍ରେଣୀର ଲୋକେ କହନ୍ତି—କଳିକାଳରେ ଧର୍ମ-କର୍ମ ମିଥ୍ୟା । ବିଧିପୂର୍ବକ କ୍ରିୟାନୁଷ୍ଠାନ ନ କଲେ କିପରି ବା ଫଳ ପାଇବେ ? ବିଧି-ଅନୁସାରେ ଜପରହସ୍ୟ ଓ ଜପସମର୍ପଣବିଧି ଜାଣିବା ତ ଦୂରର କଥା, ଏପରି କି ମନ୍ତ୍ରଟି ଯେ କି ବସ୍ତୁ, ତାହାର ତତ୍ତ୍ୱ ଅନେକେ ଜାଣନ୍ତି ନାହିଁ ।

ମଳମୂତ୍ରର ବେଗ ଧାରଣ କରି, ମଳିନ ବସ୍ତ୍ର ପରିଧାନ କରି, ମୁଖ ପ୍ରକ୍ଷାଳନ ନ କରି ଜପ କରିବା ବିଧେୟ ନୁହେଁ । ଜପ ସମୟରେ ଆଳସ୍ୟ ଭାଙ୍ଗିବା, ହାଇ ମାରିବା, ଭୟ କରିବା, କ୍ରୋଧ କରିବା ଓ ନାଭିର ନିମ୍ନସ୍ଥ ଯେ କୌଣସି ସ୍ଥାନ ସ୍ପର୍ଶ କରିବା ଉଚିତ ନୁହେଁ । ମୌନ ରହି ଓ ଶୁଚିବନ୍ତ ହୋଇ ଗୁରୁଧ୍ୟାନ ଓ ପ୍ରଣାମାନନ୍ତର ମନ୍ତ୍ରାର୍ଥ ଚିନ୍ତା କରି ଜପ କରିବା ବିଧେୟ ।

ମନ୍ତ୍ରାର୍ଥ ନିର୍ଣ୍ଣୟ କରି ଜପହରହସ୍ୟ ସମ୍ପାଦନପୂର୍ବକ ପରେ ଯଥାବିଧି ଜପସମର୍ପଣ କଲେ ଉଚ୍ଚ କଣ୍ଠରେ କହୁଛି—ନିଶ୍ଚୟ ମନ୍ତ୍ରସିଦ୍ଧି ହେବ ।



# ଗୁରୁ

## ଗୁରୁତତ୍ତ୍ୱ

ଚିହ୍ନିଛୁ କି ଗୁରୁ କି ଧନ ?
(ସେ'ତ) ନରଦେହେ ବ୍ରହ୍ମ ପରମରେ ।୦।
ଗୁରୁ ବ୍ରହ୍ମା ଶିବ, ଗୁରୁ ନାରାୟଣ,
ଅଖଣ୍ଡମଣ୍ଡଳେ ବ୍ୟାପ୍ତ ତ୍ରିଭୁବନ,
ପରମାତ୍ମପଦ କରାନ୍ତି ଦର୍ଶନ,
ଯାହା ଧ୍ୟାନେ ଯୋଗୀ ମଗନ ରେ ।୧।
ବିନ୍ଦୁନାଦ କଳାତୀତ ନିରଞ୍ଜନ,
ଧ୍ୟାନର ଅତୀତ ସତ୍ୟ ସନାତନ,
ଜ୍ଞାନତତ୍ତ୍ୱମାଳା ଅଙ୍ଗର ଭୂଷଣ
ଭୁକ୍ତି-ମୁକ୍ତିଲାଭେ କାରଣ ରେ ।୨।
ଜନ୍ମଜନ୍ମାନ୍ତରୁ ଭାଗ୍ୟ-ଅରଜନ
କଲେ ପୁଣ୍ୟଫଳେ ପାଇବ ଦର୍ଶନ,
ଅହେତୁକ କୃପାବିନ୍ଦୁ-ବିତରଣ
କରି ତାରେ ଦୀନ ଅଧମ ରେ ।୩।
ଫଳହୁଏ ଯାର କୋଟିଜନ୍ମ ପୁଣ୍ୟ,
ସଫଳକର୍ମା ସେ ତିନିଲୋକେ ଧନ୍ୟ,
ମିଳଇ ଅମୂଲ୍ୟ ସଦ୍‌ଗୁରୁଚରଣ
ହସି ହସି ବରେ ମରଣ ରେ ।୪।
ଘଟଣାବଳରେ ଅଭୟ ଚରଣ,
ପାଇ ଧନ୍ୟ ଯେହୁ କରେ ନରଜନ୍ମ,

ମହାକାଳ ଭୟେ କରେ ପଳାୟନ
ନିଅ ଗୁରୁପଦେ ଶରଣ ରେ ।୫।
ମରଣ-ଦୁଆରେ ଦେଇ ଦରଶନ,
ମୁକ୍ତିପଥେ ଜୀବେ କରନ୍ତି ଚାଳନ,
କିଏ ତାଙ୍କପରି କୃପାପରାୟଣ
ଭବ-ପାରାବାର ତାରଣ ରେ ।୬।

## ବ୍ରହ୍ମଙ୍କ ବିକାଶ

ବ୍ରହ୍ମ ଜୀବଜଗତ୍ ରୂପରେ ପ୍ରକାଶିତ ହୋଇଛନ୍ତି । ଯେତେବେଳେ ବ୍ରହ୍ମଙ୍କର ସୃଷ୍ଟିକଳ୍ପନା ଜାଗିଉଠିଲା, 'ଅହଂ ବହୁସ୍ୟା ପ୍ରଜାୟତେ' ବୋଲି ତାଙ୍କର ବହୁ ହେବାର ଇଚ୍ଛା ଜାଗ୍ରତ ହେଲା, ସେତେବେଳେ ସେ ନିଜକୁ ଗୁରୁରୂପରେ, ଦ୍ରଷ୍ଟାରୂପରେ, ସକଳ ବିକାରର ଅତୀତରୂପରେ ସ୍ୱତନ୍ତ୍ର କରି ରଖିଲେ ଏବଂ ଅନ୍ୟଭାବରେ ଜୀବଜଗତ୍ ରୂପରେ ପରିଣତ ହେଲେ । ଅତଏବ ବ୍ରହ୍ମଙ୍କର ପ୍ରଥମ ବିକାଶ ହିଁ ଗୁରୁ; କାରଣ, ସେ ଥରେ ଜୀବ ହୋଇଗଲେ ତାଙ୍କର ସ୍ୱରୂପଜ୍ଞାନ ଆବୃତ ହୋଇପଡ଼ିବ । ବହୁ ହୋଇ ମଧ୍ୟ ପୁନରାୟ ଯେପରି ଆତ୍ମସ୍ୱରୂପକୁ ଫେରିଆସି ପାରିବେ, ସେଥିନିମିତ୍ତ ପ୍ରଥମେ ସେ ନିଜକୁ ଗୁରୁରୂପରେ ବିକଶିତ କରି ସ୍ୱତନ୍ତ୍ର ଭାବରେ ରଖିଦେଲେ; ନତୁବା ଜୀବର ଆଉ ପ୍ରତ୍ୟାବର୍ତ୍ତନର ଉପାୟ ରହନ୍ତା ନାହିଁ ।

ଜଗଦ୍‌ଗୁରୁ ମନ୍ତ୍ରପୂତ ଜଳ—ମନୁଷ୍ୟଗୁରୁଙ୍କ ଭିତରେ ତାଙ୍କର ପ୍ରକାଶ । ଯେ ଏହି ମନ୍ତ୍ରପୂତ ଜଳ ହାତରେ ଧରି ଆସନ୍ତି, ସେ ମନୁଷ୍ୟଗୁରୁ ବା ସଦ୍‌ଗୁରୁ । ଏହାଙ୍କଦ୍ୱାରା ଜଗତ୍‌ର କାର୍ଯ୍ୟ ହୁଏ । ଯାହାଙ୍କର ନିର୍ବିକଳ୍ପ ସମାଧି ଲାଭ ହୋଇଛି, ତାଙ୍କୁ ସଦ୍‌ଗୁରୁ କୁହାଯାଏ । ସେହି କେବଳ ଅନ୍ୟକୁ କୃପା କରିବାକୁ ସମର୍ଥ । ଯେ ନିଜେ କୃପାସିଦ୍ଧ, ସେ ପୁଣି ଅନ୍ୟକୁ କୃପା କରିବେ ବା କିପରି ? ଏକମାତ୍ର ସଦ୍‌ଗୁରୁ କୃପା କରିପାରନ୍ତି ।

## କର୍ତ୍ତା ଓ କାରଣ

ଜଗଦ୍‌ଗୁରୁଙ୍କ ଇଚ୍ଛା ସ୍ଥୁଳ ମନୁଷ୍ୟମୂର୍ତ୍ତିରେ ଜନ୍ମ ଗ୍ରହଣ କଲେ ତାଙ୍କୁ ଅବତାର କୁହାଯାଏ ଏବଂ ସେହି ଇଚ୍ଛା ଶୁଦ୍ଧ ଆଧାରରେ ପ୍ରତିଫଳିତ ହେଲେ ତାଙ୍କୁ କୁହାଯାଏ ସଦ୍‌ଗୁରୁ । ଯେଉଁମାନଙ୍କର ବ୍ୟକ୍ତିତ୍ୱ, ବୈଶିଷ୍ଟ୍ୟ ସବୁ ନଷ୍ଟ

ହୋଇଥାଏ, ନିଜର କୌଣସି ଇଚ୍ଛା ନଥାଏ, ଜଗଦ୍‌ଗୁରୁ ଯାହାଙ୍କୁ ଯନ୍ତ୍ରସ୍ୱରୂପ କରି ତାଙ୍କ କାର୍ଯ୍ୟ କରାଇନିଅନ୍ତି, ତାଙ୍କୁ ସଦ୍‌ଗୁରୁ କୁହାଯାଏ। ବ୍ରହ୍ମ ଜଗଦଗୁରୁ; କିନ୍ତୁ ସେ ତ ନିଶ୍ଚଳ। ତାଙ୍କଦ୍ୱାରା କାର୍ଯ୍ୟ କରିପାରିବ ନାହିଁ ବୋଲି ବ୍ରହ୍ମ କର୍ତ୍ତା ଓ କାରଣରୂପରେ ପ୍ରକାଶିତ ହୋଇଥାଆନ୍ତି। ଏହି କାରଣ-ଭଗବାନଙ୍କୁ ଗୁରୁ କୁହାଯାଏ। ଯେଉଁ ଗୁରୁ ନିଜ ଶିଷ୍ୟଙ୍କଠାରେ ଶକ୍ତି ସଞ୍ଚାର କରିପାରନ୍ତି; ସେ ସଦ୍‌ଗୁରୁ। ଶକ୍ତି ସଞ୍ଚାର କରିବା ସଦ୍‌ଗୁରୁଙ୍କର ବିଶେଷ କାର୍ଯ୍ୟ। ଇଷ୍ଟ ଓ ଗୁରୁ ଅଭିନ୍ନ ଏବଂ ଏକ।

ଗୁରୁ ସମସ୍ତଙ୍କୁ ଗ୍ରହଣ କରନ୍ତି। ତାଙ୍କ ନିକଟକୁ ଯେ କେହି ଗଲେ ମଧ୍ଯ ଅଳ୍ପ ହେଉ ବା ବହୁତ ହେଉ ଉନ୍ନତି ଲାଭ କରିବେ। ତେଣୁ ଗୁରୁ କାହାକୁ ସେତିକିରୁ ବଞ୍ଚିତ କରିବାକୁ ଇଚ୍ଛା କରନ୍ତି ନାହିଁ। ଯେ ଯେତିକି ପାଇବାର ଅଧିକାରୀ, ଯେ ଯେତିକି ପାଇବାର ଯୋଗ୍ୟ, ଗୁରୁ ତାଙ୍କୁ ସେତିକି ଦିଅନ୍ତି। ସମସ୍ତେ ଯେ ଗୁରୁଙ୍କଠାରେ ଲୀନ ହୋଇଯିବେ, ଏପରି ନୁହେଁ।

ଅନେକ୍ ଲୋକ ବୁଦ୍ଧିବଳରେ ବା କୌଶଳଦ୍ୱାରା ଶ୍ରୀଗୁରୁଙ୍କ ଠାରୁ କୃପା ଲାଭ କରିବାକୁ ଚେଷ୍ଟା କରନ୍ତି। ସେମାନେ ଏତିକି ମନେ ରଖିବା ଉଚିତ ଯେ, ଯେ ଅନ୍ୟକୁ କୃପା କରିପାରନ୍ତି, ତାଙ୍କର କଅଣ ଆଉ ଅନ୍ୟର ମନଟା ବୁଝିବାର କ୍ଷମତା ନାହିଁ? ସୁତରାଂ, ଚତୁରତା କରି ଆତ୍ମପ୍ରତାରଣା କରି ବା ଲାଭ କ'ଣ? କେହି କେହି ଶ୍ରୀଗୁରୁଦେବଙ୍କୁ ଧନଦୌଲତ ଦେଇ ନିଜେ ଗର୍ବ ଅନୁଭବ କରନ୍ତି; ଏଥିପାଇଁ ନିଜକୁ ଗୌରବାନ୍ୱିତ ମନେ କରନ୍ତି। କିନ୍ତୁ ତାଙ୍କୁ ତୁଚ୍ଛ ପାର୍ଥିବ ସଂପଦ ଦେଲେ କ'ଣ ହେବ? ତାଙ୍କୁ ଦେହ, ମନ ଓ ପ୍ରାଣ ସମର୍ପଣ କଲେ ଉପଯୁକ୍ତ ହେବ। ଦେହ, ମନ ଓ ପ୍ରାଣ ସହିତ ଟଙ୍କା-ପଇସାର ତୁଳନା ଆଦୌ ହୋଇ ନ ପାରେ।

ସାଂସାରିକ ପ୍ରେମ ପ୍ରତାରଣା ମାତ୍ର। ସ୍ୱାମୀ-ସ୍ତ୍ରୀ, ବନ୍ଧୁବାନ୍ଧବଙ୍କର ପ୍ରେମ ସ୍ୱାର୍ଥ-ବ୍ୟବସାୟର କୌଶଳ ମାତ୍ର। କେବଳ ଗୁରୁଶିଷ୍ୟଙ୍କ ଭାବ ଖାଣ୍ଟି ବା ନିର୍ମଳ। ଏହା ଭିତରେ କୌଣସି ପ୍ରତାରଣା ନାହିଁ। ଜଗତ୍‌ରେ ଆଉ କାହା ନିକଟରେ ପ୍ରାଣ ଖୋଲି କିଛି କହିହେବ ନାହିଁ, କେବଳ ଶ୍ରୀଗୁରୁ ଦେବଙ୍କ ନିକଟରେ ସବୁ କଥା ପ୍ରାଣ ଖୋଲି କୁହାଯାଇପାରିବ।

## ବିନ୍ଦୁନାଦ କଳାତୀତ

ଜ୍ଞାନୀଙ୍କ ବ୍ୟତୀତ କେହି ଗୁରୁ ହୋଇପାରିବେ ନାହିଁ। ଭକ୍ତମାନେ ନିଜକୁ ନିଜେ ଦୀନ ବୋଲି ଭାବନ୍ତି। ସୁତରାଂ, ନିଜେ ଦୀନ ହୋଇ ସେମାନେ ଅନ୍ୟର ଦୁଃଖ କିପରି ବା ଦୂର କରିପାରିବେ? ସଦ୍‌ଗୁରୁ କାହାକୁ ହେଲେ ସୁଖୀ କରାଇପାରନ୍ତି ନାହିଁ। ସେ ସୁଖସଂବାଦ ମାତ୍ର ଦେଇପାରନ୍ତି; କିନ୍ତୁ ସୁଖ ଦେଇପାରନ୍ତି ନାହିଁ; କାରଣ, ସମସ୍ତଙ୍କୁ ପ୍ରାରବ୍‌ଧଜନିତ ଭୋଗ ଅବଶ୍ୟ ଭୋଗିବାକୁ ପଡ଼ିବ।

ଶିବ ତ୍ୟାଗୀ କାହିଁକି? ସେ କ'ଣ ସଂସାର ତ୍ୟାଗ କରି ଶ୍ମଶାନକୁ ଯାଇଥିଲେ ବୋଲି? ତାହା ନୁହେଁ। ସେ ବ୍ରହ୍ମାନନ୍ଦ ପରିତ୍ୟାଗ କରି ପ୍ରତ୍ୟେକ ଭୂତର ମଙ୍ଗଳନିମିତ୍ତ ଚେଷ୍ଟା କରନ୍ତି। ତେଣୁ ସେ ତ୍ୟାଗୀ—ସେ ଜଗଦ୍‌ଗୁରୁ। ଯେ ଗୁରୁ ହୋଇଥାନ୍ତି, ତାଙ୍କୁ ଗୋଟିଏ ପାହାଚ ତଳକୁ ଓହ୍ଲାଇ ଆସିବାକୁ ହୁଏ, ନ ହେଲେ ସ୍ୱରୂପ ଅବସ୍ଥାରେ ଗୁରୁ ଶିଷ୍ୟଭାବ ରହି ନ ପାରେ।

ଶ୍ରୀଗୁରୁଦେବଙ୍କଠାରେ ମନୁଷ୍ୟବୁଦ୍ଧି ଆରୋପ କଲେ ସମସ୍ତ ସାଧନ ବିଫଳ ହେବ। ଗୁରୁ ବିନ୍ଦୁନାଦ କଳାତୀତ। କଳା ଅର୍ଥ ବ୍ରହ୍ମଶକ୍ତି। ବିନ୍ଦୁନାଦ ପ୍ରକୃତି-ପୁରୁଷାତ୍ମକ, ଜଗତ୍‌ର ସୃଷ୍ଟିର କାରଣ। ଗୁରୁ ତାହାଠାରୁ ଊର୍ଦ୍ଧ୍ୱରେ। ଏହି ପରିଦୃଶ୍ୟମାନ ସମଗ୍ର ଜଗତ୍ ଶ୍ରୀଗୁରୁଦେବଙ୍କର ବିକାଶ ହେଲେ ମଧ୍ୟ ଶ୍ରୀଗୁରୁ ତାହାର ଊର୍ଦ୍ଧ୍ୱରେ।

ଯେ ଗୁରୁ, ସେ ହୃଦୟରେ ଭକ୍ତିର ବିକାଶ କରିଦେଇପାରନ୍ତି। ଶ୍ରୀଗୁରୁଦେବଙ୍କ ସେବାଦ୍ୱାରା ହିଁ ସର୍ବାର୍ଥ ସିଦ୍ଧ ହୋଇପାରେ; ଯୋଗ, ଯାଗ, ତପସ୍ୟାର ଆଉ ପ୍ରୟୋଜନ ହୁଏ ନାହିଁ। କାରଣ, ଶ୍ରୀଗୁରୁଦେବଙ୍କ ସେବା ହିଁ ଯୋଗ, ଯାଗ ଓ ତପସ୍ୟା। ଗୁରୁଦେବ କ୍ରୀଡ଼ାର ବସ୍ତୁ ନୁହନ୍ତି। ଶ୍ରୀଗୁରୁ ହିଁ ସବୁ। ଶ୍ରୀଗୁରୁଦେବଙ୍କୁ ନ ଚିହ୍ନିଲେ, ଗୁରୁଦେବଙ୍କଠାରେ ସଂପୂର୍ଣ୍ଣରୂପେ ଆତ୍ମସମର୍ପଣ କରି ନ ପାରିଲେ ଯୋଗ, ଯାଗ, ମୁଦ୍ରା, ପ୍ରାଣାୟାମ ସବୁ ବିଫଳ।

## ବିଶ୍ୱାସ

ଶ୍ରୀଗୁରୁଦେବଙ୍କୁ ଗୋଟିଏ ସ୍ଥାନରେ ସୀମାବଦ୍ଧ ବୋଲି ଭାବ ନାହିଁ। ସେ ଅଖଣ୍ଡମଣ୍ଡଳାକାରରେ ଚରାଚର ବ୍ୟାପ୍ତ। ସାଧକ ଯେତେବେଳେ ସର୍ବତ୍ର ଶ୍ରୀଗୁରୁଦେବଙ୍କୁ ଉପଲବ୍‌ଧି କରିପାରିବେ, ସେତେବେଳ ଗୁରୁଲାଭ ବା ଗୁରୁଦର୍ଶନ ହେବ।

ଶ୍ରୀଗୁରୁଦେବଙ୍କୁ ସ୍ତ୍ରୀ ଅଥବା ପୁରୁଷ ବୋଲି ଭାବ ନାହିଁ। ଗୁରୁ କି ବସ୍ତୁ, ତାହା ଉପଲବ୍ଧି କରି ନ ପାରିଲେ ତାହା ଭାଷାରେ ବୁଝାଯାଇପାରିବ ନାହିଁ। ଯେ ବୁଝିଛନ୍ତି, ସେ ଜାଣିଛନ୍ତି ଯେ ଶ୍ରୀଗୁରୁ କି ଧନ।

ଗୁରୁ ଅର୍ଥ ଭାରୀ। ଯାହାଙ୍କଠାରୁ ଆଉ କିଛି ବଡ଼ ହୋଇ ନ ପାରେ, ସେ ଗୁରୁ। ଗୁରୁ ହିଁ ବ୍ରହ୍ମସ୍ୱରୂପ। ଭକ୍ତଙ୍କ ନିକଟରେ ଗୁରୁ ହିଁ ଭଗବାନ। କାରଣ, ଭକ୍ତମାନେ ଜଗତରେ ସମସ୍ତଙ୍କୁ ନିଜ ଅପେକ୍ଷା ଶ୍ରେଷ୍ଠ ମନେ କରନ୍ତି। ସେମାନଙ୍କ ନିକଟରେ ଗୁରୁ ଭଗବାନ। ପୁଣି ଜ୍ଞାନୀଙ୍କ ନିକଟରେ ଗୁରୁଦେବ ହିଁ ବ୍ରହ୍ମ। କାରଣ, ସବୁ ବ୍ରହ୍ମଙ୍କର ବିକାଶ ବୋଲି ସେ ଅନୁଭବ କରନ୍ତି। ସୁତରାଂ, ତାଙ୍କ ନିକଟରେ ଗୁରୁ ନିଶ୍ଚୟ ବ୍ରହ୍ମ।

କଳିକାଳରେ ସବୁ ବିପରୀତ। ବାଚାଳରୋଗୀ ଚିକିତ୍ସକଙ୍କୁ କହୁଛନ୍ତି "ମୋର ଏହି ରୋଗ। ମୋତେ ଅମୁକ ଔଷଧ ଦିଅନ୍ତୁ।" ଧର୍ମଜଗତରେ ମଧ୍ୟ ସେହିପରି କଥା। ଶିଷ୍ୟମାନେ ଗୁରୁଦେବଙ୍କୁ କହୁଛନ୍ତି, "ଆମକୁ ପ୍ରାଣାୟାମ ଶିଖାଇଦିଅନ୍ତୁ। କେହି କହୁଛନ୍ତି, ଆମକୁ ଖେଚରୀ ମୁଦ୍ରା ଶିଖାଇଦିଅନ୍ତୁ।" ଶ୍ରୀଗୁରୁ-ଶିଷ୍ୟଙ୍କମଧ୍ୟରେ ସମ୍ପର୍କ ଯେପରି ହେଉଛି, ଫଳ ମଧ୍ୟ ସେହିପରି ମିଳୁଛି।

ଯେଉଁମାନେ ଶ୍ରୀଗୁରୁଦେବଙ୍କ ବାକ୍ୟକୁ ବେଦବାକ୍ୟପରି ଅଭ୍ରାନ୍ତ ବୋଲି ଭାବନା କରନ୍ତି ନାହିଁ, ଗୁରୁଦେବଙ୍କପ୍ରତି ତାଙ୍କର ବିଶ୍ୱାସ କିମ୍ୱା ଭକ୍ତି କିଛି ହେଲେ ହୁଏ ନାହିଁ। ଶ୍ରୀଗୁରୁଦେବଙ୍କ ବାକ୍ୟରେ ବିଶ୍ୱାସ ଜନ୍ମିଲେ ତାଙ୍କଠାରେ ବିଶ୍ୱାସ ଜାତ ହୁଏ। ସେତେବେଳେ ଯାଇ ଗୁରୁକୃପା ଲାଭ ହେବ।

ସଦ୍‌ଗୁରୁ ଲାଭ କରି ଯାହା ଖୁସି, ତାହା କର; କିନ୍ତୁ ସାବଧାନ, ତାଙ୍କୁ ତ୍ୟାଗ କର ନାହିଁ। ସମୟ ହେଲେ ସେ ନିଜେ ଟାଣିନେବେ। ଗୁରୁଦେବଙ୍କ ବାକ୍ୟରେ ଯାହାଙ୍କର ଶ୍ରଦ୍ଧା ଓ ଭକ୍ତି ଅଛି, ସେ ପ୍ରକୃତରେ ଶ୍ରୀଗୁରୁଦେବଙ୍କୁ ପ୍ରେମ କରନ୍ତି ବୋଲି ଜାଣିବ।

ଦଶ ଜଣଙ୍କ ମୁଖରୁ ପ୍ରଶଂସା ଶୁଣି ଯେଉଁମାନେ ଗୁରୁ କରିଥାନ୍ତି, ସେମାନେ ପୁଣି ଥରେ ଅନ୍ୟ ଦଶ ଜଣଙ୍କ ମୁଖରୁ ତାଙ୍କ ନିନ୍ଦା ଶୁଣିଲେ ସେହି ଗୁରୁଙ୍କୁ ତ୍ୟାଗ ମଧ୍ୟ କରିଦେଇପାରନ୍ତି। ବିଚାରହୀନ କାର୍ଯ୍ୟରେ କେବେହେଲେ ସ୍ଥାୟୀ ଫଳ ମିଳେ ନାହିଁ।

ଶ୍ରୀଗୁରୁଦେବଙ୍କଠାରେ ବିଶ୍ୱାସ ହେଲାକ୍ଷଣି ଧର୍ମଲାଭ ହୁଏ; କିନ୍ତୁ ଏହି ବିଶ୍ୱାସ ସହଜରେ ଆସେ ନାହିଁ। ଗୁରୁ ଯାହା କହିଛନ୍ତି, ତାହା ସାଧନ କଲେ କ୍ରମେ କ୍ରମେ ବିଶ୍ୱାସ ଜାତ ହୁଏ।

## ଗୁରୁ-ଶିଷ୍ୟଙ୍କ ସଂପର୍କ

ଗୁରୁ ଭାବ—ଶିଷ୍ୟ ଅଭାବ। ଯେତେଦିନଯାଏ ଅଭାବ ଥିବ, ସେତେଦିନ ପର୍ଯ୍ୟନ୍ତ ଗୁରୁ ଶିଷ୍ୟ ରହିଥିବେ। ଶିଷ୍ୟମାନେ ଗୁରୁଦେବଙ୍କଠାରେ ଆତ୍ମାହୁତି ପ୍ରଦାନ କରିବା ବିଧେୟ। ଗୁରୁକୃପାପ୍ରଭାବରେ ଶିଷ୍ୟଙ୍କର ଯେଉଁଦିନ ସବୁ ଅଭାବ ଘୁଞ୍ଚିଯିବ, ସେଦିନ ଗୁରୁ କିମ୍ବା ଶିଷ୍ୟଙ୍କ ମଧ୍ୟରେ ଭେଦ ରହିବ ନାହିଁ।

କେବଳ ମନ୍ତ୍ର ଗ୍ରହଣ କଲେ କେହି ଜଣେ ଶିଷ୍ୟ ହୋଇଯାନ୍ତି ନାହିଁ। ବିଶ୍ୱାସ ସହକାରେ ମନ-ପ୍ରାଣ ଢାଳିଦେଇ ନ ପାରିଲେ ଶିଷ୍ୟ ହେବା ବୃଥା। ଶିଷ୍ୟମାନେ ଦୂରରେ ଥାଆନ୍ତୁ ବା ନିକଟରେ ଥାଆନ୍ତୁ, ସେମାନେ କେବେହେଲେ ଶ୍ରୀଗୁରୁଦେବଙ୍କ ମଙ୍ଗଳଦୃଷ୍ଟିର ଅନ୍ତରାଳରେ ରହନ୍ତି ନାହିଁ ଅର୍ଥାତ୍ ସେମାନଙ୍କ ପ୍ରତି ସର୍ବଦା ଶ୍ରୀଗୁରୁଦେବଙ୍କ ମଙ୍ଗଳଦୃଷ୍ଟି ଉନ୍ମୁଖ ଥାଏ।

ଶିଷ୍ୟମାନଙ୍କର କର୍ତ୍ତବ୍ୟ, ଆଧ୍ୟାତ୍ମିକ ଶକ୍ତିସଞ୍ଚାରଣକ୍ଷମ ଗୁରୁଦେବଙ୍କ ନିକଟରୁ ମନ୍ତ୍ର ଗ୍ରହଣ କରିବା। ଯେଉଁ ବ୍ୟକ୍ତି ଆତ୍ମଶକ୍ତି ସଞ୍ଚାରଣ କରିପାରନ୍ତି, ତାଙ୍କୁ ଗୁରୁ କୁହାଯାଏ। ଯାହାଙ୍କର ଆତ୍ମାରେ ଶକ୍ତି ସଞ୍ଚାରିତ ହୁଏ, ତାଙ୍କୁ ଶିଷ୍ୟ କୁହାଯାଏ। ଅତଏବ ସଦ୍‌ଗୁରୁ ନିର୍ବାଚନ କରି ଦୀକ୍ଷା ଗ୍ରହଣ କରିବା କର୍ତ୍ତବ୍ୟ।

ଦୀକ୍ଷାଦାନର ନାନାବିଧ ପଦ୍ଧତି ଶାସ୍ତ୍ରରେ ଦୃଷ୍ଟ ହୁଏ। ସ୍ଥାନ, କାଳ, ପାତ୍ରର ବିଚାର ଅଛି; କିନ୍ତୁ ଭାଗ୍ୟବଶରୁ ଯଦି କେହି ସିଦ୍ଧଗୁରୁ ବା ସିଦ୍ଧମନ୍ତ୍ର ପ୍ରାପ୍ତ ହୁଅନ୍ତି, ତେବେ କୌଣସି ବିଚାର ନ କରି ତତ୍‌କ୍ଷଣାତ୍ ତାଙ୍କଠାରୁ ମନ୍ତ୍ର ଗ୍ରହଣ କରିବା ବିଧେୟ।

ଶିଷ୍ୟମାନଙ୍କର ଆଧ୍ୟାତ୍ମିକ ଉନ୍ନତି ମନ୍ତ୍ରଦ୍ୱାରା କରାଇନେବା ଅତି ନିମ୍ନସ୍ତରର କାର୍ଯ୍ୟ। ଦେଶର ଦୁର୍ଭାଗ୍ୟହେତୁ ଏପରି ବ୍ୟବସ୍ଥା କରିବାକୁ ହୁଏ। ତା ନ ହେଲେ ସାଧନ-ଜଗତରେ ଏହା କିଛି ଗୋଟାଏ ବଡ଼ କଥା ନୁହେଁ। ଭଗବାନ୍‌ଙ୍କୁ ପ୍ରେମ କରିବା କିମ୍ବା କୌଣସି ଭାବ ଆଶ୍ରୟ କରିବା ଅଥବା ଜଗତକୁ ପ୍ରେମରେ ଆଲିଙ୍ଗନ କରିବା—ଏହାସବୁ ହେଲା ସାଧନାର ଉଚ୍ଚ ଉଚ୍ଚତର ଅଙ୍ଗ। ଏହି

ଭାବସବୁ ଯେଉଁମାନେ ଧରିପାରନ୍ତି, ସେମାନେ ଆତ୍ମତତ୍ତ୍ୱାନୁସନ୍ଧିତ୍ସୁ । ସେମାନଙ୍କର ମନ୍ତ୍ର ନେବାପାଇଁ କୌଣସି ବାଧବାଧକତା ନାହିଁ ।

ଗୁରୁ ଶିଷ୍ୟଙ୍କ ସମ୍ବନ୍ଧ ଅତି ଉଚ୍ଚ ସମ୍ବନ୍ଧ । ଏପରି ଉଚ୍ଚ ସମ୍ବନ୍ଧ ଅନ୍ୟ କେଉଁଠାରେ ନାହିଁ । ଶ୍ରୀଗୁରୁଦେବଙ୍କ ମନ ଶିଷ୍ୟଙ୍କ ଠାରେ ଅଧିଷ୍ଠିତ ହେଲେ ଯାଇ ଶିଷ୍ୟ ଶ୍ରୀଗୁରୁଦେବଙ୍କ ସାରୂପ୍ୟଲାଭ କରିପାରନ୍ତି ।

ଗୁରୁଙ୍କୁ ବାଛି ନେଇହୁଏ ନାହିଁ । ଜହୁରୀ ନ ହେଲେ ଜହର ଚିହ୍ନାଯାଏ ନାହିଁ । ତେବେ ଗୁରୁଶିଷ୍ୟ ସମ୍ବନ୍ଧ ପୂର୍ବରୁ ନିର୍ଦ୍ଦିଷ୍ଟ ରହିଛି । ସମୟ ହେବାକ୍ଷଣି ଗୁରୁଦେବଙ୍କ ଆକର୍ଷଣଦ୍ୱାରା ଶିଷ୍ୟ ଶ୍ରୀଗୁରୁଦେବଙ୍କ ପାଦରେ ଲୋଟିପଡ଼ନ୍ତି ଏବଂ ଶିଷ୍ୟ ଗୁରୁଦେବଙ୍କ ଆକର୍ଷଣ ମଧ୍ୟ ବୁଝିପାରନ୍ତି । ଦୀକ୍ଷାଦାତା ଗୁରୁ ଯେତେବେଳେ ନିଜର ହୃଦୟ ମଧ୍ୟରେ ଫୁଟିଉଠିବେ, ଯେତେବେଳେ ତାଙ୍କୁ ସଦ୍‌ଗୁରୁ ବୋଲି ଚିହ୍ନିନେବେ । ଆତ୍ମସାକ୍ଷାତ୍‌କା ପରେ ସେହି ଗୁରୁ ଯେ ସଦ୍‌ଗୁରୁ, ଏହା ପ୍ରତ୍ୟକ୍ଷୀଭୂତ ହେବ ।

ମୁଁ ଅମୁକଙ୍କ ଶିଷ୍ୟ—ଏକଥା ଅହଂକାରବ୍ୟଞ୍ଜକ । ଶିଷ୍ୟ ବୋଲି ପରିଚୟ ଦେବାର କିଛି ଆବଶ୍ୟକତା ନାହିଁ । କାରଣ, ଲୋକେ ଯେତେବେଳେ ଗୁରୁଙ୍କର ସମସ୍ତ ଗୁଣ ତୁମଠାରେ ପ୍ରତିଫଳିତ ହେବାର ଦେଖିବେ, ସେତେବେଳେ ତୁମ କାର୍ଯ୍ୟାବଳୀ ହିଁ ତୁମ ଶିଷ୍ୟତ୍ୱର ପରିଚୟ ପ୍ରଦାନ କରିବ । ତାହାହେଲେ ଯାଇ ତୁମେ ପ୍ରକୃତରେ ଶିଷ୍ୟପଦବାଚ୍ୟ ହେବ ।

ସତୀ ନାରୀ ଯେପରି ନିଜ ସ୍ୱାମୀଙ୍କ ନାମ ମୁଖରେ ଧରିପାରନ୍ତି ନାହିଁ, ଶିଷ୍ୟ ମଧ୍ୟ ସେହିପରି ଶ୍ରୀଗୁରୁଦେବଙ୍କ ନାମ ଗୋପନ ରଖିବା କର୍ତ୍ତବ୍ୟ ।

କୌଣସି କାର୍ଯ୍ୟରେ ଶିଷ୍ୟମାନଙ୍କ ଔଦ୍ଧତ୍ୟ ବା ଅମନୁଷ୍ୟତ୍ୱ ପ୍ରକାଶ ପାଇଲେ ଗୁରୁଦେବଙ୍କର କଳଙ୍କ ହିଁ ବିଘୋଷିତ ହୁଏ । କାରଣ, ଶିଷ୍ୟମାନେ ଗୁରୁଦେବଙ୍କର ପ୍ରତିବିମ୍ବ ମାତ୍ର । ଶିଷ୍ୟମାନଙ୍କ କାର୍ଯ୍ୟକଳାପ ଦେଖି ଲୋକେ ଗୁରୁଦେବଙ୍କର ବିଚାର କରିଥାନ୍ତି ।

## ଶିଷ୍ୟର ଭାରଗ୍ରହଣ

ସାଧୁ ମହାପୁରୁଷଙ୍କ ସହିତ ଯେଉଁମାନଙ୍କର କେବଳ କର୍ମର ସମ୍ବନ୍ଧ, ସେମାନଙ୍କର କର୍ମ ଶେଷ ହୋଇଗଲେ ଦାୟିତ୍ୱ ଶେଷ ହୋଇଯାଏ । ଯେ ଯେପରି କର୍ମ କରିବାକୁ ଇଚ୍ଛା କରନ୍ତି, ମହାପୁରୁଷମାନେ ତାହାସବୁ ଦେଇପାରନ୍ତି । 'ମୁଁ ଏ

ବିଷୟଟି ଶିଖିବାକୁ ଇଚ୍ଛା କରୁଛି' କହିବାମାତ୍ରେ ସେମାନେ ସେ କାର୍ଯ୍ୟ ଶିଖାଇଦେଇ ପାରନ୍ତି; ମାତ୍ର ସେତିକି କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଦାୟିତ୍ୱ ଶେଷ ହୋଇଯାଏ ।

କିନ୍ତୁ ଗୁରୁ-ଶିଷ୍ୟ ସମ୍ପର୍କରେ ଏସବୁ କଥା ଆଦୌ ପ୍ରଯୁଜ୍ୟ ହୋଇ ନପାରେ । ଗୁରୁ-ଶିଷ୍ୟ ସମ୍ବନ୍ଧ ଦାୟିତ୍ୱପୂର୍ଣ୍ଣ । ଶ୍ରୀଗୁରୁ ଯେଉଁଦିନ ଯାହାଙ୍କୁ ଶିଷ୍ୟରୂପରେ ଗ୍ରହଣ କରନ୍ତି, ସେହିଦିନଠାରୁ ତାଙ୍କର ସବୁପ୍ରକାର ଦାୟିତ୍ୱ ନିଜ ଉପରକୁ ନେଇଛନ୍ତି ବୋଲି ଗୁରୁ ଜାଣନ୍ତି । କିପରି ତାଙ୍କର ମଙ୍ଗଳ ହେବ, କିପରି ତାଙ୍କର ଭ୍ରମ ସଂଶୋଧନ ହେବ, କିପରି ତାଙ୍କର ଆଧ୍ୟାତ୍ମିକ ଉନ୍ନତି ହେବ, ଗୁରୁଦେବଙ୍କର ସର୍ବଦା ସେହି ଚିନ୍ତା ଲାଗିରହିଥାଏ । ସୁତରାଂ, କୌଣସି ଶିଷ୍ୟ ଯଦି ଗୁରୁଦେବଙ୍କ ନିକଟକୁ ଆସି ଗୁରୁଦେବଙ୍କୁ ତାଙ୍କ କର୍ତ୍ତବ୍ୟ ସ୍ମରଣ କରାଇଦେବାକୁ ବସନ୍ତି, ତେବେ ତାହା ଶିଷ୍ୟଙ୍କର ଧୃଷ୍ଟତା ବ୍ୟତୀତ ଅନ୍ୟ କିଛି ନୁହେଁ । ଯେଉଁମାନେ ସଦ୍‌ଗୁରୁ, ସେମାନେ କେବେହେଲେ ଲୋକଙ୍କଠାରେ ପ୍ରବଞ୍ଚନା କରନ୍ତି ନାହିଁ । ସେମାନେ ଜାଣନ୍ତି ଯେ ପ୍ରକୃତ ଶିଷ୍ୟଙ୍କର ନିର୍ଭରତା ହିଁ ଏକାମାତ୍ର ପଥ ।

ଶିଷ୍ୟମାନଙ୍କ ଉପରେ ଗୁରୁଦେବ ରାଗ କରିପାରନ୍ତି ନାହିଁ । କୌଣସି କାରଣରୁ ଯଦି ଅସନ୍ତୋଷ ପ୍ରକାଶ କରନ୍ତି, ବୁଝିବାକୁ ହେବ, ତାହା ବାହ୍ୟିକ ମାତ୍ର । ତା' ସହିତ ମନର କୌଣସି ସମ୍ପର୍କ ନାହିଁ । ଶିଷ୍ୟମାନଙ୍କ ଉପରେ ଗୁରୁଦେବଙ୍କର ରାଗ ଧଣ୍ଡସାପର ଦଂଶନସଦୃଶ । ସେ ରାଗରେ ଶିଷ୍ୟମାନଙ୍କର କୌଣସି କ୍ଷତି ହୁଏ ନାହିଁ । ତାହାଦ୍ୱାରା ସେମାନଙ୍କର ଶାସନ ମାତ୍ର ହୁଏ । ତାହା ବ୍ୟତୀତ ଗୁରୁ ସର୍ବଦା ସର୍ବତୋଭାବରେ କଲ୍ୟାଣକାମୀ । ତେଣୁ ତାଙ୍କ ରାଗରେ ଶିଷ୍ୟମାନଙ୍କର କଲ୍ୟାଣ ବ୍ୟତୀତ ଅନ୍ୟକିଛି ହୁଏନାହିଁ ।

ସଦ୍‌ଗୁରୁ କାହାକୁ ଅଭିଶାପ ଦିଅନ୍ତି ନାହିଁ । ସେ ରୁଷ୍ଟ ହେଲେ ମଧ୍ୟ ସେଥିରେ ଶିଷ୍ୟଙ୍କର ମଙ୍ଗଳ ବ୍ୟତୀତ ଅମଙ୍ଗଳ ହୁଏ ନାହିଁ । ତାଙ୍କର ଆଶିଷ ଓ ଅଭିଶାପର ଫଳ ଏକା ହୁଏ । ତେଣୁ ସଦ୍‌ଗୁରୁ ସବୁଠାରୁ ବଡ଼, ସବୁଠାରୁ ମହତ୍ ।

କିନ୍ତୁ ଆଉ ଗୋଟିଏ ଦିଗରୁ ସଦ୍‌ଗୁରୁଙ୍କ କୃପା ତମ୍ପସାପର କାମୁଡ଼ା ପରି । ତମ୍ପସାପ ଯାହାକୁ ଥରେ ଦଂଶନ କରେ, ତାର ଆଉ ରକ୍ଷା ନାହିଁ । ସେହିପରି ଶିଷ୍ୟମାନେ ଯେଉଁ ସ୍ଥାନକୁ ଯାଆନ୍ତୁ ପଛକେ ଶେଷର ଦିନେ ସେମାନଙ୍କୁ ଫେରିଆସିବାକୁ ପଡ଼େ । ଏହାର ଆଉ ଅନ୍ୟଥା ହୁଏ ନାହିଁ ।

ସଦ୍‌ଗୁରୁ-ତତ୍ତ୍ୱ ବଡ଼ ରହସ୍ୟମୟ । ଅଧିକାରୀ ନ ହେଲେ ଏ ତତ୍ତ୍ୱ ଅନ୍ୟ ନିକଟରେ ପ୍ରକାଶ କରିବା ଉଚିତ ନୁହେଁ । ଗୁରୁଦେବ ଯଦି କୌଣସି ଶିଷ୍ୟଙ୍କୁ ଅଭିଶାପ ଦିଅନ୍ତି, ତେବେ ସାମୟିକ ଭାବରେ ଶିଷ୍ୟ ଖୁବ୍ ଦୁଃଖ ଅନୁଭବ କଲେ ମଧ୍ୟ ସେଥିରେ ତାଙ୍କର ପୁଞ୍ଜିକୃତ ପ୍ରାରବ୍ଧ ଶ୍ରୀଘ ଭୋଗ ହୋଇଯାଏ ।

## ନିର୍ଭରତା

ସଦ୍‌ଗୁରୁଙ୍କ ଉପରେ ନିର୍ଭର କଲେ ଯେଉଁ ସୁବିଧା, ଭଗବାନଙ୍କ ଉପରେ ନିର୍ଭର କଲେ ସେ ସୁବିଧା ମିଳେ ନାହିଁ । କାରଣ, ଭଗବାନ ତ ସାକ୍ଷାତ୍‌ଭାବରେ ଆଦେଶ ଦେବାକୁ ଆସନ୍ତି ନାହିଁ; କିନ୍ତୁ ସଦ୍‌ଗୁରୁ ସାକ୍ଷାତଭାବରେ ଆଦେଶ ଦେଇ ବାଟ ଦେଖାଇଦେଇ ଗନ୍ତବ୍ୟସ୍ଥାନରେ ପହଞ୍ଚାଇଦିଅନ୍ତି ।

ଗୁରୁ ଦେହ ତ୍ୟାଗ କଲେ ଜଗଦ୍‌ଗୁରୁଙ୍କ ସହିତ ମିଶିଯାନ୍ତି, ସତ୍ୟ; କିନ୍ତୁ ଶିଷ୍ୟମାନଙ୍କ ହାତରୁ ନିସ୍ତାର ପାଆନ୍ତି ନାହିଁ । ଶିଷ୍ୟମାନେ ତାଙ୍କୁ ସେହିଭାବରେ ପାଆନ୍ତି ଓ ସେମାନଙ୍କ ଦାବୀ ଆହୁରି ବଢ଼ିଯାଏ ।

ଯେଉଁ ଗୁରୁଙ୍କକର୍ତ୍ତୃକ ପରମପଦ ଦୃଷ୍ଟ ହୁଏ ଅର୍ଥାତ୍ ଯାହାଙ୍କ କୃପାରୁ ବ୍ରହ୍ମସାକ୍ଷାତ୍‌କାର ଲାଭ ହୁଏ, ଯେ ଅଜ୍ଞାନତିମିରାଚ୍ଛନ୍ନ ଚକ୍ଷୁ ଜ୍ଞାନାଞ୍ଜନ-ଶଳାକାଦ୍ୱାରା ଉନ୍ମୀଳିତ କରି ଦିବ୍ୟଜ୍ଞାନ ପ୍ରଦାନ କରନ୍ତି, ତାଙ୍କ ଅପେକ୍ଷା ଜଗତ୍‌ରେ ଆଉ କିଏ ଗରୀୟାନ, କିଏ ମହୀୟାନ୍ ଓ କିଏ ଆପଣାର ଆତ୍ମୀୟ ଅଛନ୍ତି ? ତାଙ୍କୁ ଭକ୍ତି-ପ୍ରୀତି କରିବ ନାହିଁ ତ ତେବେ ଆଉ କାହାକୁ ଭକ୍ତି ପ୍ରୀତି କରିବ ?

ସାଧନ-ଭଜନ କରି ନାନା ସ୍ଥାନ ଘୂରିବୁଲି ପୁରୁଷକାରର ଚୂଡ଼ାନ୍ତ କର୍ମ କରି ଯେତେବେଳେ ହତାଶ ହୋଇପଡ଼ିବ, ସେହି ସମୟର ନିର୍ଭରତା ହିଁ ପ୍ରକୃତ ନିର୍ଭରତା । ସେତେବେଳେ ଶ୍ରୀଗୁରୁଦେବଙ୍କ କୃପାଲାଭ କରିବା ନିମିତ୍ତ ବ୍ୟାକୁଳତା ଜାତ ହେବ । ଅନେକ ସାଧନ କରୁଥିବା ଅବସ୍ଥାରେ ଏହିପରି କୌଣସି ସ୍ଥାନରେ ପହଞ୍ଚି ଅଟକିଯାଆନ୍ତି; ବହୁ ଚେଷ୍ଟା କରି ସୁଦ୍ଧା ସେଠାରୁ ଆଉ ଅଗ୍ରସର ହୋଇପାରନ୍ତି ନାହିଁ । ସେତେବେଳେ ଗୁରୁ ଧକ୍‌କା ଦେଇ ଉଠାଇଦିଅନ୍ତି । ନିର୍ଭରଶୀଳ ହେବାକୁ ଇଚ୍ଛା କଲାମାତ୍ରେ କେହି ନିର୍ଭରଶୀଳ ହୋଇଯାଆନ୍ତି ନାହିଁ; ନିଶ୍ଚୟାତ୍ମିକା ବୁଦ୍ଧି ଧରି ନିର୍ଭର କରିବାକୁ ହୁଏ ।

# ଆତ୍ମସମର୍ପଣ

ଭକ୍ତି-ଆବେଗରେ ପ୍ରସ୍ତରମୂର୍ତ୍ତିରେ ଯଦି ଚୈତନ୍ୟର ସ୍ଫୁରଣ ହୋଇପାରେ, ତେବେ ମନୁଷ୍ୟମୂର୍ତ୍ତିରେ ସେ ଭାବ ଅରୋପିତ ହେଲେ ମନୁଷ୍ୟ ଦେବତା ନ ହେବେ ବା କାହିଁକି? ଗୁରୁଦେବଙ୍କଠାରେ ଶିଷ୍ୟମାନେ ନିଜର ଅହଂତ୍ୱ ବିସର୍ଜନ ନ କଲେ ଉନ୍ନତି ହେବା କଷ୍ଟକର। ଭକ୍ତମାନେ ଯଦି ସେମାନଙ୍କ ଉପାସ୍ୟଙ୍କୁ ନିଜର ମନୋମତ କରି ଗଢ଼ିବାକୁ ଇଚ୍ଛା କରନ୍ତି, ତେବେ ସେହି ଉପାସ୍ୟ ସାଧାରଣ ଜୀବରେ ପରିଣତ ହୋଇପାରନ୍ତି। ହେ ଗୁରୁଦେବ! ମୋତେ ତୁମର ମନୋମତ କରିନିଅ—ଏହା ହେଉଛି ଶ୍ରେଷ୍ଠଭାବ। ଏହି ଭାବ ଗ୍ରହଣ କଲେ ଉନ୍ନତି ଅବଶ୍ୟମ୍ଭାବୀ।

ସଂସାରର, କର୍ମ କାମନାମୟ। ତେଣୁ ଏଠାରେ କର୍ମ କଲେ ବନ୍ଧନ ହୁଏ। ଗୁରୁଗୃହରେ ରହି କର୍ମ କଲେ ସେଥିରେ କାମନା ନ ଥିବାରୁ ତଦ୍ୱାରା କୌଣସି ବନ୍ଧନ ହୁଏ ନାହିଁ। ସେଠାର କର୍ମଦ୍ୱାରା କେବଳ ଗୁଣ କ୍ଷୟ ହୁଏ। ସାଧନ-ଭଜନ ମଧ୍ୟ ଗୁଣ କ୍ଷୟ କରିବାନିମିତ୍ତ। ଗୁରୁଗୃହର କର୍ମ ବ୍ୟଷ୍ଟିଭାବରେ ବିଚାର କଲେ ଜଗତର, ପୁଣି ସମଷ୍ଟିଭାବରେ ବିଚାର କଲେ ତାହା ନିଜର। ସୁତରାଂ, ଗୁରୁଦେବଙ୍କଠାରୁ ଶିକ୍ଷା କରି ସାଧନ-ଭଜନ କଲେ ଯାହା ହୁଅନ୍ତା, ତାଙ୍କ ସେବା କଲେ ମଧ୍ୟ ସେହି ଫଳ ମିଳିଥାଏ। ଶିଷ୍ୟମାନେ ଆପଣା ଦୋଷରୁ ଗୁରୁଙ୍କୁ ଛାଡ଼ିଯାନ୍ତି; କିନ୍ତୁ ସେମାନେ ଜାଣନ୍ତି ନାହିଁ ଯେ ଗୁରୁ ବତ୍ସାହରା ଗାଭୀପରି ଶିଷ୍ୟମାନଙ୍କ ଆସିବା ବାଟକୁ ଅନାଇ ରହିଥାଆନ୍ତି। ଶିଷ୍ୟମାନଙ୍କୁ ନିଜର ବ୍ରହ୍ମତ୍ୱ ବିତରଣ କରିଦେଇ, ସେମାନଙ୍କ କର୍ମଫଳ ନିଜେ ଗ୍ରହଣ କରି ଜନ୍ମଗ୍ରହଣ କରିବାକୁ ମଧ୍ୟ ଗୁରୁ ପ୍ରସ୍ତୁତ।

ପାହାଡ଼ର ଦୁର୍ଗମ ପଥରେ ଗୁରୁ ଶିଷ୍ୟ ଚାଲିଛନ୍ତି। ପ୍ରକାଣ୍ଡ ଚିମୁଟା ଝମ୍‌ଝମ୍‌କରି ତାଳେ ତାଳେ ବଜାଇ ଗୁରୁ ଆଗରେ ଓ ମୁଣ୍ଡରେ ପୋଥିବୋଝ ବହନକରି ଶିଷ୍ୟ ପଛରେ ଚାଲିଛନ୍ତି। ପୋଥିପୁଡ଼ା ବ୍ୟତୀତ ଗୁରୁଦେବଙ୍କର ଲୋଟା-କମ୍ବଳାଦିର ବୋଝ ତ ଅଙ୍ଗରେ ରହିଛି। ଏତେ ବୋଝ ବହନ କରି ସୁଦ୍ଧା ଶିଷ୍ୟଙ୍କ ମନର ଆନନ୍ଦ ସେ ଆଉ ଧରି ରଖିପାରୁନାହାନ୍ତି। ସେ ନାଚି ନାଚି ଯାଉଛନ୍ତି ଏବଂ ମନେ ମନେ କହୁଛନ୍ତି, "ଠାକୁର, ତୁମେ ଆଉ କି ବୋଝ ମୋତେ ଦେଇଛ? ଏହି କେତେ ଖଣ୍ଡ ପୋଥିର ବୋଝ ତ! ମୁଁ କିନ୍ତୁ ତୁମ

ଉପରେ କି ବୋଝ ଲଦିଦେଇ ନିଶ୍ଚିନ୍ତ ରହିଛି, ତାହା ଯଦି ତୁମେ ବୁଝନ୍ତ, ତେବେ ସିନା ଜାଣନ୍ତ ଯେ କେତେ ଜନ୍ମ-ଜନ୍ମାନ୍ତରର ବୋଝ ତୁମ ଉପରେ ପଡ଼ିଛି । ଆଉ ମୋର ଏ ବୋଝ କେତେ ଖଣ୍ଡ ପୋଥିର ବୋଝ ମାତ୍ର ।'' ଗୁରୁ ଓ ଶିଷ୍ୟଙ୍କ ଭିତରେ ଭାବ ଏହିପରି ।

ଶ୍ରୀଗୁରୁଦେବ ମହାଜନ, ଶିଷ୍ୟମାନେ ନିଃସମ୍ବଳ ଖାତକ । ସୁତରାଂ ଗୁରୁଦେବ ହିଁ ଦାତା । ଶିଷ୍ୟ କିଛି ଦେଇପାରନ୍ତି ନାହିଁ । ତେବେ ଶିଷ୍ୟ ଉପଯୁକ୍ତ ହେଲେ ଗୁରୁଦେବଙ୍କୁ ମୂଳଧନ ଫେରାଇଦେବାକୁ ପଡ଼େ ।

## ମୂଳକୃପା

ଗୁରୁ କାହାକୁ ଅଧିକ, କାହାକୁ ଊଣା କୃପା କରିପାରନ୍ତିନାହିଁ । ସେପରି କଲେ ସେ ସଦ୍‌ଗୁରୁ ନୁହନ୍ତି । ତାଙ୍କ କୃପା ଅହେତୁକ ହୋଇଥିବାରୁ ସେ କୃପା ସମସ୍ତଙ୍କପ୍ରତି ସମାନ । ଜଳ ଢାଳିବା ପରି ସେ କୃପା ଢାଳିଦିଅନ୍ତି । ଯେଉଁଠାରେ ଯେତିକି ଗର୍ତ୍ତ ଅଛି, ସେଠାରେ ସେତିକି ଜଳ ରହିଯାଏ । ଯେ ଯେପରି ଅଧିକାରୀ, ସେ ସେହିପରି କୃପାଲାଭ କରନ୍ତି । ସାଧନ-ଭଜନଦ୍ୱାରା ମନ ପ୍ରସ୍ତୁତ ହୋଇପାରେ; କିନ୍ତୁ ଗୁରୁକୃପା ବ୍ୟତୀତ କିଛି ହୋଇପାରେ ନାହିଁ ।

ଧ୍ୟେୟବସ୍ତୁରେ ଚିତ୍ତ ଟିକିଏ ତନ୍ମୟ ହେବାକ୍ଷଣି ସ୍ୱପ୍ନ ଭିତରେ ସେହି ମୂର୍ତ୍ତି ଫୁଟିଉଠେ । ଚିତ୍ତର ଏକାଗ୍ରତା ହେଉଛି ତାହାର ଲକ୍ଷଣ । ଏହି ସ୍ଥଳରେ ଗୁରୁ ଏକମାତ୍ର କର୍ଣ୍ଣଧାର । ଭଗବାନ ବନ୍ଧନମୋଚନର ଉପାୟ ପ୍ରଥମେ ସ୍ଥିର କରି ମହାମାୟାଙ୍କ ବନ୍ଧନରେ ନିଜକୁ ବାନ୍ଧିଛନ୍ତି । ଗୁରୁଦେବ ହିଁ ସେହି ଭବବନ୍ଧନ-ମୋଚନକାରୀ । ତାଙ୍କ କୃପା ବ୍ୟତୀତ ଭଗବତ୍‌ଦର୍ଶନ ବା ମୁକ୍ତିଲାଭ ସମ୍ଭବ ନୁହେଁ । ମୁକ୍ତି ବିଧାନ କରିବାକୁ ଭଗବାନ ଅକ୍ଷମ । ନିଜ ରଚିତ ନିୟମରେ ସେ ନିଜେ ବାଧ୍ୟ । ତେଣୁ ଯୁଗ ଯୁଗାନ୍ତରରୁ ସେ ଗୁରୁଭାବରେ ଅବତରଣ କରି ଜୀବ ଉଦ୍ଧାର କରୁଛନ୍ତି । ତାହା ନ ହେଲେ ତାଙ୍କ ଇଚ୍ଛାରେ ତ ସମସ୍ତେ ମୁକ୍ତିଲାଭ କରିଯାନ୍ତେ; ଏତେ କ୍ଲେଶ ସ୍ୱୀକାର କରି ତାଙ୍କୁ ଅବତରଣ କରିବାକୁ ପଡ଼ନ୍ତା ନାହିଁ ।

ବ୍ରହ୍ମଜ୍ଞାନସମ୍ପନ୍ନ ସଦ୍‌ଗୁରୁ ଉତ୍ତମରୂପେ ଜ୍ଞାନଭକ୍ତି ପ୍ରଦାନ କରିପାରନ୍ତି । ବ୍ରହ୍ମଙ୍କର କେଉଁ ଅଂଶରେ ଜ୍ଞାନ ଓ କେଉଁ ଅଂଶରେ ଭକ୍ତି ନିହିତ ଅଛି, ତାହା ସେ ଜାଣନ୍ତି । ଭଗବାନ କିଏ ? ଭକ୍ତି କାହାକୁ କହନ୍ତି ? ଭଗବାନଙ୍କ ସହିତ

ଭକ୍ତଙ୍କର ସମ୍ବନ୍ଧ କିପରି ? ଜ୍ଞାନୀଗୁରୁ ତାହା ଭକ୍ତମାନଙ୍କୁ ବୁଝାଇଦେଇ ପାରନ୍ତି । ଭଗବତ୍‌ଜ୍ଞାନ ପ୍ରଦାନ କଲେ ଭଗବାନଙ୍କୁ ପାଇବାନିମିତ୍ତ ଭକ୍ତମାନଙ୍କ ଅନ୍ତରରେ ବ୍ୟାକୁଳତା ଜାତ ହେବ । ଶିଷ୍ୟମାନଙ୍କର ଭଗବତ୍ ଅନୁରାଗ ବୃଦ୍ଧି କରାଇଦେବା ହିଁ ଗୁରୁଦେବଙ୍କର ପ୍ରଧାନ କାର୍ଯ୍ୟ । ଭଗବାନଙ୍କପ୍ରତି ଭକ୍ତମାନଙ୍କର ଅନୁରାଗ ବୃଦ୍ଧି କରାଇଦେଲେ ଭକ୍ତମାନଙ୍କର ସର୍ବାର୍ଥ ସିଦ୍ଧ ହୋଇଥାଏ ।

ବ୍ରହ୍ମଜ୍ଞାନସମ୍ପନ୍ନ ଗୁରୁଦେବ ଶିଷ୍ୟମାନଙ୍କୁ କଠୋର ପରୀକ୍ଷା କରିଥାନ୍ତି । ବ୍ରହ୍ମଜ୍ଞାନୀ ଗୁରୁ ଇଚ୍ଛା କଲେ ବିନା ସାଧନ-ଭଜନରେ ମଧ୍ୟ ଶିଷ୍ୟମାନଙ୍କୁ ଜ୍ଞାନ ଦାନ କରିପାରନ୍ତି । ଜ୍ଞାନଦାନପୂର୍ବରୁ ବ୍ରହ୍ମଜ୍ଞ ଗୁରୁଗଣ ଶିଷ୍ୟମାନଙ୍କୁ କଠୋର ପରୀକ୍ଷା କରିଥାନ୍ତି । ଏପରି ପରୀକ୍ଷା କରିବାଦ୍ୱାରା ଶିଷ୍ୟମାନଙ୍କର ଭବିଷ୍ୟତ ମଙ୍ଗଳ ହୋଇଥାଏ । ଯେଉଁ ବସ୍ତୁ ଯେତେ ସହଜରେ ଲାଭହୁଏ, ତାହାର ଗୁରୁତ୍ୱ ସେତେ କମ୍ ବୋଲି ବୋଧହୁଏ । ଏହି କାରଣରୁ ଜ୍ଞାନଲାଭନିମିତ୍ତ କଠୋର ନୀତି-ନିୟମ ମଧ୍ୟ ଦେଇ ଯିବାକୁ ହୁଏ ।

ଯେ ଗୁରୁଦେବଙ୍କୁ ସଦ୍‌ଗୁରୁ ବୋଲି ଅନୁଭବ କରିପାରିଛନ୍ତି, ସେ ଅତି ଉଚ୍ଚକୋଟିର ସାଧକ । ତାଙ୍କର ଅନ୍ୟ ଦେବଦେବୀ ପୂଜାର କିଛି ମାତ୍ର ଆବଶ୍ୟକତା ନାହିଁ । ତେଣୁ ସଦ୍‌ଗୁରୁଙ୍କ ଉପରେ ନିର୍ଭର କରିପାରିଲେ ଭଗବାନଙ୍କୁ ଅତି ସହଜରେ ଲାଭ କରାଯାଇପାରିବ । ବିଦ୍ୟା-ବୁଦ୍ଧି ଅର୍ଜ୍ଜନନିମିତ୍ତ ବୁଦ୍ଧି ପ୍ରତିଭାର ପ୍ରୟୋଜନ । ବ୍ୟବସାୟନିମିତ୍ତ ମୂଳଧନ ଆବଶ୍ୟକ; କିନ୍ତୁ ଗୁରୁ ନିର୍ଭରଶୀଳ ବ୍ୟକ୍ତିଙ୍କର ବିଦ୍ୟା, ବୁଦ୍ଧି, ପ୍ରତିଭା, ଦେହର ବଳ, ଏସବୁ ନ ଥିଲେ ମଧ୍ୟ ସେ ଭଗବାନଙ୍କୁ ଲାଭ କରିବାରେ କିଛି ବାଧା ଜାତ ହୁଏ ନାହିଁ । ଗୁରୁଙ୍କଉପରେ ନିର୍ଭରତା ହିଁ ଭଗବାନଙ୍କୁ ଲାଭ କରିବାର ସହଜ ସରଳ ଉପାୟ ।

ସଦ୍‌ଗୁରୁଙ୍କୁ ସ୍ଥୂଳଦେହରେ ଲାଭ କରିବାପରେ ତାଙ୍କୁ ସୂକ୍ଷ୍ମରେ ଉପଲବ୍ଧି କରିବାପୂର୍ବରୁ ଗୁରୁ ଯଦି ଦେହରକ୍ଷା କରନ୍ତି, ତେବେ ଶିଷ୍ୟଙ୍କର ସଦ୍‌ଗୁରୁଙ୍କୁ ଲାଭ କରିବାରେ କିଛିମାତ୍ର ପ୍ରତିବନ୍ଧକ ହେବ ନାହିଁ । ସ୍ଥୂଳମୂର୍ତ୍ତି ଇନ୍ଦ୍ରିୟଗ୍ରାହ୍ୟ । ଏହାପରେ ଗୋଟିଏ ଅତୀନ୍ଦ୍ରିୟ ଅନୁଭୂତି ଅଛି । ତାହାଦ୍ୱାରା ଯାହା ଲାଭ ହୁଏ, ତାହା ସୂକ୍ଷ୍ମ । ତେଣୁ ଶ୍ରୀଗୁରୁଦେବଙ୍କ ଦେହ ନ ଥିଲେ ମଧ୍ୟ ସେ ଅଛନ୍ତି, ଶିଷ୍ୟ ମଧ୍ୟ ଅଛି । ସ୍ଥୂଳରେ ଯେଉଁଭାବରେ ଚିନ୍ତା କରିବ, ସୂକ୍ଷ୍ମରେ ସେହି ଭାବ ଅନୁଯାୟୀ ଅନୁଭବ କରିବ । କେବଳ ମାତ୍ର ଗୁରୁଦେବଙ୍କ ପ୍ରତି ଭକ୍ତି ଥିଲେ ସମସ୍ତ ଭାବ ଫୁଟିଉଠିବ ।

ଗୁରୁ ଚାରି ପ୍ରକାର–ଆଦର୍ଶଗୁରୁ, ଆଚାର୍ଯ୍ୟଗୁରୁ, ସଦ୍‌ଗୁରୁ ଓ ଜଗଦ୍‌ଗୁରୁ । ଯାହାଙ୍କ ଆଦର୍ଶରେ ନିଜ ଜୀବନକୁ ପରିଚାଳିତ କରିବ, ତାଙ୍କୁ କୁହାଯାଏ ଆଦର୍ଶଗୁରୁ । ଯେଉଁ ଗୁରୁ ଧର୍ମର ପ୍ରାଥମିକ ଶିକ୍ଷା ବା ମନ୍ତ୍ର ପ୍ରଦାନ କରନ୍ତି, ସେ ଆଚାର୍ଯ୍ୟଗୁରୁ ବା କୁଳଗୁରୁ । ଯେଉଁଗୁରୁ ଶିଷ୍ୟଙ୍କଠାରେ ନିଜ ଶକ୍ତି ସଞ୍ଚାରିତ କରି ଆତ୍ମଜ୍ଞାନ ପ୍ରଦାନ କରନ୍ତି, ତାଙ୍କୁ କୁହାଯାଏ ସଦ୍‌ଗୁରୁ । ପୁଣି ଯେ ସମସ୍ତଙ୍କର ଗୁରୁ, ତାଙ୍କୁ କୁହାଯାଏ ଜଗଦ୍‌ଗୁରୁ ।

ଗୋଟିଏ ଭାବରେ ଗୁରୁଶିଷ୍ୟ ସମ୍ପର୍କ ନିତ୍ୟ, ପୁଣି ଅନ୍ୟଭାବରେ ଅନିତ୍ୟ । ଯେପରି ସ୍ୱାମୀତ୍ୱ କହିଲେ ସ୍ୱାମୀଙ୍କର ସ୍ଥୂଳଦେହକୁ ବୁଝାଏ ନାହିଁ, ସେହିପରି ଗୁରୁତ୍ୱ କହିଲେ ଗୁରୁଦେବଙ୍କର ସ୍ଥୂଳଦେହକୁ ବୁଝାଏ ନାହିଁ । ସ୍ଥୂଳ ଦେହ ଅନିତ୍ୟ । ତେବେ ଯେଉଁମାନେ ଗୁରୁନିଷ୍ଠ ଶିଷ୍ୟ, ଯେଉଁମାନେ ଶ୍ରୀଗୁରୁଙ୍କୁ ଆତ୍ମସମର୍ପଣ କରିଛନ୍ତି, ସେହିମାନଙ୍କ ସମ୍ବନ୍ଧ ନିତ୍ୟ । ମନେ କର, ଜଣେ କୁଳଗୁରୁରୂପରେ ବହୁ ଶିଷ୍ୟ କଲେ । ପୁନରାୟ ସେ ଗୁରୁ ଯେତେବେଳେ ଜନ୍ମଗ୍ରହଣ କରିବେ, ତାଙ୍କର ଗୁରୁନିଷ୍ଠ ଶିଷ୍ୟମାନେ ତାଙ୍କ ସହିତ ଜନ୍ମ ଗ୍ରହଣ କରୁଥିବେ । ସେମାନେ ବିନା ବିଚାରରେ ସେହି ଗୁରୁଙ୍କର ଶିଷ୍ୟତ୍ୱ ସ୍ୱୀକାର କରୁଥିବେ । ଗୁରୁ ଜୀବନ୍ମୁକ୍ତ ନ ହେବାପର୍ଯ୍ୟନ୍ତ ତାଙ୍କର ମୁକ୍ତିଲାଭ ହେବନାହିଁ । ଗୁରୁ ଯେତେବେଳେ ଜୀବନ୍ମୁକ୍ତି ଲାଭ କରିବେ, ତାଙ୍କର ଶିଷ୍ୟମାନେ ମଧ୍ୟ ମୁକ୍ତ ହୋଇଯିବେ; କିନ୍ତୁ ଯେଉଁମାନେ ଗୁରୁଦେବଙ୍କୁ ଭଗବତ୍‌ବୁଦ୍ଧିରେ ସୁଖ ପାଇ ନାହାନ୍ତି, ସେମାନେ ପରଜନ୍ମରେ ସେହିପରି ରୂପ-ଗୁଣ ବିଶିଷ୍ଟ ଅନ୍ୟ ଜଣେ ସଦ୍‌ଗୁରୁ ଲାଭ କରିବେ; କିନ୍ତୁ ସେ ଗୁରୁଙ୍କୁ ଆଉ ପାଇପାରିବେ ନାହିଁ । ଯେଉଁମାନେ ଶ୍ରୀଗୁରୁଙ୍କଠାରେ ଭଗବତ୍ ସତ୍ତାର ସନ୍ଧାନ ଲାଭ କରି ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରିଛନ୍ତି, ସେହିମାନଙ୍କ ସମ୍ବନ୍ଧ ନିତ୍ୟ । ଯେଉଁମାନେ ଗୁରୁଦେବଙ୍କ ନାମ ଶୁଣି ତାଙ୍କୁ ଦେଖିବା ମାତ୍ରକେ ବିନାବିଚାରରେ ତାଙ୍କୁ ସୁଖ ପାଆନ୍ତି, ସେହିମାନଙ୍କ ସମ୍ବନ୍ଧ ନିତ୍ୟ ବୋଲି ଜାଣିବ ।

ସଦ୍‌ଗୁରୁଙ୍କ ଶକ୍ତି ବ୍ୟଷ୍ଟିଗତ; କିନ୍ତୁ ଭଗବାନଙ୍କ ଶକ୍ତି ସମଷ୍ଟିଗତ । ଶ୍ରୀଗୁରୁ ଇଚ୍ଛା କଲେ କେବଳ ତାଙ୍କ ଅନୁଗତ ଶିଷ୍ୟ-ଭକ୍ତଙ୍କୁ ଉନ୍ନତ କରାଇପାରନ୍ତି; ମାତ୍ର ଭଗବତ୍ ଇଚ୍ଛାରେ ସମଗ୍ର ଜଗତ୍ ଉନ୍ନତ ହୋଇଉଠେ । ଗୁରୁଦେବଙ୍କଠାରେ ଭଗବତ୍‌ଶକ୍ତି ପୂର୍ଣ୍ଣମାତ୍ରାରେ ଥିଲେ ମଧ୍ୟ ସେ ତାଙ୍କର ପ୍ରପନ୍ନ ଅନୁଗତ ଶିଷ୍ୟ-ଭକ୍ତଙ୍କ ବ୍ୟତୀତ ଅନ୍ୟ କାହା ଉପରେ ତାହା ପ୍ରୟୋଗ କରନ୍ତି ନାହିଁ । ତେଣୁ ଗୁରୁଦେବ ତାଙ୍କ ଶିଷ୍ୟ ଭକ୍ତମାନଙ୍କର ହିଁ ଭଗବାନ । ଶ୍ରୀଗୁରୁ ହିଁ କେବଳ

ମୁକ୍ତିଦାତା। ମୁକ୍ତିଦାନର କ୍ଷମତା ଶ୍ରୀଗୁରୁଙ୍କ ବ୍ୟତୀତ ଭଗବାନଙ୍କର ମଧ୍ୟ ନାହିଁ। ଏକମାତ୍ର ସଦ୍‌ଗୁରୁ ଭୁକ୍ତି ଓ ମୁକ୍ତି ଉଭୟ ପ୍ରଦାନ କରିପାରନ୍ତି; ତେଣୁ ସେ ଭଗବାନଙ୍କଠାରୁ ଶ୍ରେଷ୍ଠ।

ଶ୍ରୀଗୁରୁଦେବଙ୍କୁ ଅନ୍ତର ମନ୍ଦିରରେ ଦର୍ଶନ କରିବାକୁ ଇଚ୍ଛା କଲେ– ଆନ୍ତରିକ ବ୍ୟାକୁଳତା ନେଇ ପ୍ରାର୍ଥନା କରିବାକୁ ହେବ। ମୁଁ ମରିଯିବାପରେ *ତୁମେମାନେ ଅନ୍ତର-ମନ୍ଦିରରେ ମୋତେ ପ୍ରତ୍ୟକ୍ଷଭାବରେ ଦର୍ଶନ କରିପାରିବ।

ଯେଉଁମାନେ ସଦ୍‌ଗୁରୁଙ୍କୁ ପ୍ରତ୍ୟକ୍ଷଭାବରେ ଅନ୍ତରରେ ଉପଲବ୍ଧି କରିବାକୁ ଇଚ୍ଛା କରନ୍ତି, ସେମାନେ ଦିବସର ଅଧିକାଂଶ ସମୟରେ ''ଜୟଗୁରୁ'' ସିଦ୍ଧମନ୍ତ୍ରର ସ୍ମରଣ-ମନନ କରିବା ଦରକାର। କିଛି ଦିନପରେ ଅଭ୍ୟାସ ହୋଇଗଲେ ରାତ୍ରିରେ ନିଦ୍ରିତାବସ୍ଥାରେ ମଧ୍ୟ 'ଜୟଗୁରୁ' ନାମ ଜପ ହେବାର ଅନୁଭବ କରିପାରିବ। ସେତିକିବେଳେ ସେହି ସିଦ୍ଧମନ୍ତ୍ରର ଆଶ୍ଚର୍ଯ୍ୟ ପ୍ରଭାବରେ ସଦ୍‌ଗୁରୁ ଅନ୍ତର-ମନ୍ଦିରରେ ଆବିର୍ଭୂତ ହେବେ—ଜୀବନ ଧନ୍ୟ ହେବ।

ସୁଷୁମ୍ନାନାଡ଼ୀର ମଧ୍ୟ ଦେଇ ବ୍ରହ୍ମରନ୍ଧ୍ର ସହିତ ସୂର୍ଯ୍ୟାଲୋକର ଯେଉଁ ସଂଯୋଗପଥ ଅଛି, ସେହି ପଥକୁ ଜୀବାତ୍ମା ଦେହତ୍ୟାଗ କରିବାର କିଛି ସମୟପୂର୍ବରୁ ସୁସ୍ପଷ୍ଟ ଭାବରେ ଦେଖିପାରେ। ସେତେବେଳେ ଜୀବାତ୍ମା ମଧ୍ୟ ବ୍ରହ୍ମରନ୍ଧ୍ର ଭେଦ କରି ସେହି ସୂର୍ଯ୍ୟରଶ୍ମି-ପଥ ଅବଲମ୍ବନପୂର୍ବକ ଶରୀରଭିତରୁ ବହିର୍ଗତ ହେବାନିମିତ୍ତ ପ୍ରସ୍ତୁତ ହୁଏ। ଏହାକୁ ଦେବଯାନପଥ କୁହାଯାଏ। ଏହି ପଥ ଧରି ବାହାର ହୋଇପାରିଲେ କ୍ରମମୁକ୍ତିପଥରେ ଜୀବାତ୍ମା ଗତି କରେ।

କିନ୍ତୁ, ଯେଉଁ ସମୟରେ ଜୀବାତ୍ମା ବ୍ରହ୍ମରନ୍ଧ୍ର ପଥ ଦେଇ ବାହାରିବାକୁ ପ୍ରସ୍ତୁତ ହୁଏ, ଠିକ୍ ସେହିସମୟରେ ହିଁ ଜୀବାତ୍ମାକୁ ସୁଷୁପ୍ତି ଆଚ୍ଛନ୍ନ କରିପକାଏ। ସେ କୌଣସି ପ୍ରକାରେ ଜାଗ୍ରତ ରହିପାରେ ନାହିଁ। ତେଣୁ ସେ ମରଣମୂର୍ଚ୍ଛାରେ ପ୍ରକୃତିକୋଳରେ ନିଦ୍ରାଭିଭୂତ ହୋଇଯାଏ।

ଜୀବ ଯେତେବେଳେ ପୁନରାୟ ଜାଗ୍ରତ ହୁଏ, ଅର୍ଥାତ୍ ଯେତେବେଳେ ତାହାର ମରଣମୂର୍ଚ୍ଛା ଭଙ୍ଗ ହୁଏ, ସେ ଚତୁର୍ଦ୍ଦିଗରେ ଘୋର ଅନ୍ଧକାର ଦର୍ଶନ କରି ଭୀତତ୍ରସ୍ତ ହୋଇପଡ଼େ ଏବଂ ଦେହରୁ ବାହାରିବାନିମିତ୍ତ ବ୍ୟସ୍ତତ୍ରସ୍ତ ହୋଇ ବାହାରିବାପାଇଁ ଚେଷ୍ଟା କରେ। ସେ ଆଉ ବ୍ରହ୍ମରନ୍ଧ୍ରପଥ ଦେଖିପାରେ ନାହିଁ।

*'ମୁଁ ମରିଯିବା' ଅର୍ଥ ଶିଷ୍ୟର ଅହଂତ୍ୱର ବିକାଶ ହେବା

ତେଣୁ ମୁଖ, ନାସିକା, କର୍ଣ୍ଣ, ଚକ୍ଷୁ ଓ ମଳଦ୍ୱାର ପ୍ରଭୃତି ମଧ୍ୟରୁ ଯେଉଁ ଦ୍ୱାର ସେ ସହଜରେ ପାଏ, ସେହି ଦ୍ୱାର ମଧ୍ୟଦେଇ ଶରୀର ତ୍ୟାଗ କରେ। ଫଳରେ ଜୀବାତ୍ମାର ଆଉ କ୍ରମମୁକ୍ତିପଥରେ ଗତି ହୋଇପାରେ ନାହିଁ। ସେ କର୍ମାନୁସାରେ ପିତୃଯାନ ଗତି ଲାଭ କରି ଜନ୍ମ-ମୃତ୍ୟୁର କରାଳକବଳରେ ପତିତ ହୁଏ।

ଯେତେବେଳେ ଜୀବ ମରଣମୂର୍ଚ୍ଛାରେ ଆଚ୍ଛନ୍ନ ହେବ, ସେତେବେଳେ ସେ ନିଜକୁ ଜାଗ୍ରତ କରିବାନିମିତ୍ତ ଗୁରୁନାମ ସ୍ମରଣ କରିବା ଦରକାର। ପ୍ରାକୃତିକ ନିୟମରେ ଦେହ ନିଦ୍ରାଭିଭୂତ ହେଲେ ମଧ୍ୟ ସାଧକ ନାମ ସ୍ମରଣ କରି ଜାଗ୍ରତ ରହିବାକୁ ଚେଷ୍ଟା କରିବେ। ପୂର୍ବରୁ ଅଭ୍ୟାସ କରି ସିଦ୍ଧ ହୋଇ ନଥିଲେ ଏହି ସୁଷୁପ୍ତି ସମୟରେ ନିଜକୁ ଜାଗ୍ରତ ରଖିବା ସମ୍ଭବପର ହୁଏ ନାହିଁ। ଯେଉଁମାନଙ୍କର ଏଭଳି ଅଭ୍ୟାସ ନାହିଁ, ସେମାନେ ସୁଷୁପ୍ତି ଅବସ୍ଥାରୁ ଜାଗ୍ରତ ହେବାମାତ୍ରେ ଚତୁର୍ଦ୍ଦିଗ ଅନ୍ଧକାର ଦେଖି ଭୟଭୀତ ହେବେ ନାହିଁ। ସେହି ସମୟରେ ସଦଗୁରୁଙ୍କୁ ସ୍ମରଣ କଲାମାତ୍ରେ ତାଙ୍କର ଦର୍ଶନ ଲାଭ କରିପାରିବେ। ସେତେବେଳେ ତାଙ୍କର ଅନୁସରଣ କରିବେ। ସେ ତୁମ ପୁରୋଭାଗରେ ପଥପ୍ରଦର୍ଶକ ହୋଇ ତୁମକୁ ସୂର୍ଯ୍ୟରଶ୍ମି ପଥରେ ଊର୍ଦ୍ଧ୍ୱକୁ ଚାଳିତ କରିବେ। ଏହାହିଁ ଶ୍ରୀଗୁରୁଦେବଙ୍କର ପ୍ରକୃତ କାର୍ଯ୍ୟ। ଯେଉଁମାନେ ସଦ୍‌ଗୁରୁ, ସେମାନେ ଶିଷ୍ୟର ଦେହାଭିମାନ ତ୍ୟାଗପରେ ଇଚ୍ଛାକଲେ ଶିଷ୍ୟକୁ ସପ୍ତଲୋକର ଯେ କୌଣସି ସ୍ତରକୁ ନେଇଯାଇପାରନ୍ତି।

ଯେ ଆତ୍ମଜ୍ଞାନ ଲାଭ କରିଛନ୍ତି, ତାଙ୍କୁ କୁହାଯାଏ ଗୁରୁ; କିନ୍ତୁ ପ୍ରାଥମିକ ସାଧକମାନେ ପ୍ରଥମେ କୁଳଗୁରୁ ଓ ପିତା-ମାତାଙ୍କଠାରୁ ଶିକ୍ଷା ଲାଭ କରିବେ। ପରେ ଯେତେବେଳେ ଉଚ୍ଚସ୍ତରର ଧର୍ମ-ଜୀବନ ଯାପନ କରିବାକୁ ଇଚ୍ଛା ହେବ, ସେତେବେଳେ ଜଗତ୍‌ରେ ଯେଉଁମାନେ ଗୁରୁବୋଲି ପୂଜିତ ହେଉଛନ୍ତି, ସେମାନଙ୍କ ନିକଟରୁ ଧର୍ମ-ଉପଦେଶ ଗ୍ରହଣ କରିବେ।

ଗୁରୁ ଯେଉଁ ଭାବର, ଶିଷ୍ୟ ମଧ୍ୟ ସେହି ଭାବର ହେବା ଉଚିତ। ଗୁରୁ ଯଦି ଜ୍ଞାନପନ୍ଥୀ ହୁଅନ୍ତି, ଶିଷ୍ୟ ମଧ୍ୟ ଜ୍ଞାନର ଆକାଙ୍କ୍ଷୀ ହୋଇଥିବା ଦରକାର। ଗୁରୁ ଗୋଟିଏ ଭାବର ଓ ଶିଷ୍ୟ ଅନ୍ୟଭାବର ହେଲେ ଶିଷ୍ୟଙ୍କର ଲକ୍ଷ୍ୟ ଦୃଢ଼ ହୋଇପାରେ ନାହିଁ; ତେଣୁ ଲକ୍ଷ୍ୟଭ୍ରଷ୍ଟ ହେବାକୁ ପଡ଼ିଥାଏ। ଗୁରୁ ଭାବ–ଶିଷ୍ୟ ଅଭାବ। ଶିଷ୍ୟ ଶ୍ରୀଗୁରୁଦେବଙ୍କ ନିକଟରୁ ଭାବ ଗ୍ରହଣ କରି ନିଜର ଅଭାବ ପୂରଣ କରିବେ।

ଗୁରୁଦେବଙ୍କ ସ୍ୱରୂପ ସ୍ଥୂଳମୂର୍ତ୍ତି ମଧ୍ୟ ଦେଇ ପ୍ରକାଶିତ ହେଲେ ମଧ୍ୟ ଗୁରୁ

କିନ୍ତୁ ସ୍ଥୂଳରେ ନ ଥାନ୍ତି । ସେ ସର୍ବଦା ସ୍ୱରୂପରେ ଅବସ୍ଥାନ କରନ୍ତି । ଆଧ୍ୟାତ୍ମିକଭାବରେ ଗୁରୁ ଅର୍ଥ ଜ୍ଞାନ । ଆତ୍ମଜ୍ଞାନୀ ହେଲେ ମଧ୍ୟ ସମସ୍ତେ ଗୁରୁ ହୋଇପାରନ୍ତି ନାହିଁ । ଆତ୍ମଜ୍ଞାନ ଲାଭ ହେବାପରେ ଭଗବାନ ଯଦି ଗୁରୁ ହେବାନିମିତ୍ତ ଆଦେଶ ପ୍ରଦାନ କରନ୍ତି, ତେବେ ସେମାନେ ଗୁରୁ ହୋଇ ଗୁରୁପଦର ମର୍ଯ୍ୟାଦା ରକ୍ଷା କରନ୍ତି ।

ଯେଉଁ ଶିଷ୍ୟ ଶ୍ରୀଗୁରୁଦେବଙ୍କୁ ଚିନ୍ତା କରନ୍ତି ନାହିଁ, ଗୁରୁଦେବଙ୍କୁ ଯେ ସୁଖ ପାଆନ୍ତି ନାହିଁ, ତାଙ୍କ ଭିତରେ ଗୁରୁ-ଶକ୍ତିର କ୍ରିୟା ବିଳମ୍ବରେ ହୁଏ । ଚିନ୍ତାପ୍ରବାହ ମାଧ୍ୟମରେ ଆଦାନ-ପ୍ରଦାନ ଭିତରେ ଦେଇ ଶକ୍ତି ପ୍ରବାହିତ ହୋଇଥାଏ ।

ଦୁର୍ବଳ ଶିଷ୍ୟମାନେ ବହୁ ସାଧୁଙ୍କ ନିକଟକୁ ଯାତାୟାତ କରିବା ଉଚିତ ନୁହେଁ । ଗୁରୁବରଣ କରିବାପୂର୍ବରୁ ବହୁ ବିଚାର କରି ସମସ୍ତ ଜାଣିଶୁଣି ପରୀକ୍ଷା କରିବାପରେ ଗୁରୁ କରିବାକୁ ହୁଏ ।

ଗୁରୁ ନିଷ୍ଠାବଳରେ, ଗୁରୁଦେବଙ୍କ ଧ୍ୟାନପ୍ରଭାବରେ, ଗୁରୁଦତ୍ତ ମନ୍ତ୍ର-ଜପରେ ମାନବକୁ ବହୁ ପାର୍ଥିବ ଅନର୍ଥ କବଳରୁ ରକ୍ଷା ମିଳେ । ଶ୍ରୀଗୁରୁଦେବଙ୍କୁ ଯେ ସୁଖ ପାଆନ୍ତି, ତାଙ୍କର ସମସ୍ତ ବିଷୟ ଗୁରୁଦେବଙ୍କୁ ଲକ୍ଷ୍ୟ ରଖିବାକୁ ପଡ଼େ । ଶିଷ୍ୟ ଯଦି କୌଣସି ଖଳ ଲୋକର କବଳରେ ପଡ଼ି ସ୍ୱରୂପଚ୍ୟୁତ ହୁଅନ୍ତି, ତେବେ ତାଙ୍କର ବହୁ ବିପଦର ସମ୍ଭାବନା ।

ଜ୍ଞାନୀଗୁରୁ ସ୍ୱରୂପରେ ଅବସ୍ଥାନ କଲେ ମଧ୍ୟ ତାଙ୍କର ମନୁଷ୍ୟଭାବ, ତାଙ୍କର ଶିଷ୍ୟପ୍ରତି ସ୍ନେହ-ସହାନୁଭୂତି କେବେହେଲେ ଲୋପପାଏ ନାହିଁ । ଜ୍ଞାନୀଗୁରୁ ଶିଷ୍ୟମାନଙ୍କ ସହିତ ଏପରି ଯୋଗ ରଖନ୍ତି ଯେ ଗୁରୁଗତପ୍ରାଣ ଶିଷ୍ୟଙ୍କର ପାଦରେ ସାମାନ୍ୟ ସୂଚୀ ବିଦ୍ଧ ହେଲେ, ସେ ତାହା ହୃଦୟଙ୍ଗମ କରିପାରନ୍ତି ।

ଜ୍ଞାନୀଗୁରୁ ଶକ୍ତିମାନ । ଶକ୍ତି ତାଙ୍କଠାରେ ଲୀନ ହୋଇ ଅବସ୍ଥାନ କରେ; ତେଣୁ ସେ ଶକ୍ତିର କ୍ରୀଡ଼ନକ ନୁହନ୍ତି । ଗୁରୁକୃପା କାର୍ଯ୍ୟ ଓ କାରଣର ଅତୀତ । କୌଣସି କାରଣ ନ ଥାଇ ମଧ୍ୟ ଗୁରୁ କୃପା କରିପାରନ୍ତି । ଏହି ଭାବନାଦ୍ୱାରା ଗୁରୁକୃପା ଆକର୍ଷିତ ହୋଇଥାଏ ।

ଗୁରୁ ଜଣେମାତ୍ର । ଯେପରି ଜହ୍ନମାମୁଁ ସମସ୍ତର ମାମୁଁ, ସେହିପରି ସଦଗୁରୁ ସମସ୍ତଙ୍କର ଗୁରୁ । ଜଗଦ୍‌ଗୁରୁ ବିଭିନ୍ନ ଆଧାର ମଧ୍ୟ ଦେଇ ଭକ୍ତମାନଙ୍କୁ କୃପା କରିଥାଆନ୍ତି । ଯେକୌଣସି ସଦ୍‌ଗୁରୁଙ୍କ ମୂର୍ତ୍ତି ଧ୍ୟାନ କଲେ ଏକ ଗୁରୁଙ୍କ ଧ୍ୟାନ ହେଲା ।

ଗୁରୁ ହିଁ ଏକମାତ୍ର ସାହାଯ୍ୟକାରୀ । ଶିଷ୍ୟମାନଙ୍କୁ ସାଧନପଥରେ ଅଗ୍ରସର ହେବାକୁ ପଡ଼ିବ । ଭଗବାନଙ୍କ ସହିତ ସାକ୍ଷାତ ଯୋଗ କରାଇବାର ଏକାମାତ୍ର କ୍ଷମତା ସଦ୍‌ଗୁରୁଙ୍କ ଭିନ୍ନ ଅନ୍ୟ କାହାରି ନାହିଁ । ଅଦ୍ୱୈତବାଦୀ ଆଚାର୍ଯ୍ୟ ଶଙ୍କର ମଧ ଏହା ସ୍ୱୀକାର କରିଛନ୍ତି । ବହୁ ସୁକୃତି ନ ଥିଲେ ଗୁରୁକୃପା ଉପଲବ୍‌ଧ ହୋଇପାରେ ନାହିଁ ।

ଗୁରୁଦେବ ଶିଷ୍ୟଙ୍କର ଆଧ୍ୟାତ୍ମିକ ସେବକ । ଗୁରୁଙ୍କ ଭିନ୍ନ ଶିଷ୍ୟଙ୍କର ମଳିନତା ନାଶ କରିବାକୁ ଅନ୍ୟ କେହି ସକ୍ଷମ ନୁହନ୍ତି ।

ସଦ୍‌ଗୁରୁଙ୍କ ନିକଟରେ ପ୍ରାରବ୍‌ଧ କିଛି ନୁହେଁ । ସଦ୍‌ଗୁରୁଙ୍କ ଶକ୍ତି ଅନନ୍ତ । ସୁକର୍ମଫଳରେ ଆୟର ପରିମାଣ ବୃଦ୍ଧି ହୁଏ । ଗୁରୁ ଏବଂ ଭଗବାନ ଜ୍ଞାନାଂଶରେ ଏକତତ୍ତ୍ୱ । ସଦ୍‌ଗୁରୁଙ୍କ ଇଚ୍ଛାକୁ ଅବଲମ୍ବନ କରି କର୍ମଦେବତାବୃନ୍ଦ ଜନ୍ମ-ମୃତ୍ୟୁର ନିୟନ୍ତ୍ରଣ କରିଥାଆନ୍ତି । ସଦ୍‌ଗୁରୁ ଅପ୍ରକଟ ହୋଇ ଜଗଦଗୁରୁଙ୍କ ସହିତ ମିଶି ରହିଲେ ମଧ ତାଙ୍କ ଭକ୍ତମାନେ ତାଙ୍କୁ ସଦ୍‌ଗୁରୁ ଭାବରେ ପ୍ରାପ୍ତ ହୋଇଥାନ୍ତି ।

ଗୁରୁବ୍ରହ୍ମଙ୍କ ଆସନ ଆଶ୍ରମ-ସେବକମାନଙ୍କ ନିମିତ୍ତ ସ୍ଥାପିତ—ସାଧାରଣଙ୍କ ନିମିତ୍ତ ନୁହେଁ । ଗୁରୁବ୍ରହ୍ମଙ୍କ ଆସନ ଆଶ୍ରମ-ସେବକଙ୍କର ଶକ୍ତିକେନ୍ଦ୍ର । ଭାରତରେ ହିନ୍ଦୁ ଧର୍ମର ଅସଂଖ୍ୟ ସଂପ୍ରଦାୟ ରହିଛି । ଗୋଟିକ ସହିତ ଅନ୍ୟ ମତର ମେଳ ନାହିଁ; କିନ୍ତୁ ଗୁରୁବାଦ ମଧ୍ୟଦେଇ ସ୍‌ବୁ ସଂପ୍ରଦାୟ ଭିତରେ ସାମଞ୍ଜସ୍ୟ ଅଛି । ଗୁରୁବାଦ ମଧ ଦେଇ ବିଭିନ୍ନ ସଂପ୍ରଦାୟଭିତରେ ମିଳନର ଗୋଟିଏ ସୂକ୍ଷ୍ମସୂତ୍ର ବିଦ୍ୟମାନ । ଯଦି ବିଭିନ୍ନ ସଂପ୍ରଦାୟ ବିଚ୍ଛିନ୍ନ ଭାରତ କେବେ ସମ୍ମିଳିତ ହୁଏ, ତେବେ ଏହି ଗୁରୁବାଦ ମଧ ଦେଇ ହିଁ ତାହା ସମ୍ଭବପର ହେବ । ଗୁରୁଙ୍କ ଧ୍ୟାନ ନିର୍ଗୁଣାତ୍ମକ ଏବଂ ଇଷ୍ଟଦେବତାଙ୍କ ଧ୍ୟାନ ସଗୁଣାତ୍ମକ ।

କୃଷ୍ଣାର୍ଜୁନ-ସଂବାଦ ଗୁରୁ-ଶିଷ୍ୟଙ୍କର ସଂବାଦ । ଭାବରୂପରେ ସେମାନେ ନିତ୍ୟ । ସେହି ଭାବ ଯୁଗ-ଯୁଗ ଧରି ବିଗ୍ରହରୂପରେ ମୂର୍ତ୍ତିମନ୍ତ ହୋଇ ଫୁଟିଉଠିଛନ୍ତି । ଶ୍ରୀକୃଷ୍ଣ ସଦ୍‌ଗୁରୁ, ଅର୍ଜୁନ ପ୍ରପନ୍ନ ଶିଷ୍ୟ । ଗୁରୁ ସତ୍ୟ, ତାଙ୍କ ଉପଦେଶବାଣୀ ମଧ ସତ୍ୟ । ସଂସାରକୁ ଠିକ୍ ରଖି ଯେ ସଂସାର-ବନ୍ଧନ ମୋଚନ କରିପାରନ୍ତି, ତାଙ୍କୁ ହିଁ କୁହାଯାଏ ସଦ୍‌ଗୁରୁ । ଭଗବାନ୍ ଯେତେବେଳେ ଗୁରୁ-ଶିଷ୍ୟଙ୍କ ଅନ୍ତରରେ ଫୁଟିଉଠନ୍ତି, ସେତେବେଳେ ସଂସାରଟା ଭଗବାନଙ୍କର ବୋଲି ସ୍ପଷ୍ଟ ଅନୁଭୂତ ହୁଏ । ଯେ ଏହି ଆସ୍ୱାଦ ଲାଭ କରିଛନ୍ତି, ସେ ଜାଣନ୍ତି ଯେ ଗୁରୁ ଓ ଭଗବାନ ଶ୍ରୀକୃଷ୍ଣ ଏକ ଏବଂ ଅଭିନ୍ନ ।



# ସାଧନା

## ସେବାର ସାର୍ଥକତା

ଆତ୍ମାରେ ପ୍ରତିଷ୍ଠା ଲାଭ କରିବାପାଇଁ ଦୁଇଟି ପଥ ନିର୍ଦ୍ଦିଷ୍ଟ ଅଛି—ଗୋଟିଏ ସାଧକଭାବରେ ମନନ, ଅନ୍ୟଟି ସିଦ୍ଧଭାବରେ ମନନ । ଜୀବଅବସ୍ଥାକୁ ଯଦି ମନରେ ଓ ପ୍ରାଣରେ ସତ୍ୟ ବୋଲି ମାନିବ, ତେବେ ସାଧକଙ୍କ ଅଭିମାନ ଧରି ଚାଲିବାକୁ ହେବ । ସେତେବେଳେ ଆମେ ଯେଉଁଠାରେ ଥିଲେ ମଧ୍ୟ ସଂସାର ବୋଲି ଗୋଟିଏ କିଛି ଆମର ରହିଛି; ପୁଣି ସେ ସଂସାରର ଭଲ-ମନ୍ଦ, ସୁଖ-ଦୁଃଖ ସବୁ ଆମର ଅର୍ଥାତ୍ ଆମେ ବଦ୍ଧ, ଏ କଥା ସବୁବେଳେ ମନଭିତରେ ଜାଗିବ । ସେତେବେଳେ କର୍ମ ଆମକୁ କେନ୍ଦ୍ର କରି ରହି କର୍ମଫଳରେ ଆମକୁ ହସାଉଥିବ ଓ କନ୍ଦାଉଥିବ ।

ଆଉ ଗୋଟିଏ ଭାବ ହେଉଛି ଯେ ମୁଁ ଯେଉଁ ସମୟରୁ ସଦ୍‌ଗୁରୁଙ୍କର ଆଶ୍ରୟ ନେଇଛି, ସେହିସମୟରୁ ମୁଁ ମୁକ୍ତ ହୋଇସାରିଛି, ସେତେବେଳୁ ମୁଁ ସଂସାରର ଦାୟିତ୍ୱ ଛାଡ଼ିଦେଇ ଆସିଛି । ଗୁରୁ ଜଗଦ୍‌ଗୁରୁ ଅର୍ଥାତ୍ ସେ ଜଗତର ସେବକ; ମୁଁ ତାଙ୍କ ସେବାର ସାମଗ୍ରୀ । ସେ ହୃଦୟ—ଆମେ ତାଙ୍କର ଅଙ୍ଗପ୍ରତ୍ୟଙ୍ଗ । ଅତଏବ ଆମେ ଚିନ୍ମୟ । ଆମେ ମଧ୍ୟ ନିତ୍ୟ ମୁକ୍ତସ୍ୱଭାବ । ସେ ଯେପରି ଲୀଳାଛଳରେ ଜଗତ୍‌ର ସେବକ ହୋଇଆସିଛନ୍ତି, ଆମେ ମଧ୍ୟ ସେହିପରି ତାଙ୍କ ଗଣରୂପରେ ତାଙ୍କ ସଙ୍ଗରେ ଆସିଛୁ । କର୍ମ-ଅବସାନରେ ଆମେ ପୁଣି ସ୍ୱଧାମକୁ ଫେରିଯିବୁ ।

ଆମେ ମାୟା-ଆବରଣ ଧରି ଆସୁଛୁ ବୋଲି ମାୟା ଆମକୁ ସ୍ପର୍ଶ କରୁଛି । ତେଣୁ ସମୟ ସମୟରେ ମନେ ହେଉଛି, ଆମର ସମ୍ଭବତଃ ସାଧ୍ୟ-ସାଧନ ଅଛି । ଯେତେ ଯୁକ୍ତିତର୍କ କରି ଆମ ବନ୍ଧନଦଶା ପ୍ରମାଣିତ କଲେ ମଧ୍ୟ ମୁଁ ଜାଣେ, ଏସବୁ ମିଥ୍ୟା । ତୁମର ଯୁକ୍ତିତର୍କ କିଛି ନୁହେଁ । ମୋର ବଜ୍ରଦୃଢ଼ ବିଶ୍ୱାସ, ମୁଁ ଗୁରୁଦେବଙ୍କ

ସହଚର, ଅତଏବ ଚିନ୍ମୟ । ଏହା ହିଁ ମୋର ସ୍ୱରୂପ । ଅନ୍ତରର ଅନ୍ତରତମ ସ୍ଥଳରେ ଏହି ସ୍ୱରୂପଜ୍ୟୋତିଃ ସହସ୍ର ବିଦ୍ୟୁତସଦୃଶ ଜଳୁଛି । ଏହିଭାବରେ କର୍ମ ଅଛି; ମାତ୍ର ସେହି ସହଜ କର୍ମ ଅନିତ୍ୟକୁ ନିତ୍ୟ ବୋଲି ଜାଣିପାରିଲେ ଆଉ ଦୁଃଖ ରହିବ ନାହିଁ । କର୍ମରୁ ଦୁଃଖବୋଧ ଚାଲିଗଲେ କ୍ରମେ ସୁଖବୋଧ ମଧ୍ୟ ଚାଲିଯାଏ । ସେତେବେଳେ ସ୍ୱ-ଭାବର ସ୍ଫୂର୍ତ୍ତିହୁଏ ଅର୍ଥାତ୍ ଆନନ୍ଦର ବିକାଶ ହୁଏ । ସୁଖ-ଦୁଃଖର କର୍ମବନ୍ଧନ ସତ୍ୟ; ମାତ୍ର ଆନନ୍ଦର କର୍ମ ତ ବନ୍ଧନ ନୁହେଁ—ତାହା ହେଉଛି ବିଳାସ ।

## କର୍ମର ଉତ୍ସ

ଯେତେବେଳେ ଦେଖିବ, ଚିତ୍ତରେ ବାସନାର ଦାଗ ଟିକିଏ ହେଲେ ନାହିଁ ଅଥଚ ଅଫୁରନ୍ତ କର୍ମ ଉତ୍ସରିତ ହେଉଛି, ସେତେବେଳେ ବୁଝିବ, ଜଗନ୍ମୟୀଙ୍କର ଜଗତ୍‌ଲୀଳାରେ ତୁମେ ଭାସିଚାଲୁଛ, ଆଉ ଭୟ ନାହିଁ । ଯାହା ହେବାର, ତାହା ନିଶ୍ଚୟ ହେବ । ଏତିକି ବୁଝି ଅନ୍ତରକୁ ଅବିକ୍ଷୁବ୍ଧ ରଖିବା ଅଥଚ ପରିପୂର୍ଣ୍ଣ ଉଦ୍ୟମ ଭିତରେ ଦେହ ମନକୁ ଛାଡ଼ିଦେବା—ଏହା ହେଲା ଆନନ୍ଦ ସ୍ୱଭାବର କର୍ମ । ଯାହା ହେବାର, ତାହା ନିଶ୍ଚୟ ହେବ; ମୁଁ ବାଧା ଦେଇପାରିବି ନାହିଁ ଅଥଚ କେତେଗୁଡ଼ିଏ କାମନା-ବାସନା-ବାଧା ଆଣି ଉପସ୍ଥିତ କରାଇ ଘଟନାର ସ୍ରୋତକୁ ରୋଧ କରିବାକୁ ଯାଉଛି । ଏଥିରେ ଗୋଳମାଳ ହୁଏ । ଲାଭଭିତରେ ଆମର ଚିତ୍ତ କେବଳ କ୍ଷତବିକ୍ଷତ ହୋଇଯାଏ ।

ସବୁ ଅକାଂକ୍ଷା ଚାଲିଗଲାପରେ ମଧ୍ୟ ଜଗତର ହିତକରିବା ଆକାଂକ୍ଷାଟି ରହିଯାଏ । ଏତିକି ବାସନାର ସୂତ୍ର ଧରି ପୁଣି ସୁଖ-ଦୁଃଖର ସୃଷ୍ଟି ହୁଏ । ଯାହାଙ୍କ ଇଚ୍ଛାରେ ସବୁ ହେଉଛି, ସେ ଯଦି ମୋ ନିଜର ହୁଅନ୍ତି, ତେବେ ତାଙ୍କ ଇଚ୍ଛା ସହିତ ମୋ ଇଚ୍ଛାର ଅମେଳ ହେବ ବା କାହିଁକି ? ଜଗତର ହିତ କ'ଣ ମୁଁ ଏକା କରୁଛି ? ଯାହାଙ୍କର ଜଗତ, ସେ କଥା ତାଙ୍କର କ'ଣ ମନେ ନାହିଁ ? ତାଙ୍କର ଭାବନାଟି ତ ମୋ ଭିତରେ ପ୍ରେରଣା-ଆକାରରେ ଫୁଟିଉଠୁଛି । ଏହି ବାସନା ସତ୍ୟ ବାସନା, ଶୁଦ୍ଧ ବାସନା । ଅଣୁମାତ୍ର ବାସନା ନ ରଖି ସହଜ ଆନନ୍ଦରେ କର୍ମ କରିଯିବା ହିଁ ଯଥାର୍ଥ ଜଗଦ୍ଧିତକର କର୍ମ । ସେ ହିତ କମଳଦଳର ସୌରଭସଦୃଶ ଆପଣା ମନକୁ ଚାରିଆଡ଼େ ବିସ୍ତାର ଲାଭ କରେ । ସଂସାରଭାବଟା ଯେଉଁମାନଙ୍କର ପ୍ରବଳ, ସେମାନଙ୍କର ସାଧନ-ଚେଷ୍ଟା ଦୁର୍ଦ୍ଦମନୀୟ ହେବା ଆବଶ୍ୟକ । ଆତ୍ମମୁକ୍ତିର

ଚେଷ୍ଟା ସକଳ କର୍ମଉପରେ–ଏହି କଥା ସେମାନଙ୍କୁ ସର୍ବଦା ସ୍ମରଣ ରଖିବାକୁ ହେବ । ଜୋରକରି କହିବାକୁ ହେବ–ମୁଁ କାମନା-ବାସନାର ଦାସ ନୁହେଁ । କେବଳ ମାତ୍ର ଉଚ୍ଚାରଣ କରିବାର ଗୋଟିଏ ଫଳ ଅଛି । ଏହାକୁ ନାମ-ସଂକୀର୍ତ୍ତନ କୁହାଯାଏ । ଥରକୁ ଥର କହୁ କହୁ ଅବଶେଷରେ ଦିନେ ଭିତରୁ ସତ୍ୟ ହୁଙ୍କାର କରିଉଠିବ ।

## ସାଧନାର ଅବସର

ସାଧନାକାଂକ୍ଷୀମାନେ କାଳର ଅତୀତ ହେବାକୁ ଚେଷ୍ଟା କରିଥାନ୍ତି । ସଂସାରରେ ସବୁବେଳେ ବଡ଼ ଟଣାଓଟରା ଲାଗିଛି । ଅବସର ପାଇଲି, ଏପରି କଥା କେହି କହନ୍ତି ନାହିଁ । ବାସ୍ତବିକ କାର୍ଯ୍ୟର ଭିଡ଼ହେତୁରୁ ଯେ ଅବସର ମିଳେ ନାହିଁ, ତାହା ନୁହେଁ । ମନରେ ଦୁର୍ଭାବନାର ଭିଡ଼ ଲାଗିଥାଏ ବୋଲି ଏପରି ମନେ ହୁଏ । ବିନା କାର୍ଯ୍ୟରେ କେତେ ସମୟ କଟିଯାଏ, ତଥାପି ସାଧନଭଜନପାଇଁ ସମୟ ହୁଏ ନାହିଁ । ସାଧନ-ଭଜନ ମନର କାର୍ଯ୍ୟ । ମନରେ ସ୍ଥାନ ଥିଲେ ତ ଅବସର ମିଳିବ ? ଏହି ଭାବଟା ଦୂର କରିବାକୁ ହେବ ।

ସବୁ କାର୍ଯ୍ୟଠାରୁ ମୋର ଏ କାର୍ଯ୍ୟଟି ବଡ଼, ଏହା ଭାବିବାକୁ ହେବ । ଏଥିନିମିତ୍ତ ଅବସର ଯୋଗାଇବାପାଇଁ ଚେଷ୍ଟା ଗୋଟିଏ ସାଧନା । ଯେଉଁଦିନ ସେ ଚେଷ୍ଟା ସଫଳ ହେବ ଅର୍ଥାତ୍ ସଂସାରର କର୍ତ୍ତବ୍ୟ କରି ମଧ୍ୟ ତାଙ୍କ କଥା ଭାବିବାର ପ୍ରଚୁର ଅବସର ଯେଉଁଦିନ ପାଇବ, ସେଦିନ ବୁଝିବ, ତୁମ ସାଧନାର ଅର୍ଦ୍ଧେକ ସିଦ୍ଧ ହୋଇଗଲା । ଏପରି ଗୋଟିଏ ଦୃଢ଼ତା ମନଭିତରେ ଆଣିବାକୁ ହେବ ଯେ—"ତାଙ୍କୁ ଧରି ଯେତେ ଅଧିକ ସମୟ ରହିପାରିବି, ସେତିକି ସମୟ ତାଙ୍କୁ ଧରି ରହିବି ।" ସେଥିରେ ଯେଉଁ କ୍ଷତି ହେବାର, ହୋଇଯାଉ । ଜଗତକୁ ଭୁଲିଯିବାକୁ ହେବ । ଟିକିଏ ଏକାନ୍ତରେ ବସି ଏଣେ ଯଦି ସଂସାରକଥା ଭାବୁଥିବ—ଅମୁକ କାର୍ଯ୍ୟର ସମୟ ଗଡ଼ିଗଲାଣି, ଏପରି ଭାବିଲେ ଚଳିବ ନାହିଁ ।

ସମସ୍ତ ଦିନମଧ୍ୟରେ ଅନ୍ତତଃ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ସବୁ ଇନ୍ଦ୍ରିୟଙ୍କ ଦ୍ୱାର ବନ୍ଦ କରିଦେଇ ଗୋଟିଏ ବଜ୍ରଦୃଢ଼ ସଂକଳ୍ପ ନିଜଭିତରେ ଜାଗ୍ରତ ରଖିବାକୁ ହେବ । ସାଧନକ୍ଷେତ୍ରରେ ଆଉ ଗୋଟିଏ ବିପଦ ଅଛି । ମନରେ ଟିକିଏ ଆନନ୍ଦ ଜାତ ହେଲାକ୍ଷଣି ତାହା ବ୍ୟକ୍ତ କରିବାପାଇଁ ଗୋଟିଏ ସ୍ୱାଭାବିକ ଇଚ୍ଛା ଜାତ ହେବ । ମୂଳରେ ଏହି ଇଚ୍ଛା ଅଛି ବୋଲି ଆମ ମନ ଏପରି ହୁଏ । ଭଗବାନ ତାଙ୍କ ଆନନ୍ଦ ଧାରଣ ପରିପାରୁ ନାହାନ୍ତି ବୋଲି ତାହା ଜଗତରୂପରେ ଫୁଟିଉଠିଛି ।

ଆମମାନଙ୍କର ମଧ୍ଯ ସେହି ଅବସ୍ଥା। ଟିକିଏ ସାଧନ-ସମ୍ପଦ ମିଳିଲାକ୍ଷଣି ଆନନ୍ଦ ଫୁଟିଉଠେ ଏବଂ ସେହି ଆନନ୍ଦକୁ ବାହାରେ ପ୍ରକାଶ କରିବାକୁ ଇଚ୍ଛା ଜାତ ହୁଏ।

ଏଠାରେ ଭାବିବାକୁ ହେବ, କେତେ ପାଇଗଲି ଯେ ତାହା ବାହାରକୁ ଦେବି? ଏହିଠାରେ ତ ଶେଷ ନୁହେଁ! ଭାବ ଯଦି ଚାପି ରଖିବ, ତେବେ ମନେ ହେବ, ଛାତି ଯେପରି ଫାଟି ଯାଉଛି। ଗଲେ ଯାଉ, କିନ୍ତୁ ତା'ଫଳରେ ଯାହା ପାଇବ, ତାକୁ ମହାଶୂନ୍ୟ ମଧ୍ଯ ଧରି ରଖିପାରିବ ନାହିଁ। ସେଥିରେ ଚରାଚର ପୂର୍ଣ୍ଣ ହୋଇଯିବ। ସାମାନ୍ୟ ଟିକିଏ ପାଇ ବିଳାସ ଆରମ୍ଭ କରିଦେଲେ ଚଳିବ ନାହିଁ। ବର୍ତ୍ତମାନ ଦେଖୁଛ ଚନ୍ଦନବନ, ତାପରେ ପଡ଼ିବ ରୂପାଖଣି, ହୀରାଖଣି, ପରଶମଣି— ଏହିପରି କେତେ ଦ୍ରବ୍ୟ ପାଇବ।

## ସଂଯମରେ ଆନନ୍ଦ

ଏତିକି ଜାଣିବ ଯେ, ସଂଯମ ଯେତେ କରିବ, ଆନନ୍ଦ ସେତେ ବଢ଼ିବ। ରସର ଉତ୍ସ ଦିନରାତି ବହିବ; କିନ୍ତୁ ତୁମକୁ ଟଳାଇପାରିବ ନାହିଁ। ଯୋଗମାୟା ଦେବୀ କହିଥିଲେ, ''ବାବା, ଧର୍ମଜଗତ୍‌ରେ ଯଦି ବଡ଼ ହେବାକୁ ଇଚ୍ଛା କର, ତେବେ କୃପଣ ହୁଅ।'' ଶାସ୍ତ୍ରରେ ମଧ୍ଯ ଅଛି–''ଗୁପ୍ତା କୁଳବଧୂରିବ।'' ଶକ୍ତି ଆୟତ୍ତ କରିବ କ'ଣ? ଟିକିଏ ସଞ୍ଚୟ ନ କରୁଣୁ ଖର୍ଚ୍ଚର ସୁଅ ବହିଗଲା। ତାହା ହେଲେ ସେହି ଶକ୍ତି ତ ତୁମ ନାକରେ ଦଉଡ଼ି ଦେଇ ତୁମକୁ ଘୂରାଇବାକୁ ଛାଡ଼ିବ ନାହିଁ।

ଥରେ-ଅଧେ ସାଧନାରେ ବସି କିମ୍ବା ଟିକିଏ ଜ୍ୟୋତିଃ ଦର୍ଶନ କରି ମନୁଷ୍ୟ ଗର୍ବରେ ଫୁଲିଉଠେ। ଏପରି ସ୍ଥୂଳ-ଅଭିମାନ ଦୋଷାବହ। ତାହା ବ୍ୟତୀତ ଆହୁରି ସୂକ୍ଷ୍ମ ଅଭିମାନ ମଧ୍ଯ ହୋଇପାରେ। ଅହଂବୁଦ୍ଧି ଅଭିମାନର ମୂଳ। ଅହଂକର୍ତ୍ତା ପୁଣି ଅହଂଭୋକ୍ତା। କର୍ତ୍ତା ଅହଂ କରୁଛି। ମୁଁ ଏହା କଲି, ତାହା କଲି; ଫଳରେ ଏହା ପାଇଛି। ଅସଲ କଥା ହେଉଛି, ଦାତାର ଇଚ୍ଛା ନ ହେଲେ ତୁମେ କିଛି ପାଇବ ନାହିଁ। ତୁମର ଶକ୍ତି କେତେ? ଏ ଶକ୍ତି ଯଦି ତୁମର ସ୍ୱାଭାବିକ ହୋଇଥାନ୍ତା, ତାହାହେଲେ ତାହା ଚିରକାଳ ରହିଥାନ୍ତା। ବର୍ତ୍ତମାନ ଅଛି, ପୁଣି ଚାଲିଗଲା–ଏପରି ହୁଅନ୍ତା ନାହିଁ।

ଶକ୍ତିର ଦେଖାପାଇଛ; କିନ୍ତୁ ଆୟତ୍ତ କରିପାରି ନାହଁ। ଶକ୍ତି ଯେତେବେଳେ ହାତମୁଠା ଭିତରକୁ ଆସିଯିବ, ସେତେବେଳେ ଅହଂ-ଅଭିମାନ ଚାଲିଯିବ; ଶକ୍ତି ଓ

ତୁମେ ଏକ ହୋଇଯିବ। ସେତେବେଳେ ସ୍ୱ-ଭାବ ଫୁଟିଉଠିବ। ସ୍ୱ-ଭାବ ଫୁଟିଉଠିଲେ ଅହଂ ରହେ ନାହିଁ—ଯେପରି ଶିଶୁଙ୍କର ସ୍ୱଭାବ। ଶିଶୁମାନେ ଜାଣନ୍ତି ନାହିଁ ଯେ ସେମାନେ ଶିଶୁପରି ଆଚରଣ କରୁଛନ୍ତି। ତେଣୁ ତାହା ମଧ୍ୟ ସେମାନଙ୍କୁ ଭଲ ଲାଗେ।

କେହି ଜାଣିଶୁଣି ପିଲାଙ୍କପରି ଆଚରଣ କଲେ ଭଲଲୋକ ମଧ୍ୟ ତାଙ୍କ ଉପରେ ବିରକ୍ତ ହେବେ। ତେଣୁ ଶକ୍ତିକୁ ସ୍ୱ-ଭାବରେ ପ୍ରାପ୍ତ ନ ହୋଇ କେବଳ ଶକ୍ତିର ଚମକ ଦେଖିଲେ ତ ତାହା ଆୟତ୍ତ ହୋଇଯାଏ ନାହିଁ। ଅହଂ ନ ଗଲେ ସ୍ୱଭାବ ଫୁଟେ ନାହିଁ। ସ୍ୱ ଆଉ ଭାବ ଦୁଇଟି ଏକ ହେଲେ ଅର୍ଥାତ୍ ଶକ୍ତିମାନ ଓ ଶକ୍ତି ଯେତେବେଳେ ଏକାକାର ବୋଲି ବୁଝିପାରିବ, ସେତେବେଳେ ଶକ୍ତି ଆୟତ୍ତ ହେବ। ସେ ମିଳନରେ ଆଉ ବିଚ୍ଛେଦ ନାହିଁ। ଏଥିପାଇଁ କହୁଛି, କର୍ତ୍ତୃତ୍ୱ ଥିବାପର୍ଯ୍ୟନ୍ତ କିଛି ପାଇବ ନାହିଁ। ଅହଂ ବିସର୍ଜନ ଦେଲେ ଯାଇ ତାଙ୍କୁ ପାଇପାରିବ।

ସ୍ୱ-ଭାବରେ ରହିବାପାଇଁ ଚେଷ୍ଟା କର୍। ସେଥିପାଇଁ ତ ସଂଯମର ସାଧନା। ସଂଯମର ଅର୍ଥ ହେଉଛି ଟଳିବାଭିତରେ ଅଟଳ ରହିବା। ପ୍ରଥମେ ପ୍ରଥମେ ପ୍ରଲୋଭନଠାରୁ ଦୂରରେ ରହି ଅଭ୍ୟାସ କରିବାକୁ ହୁଏ। ତା'ପରେ ବିକାର ଭିତରେ ନିର୍ବିକାର ରହିବାକୁ ଶିକ୍ଷା କରିବାକୁ ପଡ଼େ।

## ଆନନ୍ଦର ବିକାଶ

ପ୍ରଥମେ ଜପ ବା ସାଧନା ଆରମ୍ଭ କଲାମାତ୍ରେ ତନ୍ଦ୍ରା ଆସିଯାଏ। ମନ ହୁଏତ ଦୁଇ ଚାରି ମିନିଟ୍ ସମୟ ବସିବାକୁ ଇଚ୍ଛା କରେ ନାହିଁ; କିନ୍ତୁ ସେଥିରେ ଭାବନା କରିବାର କିଛି ନାହିଁ। କ୍ରମେ କ୍ରମେ ଏହି ତନ୍ଦ୍ରାର ଆବେଶ କଟିଯିବ, ସାଧନାର ସମୟ ଆପେ ଆପେ ବଢ଼ିଯିବ। ନିଷ୍ଠା ସହକାରେ କାର୍ଯ୍ୟ କରିଗଲେ ଦେଖିବ, କ୍ରମେ ଅଧ ଘଣ୍ଟା ବା ଏକ ଘଣ୍ଟା ବସିବାକୁ କଷ୍ଟବୋଧ ହେବନାହିଁ। ଭିତରେ ଆନନ୍ଦ ବିକଶିତ ହେଲେ ମନ ସ୍ୱତଃ ମଜ୍ଜି ଉଠିବ।

କୃପଣଙ୍କପରି ଆନନ୍ଦକୁ ଜମାକରି ରଖିବ। ଯେତେ ବଡ଼ ଆନନ୍ଦର ପ୍ଲାବନ ଆସୁ ପଛକେ ଅଟଳ ରହ। ଟିକିଏ ଚଞ୍ଚଳ ହେବାକ୍ଷଣି ଅଭିମାନୀ ହେଲ ବୋଲି ଧରାଯିବ। ତାହା ହେଲାକ୍ଷଣି ଅଜ୍ଞାତସାରରେ ପତନ ଘଟିବ।

କେବଳ ନିଜ ସ୍ତ୍ରୀ ସହିତ ଗୋଟିଏ ଘରେ ବସି ସାଧନ କରିପାର, ଅନ୍ୟ ସ୍ତ୍ରୀଲୋକଙ୍କ ସଙ୍ଗରେ କେବେ ହେଲେ ରହିବ ନାହିଁ । ସ୍ୱାମୀ ସ୍ତ୍ରୀ ପୃଥକ୍ ପୃଥକ୍ ଘରେ ମଧ୍ୟ ସାଧନ କରିପାରନ୍ତି ।

## ସର୍ବଦର୍ଶନ

ମନୁଷ୍ୟର ସୂକ୍ଷ୍ମଦେହର ହୃଦୟରେ ବିଦ୍ୟୁତ୍ ଆଲୋକସଦୃଶ ଆଲୋକ ରହିଛି । ସେହି ଆଲୋକରେ ସାଧାରଣତଃ ତଳର ତିନୋଟି ପଦ୍ମ ଆଲୋକିତ ହୁଏ । ମୂଳାଧାରଠାରୁ ସେହି ଆଲୋକ ଯେତେବେଳେ ସଂହରଣ କରାଯାଏ, ସେତେବେଳେ ତନ୍ଦ୍ରାବସ୍ଥା ଆସେ । ତାହା ସ୍ୱାଧିଷ୍ଠାନକୁ ଆଣିଲେ ସ୍ୱପ୍ନାବସ୍ଥା ହୁଏ । ଯେତେବେଳେ ତାହା ମଣିପୁରକୁ ଆସେ, ସେତେବେଳେ ସୁଷୁପ୍ତି ଅବସ୍ଥା । ଏହି ସ୍ଥାନକୁ ଆସିଲେ ଆଲୋକଟା ବୁଲିପଡ଼େ ।

ସେତେବେଳେ ତାହା କ୍ରମେ ବିଶୁଦ୍ଧ, ଆଜ୍ଞା ଏବଂ ସହସ୍ରାର ପଦ୍ମକୁ ଆଲୋକିତ କରେ; କିନ୍ତୁ ସାଧନାରେ ଉନ୍ନତ ନ ହେଲେ, ଜ୍ଞାନ ଲାଭ ନ ହେଲେ, ସେହି ସ୍ଥାନର ଆନନ୍ଦ ଜୀବ ସ୍ମରଣ ରଖିପାରେ ନାହିଁ । ସାଧକ ଦ୍ୱିଦଳରେ ସେହି ଆଲୋକ ଧାରଣ ପରିପାରିଲେ ତାହା ଉଭୟ ଦିଗରେ ବିକଶିତ ହୁଏ । ଗୋଟିଏ ଦିଗରେ ସହସ୍ରଦଳ ପଦ୍ମ ସ୍ୱାଭାବିକଭାବରେ ଆଲୋକିତ ହୁଏ ଏବଂ ଅନ୍ୟ ଦିଗରେ ସେହି ଆଲୋକଦ୍ୱାରା ସମଗ୍ର ଜଗତ୍ ପରିଦୃଷ୍ଟ ହୁଏ । ସାଧକଙ୍କର ସେତେବେଳେ ଯାହା ଦେଖିବାକୁ ଇଚ୍ଛା ହୁଏ, ସେହି ଆଲୋକରେ ତାହା ପ୍ରକାଶିତ ହୁଏ । ଅମୁକ ଲୋକ କ'ଣ କରୁଛନ୍ତି, ଏହା ଜାଣିବାକୁ ଇଚ୍ଛା ଜାଗିବାମାତ୍ରେ ତାଙ୍କର କାର୍ଯ୍ୟକଳାପ ସେହି ଆଲୋକ ଭିତରେ ଫୁଟିଉଠେ । ଏହି ଅବସ୍ଥା ଅବଶ୍ୟ ସାଧନସାପେକ୍ଷ ।

ଯୋଗୀମାନେ କୁଣ୍ଡଳିନୀ-ଜାଗରଣ ସ୍ପଷ୍ଟଭାବରେ ଅନୁଭବ କରନ୍ତି । ତାର ମୋଟାମୋଟି ଲକ୍ଷଣ ହେଉଛି ଏତିକି—କୁଣ୍ଡଳିନୀ ଜାଗ୍ରତ ହେଲେ ଆହାରରେ ଲୋଭ ରହିବ ନାହିଁ; କାମ, କ୍ରୋଧ ରହିବ ନାହିଁ, ସାତ୍ତ୍ୱିକଭାବରେ ଚିତ୍ତ ପରିପୂର୍ଣ୍ଣ ହେବ । କୁଣ୍ଡଳିନୀ-ଜାଗରଣର ଅର୍ଥ କରି କେହି କେହି କହିଥାନ୍ତି ଯେ ମା ନିଦ୍ରିତା, ତାଙ୍କୁ ଜାଗରିତା କରିବାକୁ ହେବ । ଏ କଥା କିନ୍ତୁ ସତ୍ୟ ନୁହେଁ । ମା ନିତ୍ୟ ଚୈତନ୍ୟସ୍ୱରୂପିଣୀ । ସେ କେବେହେଲେ ନିଦ୍ରିତା ହୁଅନ୍ତି ନାହିଁ । ତୁମେ ଶୋଇଛ । ତୁମେ ଜାଗ୍ରତ ହେଲେ ସବୁ ହେବ । ମାଆ ତ ସର୍ବଦା ଜଗିରହିଛନ୍ତି ।

ଜ୍ଞାନୀଙ୍କର କୌଣସି ସାଧନା ନାହିଁ। ସାଧନ ମାତ୍ରକେ ଧ୍ୟାତା-ଧ୍ୟେୟଭାବ ବିଦ୍ୟମାନ। ତେଣୁ ମହାବାକ୍ୟ ବିଚାର ବା ମନନ ବ୍ୟତୀତ ଜ୍ଞାନୀଙ୍କର ଅନ୍ୟ କିଛି ନାହିଁ।

ସାଧନା କହିଲେ ଯୋଗ ଓ ତନ୍ତ୍ରକୁ ବୁଝାଇଥାଏ। ସାଧନାସମୟରେ ଗଞ୍ଜାଇ ପ୍ରଭୃତି ମାଦକ ଦ୍ରବ୍ୟ ସେବନ କଲେ ମନ କେବେହେଲେ ଏକାଗ୍ର ହୁଏ ନାହିଁ। ଭ୍ରମଣଜନିତ କ୍ଲେଶ ଓ ଶୈତ୍ୟକବଳରୁ ରକ୍ଷା ପାଇବାନିମିତ୍ତ ସାଧୁମାନେ ଏହି ଗଞ୍ଜାଇ ସେବନ କରିଥାନ୍ତି। ଗଞ୍ଜାଇଧୂଆଁ ସେବନ କଲେ ମନ ବିକ୍ଷିପ୍ତ ହୁଏ; କିନ୍ତୁ ଯେଉଁମାନେ ସିଦ୍ଧ ଯୋଗୀ, ସେମାନଙ୍କର ମନ ଏଥିରେ କେନ୍ଦ୍ରସ୍ଥ ହୋଇଥାଏ। ମାଦକ ସେବନ କଲେ ଯଦି ସାଧନାରେ ଉନ୍ନତି ଲାଭ ହେଉଥାନ୍ତା, ତାହାହେଲେ କିଛି ଭାବନା ରହନ୍ତା ନାହିଁ। ମାଦକ ଦ୍ରବ୍ୟ ଅପରିମିତ ପରିମାଣରେ ଗ୍ରହଣ କଲେ ଇନ୍ଦ୍ରିୟର ଶକ୍ତି ନଷ୍ଟ ହୋଇ ମନ ଚଞ୍ଚଳ ହୁଏ।

ପ୍ରଲୋଭନ ଭିତରେ ରହି ଯେ ଅଟଳ ରହନ୍ତି, ତାଙ୍କୁ କୁହାଯାଏ ବୀର ସାଧକ। ତେଣୁ ରାଜର୍ଷି ଜନକ ସାଧକାଗ୍ରଗଣ୍ୟ। ଇନ୍ଦ୍ରିୟମାନଙ୍କ ସହିତ ସଂଗ୍ରାମ କରି ପରାସ୍ତ ହେବା ଭୟରେ ଯେ ସଂସାର ତ୍ୟାଗ କରନ୍ତି, ସେ ଭୀରୁ ଓ କା-ପୁରୁଷ। ତାଙ୍କ ଉପରେ ଇନ୍ଦ୍ରିୟମାନେ ବିଶେଷ ଆଧିପତ୍ୟ ବିସ୍ତାର କରନ୍ତି। ତାଙ୍କ ମନ କେଉଁଠାରେ ହେଲେ ଶାନ୍ତ ରହେ ନାହିଁ। ଅବିଶ୍ୱାସୀଙ୍କ ଚିତ୍ତ ଦୁର୍ବଳ। ବିଶ୍ୱାସ ଯେତେ ଦୃଢ଼ ହେବ, ଦୁର୍ବଳତା ସେତେ କମିଯିବ।

ସାଧକଙ୍କ ମନରେ ଯେଉଁ ଚିନ୍ତା ଜାଗ୍ରତ ହୋଇ ଭଗବାନଙ୍କୁ ଭୁଲାଇ ଦିଏ, ତାହାର ନାମ କୁଚିନ୍ତା। ଯେଉଁ କର୍ମ କଲେ ମାନବ ନିଜକୁ ହରାଇବସେ, ହୃଦୟ-ଦେବତାଙ୍କ କଥା ତାଙ୍କ ସ୍ମୃତିପଥରେ ଉଦୟ ହୁଏ ନାହିଁ, ତାହାର ନାମ କୁକର୍ମ। ଅବିଶ୍ରାନ୍ତ କର୍ମ ମଧ୍ୟରେ ଭଗବାନଙ୍କ ଦିଗକୁ ଲକ୍ଷ୍ୟ ରଖି ଗତି କଲେ ହିଁ ତାହା ହେବ ଯଥାର୍ଥ କର୍ମ। ମାନବର କର୍ମ ଓ ଲକ୍ଷ୍ୟ ଦୁଇଟି ଥିବାରୁ ସେ ଅନ୍ୟ ପ୍ରାଣୀମାନଙ୍କଠାରୁ ସ୍ୱତନ୍ତ୍ର।

ଫସଲ ବୁଣିବାକୁ ହେଲେ ପ୍ରଥମେ ଯେପରି କ୍ଷେତ୍ର ପ୍ରସ୍ତୁତ କରିବା ଆବଶ୍ୟକ, ସେହିପରି ସଦ୍‌ଗୁରୁଙ୍କ କୃପା ଲାଭ କରିବାକୁ ହେଲେ ପ୍ରଥମେ ଚିତ୍ତଶୁଦ୍ଧିମୂଳକ ସାଧନାର ଏକାନ୍ତ ପ୍ରୟୋଜନ। ସେହିପରି ଶ୍ରୀଗୁରୁଦେବ ନିଜ ଶକ୍ତି ଓ କୃପାବଳରେ ଶିଷ୍ୟଭକ୍ତମାନଙ୍କୁ ନିଜ ପାଖକୁ ଟାଣିନେଇ ପାରନ୍ତି, ଯେପରି

ପ୍ରାକୃତିକ ନିୟମରେ ନଦୀ ସାଗରଆଡ଼କୁ ଗତି କରୁଛି, ପଥର ବାଧା ତାକୁ ରୋଧ କରିପାରୁ ନାହିଁ; କିନ୍ତୁ ବାଧାଗୁଡ଼ିକ ନ ଥିଲେ ନଦୀ ଯେତେ ଶୀଘ୍ର ସମୁଦ୍ରରେ ପତିତ ହୋଇଥାନ୍ତା, ତାହା ହୋଇପାରୁ ନାହିଁ। ତେଣୁ ବାଧାବିଘ୍ନକୁ ଅପସାରିତ କରି, ପ୍ରଲୋଭନକୁ ଜୟ କରି, ଗନ୍ତବ୍ୟ ପଥକୁ ସୁଗମ କରିବାନିମିତ୍ତ ସାଧନାର ପ୍ରୟୋଜନ।

ଯେତେ ସାଧନ ଭଜନ ସବୁ ଚିତ୍ତଶୁଦ୍ଧିନିମିତ୍ତ। ଅନ୍ୟଥା ଅସାଧନର ଧନଙ୍କୁ କୌଣସି ସାଧନଦ୍ୱାରା ଧରାଯାଇପାରେ ନାହିଁ। ଯୋଗଦ୍ୱାରା ଚିତ୍ତ ସ୍ଥିରଭାବ ଧାରଣ କରେ। ତାଙ୍କୁ ସୁଖ ପାଇଲେ ଦିନେ ତାଙ୍କରିଠାରେ ଚିତ୍ତ ସମାହିତ ହୋଇଯିବ। ପ୍ରଥମଠାରୁ ଦ୍ୱିତୀୟଟି ସ୍ୱାଭାବିକ। ତେଣୁ ଭକ୍ତିପଥ ହିଁ ଶ୍ରେଷ୍ଠ ଓ ସ୍ୱାଭାବିକ।

କେହି ନିଜ ଶକ୍ତିବଳରେ ମାୟାକଳବରୁ ନିସ୍ତାର ଲାଭ କରିପାରନ୍ତି ନାହିଁ। ଯେ ଏହି ମାୟାକୁ ବଶୀଭୂତ କରି ପାରିଛନ୍ତି, ଗୁରୁ ଅର୍ଥାତ୍ ଯାହାଙ୍କ ମାୟା, ତାଙ୍କୁ ହିଁ ଧରିବାକୁ ହେବ। ତାଙ୍କରି ନାମ ଗୁରୁ। ତାଙ୍କଠାରେ ଆତ୍ମସମର୍ପଣ ନ କଲେ ସାଧକଙ୍କର ଅନ୍ୟ ଗତି ନାହିଁ। ତାଙ୍କପ୍ରତି ଭକ୍ତି ହିଁ ସବୁଠାରୁ ସହଜ, ସରଳ ଓ ଶ୍ରେଷ୍ଠ ସାଧନ।

ନିଜକୁ ଯାହା ଭାବିବ, ତାହା ନିଶ୍ଚୟ ହୋଇଯିବ। ଭାବନା ଗୋଟିଏ ବୃହତ୍ ଶକ୍ତି। ଯାହାଙ୍କ ଇଚ୍ଛାରେ ଏହି ଜଗତ୍ ସୃଷ୍ଟି ହୋଇଅଛି, ତାଙ୍କ ଇଚ୍ଛାର କଣାମାତ୍ର ଆମ ମଧ୍ୟରେ ଅଛି। ସେହି ଇଚ୍ଛାପ୍ରଭାବରେ ଆମ ଜୀବନ ଚଳୁଛି। ତେଣୁ ନିଜକୁ ତୁଚ୍ଛ ନ ଭାବି ଯଦି ଚିତ୍ସ୍ୱରୂପ ବୋଲି ମନେ କରିବ, ତେବେ ନିଶ୍ଚୟ ସେହି ସ୍ୱରୂପରେ ପରିଣତ ହୋଇଯିବ। ଏହାର ନାମ ସାଧନା। ଆମେ ସ୍ୱେଚ୍ଛାରେ ବହିଃଶକ୍ତିକୁ ନିଜଉପରେ ପୀଡ଼ନ କରିବାକୁ ଛାଡ଼ିଦେଇଛୁଁ ବୋଲି ତାହା ଆମଉପରେ ପୀଡ଼ନ କରୁଛି। ବହୁ ଦିନ ଅଭ୍ୟାସବଶରୁ ଆମର ସେଥିରୁ ଆଉ ମୁକ୍ତ ହେବାକୁ ଇଚ୍ଛା ହେଉନାହିଁ। ଅତି ମନ୍ଦ ଲୋକ ଯଦି ଶୁଭମୁହୂର୍ତ୍ତରେ ମନେ କରନ୍ତି ଯେ ମୁଁ ଭଲ ହେବି, ତେବେ ସେହି ମୁହୂର୍ତ୍ତରେ ତାଙ୍କଭିତରେ ପୁଣ୍ୟର ବାତାବରଣ ପ୍ରବାହିତ ହେବ। ପାପଚିନ୍ତା ନ କରି ପୁଣ୍ୟମୟଙ୍କ ନାମ ନେଲେ ସମସ୍ତ ଅଭାବ ପୂର୍ଣ୍ଣ ହୋଇଯିବ। ବ୍ରାହ୍ମମୁହୂର୍ତ୍ତରେ, ସନ୍ଧ୍ୟାକାଳରେ ଏବଂ ରାତ୍ରିରେ ନିରୁଦ୍ଧ ହୋଇ ବସିରହି ଭଗବତ୍ ସ୍ମରଣ-ମନନ କର; କିନ୍ତୁ କେବେ ହେଲେ

ଦିବାଲୋକରେ ଚୁପ୍ ହୋଇ ବସିରହ ନାହିଁ। ଆକାଶରେ ଆଲୋକର ପ୍ରଥମ ସ୍ପନ୍ଦନ ସଙ୍ଗେ ସଙ୍ଗେ ସମଗ୍ର ପ୍ରକୃତି ସ୍ପନ୍ଦିତ ହୋଇଉଠେ ଏବଂ ସେହି ସ୍ପନ୍ଦନରେ ଦିନଟିଯାକ ଆବର୍ତ୍ତିତ ହୋଇଥାଏ। ମାନବର ସାମାନ୍ୟ ସ୍ୱାତନ୍ତ୍ର୍ୟ ଥିଲେ ମଧ୍ୟ କେହି ପ୍ରକୃତିର ଅତୀତ ନୁହନ୍ତି। ତେଣୁ ସମଗ୍ର ଦିବସଟିକୁ କର୍ମର ଛନ୍ଦରେ ସ୍ପନ୍ଦିତ କରିବାକୁ ହେବ। ଦିନରେ କେବେହେଲେ ବିଶ୍ରାମ କରି କିମ୍ବା ଆରାମରେ ସମୟ ଅତିବାହିତ କରିବା ଉଚିତ ନୁହେଁ। ମନେ ରଖିବ, ସବିତୃଦେବଙ୍କର ଅଫୁରନ୍ତ ଶକ୍ତିର ସ୍ରୋତ ଆନନ୍ଦର ସ୍ରୋତ—ଜଗତକୁ ପ୍ଳାବିତ କରୁଛି। ସେହି ଶକ୍ତି ପାନ କରି ସାଧକ ବୀର୍ଯ୍ୟଶାଳୀ ହୋଇଉଠିବେ। ନିରଳସ କର୍ମୀ ହୁଅ; କିନ୍ତୁ ମୁଖର ହୁଅ ନାହିଁ। ତେବେ ଯାଇ ଦିବସର ମହିମା ଉପଲବ୍ଧି କରିପାରିବ। ନୀରବରେ କର୍ମ କରିଯାଅ, ଶକ୍ତିର ମହିମା ଉପଲବ୍ଧି କରିବ। ସୂର୍ଯ୍ୟାଲୋକ ହିଁ ପ୍ରାଣସ୍ୱରୂପ, ବୀର୍ଯ୍ୟସ୍ୱରୂପ ଏବଂ ବ୍ରହ୍ମତେଜସ୍ୱରୂପ। କର୍ମମାଧ୍ୟମରେ ଦେହର ପ୍ରତିଲୋମକୂପ ମଧ୍ୟଦେଇ ଏହି ଆନନ୍ଦର ତେଜ ଶୋଷଣ କରିନେଇ ନିଜକୁ ଚୈତନ୍ୟମୟ ବୋଲି ଉପଲବ୍ଧି କର। ଅତଏବ ଉଠ, ଜାଗ, ନିଷ୍କାମ କର୍ମସାଧନରେ ପ୍ରବୃତ୍ତ ହୁଅ।

ଶ୍ରୀଗୁରୁଦେବଙ୍କ ସ୍ୱରୂପ ନ ଜାଣି ମଧ୍ୟ ତାଙ୍କୁ ପୂର୍ଣ୍ଣସ୍ୱରୂପ ବୋଲି ଧାରଣା କରି ସାଧନ କରିବା ବିଧେୟ। ନିଜେ ଯଦି କ୍ଷୁଦ୍ର, ତେବେ ସେ ବିରାଟ; ତୁମେ ଯଦି ଦୀନ, ତେବେ ସେ ପୂର୍ଣ୍ଣ। ତେଣୁ ଅହଂତ୍ୱର ବିନାଶ କରି ସେହି ସ୍ଥାନରେ ତାଙ୍କୁ ପ୍ରତିଷ୍ଠା କରିପାରିଲେ ସମସ୍ତ ମନୋରଥ ସିଦ୍ଧ ହେବ। ନିଜକୁ ଯେ ଅଧମ ବୋଲି ଧାରଣା କରିପାରିଛନ୍ତି, ନିଜକୁ ଯେ ଦୀନାତିଦୀନ ବୋଲି ବୁଝିପାରିଛନ୍ତି, ଉତ୍ତମର ଧାରଣା, ଉତ୍ତମର ସାଧନା ତାଙ୍କପକ୍ଷରେ ହିଁ ସମ୍ଭବ।

ତାଙ୍କଠାରୁ ଯେତିକି ପାଇବ, ତାଙ୍କ ପ୍ରିୟଜଗତ୍ ସେବାରେ ତାହା ଉତ୍ସର୍ଗ କରିଦେବା ହିଁ ଯଥାର୍ଥ ସାଧନା। ଏହି ସେବକଭାବର ଯୋଗ୍ୟତା ଅର୍ଜ୍ଜନନିମିତ୍ତ ସାଧନା ଆବଶ୍ୟକ। ଏ ପଥରେ ବହୁ ବାଧାବିଘ୍ନ ଦେଖା ଦେବ, ତେଣୁ ସାବଧାନ। ନିଜଉପରେ ତୀକ୍ଷ୍ଣ ଦୃଷ୍ଟି ରଖି, କୌଣସି ଅଭିମାନରେ ଚିତ୍ତକୁ କଳୁଷିତ ନ କରି ସ୍ୱୀୟ ଲକ୍ଷ୍ୟରେ ଅଟଳ ରହ। ଏହିଭାବ ଦୃଢ଼ ନହେବା ପର୍ଯ୍ୟନ୍ତ ସମାଜର କଳୁଷିତ ବାତାବରଣଠାରୁ କିଞ୍ଚିତ୍ ଦୂରରେ ରହି ସମଧର୍ମୀ ସାଧକଙ୍କ ସଙ୍ଗ କରିବାକୁ ହେବ।

ପ୍ରଥମେ ସ୍ୱାର୍ଥପରଙ୍କଭଳି ନିଜକୁ ଗଠନ କରିବାକୁ ହେବ। କାରଣ, ନିଜେ ସମାହିତ ହୋଇ ଆତ୍ମଶକ୍ତି ଲାଭ କରିବାପରେ ଅପରର ସେବା କରିବାକୁ ବହିର୍ଗତ ହେବ। ଯେଉଁଦିନ ଆତ୍ମଶକ୍ତିକୁ ଦେଶହିତରେ ନିୟୋଜିତ କରିପାରିବ, ସେଦିନ ଯଥାର୍ଥ ସେବକ-ଜୀବନ ଲାଭ ହେବ।

ଅନ୍ନ ବସ୍ତ୍ର ଦେଇ ଯେଉଁ ସେବା କରାଯାଏ, ତାହା ବହିରଙ୍ଗ ସେବା। ତାହାଦ୍ୱାରା କେବେହେଲେ ମାନବର ଅଭାବ ଦୂର ହୁଏ ନାହିଁ। ସେ ଓ ତୁମ ଭିତରେ ଯେଉଁ ବ୍ୟବଧାନ ସୃଷ୍ଟି ହୋଇଛି, ଜ୍ଞାନଦାନଦ୍ୱାରା ତାହା ଅପସାରିତ କରିପାରିଲେ ତାହା ହିଁ ହେବ ଯଥାର୍ଥ ସେବା। ଏହି ସେବାଦ୍ୱାରା ଜଗତ୍‌ର ଯଥାର୍ଥ କଲ୍ୟାଣ ସାଧିତ ହେବ। ତେଣୁ ଭଗବାନ ହିଁ ଜଗତ୍‌ର ପ୍ରକୃତ ସେବକ। ସେହି ଭଗବାନଙ୍କସହିତ ସାଧକ ଯେତେବେଳେ ଅଭିନ୍ନଭାବରେ ବିରାଜିତ ହୋଇ ଶ୍ରୀଗୁରୁଦେବଙ୍କ ଜଗତ୍‌ସେବାରେ ବ୍ରତୀ ହେବେ, ସେତେବେଳେ ସେବାର ସାର୍ଥକତା ହେବ ଏବଂ ସଙ୍ଗେ ସଙ୍ଗେ ଶ୍ରୀଗୁରୁଦେବଙ୍କ ମହିମା ପ୍ରଚାରିତ ହେବ।

ଚରିତ୍ର-ସଂଶୋଧନର ମୂଳମନ୍ତ୍ର ହେଉଛି ନିଜ ଚରିତ୍ରପ୍ରତି ନିଜେ ତୀକ୍ଷଣ ଦୃଷ୍ଟି ଦେବାକୁ ଅଭ୍ୟାସ କରିବା। ନିଜ ଚରିତ୍ରପ୍ରତି ଦୃଷ୍ଟିପଡ଼ିଲେ ତାହାଭିତରେ ଯାହା ଦୂଷଣୀୟ, ତାହା କ୍ରମେ ଦୂର ହୋଇଯିବ। ଏହାକୁ ଆତ୍ମଦୃଷ୍ଟି ବା ଦ୍ରଷ୍ଟାଭାବ କୁହାଯାଏ। ଏହି ଭାବର ଉତ୍କର୍ଷ ହେଲେ ଆତ୍ମଜ୍ଞାନ ସହଜରେ ଲାଭ ହୋଇଥାଏ।

ନିଜ ସ୍ୱଭାବରେ ଯଦି କିଛି ଦୋଷ ଦର୍ଶନ କର, ତେବେ କେବେ ହେଲେ ହତାଶ ହୋଇପଡ଼ନାହିଁ। ମାନବ ଭିତରେ ପଶୁଭାବ ଓ ଦେବଭାବ ଦୁଇଟି ଅଛି, କିନ୍ତୁ ଜ୍ଞାନବିଚାରଦ୍ୱାରା ପଶୁଭାବକୁ ସଂଯତ କରି ଦେବତ୍ୱର ବିକାଶ କରିବା ହିଁ ମନୁଷ୍ୟ-ଜୀବନର ଉଦ୍ଦେଶ୍ୟ। ସାଧନ-ସମୟରେ ଅନ୍ତରମଧ୍ୟରେ ଏହି ପଶୁଶକ୍ତି ଓ ଦେବଶକ୍ତି ମଧ୍ୟରେ ଯୁଦ୍ଧ ଲାଗିବ; ଇନ୍ଦ୍ର ବହୁ ବାର ସ୍ୱର୍ଗଚ୍ୟୁତ ହେବେ; କିନ୍ତୁ ଶେଷରେ ବୃତ୍ରାସୁର ବଧ ହେବ। ସ୍ୱର୍ଗରାଜ୍ୟ ପୁଣି ଇନ୍ଦ୍ରଙ୍କ ଅଧିକାରକୁ ଆସିଯିବ।

ଅମୃତମୟ ଆନନ୍ଦସ୍ୱରୂପଙ୍କୁ ପ୍ରତିମୁହୂର୍ତ୍ତରେ ପ୍ରତ୍ୟେକ କର୍ମ-ମଧ୍ୟରେ ଅନୁଭବ କରିବା ହିଁ ଆମର ସାଧନା। ସାଧକ ଯେତେବେଳେ ପ୍ରାଣକୁ ଆନନ୍ଦସିକ୍ତ ନ କରି କୌଣସି କର୍ମ କରିବାକୁ ଅଗ୍ରସର ହୁଅନ୍ତି, ସେତେବେଳେ କର୍ମ ମଧ୍ୟ ଆନନ୍ଦପ୍ରଦ ହୁଏ ନାହିଁ। ଦେହ-ସୁଖ ଓ ମନର ଅଶାନ୍ତିର ଏକମାତ୍ର କାରଣ ମୋହ। ଭଗବତ୍-ଆନନ୍ଦରେ ନିଜକୁ ଆନନ୍ଦଯୁକ୍ତ କରି କର୍ମ କଲେ ସାଧକ ପ୍ରାଣବନ୍ତ ହୋଇଉଠନ୍ତି।

ପ୍ରାଣର ପ୍ରକାଶ ଶକ୍ତିରେ, କର୍ମରେ; କିନ୍ତୁ ତା'ର ସ୍ଥିତି ବା ପୁଷ୍ଟି ଆନନ୍ଦରେ। ତେଣୁ ଆନନ୍ଦ ମନରେ କର୍ତ୍ତବ୍ୟ କର୍ମ କରିଯାଅ। ପ୍ରଶାନ୍ତ ଚିତ୍ତରେ ଆନନ୍ଦ ବିରାଜିତ ଥାଏ। ଜଗତରେ ମହାପୁରୁଷମାନେ ଯେତେ କର୍ମ କରିଯାଇଛନ୍ତି, ଆମେ ଆଜି ତାର ଫଳ ଭୋଗ କରୁଥାଇଁ; କିନ୍ତୁ ସେମାନଙ୍କର ଏଥିରେ ତ କିଛି ଲାଭ ହେଉନାହିଁ। ସେମାନେ ଜଗତ ହିତ କରିବାବେଳେ ଆନନ୍ଦ ମନରେ ତାହା ସମ୍ପାଦନ କରି ଆନନ୍ଦରେ ବୁଡ଼ିରହୁଥିଲେ। ଏତିକି ମାତ୍ର ସେମାନଙ୍କର ଲାଭ। କିନ୍ତୁ ଅଶାନ୍ତ ଚିତ୍ତିରେ ତାହା ସ୍ଥାୟୀ ହୁଏନାହିଁ। ତେଣୁ ଚିତ୍ତ ସ୍ଥିର କର। ସମସ୍ତ କର୍ମରେ ଆତ୍ମନିୟୋଗ କରିବା ହିଁ ସାଧନା।

ପ୍ରତିକ୍ଷେତ୍ରରେ ଜଣେ ତୁମର ବିରୁଦ୍ଧାଚରଣ କରୁଛନ୍ତି ବୋଲି ଜାଣିଲେ ମଧ୍ୟ ତାଙ୍କୁ ଦେଖି କେବେହେଲେ ମୁହଁ ଫୁଲାଇ ବସିବ ନାହିଁ। ଯଦି ଏପରି କଲ, ତେବେ ଜାଣିବ, ତୁମେ ବିପଦକୁ ବରଣ କଲ। ଯେଉଁମାନେ ଗୋପନରେ ଶତ୍ରୁତା କରନ୍ତି, ସେମାନେ ଭୀରୁ, ସେମାନେ ନିଜେ ଧରାପଡ଼ିବାକୁ ଇଛା କରନ୍ତି ନାହିଁ; କିନ୍ତୁ ତୁମର ବିମୁଖଭାବ ଦେଖି ନିଜେ ଧରାପଡ଼ି ସେମାନେ ପ୍ରକାଶ୍ୟରେ ଶତ୍ରୁତାଚରଣ କରିବାକୁ ପଶ୍ଚାତ୍‌ପଦ ହେବେ ନାହିଁ। ଯଦି ହସହସ ବଦନରେ ତାଙ୍କ ସହିତ ପୂର୍ବାଚରଣପରାୟଣ ହୋଇପାର, ତେବେ ସେ ଭିତରେ ଭିତରେ ଲଜ୍ଜା ପାଇବେ। ତୁମର କ୍ଷମାଭାବ ଦେଖି ତାଙ୍କର ବିଦ୍ୱେଷଭାବ ଊଣା ହୋଇଯିବ। ଏହାକୁ ଏକାବେଳକେ ଧ୍ରୁବ ସତ୍ୟ ବୋଲି ଜାଣିବ।

'ଅମୁକ ମୋର ନିନ୍ଦା କରୁଛନ୍ତି' ଏକଥା ଶୁଣି ଯାହାଙ୍କ ମନରେ କଷ୍ଟ ହୁଏ, ତାଙ୍କ ଭିତରେ ପୂର୍ଣ୍ଣମାତ୍ରାରେ କାମନା ବିରାଜିତ। ଯେଉଁମାନଙ୍କର ଅଭିମାନ ନାହିଁ, ନିନ୍ଦା ଶୁଣିଲେ ସେମାନେ ହସିଉଠନ୍ତି।

ମନକଥାଟା ମୁଖ ଦେଇ ବାହାରିବା ଅନ୍ୟାୟ ନୁହେଁ। ଆମର ମନ ଆମକୁ ବିଶେଷ ପରିମାଣରେ ଭୁଲାଇଥାଏ। ଯେଉଁଦିନ ସାଧକ ସେହି ମନକୁ ଭୁଲାଇପାରିବେ, ସେହିଦିନ ହିଁ ସାଧକଙ୍କର ଆନନ୍ଦର ସୀମା ରହିବ ନାହିଁ।

ଅବିଶୁଦ୍ଧ ଚିତ୍ତ ନେଇ ଗୁରୁଦେବଙ୍କ ନିକଟକୁ ଯିବା ଉଚିତ ନୁହେଁ। ଚିତ୍ତକୁ ନିଜ ଚେଷ୍ଟାରେ ବିଶୁଦ୍ଧ କରି ନରଭିମାନ ହୋଇ ଗୁରୁସେବାନିମିତ୍ତ ତାଙ୍କ ନିକଟକୁ ଯିବାକୁ ପଡ଼ିବ। ସାଧନା କରିବାକୁ ହେବ ତୁମକୁ। ଶ୍ରୀଗୁରୁଦେବଙ୍କ ପ୍ରସନ୍ନ ଦୃଷ୍ଟି କେବଳ ସାଧନପଥରେ ନିଶ୍ଚିନ୍ତତା ଆନୟନ କରିବା ମାତ୍ର। ଯେଉଁମାନେ

ଆତ୍ମନିର୍ଭରଶୀଳ ସେବକ, ସେହିମାନେ ହିଁ ଶ୍ରୀଗୁରୁଦେବଙ୍କୁ ପ୍ରସନ୍ନ କରିପାରନ୍ତି । ନିଜର ଯେତିକି କର୍ତ୍ତବ୍ୟ, ସେହି କର୍ତ୍ତବ୍ୟରେ ଅଚଳ ରହି ତତ୍ପରେ ଗୁରୁଦେବଙ୍କ ନିକଟକୁ ଉପଦେଶପ୍ରାର୍ଥୀ ହୋଇ ଯିବାକୁ ହେବ । ନିଜର ଆନ୍ତରିକ ଶ୍ରଦ୍ଧାଭକ୍ତିଦ୍ୱାର ଅନ୍ତର୍ଯ୍ୟାମୀ ଗୁରୁଦେବଙ୍କୁ ପ୍ରସନ୍ନ କରିବାକୁ ପଡ଼ିବ । ତାଙ୍କ ନିର୍ଦ୍ଦେଶ ପ୍ରତିପାଳନ ହିଁ ତାଙ୍କ ସେବା ।

ସାଧନା ହୁଏ ଶକ୍ତିର । ଶକ୍ତିସାଧନପଥରେ ସଂଶୟ ହିଁ ବଡ଼ ଶତ୍ରୁ । ଏହି ସଂଶୟ ହିଁ ସବୁ କାର୍ଯ୍ୟରେ ବିଘ୍ନ ଉତ୍ପାଦନ କରିପାରେ । ସଂଶୟହେତୁ କେହି ପରସ୍ପରକୁ ବିଶ୍ୱାସ କରିପାରନ୍ତି ନାହିଁ । ଏହି ସଂଶୟ-ନିରସନ ହିଁ ଶକ୍ତିସାଧକଙ୍କର ପ୍ରାଥମିକ କର୍ତ୍ତବ୍ୟ । ଶକ୍ତିସାଧକ ନିର୍ଭୀକଭାବରେ ଗୋଟିଏ ଆସନରେ ଅଚଳ-ଅଟଳଭାବରେ ବସିରହିବା ଦରକାର । ଗଭୀର ନିଶୀଥରେ କାଳ୍ପନିକ ଶତ୍ରୁ ଆସି ହୃଦୟରେ ଛୁରିକାଘାତ କରିଥାନ୍ତି । ତଥାପି ସାଧକ ଧୈର୍ଯ୍ୟଚ୍ୟୁତ ହୋଇ ନାମ ତ୍ୟାଗ କରିବେ ନାହିଁ । ବାହାରେ ପ୍ରଳୟ ହେଲେ ମଧ୍ୟ ଅନ୍ତର୍ନିହିତ ଏକାଗ୍ର ସାଧନାର ଯେପରି ଟିକିଏ ହେଲେ ନିର୍ବାଣ ନ ହୁଏ, ସେଥିପ୍ରତି ଲକ୍ଷ୍ୟ ରଖି ସାଧନନିଷ୍ଠ ହେବା ବିଧେୟ । ସଂଗ୍ରାମ ବ୍ୟତୀତ ଶକ୍ତିଜୟ ସମ୍ଭବପର ନୁହେଁ ।

ଯେଉଁ ଜାତି-ଅନ୍ତରରେ ସଂକଳ୍ପ ନାହିଁ, ସଂଘବଦ୍ଧଭାବରେ କୌଣସି କାର୍ଯ୍ୟ କରିବାନିମିତ୍ତ ଇଚ୍ଛା ଯେଉଁ ଜାତିର ନାହିଁ; ସେ ଜାତି ଶକ୍ତିଶାଳୀ ହେବ ବା କିପରି ? ସଂଗ୍ରାମ ନିଜ ସଙ୍ଗରେ କରିବାକୁ ହେବ । ସେହି ସଂଗ୍ରାମ ଫଳରେ ନିଜ ଭିତରେ ଶକ୍ତିଧାରଣ-ଉପଯୋଗୀ ବଳ ସଞ୍ଚାରିତ ହେବ । ଶକ୍ତିର ଆତିଶଯ୍ୟରେ ଯେପରି ଅସୁର ହୋଇ ନ ଯାଅ, ଅର୍ଥାତ୍ ଯାହାଙ୍କ ଶକ୍ତିରେ ସାଧକ ଶକ୍ତିମନ୍ତ ହେବେ, ସେହି ଶକ୍ତିଙ୍କୁ ସାଧକ ଯେପରି ଅବଜ୍ଞା ନ କରନ୍ତି । ଫୁଲ-ବେଲପତ୍ରଦ୍ୱାରା ପୂଜା, ତାହା ବହିରଙ୍ଗ ପୂଜା । ସଂଘବଦ୍ଧ ପ୍ରାଣର ସମ୍ମିଳିତ ଆବେଗରେ ମହାଶକ୍ତି ଜାଗରିତା ହୁଅନ୍ତି । ସେହି ଆବେଗର ଚରମ ଅବସ୍ଥାରେ ମା ରୂପ ପରିଗ୍ରହ କରନ୍ତି । ମା ଆମ ମନର ଏକାଗ୍ର ସାଧନାରୁ ଉଦ୍ଭୂତ ମହାଶକ୍ତି । ସେହି ମା ଆମ ଅନ୍ତରରେ ଓ ସମଷ୍ଟି ମାନବପ୍ରାଣରେ ବିରାଜିତ । ଶକ୍ତିକୁ ଆୟତ୍ତ କରିବାନିମିତ୍ତ ସାଧନା ।

କଳ୍ପନାକୁ ଆଶ୍ରୟ କରି ସତ୍ୟ ରହିପାରେ ନାହିଁ । ଯେ ଯାହାଙ୍କ ଉପାସନା କରିବେ, ଉପାସ୍ୟଙ୍କ ସର୍ବଜ୍ଞତାରେ ତାଙ୍କର ଦୃଢ଼ ବିଶ୍ୱାସ ଥିବା ଆବଶ୍ୟକ । ସତ୍ୟ

ଓ ବିଶ୍ୱାସ ଉପାସନାର ମୂଳଭିତ୍ତି । ସ୍ଥିର ବିଶ୍ୱାସବଳରେ ଉପଲବ୍ଧି କରିବାକୁ ହେବ ଯେ ତୁମର ଉପାସ୍ୟ ଦେବତା ସଚ୍ଚିଦାନନ୍ଦ ଚିନ୍ମୟ ପୁରୁଷ । ତେବେ ଯାଇ ସାଧନାରେ ଶକ୍ତି ସଞ୍ଚାରିତ ହେବ ।

ସୈନ୍ୟମାନଙ୍କୁ କେବଳ ସେନାପତିଙ୍କ ଆଦେଶ ପ୍ରତିପାଳନ କରିବାକୁ ହେବ । ସେନାପତି ସୈନ୍ୟମାନଙ୍କୁ ଯେଉଁଭାବରେ ପରିଚାଳିତ କରିବେ, ସୈନ୍ୟମାନଙ୍କୁ ସେହିଭାବରେ ଚଳିବାକୁ ହେବ । ସେପରି ନ ହେଲେ ପାର୍ଥିକ ବା ପାରମାର୍ଥିକ ଜଗତ୍‌ରେ ସଂଗ୍ରାମରେ ଜୟଲାଭ କରିବା ସୁକଠିନ । ନିଜ ନିଜର ବ୍ୟକ୍ତିଗତ ମତ ନେଇ ଚଳିଲେ ଯୁଦ୍ଧରେ ଜୟଲାଭ ହୁଏ ନାହିଁ । ଜୀବମଧ୍ୟରେ ଦଶ ଇନ୍ଦ୍ରିୟର ଦଶ ପ୍ରକୃତି ଶତ୍ରୁଭାବରେ ବିରାଜିତ । ସୁଯୋଗ ପାଇଲାମାତ୍ରେ ସେମାନେ ସାଧକଙ୍କୁ ପରାସ୍ତ କରି ନିଜର ରାଜ୍ୟ ବିସ୍ତାର କରିବେ, ତେଣୁ ସାଧକ ସାବଧାନ! ଶ୍ରୀଗୁରୁଦେବଙ୍କ ସଦୃଶ ସେନାପତିଙ୍କ ବିନା ନିର୍ଦ୍ଦେଶରେ ପାଦେ ହେଲେ ଅଗ୍ରସର ହୁଅ ନାହିଁ । ଗୁରୁଦେବଙ୍କ ଉପରେ ନିର୍ଭର କରି ତାଙ୍କ ନାମ ନେଇ ତାଙ୍କ ନିର୍ଦ୍ଦେଶିତ ପନ୍ଥାରେ ଚଳିଲେ ଜୀବନ ମଧୁମୟ ହୋଇଯିବ; ସବୁ ସାଧନାରେ ସିଦ୍ଧି ଲାଭ କରିବ । ନିଜ ଉପରେ ବିଶ୍ୱାସ ରଖି ଚଳ । ଦୃଢ଼ବିଶ୍ୱାସ ହିଁ ମହତକାର୍ଯ୍ୟର ଜନକ । ଦୃଢ଼ତା, ଆତ୍ମବିଶ୍ୱାସ, ଅବିଚଳିତ ନିଷ୍ଠା, ଅଧ୍ୟବସାୟ ଏବଂ ଗୁରୁନିର୍ଭରତା ହିଁ ସାଧନପଥର ପ୍ରଧାନ ସମ୍ବଳ ।

ବାହାରକୁ ପରିବର୍ତ୍ତନ କରିବାକୁ ଚେଷ୍ଟା ନ କରି ନିଜ ସ୍ୱଭାବର ପରିବର୍ତ୍ତନ କରିବାକୁ ହେବ । ପ୍ରଥମେ ରସନାଜୟ । ଏହା ହିଁ ପ୍ରଧାନ ସାଧନା । ବାକ୍‌ସଂଯମ ଓ ଖାଦ୍ୟସଂଯମ ହେଉଛି ସାଧନାର ପ୍ରଧାନ ଅଙ୍ଗ । ଶରୀରର ଗ୍ଲାନି ଥିଲେ ପ୍ରାଣର ସ୍ଫୁରଣ ହୁଏ ନାହିଁ । ଚିତ୍ତଶୁଦ୍ଧିର ପ୍ରଧାନ ଅନ୍ତରାୟ ରସନା । ଦ୍ୱିତୀୟରେ ପରଦୋଷ-ଅନ୍ୱେଷଣ ତ୍ୟାଗ କରି କର୍ତ୍ତବ୍ୟନିଷ୍ଠ ହେବାକୁ ପଡ଼ିବ୍ । ତେବେ ଯାଇ ସାଧନାରେ ସିଦ୍ଧିଲାଭ କରିବ ।

ତାଙ୍କୁ ପାଇବା ଅର୍ଥ ତାଙ୍କ ଭାବରେ ତନ୍ମୟ ହେବା । ସେତିକିରେ ତାଙ୍କ ଗୁଣ ଅଲକ୍ଷ୍ୟରେ ସାଧକଙ୍କଭିତରେ ସଞ୍ଚାରିତ ହୋଇଯିବ । ଏହା ହେଲେ ଯାଇ ହୃଦୟରେ ତାଙ୍କ ଆସନ ପ୍ରତିଷ୍ଠିତ ହେବ । ସେ ଜଗନ୍ମୟ; ତେଣୁ ତାଙ୍କରି ଜଗତ୍ ସେବାରେ ନିଜକୁ ଉତ୍ସର୍ଗ କରିବାକୁ ହେବ । ନିଜ ସ୍ୱାର୍ଥ ନେଇ କେବେହେଲେ ବ୍ୟସ୍ତ ହୁଅ ନାହିଁ । ସ୍ୱାର୍ଥଚିନ୍ତା ହିଁ ଦୁର୍ବଳତା ଆନୟନ କରେ । ପ୍ରତି ଜୀବ ଭିତରେ

ତାଙ୍କୁ ଅନୁଭବ କରିବାକୁ ଶିକ୍ଷା କଲେ ସାଧକ ମହାଶକ୍ତିଧର ହୋଇଯିବେ । ଯାହାଙ୍କ ପ୍ରାଣର ବଳ ଯେତେ ଅଧିକ, ସେ ସେତିକି ଉଚ୍ଚଅଧିକାରୀ । ଯେଉଁଦିନ ବୁଝିବ ଯେ ନିଜର ଚିନ୍ତା, ନିଜର ଭାବନା ତାଙ୍କ ଭାବନାରେ ପର୍ଯ୍ୟବସିତ ହୋଇଯାଇଛି, ସେଦିନ ପ୍ରକୃତରେ ଆତ୍ମସମର୍ପଣ ଭାବ ଆସିଛି ବୋଲି ଜାଣିବ । ଇଷ୍ଟ ଦେବତାଙ୍କ ଭାବନାରେ ତନ୍ମୟତା ହିଁ ସିଦ୍ଧି । ଯେ ଯାହାଙ୍କୁ ଭାବନ୍ତି, ତାଙ୍କରି ଗୁଣ ଓ ଶକ୍ତି ସେହି ସାଧକଙ୍କ ଭିତରେ ନିଶ୍ଚୟ ସଞ୍ଚାରିତ ହୁଏ ।

ଶ୍ରୀଗୁରୁଦେବଙ୍କ ନର୍ଦ୍ଦିଷ୍ଟ ନିଷ୍କାମ କର୍ମସାଧନା ଫଳରେ ପ୍ରାଣରେ ସ୍ୱତଃ ବିବେକ-ବୈରାଜ୍ୟ ଜାଗ୍ରତ ହୁଏ । ହୃଦୟରେ ବଳ ଓ ମନରେ ଉତ୍ସାହ ଫୁଟିଉଠେ । କର୍ମପ୍ରବଣତା ବୃଦ୍ଧି ପାଏ । ଏହାଫଳରେ ସତ୍ୟ ସ୍ୱରୂପ ପରମ ଦେବତା ଅନ୍ତରରେ ପ୍ରସ୍ଫୁଟିତ ହୋଇ ସାଧକଙ୍କ ମୋହାନ୍ଧକାର ଦୂର କରିଦିଅନ୍ତି । ଶ୍ରୀଗୁରୁଦେବଙ୍କ ଅଭୟଚରଣତରୀକୁ ଆଶ୍ରୟ କରି କର୍ଣ୍ଣଧାରଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭରତାପୂର୍ବକ ସ୍ଥିର ରହିପାରିଲେ ଭଗବାନଙ୍କର ଅନୁକୂଳ ବାୟୁ ସାଧକଙ୍କୁ ଭବନଦୀ ପାର କରାଇଦେଇଥାଏ । ଶ୍ରୀଗୁରୁଦେବଙ୍କ ବାକ୍ୟ ହିଁ ସବୁ ମନ୍ତ୍ରର ମୂଳ ଅର୍ଥାତ୍ ଶ୍ରୀଗୁରୁଦେବଙ୍କ ଆଦେଶ ହିଁ ସାଧନାର ମୂଳସୂତ୍ର । ତାଙ୍କ ଆଦେଶ ପ୍ରତିପାଳନ କରିବା, ତାଙ୍କ ନିର୍ଦ୍ଦିଷ୍ଟ କର୍ମରେ ଆତ୍ମନିୟୋଗ କରିବା ପ୍ରକୃତ ସାଧନାମଧ୍ୟରେ ଗଣ୍ୟ । ଯେଉଁମାନେ ତାଙ୍କ ଆଦେଶ ପ୍ରତିପାଳନ କରନ୍ତି, ସେମାନଙ୍କୁ ଶିଷ୍ୟ କୁହାଯାଏ । ତାଙ୍କ ପ୍ରତିଷ୍ଠିତ ନିଷ୍କାମ କର୍ମକ୍ଷେତ୍ରରେ ଯୋଗଦେବା ହିଁ ପ୍ରକୃତ ଗୁରୁ-ଭଜନ ଓ ସାଧନ । ଏହିମାନେ ହିଁ ଯଥାର୍ଥ ସେବକ । ସେବକମାନେ କର୍ମସୂତ୍ରରେ ଗ୍ରଥିତ ହୋଇ ପରସ୍ପର ପ୍ରେମପ୍ରୀତି ବନ୍ଧନରେ ପୁଷ୍ଟି ଲାଭ କରିବେ ଏବଂ ଜ୍ଞାନାଲୋଚନା ଦ୍ୱାରା ଜୀବନୀଶକ୍ତି ଲାଭ କରି ଧନ୍ୟ ହେବେ । ଭଗବତ୍‌ପଦରେ ମନ ରଖି ଜଗତର କର୍ମ କରିବା ହିଁ ସେବା । ହାତରେ କର୍ମ କରିଯିବ ଏବଂ ମନମଧ୍ୟରେ ତାଙ୍କୁ ଚିନ୍ତା କରିବ କିମ୍ବା ନାମ ସ୍ମରଣ କରିବ । ଆତ୍ମାଭିମାନ ଅର୍ଥାତ୍ 'ମୁଁ କର୍ତ୍ତା' ଏହି ଭାବ ନେଇ କର୍ମ କରିବ ନାହିଁ । ପ୍ରତ୍ୟେକ କର୍ମ ପ୍ରକୃତିଦ୍ୱାରା ଅନୁଷ୍ଠିତ ହେଉଅଛି । ଜୀବ ସବୁ ବୁଝିଲେ ମଧ୍ୟ ସେହି ଅଭିମାନ କବଳରୁ ନିଷ୍କୃତି ପାଇପାରୁ ନାହିଁ । ଏହାରି ନାମ ମୋହ । ଦେହର ମୋହ ଦୂର କରିବାନିମିତ୍ତ କର୍ମ ଆବଶ୍ୟକ ଏବଂ ଚିତ୍ତର ମୋହ ଦୂର କରିବାନିମିତ୍ତ ଜ୍ଞାନ ଓ ଭକ୍ତିର ଅନୁଶୀଳନ ପ୍ରୟୋଜନ । ଏହି ଅନୁଶୀଳନ ହିଁ ସାଧନା । ସଂସାର ଶ୍ରୀଗୁରୁଦେବଙ୍କର । ତାଙ୍କ

ସଂସାରର ସେବା ହିଁ ସାଧନା । ସମସ୍ତେ କର୍ମ କରୁଛନ୍ତି । ନିଜପାଇଁ ଯେଉଁ କର୍ମ କରାଯାଏ, ତାହା ଆସକ୍ତି ଏବଂ ଶ୍ରୀଗୁରୁଦେବଙ୍କପାଇଁ ସେହି କର୍ମ ସମ୍ପାଦିତ ହେଲେ, ତାହା ଭକ୍ତି । ଶ୍ରୀଗୁରୁଦେବଙ୍କ ସେବକ ବୋଲି ମନେ କରି କର୍ମ କରିଗଲେ ଅଭିମାନ ଦୂର ହୋଇଯାଏ । ଆତ୍ମସମର୍ପଣନିମିତ୍ତ ଦୃଢ଼ ବିଶ୍ୱାସ ଓ ଶ୍ରଦ୍ଧା ଏକାନ୍ତ ଆବଶ୍ୟକ । ଶ୍ରୀଗୁରୁଦେବଙ୍କୁ ସଦ୍‌ଗୁରୁବୋଲି ଜାଣି ଆତ୍ମସମର୍ପଣ କରିବା ବହୁ ସୁକୃତିର ଫଳ । ସତ୍ୟନିମିତ୍ତ ଅକପଟ ଶ୍ରଦ୍ଧା ଥିଲେ ଶ୍ରୀଗୁରୁଦେବଙ୍କୁ ଦେଖିବାମାତ୍ରେ, ତାଙ୍କ ନାମ ଶୁଣିବାମାତ୍ରେ ଶ୍ରଦ୍ଧା ଜାଗିଉଠେ । ଅଭିମାନଶୂନ୍ୟ ହୋଇ ସେବା କଲେ ଚିତ୍ତ ସହଜରେ ଶୁଦ୍ଧଭାବ ଧାରଣ କରେ ।

ମାନବ ନିଜକୁ ଗଠନ ନ କଲେ ତାହାଦ୍ୱାରା ଅପରର ହିତସାଧନ ତ ଦୂରର କଥା, ନିଜ ହିତସାଧନର ମଧ୍ୟ ସମ୍ଭାବନା ନାହିଁ । ଆମେ ପ୍ରକୃତିବଶରୁ ଇନ୍ଦ୍ରିୟବୃତ୍ତିର ଓ ରିପୁମାନଙ୍କ ଦାସ ହୋଇପଡ଼ିଛୁଁ । ଶମ, ଦମ, ଅଭ୍ୟାସଦ୍ୱାରା ରିପୁଦମନ ହିଁ ମନୁଷ୍ୟତ୍ୱ । ରିପୁ ଦମନ କରି ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା—ଏହି ଚାରି ଗୁଣକୁ ହୃଦୟରେ ପ୍ରତିଷ୍ଠା କରିପାରିଲେ ଯାଇ ପ୍ରକୃତ ମନୁଷ୍ୟତ୍ୱର ବିକାଶ ହୋଇଥାଏ । ଆତ୍ମଗଠନରେ ବ୍ରତୀ ନ ହେଲେ ଶ୍ରୀଗୁରୁଦେବଙ୍କ ଶ୍ରୀଚରଣରେ ଆଶ୍ରୟ ନେବା ବୃଥା ।

ପରିବାରବର୍ଗଙ୍କ ମଧ୍ୟରେ ପ୍ରତ୍ୟେକ ସ୍ତ୍ରୀ-ପୁରୁଷ ଓ ପୁତ୍ର-କନ୍ୟାଙ୍କୁ ଉପରି ଲିଖିତମତେ ଆତ୍ମଗଠନରେ ଅଭ୍ୟସ୍ତ କରାଇପାରିଲେ ସେମାନଙ୍କ ଦ୍ୱାରା ଗୃହସ୍ଥାଶ୍ରମର ପ୍ରତିଷ୍ଠା କରିହେବ । ପରିବାରର ପ୍ରତ୍ୟେକଙ୍କ ହୃଦୟମଧ୍ୟରେ ଭଗବତ୍‌ଭକ୍ତି, ସ୍ୱାର୍ଥତ୍ୟାଗ ଉଦାହରଣ, ଗୁରୁଜନଙ୍କପ୍ରତି ଶ୍ରଦ୍ଧା ଓ କନିଷ୍ଠଙ୍କପ୍ରତି ସ୍ନେହ ବିରାଜିତା ହେଲେ ସେହି ସଂସାର ହିଁ ଆଦର୍ଶ ସଂସାର ବୋଲି ଅଭିହିତ ହେବ ।



# ଯୋଗ

## ମନର ଲୟ

''ସର୍ବଚିନ୍ତାପରିତ୍ୟାଗୋ ନିଶ୍ଚିନ୍ତା ଯୋଗ ଉଚ୍ୟତେ ।''

ଯେତେବେଳେ ମନୁଷ୍ୟ ସବୁ ଚିନ୍ତା ପରିତ୍ୟାଗ କରେ, ସେହିସମୟରେ ମନର ଯେଉଁ ଲୟ ଅବସ୍ଥା, ତାହାକୁ ଯୋଗ କୁହାଯାଏ ।

ଅବିଦ୍ୟାବିମୋହିତ ଆତ୍ମା ଜୀବସଂଜ୍ଞା ପ୍ରାପ୍ତ ହୋଇ ତ୍ରିତାପର ଅଧୀନ ହୋଇ ରହିଅଛି । ଏହି ତାପତ୍ରୟରୁ ମୁକ୍ତି ଲାଭ କରିବାର ଉପାୟ ଯୋଗ । ଯୋଗ୍ୟାଭ୍ୟାସ ବ୍ୟତୀତ ପ୍ରକୃତିର ମାୟାଜାଲ ଜ୍ଞାତ ହୋଇପାରିବ ନାହିଁ ।

ଯୋଗାଭ୍ୟାସଦ୍ୱାରା ଚିତ୍ତର ଏକାଗ୍ରତା ଜନ୍ମିଲେ ଜ୍ଞାନ ସମୁତ୍ପନ୍ନ ହୁଏ । ସେହି ଜ୍ଞାନରୁ ମାନବାତ୍ମାର ମୁକ୍ତି ହୋଇଥାଏ । ଶାସ୍ତ୍ରପାଠଦ୍ୱାରା ଯେଉଁ ଜ୍ଞାନ ଉତ୍ପନ୍ନ ହୁଏ ତାହା ମିଥ୍ୟା ପ୍ରଳାପ ମାତ୍ର; ଏହା ପ୍ରକୃତ ଜ୍ଞାନ ନୁହେଁ । ବହିର୍ମୁଖୀନ ମନ, ବୁଦ୍ଧି ଓ ଇନ୍ଦ୍ରିୟବର୍ଗଙ୍କୁ ବାହ୍ୟବିଷୟରୁ ନିବୃତ୍ତ କରି ଅନ୍ତର୍ମୁଖୀନ କଲେ ଓ ସର୍ବବ୍ୟାପୀ ପରମାତ୍ମାଙ୍କଠାରେ ସଂଯୋଗ ସ୍ଥାପନ କରିପାରିଲେ ପ୍ରକୃତ ଜ୍ଞାନର ଉଦୟ ହୁଏ । ଜ୍ଞାନବାନ, ସଂସାର-ବିରକ୍ତ, ଧର୍ମଜ୍ଞ, ଜିତେନ୍ଦ୍ରିୟ କିମ୍ବା କୌଣସି ଦେବତା ମଧ୍ୟ ଯୋଗ ବିନା ମୁକ୍ତିଲାଭ କରିପାରନ୍ତି ନାହିଁ ।

ପ୍ରାଣ ଓ ଚିତ୍ତକୁ ବଶୀଭୂତ କରି ନପାରିଲେ କେବେହେଲେ ପ୍ରକୃତ ଜ୍ଞାନର ଉଦୟ ହୋଇପାରେ ନାହିଁ; କାରଣ, ଚିତ୍ତ ସର୍ବଦା ଚଞ୍ଚଳ । ଚିତ୍ତ ସ୍ଥିର ନ ହେଲେ ଜ୍ଞନୋଦୟର ସମ୍ଭାବନା ନାହିଁ । ଚିତ୍ତ ସ୍ଥିର କରିବାର ଉପାୟ ଯୋଗ । ପ୍ରାଣବାୟୁ ସ୍ଥିର ହେଲେ ଚିତ୍ତ ସ୍ଥିର ହୁଏ । ଚିତ୍ତ ସ୍ଥିରତା ପ୍ରାପ୍ତ ହେଲେ ଜ୍ଞାନଚକ୍ଷୁ ଉନ୍ମୀଳିତ ହୋଇ ଆତ୍ମସାକ୍ଷାତ୍କାର ଲାଭ ହୁଏ । ଯୋଗୀ ପୁରୁଷଙ୍କର ଇଦୃଶ ଜ୍ଞାନ ହିଁ ପ୍ରକୃତ ଜ୍ଞାନପଦବାଚ୍ୟ । ନାମାନ୍ତରରେ ଏହି ଜ୍ଞାନକୁ ତତ୍ତ୍ୱଜ୍ଞାନ, ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ କୁହାଯାଏ । ଏହି ଜ୍ଞାନର ଉଦୟ ହେଲେ ମୁକ୍ତି ଲାଭ ହୁଏ ।

## ବୈରାଗ୍ୟ ଅଭ୍ୟାସ

ତତ୍ତ୍ୱଜ୍ଞାନ ଲାଭନିମିତ୍ତ ଯୋଗର ପ୍ରୟୋଜନ। ପ୍ରାଣ, ଚିତ୍ତ ଓ ବୀର୍ଯ୍ୟକୁ ବଶୀଭୂତ କରି ନ ପାରିଲେ ପ୍ରକୃତ ଜ୍ଞାନର ଉଦୟ ହୁଏ ନାହିଁ। ପ୍ରାଣବାୟୁ ସ୍ଥିର ହେଲେ ଚିତ୍ତ ସ୍ଥିର ହୁଏ, ଚିତ୍ତ ସ୍ଥିର ହେଲେ ବିନ୍ଦୁ ସ୍ଥିର ହୁଏ ଏବଂ ବିନ୍ଦୁ ସ୍ଥିର ହେଲାକ୍ଷଣି ପ୍ରକୃତ ଜ୍ଞାନର ଉଦୟ ହୁଏ।

ଗୋଟିଏ ବସ୍ତୁସହିତ ଅନ୍ୟର ଐକାନ୍ତିକ ସମ୍ମେଳନର ନାମ ଯୋଗ। ତେଣୁ ଯୋଗାଚାର୍ଯ୍ୟମାନେ ଜୀବାତ୍ମାସହିତ ପରମାତ୍ମାଙ୍କର ଏକତା-ସାଧନକୁ ଯୋଗ ବୋଲି ନିର୍ଦ୍ଦେଶ କରିଛନ୍ତି; କିନ୍ତୁ ବିଷୟଭୋଗରେ ବିତୃଷ୍ଣା ନ ଜନ୍ମିଲେ, ସଂସାରକୁ କଷ୍ଟର ଆକର ବୋଲି ନ ବୁଝିଲେ ଯୋଗସାଧନାରେ କାହାରି ପ୍ରବୃତ୍ତି ହୁଏ ନାହିଁ। ଏଥିପାଇଁ ପ୍ରଥମେ ବୈରାଗ୍ୟ ଅଭ୍ୟାସ କରିବାକୁ ହୁଏ। ଯେତେଦିନଯାଏ ସାଂସାରିକ ଭୋଗ-ବିଳାସରେ ଅଭିଳାଷ ଥିବ, ସେତେଦିନପର୍ଯ୍ୟନ୍ତ ଯୋଗ ସାଧନ କରିବା ଦୂରେ ଥାଉ, ସଂସାର-ବାସନାରେ ଆହୁରି ଅଧିକ ଜଡ଼ୀଭୂତ ହୋଇ ରହିବ।

ସାଧୁସଙ୍ଗଦ୍ୱାରା ବୈରାଗ୍ୟବୀଜ ସଞ୍ଚିତ ହୋଇ ଯଥାସମୟରେ ତାହା ଅଙ୍କୁରିତ ହୁଏ। କାରଣ, ସାଧୁମାନେ କେବେହେଲେ ଅନିତ୍ୟ ବିଷୟରେ ମନୋନିବେଶ କରନ୍ତି ନାହିଁ। ସେମାନେ ଅନିତ୍ୟ ବିଷୟର କଳ୍ପନା-ଜଳ୍ପନା ମଧ୍ୟ କରନ୍ତି ନାହିଁ। ସୁତରାଂ, ସେମାନଙ୍କ ସଙ୍ଗୀମାନେ ମଧ୍ୟ ସେହିପରି ଶିକ୍ଷାପ୍ରାପ୍ତ ହୋଇଥିବାରୁ ସମୟ ହେଲେ ସେମାନଙ୍କ ଅନ୍ତରରେ ବୈରାଗ୍ୟ-ବୀଜ ମନକୁ ମନ ଅଙ୍କୁରିତ ହୁଏ।

ପ୍ରଥମେ ସାଧୁସଙ୍ଗ, ତା'ପରେ ଇନ୍ଦ୍ରିୟନିଗ୍ରହ। ଇନ୍ଦ୍ରିୟମାନଙ୍କର କର୍ମପ୍ରବୃତ୍ତିକୁ ବାଧା ଦେବାର ନାମ ଇନ୍ଦ୍ରିୟନିଗ୍ରହ। ଇନ୍ଦ୍ରିୟମାନେ ଅଜ୍ଞତାବଶରୁ ଯାହା କରିବାକୁ ପ୍ରଧାବିତ ହେବେ, ତାହା କରାଇ ନ ଦେବାକୁ ଏବଂ ଇନ୍ଦ୍ରିୟବର୍ଗ ବଶୀଭୂତ ହେବାଭଳି ନିୟମ-ଶୃଙ୍ଖଳାରେ ଆବଦ୍ଧ ରହିବାକୁ ତପସ୍ୟା କୁହାଯାଏ। ଇନ୍ଦ୍ରିୟ ନିଗ୍ରହଦ୍ୱାରା ବିବେକ ଜ୍ଞାନ ଦୃଢ଼ ହେଲେ ଯୋଗର ଉଦ୍ଦେଶ୍ୟ ସିଦ୍ଧ ହୁଏ।

ଯୋଗଭ୍ୟାସ କଲେ ସମସ୍ତେ ସବୁ ସମୟରେ, ସବୁ ଅବସ୍ଥାରେ ସିଦ୍ଧି ଲାଭ କରିପାରନ୍ତି। ସମସ୍ତ କର୍ମଜଞ୍ଜାଳ ଭିତରେ ରହି ମଧ୍ୟ ସାଧକ ଏହି ଯୋଗସାଧନ କଲେ କୈବଲ୍ୟପଦ ଲାଭ କରିପାରନ୍ତି। ଅନ୍ୟ ଧର୍ମାବଲମ୍ବୀମାନେ ନିଜ-ନିଜ ସାଂପ୍ରଦାୟିକ ଭାବ ଠିକ୍ ରଖି ମଧ୍ୟ ଆର୍ଯ୍ୟଶାସ୍ତ୍ରୋକ୍ତ ଯୋଗାନୁଷ୍ଠାନ କରି ସିଦ୍ଧିଲାଭ କରିପାରନ୍ତି।

ସିଦ୍ଧିଲାଭରେ ଯେତେପ୍ରକାର ବିଘ୍ନ ଅଛି, ତନ୍ମଧ୍ୟରେ ସନ୍ଦେହ ସର୍ବାପେକ୍ଷା ଗୁରୁତର ବିଘ୍ନ । ମୁଁ ଏତେ ଶ୍ରମ କରୁଛି, ଏଥିରେ ଫଳ ହେବ କି ନାହିଁ? ଏହି ସନ୍ଦେହ ସାଧନପଥର କଣ୍ଟକ; କିନ୍ତୁ ଯୋଗସାଧନାରେ ସେ ଆଶଙ୍କା ନାହିଁ । ଯେତିକି ଅଭ୍ୟାସ କରିବ, ସେତିକି ଫଳ ପାଇବ ।

## ଏକାଗ୍ରତା ସାଧନ

ଅଭିନିବିଷ୍ଟ ଚିତ୍ତରେ ଅବଚ୍ଛିନ୍ନ ତୈଳଧାରାସଦୃଶ କୌଣସି ଗୋଟିଏ ବିଷୟ ଚିନ୍ତା କରିବାକୁ ଇଚ୍ଛାଶକ୍ତି କୁହାଯାଏ । ଇନ୍ଦ୍ରିୟପଥରେ ବହିର୍ଗତ, ଭିନ୍ନ-ଭିନ୍ନ ବିଷୟରେ ବିକ୍ଷିପ୍ତ ଓ ବହୁ ସ୍ଥାନରେ ବ୍ୟାପ୍ତ ଚିତ୍ତବୃତ୍ତିସମୂହକୁ ଯଦି ଯତ୍ନସହକାରେ ପଥରୋଧଦ୍ୱାରା ଏକତ୍ର କରାଯାଏ, କ୍ରମସଂକୋଚନ ପ୍ରଣାଳୀ ଅନୁସାରେ ପୁଞ୍ଜୀକୃତ ବା କେନ୍ଦ୍ରୀକୃତ କରାଯାଏ, ତାହାହେଲେ ସେହି କେନ୍ଦ୍ରୀକୃତ ଚିତ୍ତବୃତ୍ତିର ଅଗ୍ରସ୍ଥିତ ଯେ କୌଣସି ବସ୍ତୁ ତାଙ୍କ ନିକଟରେ ପ୍ରକାଶିତ ହେବ । ବିସ୍ତୃତ ତରଳ ସୂର୍ଯ୍ୟକିରଣ କାହାକୁ ଦଗ୍ଧ କରେ ନାହିଁ; କିନ୍ତୁ କୌଶଳକ୍ରମେ ସେ ତରଳାୟିତ ଆଲୋକରଶ୍ମିକୁ ଯଦି କେନ୍ଦ୍ରୀକୃତ କରାଯାଏ, ତାହା ହେଲେ ଦେଖିବ ଯେ ସେହି ସୂର୍ଯ୍ୟାଲୋକସମୂହର କେନ୍ଦ୍ରସ୍ଥାନରେ ପ୍ରଳୟାଗ୍ନିପରି ଦାହିକା ଶକ୍ତି ଆବିର୍ଭୂତ ହୋଇଛି ।

ସୂର୍ଯ୍ୟକାନ୍ତମଣିର ନିମ୍ନଦେଶରେ ତୁଳା ରଖିଲେ ସେଥିରେ ଅଗ୍ନି ଲାଗିଯାଏ । ପୁଣି ସମୟ ସମୟରେ ଅଗ୍ନି ଲାଗିବାକୁ ବିଳମ୍ବ ଘଟେ । କାରଣ, ତାର ରଶ୍ମିରେଖା କେନ୍ଦ୍ରୀଭୂତ ହୋଇ ନ ଥିଲେ ଅର୍ଥାତ୍ ଫୋକସ୍ ଠିକ୍ ହୋଇ ନ ଥିଲେ ସେଥିରେ ଅଗ୍ନି ଲାଗେ ନାହିଁ । ଇତସ୍ତତଃ ବିକ୍ଷିପ୍ତ ସହସ୍ରମୁଖ ସୂର୍ଯ୍ୟକିରଣ ପଥରର ଶକ୍ତିରେ ଏକକୈନ୍ଦ୍ରିକ ହେବାରୁ ତାହାର କେନ୍ଦ୍ରସ୍ଥାନଟିରେ ନିଆଁ ଜଳିଉଠିଲା । ସେହିପରି ଇତସ୍ତତଃ ବିକ୍ଷିପ୍ତ ଚିତ୍ତବୃତ୍ତିକୁ ଏକକୈନ୍ଦ୍ରିକ କରିପାରିଲେ ସମସ୍ତ ସାଧନାରେ ସିଦ୍ଧିଲାଭ କରାଯାଇପାରେ । ଆର୍ଯ୍ୟଋଷିଗଣ ସୂର୍ଯ୍ୟକାନ୍ତମଣିଦ୍ୱାରା ସୂର୍ଯ୍ୟକିରଣକୁ କେନ୍ଦ୍ରୀକୃତ କରି ତଦ୍ୱାରା ତୃଣପୁଞ୍ଜ ଦଗ୍ଧ ହେବାର ଦେଖି ସର୍ବଜ୍ଞତ୍ୱ ଶିକ୍ଷା କରିଥିଲେ ।

ଚିତ୍ତର ଏକାଗ୍ରତା ଲାଭ କରିପାରିଲେ ମାନବ-ଜୀବନ ସାର୍ଥକ ହୁଏ । ଏବଂବିଧ ସାଧକଙ୍କର ସିଦ୍ଧି କରତଳଗତ । ଘରେ ବସି ଉପର୍ଯ୍ୟୁକ୍ତ ପ୍ରକାରରେ ଏକାଗ୍ରଚିତ୍ତରେ ଅବିଚ୍ଛିନ୍ନ ତୈଳଧାରାସଦୃଶ ପ୍ରବାସୀ ବନ୍ଧୁଙ୍କୁ ଚିନ୍ତା କରନ୍ତୁ । ବନ୍ଧୁ ଯେତେ ଦୂରରେ ଅବସ୍ଥାନ କରୁଥିଲେ ମଧ୍ୟ ମୁହୂର୍ତ୍ତକ ମଧ୍ୟରେ ନୟନଗୋଚର

ହେବେ । ଏହିପରି ଭାବରେ ଦେବଦେବୀ ବା ଦେବଲୋକ ଦର୍ଶନ ହୋଇପାରେ ।

ଚିତ୍ତର ଏକାଗ୍ରତା-ସାଧନରେ ସିଦ୍ଧି ଲାଭ କଲେ ଜଗତରେ ଅପ୍ରାପ୍ତ ଓ ଦୁଷ୍ପ୍ରାପ୍ୟ ହୋଇ କିଛି ରହେ ନାହିଁ । ଅନନ୍ତମନା ମନ ଅନନ୍ତ ଦିଗରେ ବିକ୍ଷିପ୍ତ । ସେହି ଗତି ରୋଧ କରି ତାକୁ ଗୋଟିଏ ଦିଗକୁ ଚାଳିତ କରିପାରିଲେ ଅଲୌକିକ ଶକ୍ତି ଲାଭ କରାଯାଇଥାଏ । ଭାରତୀୟ ମୁନିଋଷିମାନେ ଏହି ସାଧନାବଳରେ ମାନବକୁ ପାଷାଣରେ, କାଷ୍ଠନୌକାକୁ ସ୍ୱର୍ଣ୍ଣନୌକାରେ, ମୂଷିକକୁ ବ୍ୟାଘ୍ରରେ ପରିଣତ କରିପାରୁଥିଲେ ।

ଇଚ୍ଛାଶକ୍ତିପ୍ରଭାବରେ ମୁହୂର୍ତ୍ତକ ମଧ୍ୟରେ ରୋଗୀର ରୋଗ ଆରୋଗ୍ୟ କରାଯାଇପାରେ; ଗଗନର ନକ୍ଷତ୍ରଗଣଙ୍କୁ ଭୂତଳକୁ ଅଣାଯାଇପାରେ; ଜ୍ୟେଷ୍ଠର ଦାବଦଗ୍ଧ ଆକାଶରେ ନବୀନ ନୀରଦମାଳା ସୃଷ୍ଟି କରାଯାଇପାରେ; ନବଦ୍ୱୀପରେ ବସି ବୃନ୍ଦାବନର ସମ୍ବାଦ ଅଣାଯାଇପାରେ । ଫଳରେ ସମସ୍ତ ଅସାଧ୍ୟ ସୁସାଧ୍ୟ ହୁଏ ।

ଅହୋରାତ୍ର ଗୋଟିଏ ବିଷୟରେ ମନ ରଖିବାର କ୍ଷମତା ହେଲେ ତାଦୃଶ ଚିତ୍ତରେ ଯେଉଁ ତତ୍ତ୍ୱବିଷୟକ ଜ୍ଞାନ ହୁଏ, ତାହା ମଧ୍ୟ ଅହୋରାତ୍ର ମନରେ ଜାଗରିତ ଥାଏ; କେବେହେଲେ ବିସ୍ମୃତି ଘଟେ ନାହିଁ । ଏହା ପ୍ରକୃତ ପ୍ରଜ୍ଞା ।

## ପାଶ୍ଚାତ୍ୟ ସାଧନା

ପାଶ୍ଚାତ୍ୟ ନରନାରୀଗଣ ସାଧନାରେ ଏକାଗ୍ରତା ଶକ୍ତି (Will Force) ଲାଭ କରି ଜଗତ୍‌ର ନରନାରୀଙ୍କୁ ମୁଗ୍ଧ ଓ ଚମତ୍କୃତ କରିଦେଉଛନ୍ତି । ମାଡ଼ାମ୍ ବ୍ଲେଭେସ୍କି, କର୍ଣ୍ଣେଲ ଆଲ୍‌କଟ୍ ପ୍ରଭୃତି ବ୍ୟକ୍ତିମାନେ ଏ ଦେଶକୁ ଆସି କେତେ ଅଦ୍ଭୁତ କାଣ୍ଡ ଦେଖାଇ ଆମମାନଙ୍କୁ ମୁଗ୍ଧ କରୁଛନ୍ତି । ଅନେକେ ତାହା ସ୍ୱଚକ୍ଷୁରେ ପ୍ରତ୍ୟକ୍ଷ କରୁଛନ୍ତି ।

ପାଶ୍ଚାତ୍ୟ ଦେଶୀୟଗଣ ମେସ୍‌ମେରିଜମ୍, ମିଡ଼ିୟମ୍, ହିପନୋଟିଜମ୍, ମାନସିକ ବାର୍ତ୍ତାବିଜ୍ଞାନ, ସାଇକୋପାଥି, କ୍ଲେରୋଭଏନ୍‌ସ୍ ପ୍ରଭୃତି ଅଦ୍ଭୁତ କାଣ୍ଡ ଦେଖାଇ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରୁଛନ୍ତି । ତାହାସବୁ ଏହି ଇଚ୍ଛାଶକ୍ତି ବଳରେ ସମ୍ଭବ ହୋଇଥାଏ । ଏହିଭଳି ଅତ୍ୟାଶ୍ଚର୍ଯ୍ୟ ଶକ୍ତି ଲାଭ କରିବା ତ ବଡ଼କଥା ନୁହେଁ । ମନୁଷ୍ୟ ଇଚ୍ଛା କଲେ ନରଦେହରେ ମଧ୍ୟ ଦେବତ୍ୱ ଲାଭ କରିପାରେ ।

ହିନ୍ଦୁଶାସ୍ତ୍ରରେ ଏପରି ଶତ-ଶତ ଉଦାହରଣ ଥିବାସ୍ଥଳେ ବିଦେଶୀୟ ଉଦ୍ୟମ କଥା ଲିପିବଦ୍ଧ କରିବା ଦେଖି କେହି ଯେପରି କ୍ଷୁବ୍ଧ ନ ହୁଅନ୍ତି । ବର୍ତ୍ତମାନ

କାଳରେ ଏହି ପ୍ରଥା ପ୍ରଚଳିତ । ଦେଶୀୟ ଯୂଇ, ଚାମେଲିର ଆଦର ନାହିଁ; କିନ୍ତୁ ସେ ଫୁଲ ବିଦେଶକୁ ଯାଇ ଏସେନ୍‌ସ୍ ହୋଇ ଆସିଲେ ନବ୍ୟସଭ୍ୟ ବାବୁଗଣ ଯତ୍ନରେ, ଆଦରରେ ତାହା ବ୍ୟବହାର କରିଥାନ୍ତି । ମୁଁ ସେହି ସଭ୍ୟସମ୍ମତ ସନାତନପ୍ରଥା ଅକ୍ଷୁଣ୍ଣ ରଖିବାକୁ ପାଶ୍ଚାତ୍ୟ ଉଦାହରଣ ସନ୍ନିବେଶିତ କଲି । ଏଥିରେ କେହି ବିରକ୍ତ ହୋଇ ଆରକ୍ତନୟନରେ ଶକ୍ତବାକ୍ୟ ବ୍ୟକ୍ତ କରନ୍ତୁ ନାହିଁ । ଆଶା କରେ, ପାଠକ-ପାଠିକାମାନେ ସୁସଂଯତ ଚିତ୍ତରେ କ୍ରିୟା ଅନୁଷ୍ଠାନ କରି ଚିତ୍ତର ଏକାଗ୍ରତା ସାଧନ କରିବେ ।

ଗୋଟିଏ ବସ୍ତୁକୁ ଦଶ ଜଣ ଦଶଆଡ଼େ ଟାଣିଲେ ତାହାର ଗତି ସମଭାବରେ ଥାଏ; କିନ୍ତୁ ଦଶ ଜଣ ଗୋଟିଏ ଦିଗରେ ଆକର୍ଷଣ କଲେ ତାହାର ଗତି କିପରି ହେବ, ସହଜରେ ଅନୁମେୟ । ତଦ୍ରୂପ ଅନନ୍ତ ଦିଗଗାମୀ ମନର ଗତିରୋଧ କରି ସର୍ବତୋଭାବରେ ଏକମୁଖୀ କରିପାରିଲେ ଜଗତ୍‌ରେ ଅସାଧ୍ୟ ହୋଇ କିଛି ରହିବ ନାହିଁ । ତେବେ ପ୍ରଣାଳୀବଦ୍ଧକ୍ରମେ ବିଚାର ଓ ଯୁକ୍ତିସହ ଏହା କରିବାକୁ ହେବ । ବାହ୍ୟବିଜ୍ଞାନରେ ଯେଉଁ ଯୁକ୍ତି ଓ ଯେଉଁ ବିଚାରର ପ୍ରୟୋଜନ, ଏଥିରେ ମଧ୍ୟ ତାହା ଆବଶ୍ୟକ ।

## ବିଚ୍ଛିନ୍ନ ଅବସ୍ଥା

ଆମେମାନେ କଳ୍ପନା ସାହାଯ୍ୟରେ ଯାହା ଅଛି ବୋଲି ଧାରଣା କରିପାରୁଛୁ, ଯୋଗବଳରେ ତାହାସବୁ ଲାଭ ହୋଇପାରେ । ସରଳଭାବରେ ବିବେଚନା କରି ଦେଖିଲେ ଏହା ଅସମ୍ଭବ ବୋଲି ବୋଧ ହେବ ନାହିଁ । ମାନବାତ୍ମା ଯେତେବେଳେ ପରମାତ୍ମାଙ୍କର ଅଂଶ, ସେତେବେଳେ ପରମାତ୍ମାଙ୍କର ଯେଉଁ ଯେଉଁ ଗୁଣ ଓ ଶକ୍ତି ଅଛି, ମାନବାତ୍ମାଠାରେ ତାହା ରହିବା ଉଚିତ । ସ୍ଥାନ ଓ ଅବସ୍ଥାଭେଦରେ ତାରତମ୍ୟ ଲକ୍ଷିତ ହୁଏ । ନଦୀର ଜଳ, ସରୋବରର ଜଳ, ମେଘର ଜଳ, ଏକ ଜଳ ହେଲେ ମଧ୍ୟ ପ୍ରତ୍ୟେକର ବିଶେଷ ବିଶେଷ ବିଭିନ୍ନତା ଅଛି । ସେହିପରି ପରମାତ୍ମା ଓ ମାନବାତ୍ମାଙ୍କର ମୂଳ ଏକ ହେଲେ ମଧ୍ୟ ସ୍ଥାନବିଶେଷରେ ଅବସ୍ଥିତ ବୋଲି ଭିନ୍ନ ଭିନ୍ନ ଗୁଣପ୍ରାପ୍ତ ହୋଇଅଛି । ମାନବ ଶରୀରଭିତରେ ଆବଦ୍ଧ ହେଲେ ଆତ୍ମାର ଗୋଟିଏ ଭାବ ହୁଏ; ଶରୀର ବାହାରେ ରହିଲେ ଅନ୍ୟ ଗୋଟିଏ ଭାବ ହୁଏ ।

ଏହା ଯେତେବେଳେ ପ୍ରକୃତ ସତ୍ୟ, ସେତେବେଳେ କୌଣସି ପ୍ରକାରେ ମାନବାତ୍ମାକୁ ମାନବ-ଶରୀରରୁ ବିଚ୍ଛିନ୍ନ କରିପାରିଲେ ତାହା ପରମାତ୍ମାଙ୍କ ଶକ୍ତି

ପ୍ରାପ୍ତ ହେବ । ଏଥିରେ ଆଉ ଆଶ୍ଚର୍ଯ୍ୟ କ'ଣ ଅଛି ? ଯୋଗର ମୁଖ୍ୟ ଉଦ୍ଦେଶ୍ୟ ଆତ୍ମାକୁ ମାନବ-ଶରୀରରୁ ବିଚ୍ଛିନ୍ନ କରି ପରମାତ୍ମାଙ୍କ ସହିତ ସଂଯୁକ୍ତ କରିବା । ଯୋଗବଳରେ ଯେତେବେଳେ ଏହା ସୁସିଦ୍ଧ ହୋଇପାରେ, ସେତେବେଳେ ମାନବର ଐଶ୍ୱରିକ ଶକ୍ତି ଲାଭ କରିବା କୌଣସି ପ୍ରକାରରେ ଅସମ୍ଭବ ହେବ ନାହିଁ ।

ଥରେ କୌଣସି ପ୍ରକାରେ ମାନବାତ୍ମାକୁ ଶରୀରରୁ ବିଚ୍ଛିନ୍ନ କରିପାରିଲେ ମାନବାତ୍ମା ଠିକ୍ ପରମାତ୍ମାଙ୍କର ଅବସ୍ଥା ପ୍ରାପ୍ତ ହେବ—ଯୋଗର ଏହା ହିଁ ଉଦ୍ଦେଶ୍ୟ ।

ଶରୀରରେ ପଞ୍ଚଇନ୍ଦ୍ରିୟ ପ୍ରଧାନ—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ । ଏହି ପଞ୍ଚଇନ୍ଦ୍ରିୟ ସାହାଯ୍ୟରେ ଆମେ ପୃଥିବୀର ସବୁ ପଦାର୍ଥର ଅନୁଭୂତି ଲାଭ କରିଥାଉଁ, କିନ୍ତୁ ଆମେ ଏହା ମଧ ଜାଣୁ ଯେ ଚକ୍ଷୁ ନ ଥିଲେ ମଧ ଦେଖାଯାଏ, କର୍ଣ୍ଣ ନ ଥିଲେ ମଧ ଶୁଣାଯାଏ, ଜିହ୍ୱା ନ ଥିଲେ ମଧ ଆସ୍ୱାଦ ମିଳିଥାଏ ଇତ୍ୟାଦି । ସ୍ୱପ୍ନ ସମୟରେ ଇନ୍ଦ୍ରିୟଗୁଡ଼ିକର ଅସ୍ତିତ୍ୱ ନ ଥିଲେ ମଧ ଏହିସବୁ ଇନ୍ଦ୍ରିୟର କାର୍ଯ୍ୟ ଅନୁଭୂତ ହୁଏ । ଏଥିରୁ ସ୍ପଷ୍ଟ ବୁଝାଯାଏ ଯେ ଶରୀର ନ ଥିଲେ ମଧ ଆତ୍ମାର ଅସ୍ତିତ୍ୱ ଅଛି ।

ସ୍ୱପ୍ନରେ ମନୁଷ୍ୟର ଦୂରଦୃଷ୍ଟି ଓ ଭବିଷ୍ୟତଜ୍ଞାନ ଜନ୍ମେ । ଭବିଷ୍ୟତରେ ଯେଉଁ ଘଟଣା ଘଟିବ, ତାହା ଆମେ ସ୍ୱପ୍ନଦ୍ୱାରା ବହୁପୂର୍ବରୁ ଜାଣିପାରୁ । ଏଥିରୁ ଜଣାଯାଏ ଯେ ଶରୀରଠାରୁ ଟିକିଏ ବିଚ୍ଛିନ୍ନ ହେଲାକ୍ଷଣି ମାନବାତ୍ମାର ଶକ୍ତି ବୃଦ୍ଧି ପାଉଛି । ଅତଏବ ଯୋଗବଳରେ ମାନବାତ୍ମାକୁ ସଂପୂର୍ଣ୍ଣଭାବରେ ବିଚ୍ଛିନ୍ନ କରିପାରିଲେ ସର୍ବବିଧ ଐଶ୍ୱରିକ ଶକ୍ତି ଲାଭ କରିବା କୌଣସି ପ୍ରକାରେ ଅସମ୍ଭବ ହୁଏ ନାହିଁ ।

## ସ୍ଥୂଳ, ସୂକ୍ଷ୍ମ, କାରଣ

ଏହି ସ୍ଥୂଳଦେହଭିତରେ ଆଉ ଗୋଟିଏ ସୂକ୍ଷ୍ମଦେହ ଅଛି । ସୂକ୍ଷ୍ମଦେହର ଆକର୍ଷଣ ଊର୍ଦ୍ଧ୍ୱଆଡ଼କୁ ଆଉ ସ୍ଥୂଳଦେହର ଆକର୍ଷଣ ନିମ୍ନ ଆଡ଼କୁ । ଅନାହତପଦ୍ମ ଏ ଦୁଇ ଦେହର ସନ୍ଧିସ୍ଥଳ । ଏହିଠାରେ ଚାବି ଦେଲାପରି ହୋଇଛି । ତଦ୍ୱାରା ଦୁଇ ଦେହର ସାମଞ୍ଜସ୍ୟ ରକ୍ଷା ହୋଇଆସିଛି । କେହି ସେହି ଚାବି ଘୂରାଇଦେଲେ ଦୁଇ ଦେହ ପୃଥକ୍ ହୋଇଯାଇପାରେ ।

ତଳର ତିନୋଟି ପଦ୍ମ ମୂଳାଧାର, ସ୍ୱାଧିଷ୍ଠାନ ଓ ମଣିପୁର ଅଧୋମୁଖୀ । ପୁଣି ସେମାନଙ୍କ ଆକର୍ଷଣରେ ଉପରର ପଦ୍ମଗୁଡ଼ିକ ବେଳେବେଳେ ଅଧୋମୁଖୀ

ଆଉ କେତେବେଳେ ବା ଊର୍ଦ୍ଧ୍ୱମୁଖୀ ହୁଅନ୍ତି । ପଦ୍ମମାଳାର ଗ୍ରନ୍ଥିରେ ଅନାହତପଦ୍ମରେ ଉଭୟ ଦେହର ସାମ୍ୟାବସ୍ଥା ।

ଯେପରି ଜଗତର ସ୍ଥୂଳ, ସୂକ୍ଷ୍ମ, କାରଣ ବା ବୌଦ୍ଧ ଓ ମହାକାରଣ, ସେହିପରି ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ ଅବସ୍ଥା ଜୀବର ନିତ୍ୟାନୁଭୂତି । ସ୍ଥୂଳଶରୀର ସହିତ ମଧ୍ୟ ଏହି କ୍ରମ ଠିକ୍ ହୁଏ । ମନୁଷ୍ୟଦେହର କଟିଦେଶ ପର୍ଯ୍ୟନ୍ତ ସ୍ଥୂଳଜଗତ୍‌ର ପ୍ରତୀକ । ତା'ଭିତରେ ବିଶେଷ କୌଣସି ଯନ୍ତ୍ରାଦି ନାହିଁ । କେବଳ ଆହାର, ନିଦ୍ରା, ମୈଥୁନରୂପୀ ଜୀବଭାବର କେନ୍ଦ୍ର କଟିଠାରୁ ଗଳଦେଶପର୍ଯ୍ୟନ୍ତ ସୂକ୍ଷ୍ମାବସ୍ଥାସହିତ ସମାନ । ମସ୍ତକ କାରଣ, ତା ଊର୍ଦ୍ଧ୍ୱରେ ମହାକାରଣ ।

ସ୍ଥୂଳଦେହର ସୂକ୍ଷ୍ମଦେହ ମାତୃଗର୍ଭସ୍ୱରୂପ । ମାତୃଗର୍ଭରେ ଯେପରି ଦେହର ସଂପୂର୍ଣ୍ଣ ପୁଷ୍ଟି ବିଧାନ ହେଲେ ତାହା ମାତୃଗର୍ଭରୁ ବାହାର ହୋଇପଡ଼େ, ସେହିପରି ସୂକ୍ଷ୍ମଦେହୀ ମଧ୍ୟ ଉପଯୁକ୍ତ ସମୟ ହେଲେ ଦେହରୂପ ଗର୍ଭରୁ ବାହାର ହୋଇଯାଏ । ଜୀବର ଜନ୍ମସମୟରେ ଯେପରି ମାଆର ନାଭିନାଡ଼ୀ ସହିତ ଶିଶୁର ସଂଯୋଗ ଥାଏ ଏବଂ ତାହା ଜନ୍ମପରେ କାଟିଦେବାକୁ ହୁଏ, ସୂକ୍ଷ୍ମଦେହୀ ମଧ୍ୟ ସେହିପରି ଶରୀରରୁ ବାହାରିଲେ ଉଭୟ ଦେହ ମଧ୍ୟରେ ସୂତାପରି ଗୋଟାଏ ସଂଯୋଗସୂତ୍ର ଥାଏ । ତାହା ଛିଡ଼ି ନ ଗଲା ପର୍ଯ୍ୟନ୍ତ ସୂକ୍ଷ୍ମଦେହୀ ପୁଣି ଦେହକୁ ଫେରିଆସିପାରେ ।

ସୂକ୍ଷ୍ମଦେହ ପୁଣି କାରଣଦେହର ଗର୍ଭସ୍ୱରୂପ । ଏହିଭାବରେ କ୍ରମେ ଉପର ଆଡ଼କୁ ଉଠିଛି । ଆପାଦମସ୍ତକ ସମସ୍ତ ସ୍ଥୂଳ, ପୁଣି ମୂଳାଧାରଠାରୁ ମସ୍ତକପର୍ଯ୍ୟନ୍ତ ସୂକ୍ଷ୍ମ; ମସ୍ତକ ହେଲା କାରଣ ।

ସ୍ଥୂଳ ଯାହା ଦେଖିପାରେ, ସୂକ୍ଷ୍ମ ତାହା ଅପେକ୍ଷା ବହୁ ଅଧିକ ଦେଖିପାରେ, ଏପରିକି ଏ ବିଷୟରେ ସୂକ୍ଷ୍ମସହିତ ସ୍ଥୂଳର ତୁଳନା ହିଁ କରାଯାଇ ନ ପାରେ । ସ୍ଥୂଳଦେହ ଥିବା କାରଣରୁ ଆମେମାନେ ଏ ଜଗତ୍‌ର ଅତି ଅଳ୍ପ ଅଂଶ ଦେଖିପାରୁ ।

ଆମେମାନେ ଚିନ୍ତାକରିବା ମାତ୍ରକେ ଜଗତ୍‌ରେ ଯେ କୌଣସି ଅଂଶରେ ଉପସ୍ଥିତ ହୋଇପାରନ୍ତେ; କିନ୍ତୁ ସ୍ଥୂଳଦେହରେ ଆବଦ୍ଧ ଥିବାରୁ ଇଚ୍ଛାନୁରୂପରେ ତାହା ହୋଇପାରେ ନାହିଁ । ସୂକ୍ଷ୍ମ ଅପେକ୍ଷା କାରଣ ଅବସ୍ଥାରେ ଆହୁରି ଅଧିକ ଦର୍ଶନ ଓ ଅନୁଭୂତି ହୋଇଥାଏ । କାରଣ, ଉଚ୍ଚସ୍ତରର ଉପଲବ୍ଧି ଯେତେ ହେବ, ଦର୍ଶନ ଓ ଅନୁଭୂତି ସେତେ ବୃଦ୍ଧି ପାଇବ ।

## ଷଡ଼୍‌ଚକ୍ରଭେଦ

ସାଧନାବଳରେ ଷଡ଼୍‌ଚକ୍ର ଭେଦ ହୁଏ; କିନ୍ତୁ ସପ୍ତମ ଚକ୍ରଭେଦ କ୍ରିୟାଉପରେ ନିର୍ଭର କରେ ନାହିଁ । ଯୋଗୀଙ୍କର ଧ୍ୟାନ ସାଧାରଣତଃ ଦୁଇ ପ୍ରକାର । ପ୍ରଥମଟି ନିର୍ଲକ୍ଷ୍ୟ, ଅପରଟି ବିଶେଷ ଲକ୍ଷ୍ୟ । ଯାହାଙ୍କର ବିଶେଷ ଭାବ ଲକ୍ଷ୍ୟ ହୁଏ, ସେ ବିଶ୍ୱବ୍ରହ୍ମାଣ୍ଡର ସମ୍ବାଦ ପାଇବେ ନାହିଁ; ପୁଣି ଯେ ନିର୍ଲକ୍ଷ୍ୟ, ସେ ବିଶେଷ ଭାବର ବିଷୟ ଜାଣିପାରିବେ ନାହିଁ ।

ଦ୍ୱିଦଳ ଭେଦ ହେଲେ ଭଗବତ୍‌ଲୋକର ସମ୍ବାଦ ଜଣାଯାଏ, ସତ; କିନ୍ତୁ ତାହାଭିତିରେ ପ୍ରବେଶ କରିହୁଏ ନାହିଁ । ଯେପରି ସମୁଦ୍ରକୂଳକୁ ଗଲେ କେବଳ ସମୁଦ୍ରର ସମ୍ବାଦ ଜାଣିଆସିବ, ସେହିପରି ସମୁଦ୍ରରେ ପଶିଲେ ଯାଇ ସେଥିରେ ବୁଡ଼ିପାରିବ ।

ଯୋଗୀ ସମାଧିସ୍ଥ ରହିଥିବା ସମୟରେ ଯେତେବେଳେ ଦ୍ୱିଦଳ ପାର ହୋଇଯାନ୍ତି, ସେତେବେଳେ ମହାପ୍ରଳୟରେ ମଧ୍ୟ ତାଙ୍କର ଲୟ ହୁଏ ନାହିଁ । ଯେତେଦିନଯାଏ ଧ୍ୟାନ-ଅବସ୍ଥାରେ ନିଜର ସତ୍ତାଜ୍ଞାନ ଥିବ, ସେତେଦିନ ପର୍ଯ୍ୟନ୍ତ ବୁଝିବାକୁ ହେବ ଯେ ଧ୍ୟାନର ଉଚ୍ଚାବସ୍ଥା ଲାଭ ହୋଇନାହିଁ । ଧ୍ୟାନର ଉଚ୍ଚାବସ୍ଥାରେ ସାଧକଙ୍କର ନିଜର ସତ୍ତା ଲୋପ ହୋଇଯାଏ; କ୍ରମେ ଏକମାତ୍ର ଧ୍ୟେୟବସ୍ତୁ ହିଁ ଫୁଟିଉଠନ୍ତି । ଧ୍ୟାନର ଆହୁରି ଅଧିକ ପରିପକ୍ୱ ଅବସ୍ଥାରେ ଧ୍ୟେୟ ବସ୍ତୁର ନାମ-ରୂପ ଲୟ ହୋଇ ତାହାର ସ୍ୱରୂପ ବା ସ୍ୱରୂପଜ୍ଞାନ ପ୍ରକାଶିତ ହେବ ।

ଜ୍ଞାନର ସପ୍ତଭୂମିସହିତ ସାତଗୋଟି ଚକ୍ରର ସାମଞ୍ଜସ୍ୟ ହୁଏ । ଗୋଟିଏ ଗୋଟିଏ ଚକ୍ର ଭେଦ କରି କୁଣ୍ଡଳିନୀ ଉର୍ଦ୍ଧ୍ୱକୁ ଯେତେ ଉଠିବ, ସେହି ସେହି ଭୂମିରେ ଜ୍ଞାନ ସେତେ ପ୍ରକାଶିତ ହେବ । କୁଣ୍ଡଳିନୀକୁ ନେଇ ସହସ୍ରାରଠାରେ ମିଳନ କରାଇବା ହିଁ ସାଧନାର ଚରମ ଅବସ୍ଥା । ସେ ଅବସ୍ଥାରେ ଉପସ୍ଥିତ ହେଲେ କେହି ଆତ୍ମୋପଲବ୍ଧି କରନ୍ତି, କେହି ବ୍ରହ୍ମୋପଲବ୍ଧି ଆଉ କେହି ବା ଭଗବତ୍‌ଦର୍ଶନ କରନ୍ତି ।

## ନିର୍ବିକଳ୍ପ ଅବସ୍ଥା

ଯୋଗଦ୍ୱାରା ଯେଉଁ ସମାଧି ହୁଏ, ସେଥିରେ ଗୋଟିଏ ମାତ୍ର ବ୍ରହ୍ମାଣ୍ଡର ଜ୍ଞାନ ହୋଇପାରେ । ବେଦାନ୍ତଜ୍ଞାନ ହିଁ ପ୍ରକୃତ ସ୍ୱରୂପତତ୍ତ୍ୱ । ବେଦାନ୍ତର ଶ୍ରବଣ,

ମନନ, ନିଦିଧ୍ୟାସନ ଓ ବିଚାରଦ୍ୱାରା ପ୍ରତିଷ୍ଠା ଲାଭ କରି ତା'ପରେ ସମାଧି ଆଣିବାକୁ ଚେଷ୍ଟା କଲେ ଯଥାର୍ଥ ସ୍ୱରୂପଜ୍ଞାନ ବା ପୂର୍ଣ୍ଣ ସମାଧି ହୋଇଥାଏ । ବେଦାନ୍ତ ବେଦର ଅନ୍ତ, ସମସ୍ତ ଜ୍ଞାନର ଚରମାବସ୍ଥା । ଜାଗତିକ ବସ୍ତୁରୁ ଇନ୍ଦ୍ରିୟବୃତ୍ତି ରୋଧ କଲେ ମୁଁ ବା ଅହଂର ଅନୁଭବ ରହେ । ତାହାକୁ ଧରି ବିଚାର-ପଥରେ ବେଦାନ୍ତ ଆଡ଼କୁ ଅଗ୍ରସର ହେବାକୁ ହୁଏ ।

ନିରାଲମ୍ବ ନର୍ବିକଳ୍ପ ଅବସ୍ଥାରେ ପ୍ରକୃତ ସତ୍ୟ ଅର୍ଥାତ୍ ବେଦାନ୍ତଜ୍ଞାନ ଆପେ ଆପେ ଆପେ ଲାଭ ହୁଏ । ସେ ସମାଧିପରେ ଜୀବସ୍ତର ଆଉ ଫେରି ଆସେ ନାହିଁ । ସଂକଳ୍ପ ଥିଲେ ଈଶ୍ୱରସ୍ତର ଫେରିଆସେ । ଭକ୍ତ ଯଦି ଜ୍ଞାନୀଙ୍କୁ କହନ୍ତି ଯେ ମୁଁ ଦ୍ୱିଭୁଜ ମୁରଲୀଧରଙ୍କୁ ଦେଖିଛି, ଜ୍ଞାନୀ କହିବେ, ତୁମେ ତୁମର ମନକୁ ମାତ୍ର ଦେଖିଛ କିମ୍ବା ବ୍ରହ୍ମଙ୍କୁ ତୁମ ବ୍ରହ୍ମ-ଆବରଣରେ ଆବରିତ କରି ଦେଖିଛ । ପ୍ରକୃତ ସତ୍ୟ ଦେଖିବାକୁ ଆହୁରି ବାକୀ ଅଛି ।

କୌଣସି କୌଣସି ଜ୍ଞାନପନ୍ଥୀଙ୍କ ମତ ଯେ—ନିର୍ବିକଳ୍ପ ସମାଧିରେ ଜଗତ୍‌ଜ୍ଞାନ ରହେ ନାହିଁ, ଜଗତ୍ ଦେଖାଯାଏ ନାହିଁ । ତାହା ହୋଇପାରିଲେ ଜ୍ଞାନୀଙ୍କ ମୁକ୍ତିସହିତ ଜଗତ୍‌ର ମୁକ୍ତି ମଧ୍ୟ ହୋଇଯିବ, ଜଗତ୍ ମଧ୍ୟ ସେହି ଜ୍ଞାନୀଙ୍କଠାରେ ଲୟପ୍ରାପ୍ତ ହେବ । ଯଦି ଜ୍ଞାନୀଙ୍କର ସତ୍ୟଦର୍ଶନ ସତ୍ୟ ହୁଏ, ତେବେ ସତ୍ୟଦର୍ଶନରେ ଏହି ଜଗତ୍‌ର ସତ୍ୟ ମଧ୍ୟ ଜ୍ଞାନୀ ନ ଦେଖିବେ କାହିଁକି ? ଯଦି ନ ଦେଖନ୍ତି, ତେବେ ବୁଝିବାକୁ ହେବ ଯେ ଠିକ୍ ନିର୍ବିକଳ୍ପ ସମାଧି ହୋଇ ନାହିଁ ।

ସାଧାରଣତଃ ଲୋକେ ଗୋଟିଏ ସୁନ୍ଦର ସ୍ଥାନ ଦେଖିଲେ ମୋହିତ ହୋଇଯାଆନ୍ତି । ଆଉ ଯଦି ସମସ୍ତ ଭାରତବର୍ଷ ଯୁଗପତ୍ କାହା ଆଖିଆଗରେ ଭାସିଉଠେ, ତାହାହେଲେ ସେ ତ ଆତ୍ମହରା ହୋଇଯିବେ ! ସେତେବେଳେ କ'ଣ ଆଉ ନିଜର ଭାବନା ରହିବ ? ନିଜପ୍ରତି ସେତେବେଳେ ଆଦୌ ଦୃଷ୍ଟି ରହିବ ନାହିଁ । ଦୃଷ୍ଟିର ଏତିକି ବିସ୍ତାର ହେଲେ ଯଦି ଏପରି ହୁଏ, ତେବେ ବିଶ୍ୱବ୍ରହ୍ମାଣ୍ଡ ଦର୍ଶନ କଲେ ତ କହିବା କଥା ନୁହେଁ ।

ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନତି ଫାନୁସ୍‌ପରି । ଫାନୁସ୍‌କୁ ଛାଡ଼ିଦେଲେ ତାହା ଯେପରି ତାର ସମଶ୍ରେଣୀର ବାୟୁସ୍ତରପର୍ଯ୍ୟନ୍ତ ଉଠିଯାଇ ସ୍ଥିର ହୋଇଯାଏ, ଏହା ମଧ୍ୟ ସେହିପରି । ଯାହାଙ୍କର ମଇଳା ମାଟି ଯେତେ ପରିମାଣରେ ଦୂର ହୋଇଛି, ସେ ସେତିକି ଉପରକୁ ଉଠି ସ୍ଥିର ହୋଇଯାନ୍ତି, ପୁଣି କ୍ରମେ କ୍ରମେ ଉପରକୁ

ଉଠନ୍ତି । ଏହିଭାବରେ କ୍ରମେ ମହଲୋକ, ଜନଲୋକ, ତପଃଲୋକ ପ୍ରଭୃତିର ତତ୍ତ୍ୱ ଜାଣିପାରନ୍ତି । ଯୋଗୀଙ୍କର ଅବସ୍ଥା ମଧ୍ୟ ସେହିପରି । ଯାହାଙ୍କର ଯେତିକି ସାମର୍ଥ୍ୟ, ସେ ସେହି ଚକ୍ରପର୍ଯ୍ୟନ୍ତ ଉଠିପାରନ୍ତି । ବ୍ରହ୍ମାଣ୍ଡକଟାହ ଭେଦ କଲେ ତାଙ୍କୁ ଆଉ ଫେରିବାକୁ ହୁଏ ନାହିଁ ।

ଆମେମାନେ ଚକ୍ଷୁ ବୁଜିଲେ ଯେଉଁ ଅନ୍ଧକାର ଦେଖୁ, ତାହାହିଁ ନିରାଲମ୍ବ ଅବସ୍ଥା । ଏହା ଆମର ସ୍ୱାଭାବିକ ଅବସ୍ଥା । କିନ୍ତୁ ପ୍ରକୃତରେ ସେହି ଅବସ୍ଥା ଲାଭ ହୁଏ ନାହିଁ; କାରଣ, ନିରବଚ୍ଛିନ୍ନ ଅନ୍ଧକାର ଦେଖାଯାଏ ନାହିଁ । ବାସନା, କାମନା, ଚିନ୍ତାର ତରଙ୍ଗ ଆସି ସେହି ନିରାଲମ୍ବ ଅବସ୍ଥାକୁ ନଷ୍ଟ କରିଦିଏ ।

ସମାଧିରେ ନିଜ ଆତ୍ମା ସହିତ ପରମାତ୍ମାଙ୍କର ଯୋଗ ହୁଏ । ପ୍ରକୃତ ମୂର୍ତ୍ତିଦର୍ଶନ ସମାଧିଲାଭର ଅବସ୍ଥା । ସମାଧି ଅବସ୍ଥାରେ ବ୍ରହ୍ମସ୍ୱରୂପରେ ମଗ୍ନ ହୋଇ ଅଗାଧ ସମୁଦ୍ରରେ ବୁଡ଼ିରହି ଲୀଳା ଦର୍ଶନ ହୁଏ । ଭାବମୂଳକ ଧ୍ୟାନାବସ୍ଥା ଅପେକ୍ଷା ନିରାଲମ୍ବ ଧ୍ୟାନ ଗୋଟିଏ ସ୍ତର ଉଚ୍ଚରେ ଅବସ୍ଥିତ । ଭାବଧ୍ୟାନ ଗାଢ଼ ହେଲେ ନାମରୂପ ଲୋପ ପାଇଯାଏ; କିନ୍ତୁ ନିରାଲମ୍ବ ଧ୍ୟାନରେ ପ୍ରଥମରୁ ନାମରୂପ ଛାଡ଼ିଦେବାକୁ ହୁଏ ।

## ଯୋଗବିଭୂତି

ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି—ଜିତେନ୍ଦ୍ରିୟ, ସ୍ଥିରଚିତ୍ତ, ଜିତପ୍ରାଣ, ମୋଠାରେ ଚିତ୍ତଧାରଣକାରୀ ଯୋଗୀଙ୍କ ନିକଟରେ ଯାବତୀୟ ସିଦ୍ଧି ଉପସ୍ଥିତ ହୁଏ ।

ଯୋଗସାଧନଦ୍ୱାରା ସାଧକ ବହିର୍ଜଗତ୍ ଓ ଅନ୍ତର୍ଜଗତ୍‌ର ସମସ୍ତ ତତ୍ତ୍ୱ ଜାଣିପାରନ୍ତି, ସମସ୍ତ ରସ ଆସ୍ୱାଦନ କରିପାରନ୍ତି । ବହିର୍ଜଗତ୍ ଓ ଅନ୍ତର୍ଜଗତ୍ ଉପରେ ଅସାଧାରଣ କର୍ତ୍ତୃତ୍ୱ କରିବାର ଅଲୌକିକ କ୍ଷମତା ଲାଭ କରିପାରନ୍ତି । ସେହି କ୍ଷମତାବଳରେ ଯୋଗୀଙ୍କର ନାନାପ୍ରକାର ଅଦ୍ଭୁତ ଅଭାବନୀୟ ଶକ୍ତି ଜନ୍ମେ । ବାକ୍‌ସିଦ୍ଧି, ଇଚ୍ଛାନୁସାରେ ଗମନାଗମନ, ଦୂରଦୃଷ୍ଟି, ଦୂରଶ୍ରବଣ, ସୂକ୍ଷ୍ମଦର୍ଶନ, ପରଶରୀରେ ପ୍ରବେଶ, ଅନ୍ତର୍ଦ୍ଧାନ, ଅନ୍ତର୍ଯ୍ୟାମିତ୍ୱ, ଅଣିମାଦି ଅଷ୍ଟସିଦ୍ଧି ଲାଭ ଏବଂ ମୃତ୍ୟୁଞ୍ଜୟ ଏହି ଯୋଗସାଧନାରେ ଲାଭ ହୁଏ ।

କେବଳ ବିଭୂତିଲାଭ ବା ଅମାନୁଷିକ ଶକ୍ତିଲାଭ ଯେଉଁମାନଙ୍କର ଲକ୍ଷ୍ୟ, ଯୋଗମାର୍ଗରେ ସଂଯମ ସେମାନଙ୍କର ପ୍ରଧାନ ଅବଲମ୍ବନ । ଧ୍ୟାନ, ଧାରଣା ଓ

ସମାଧି ଏକତ୍ର ପ୍ରୟୋଗ ଗଲେ ସଂଯମ ହୁଏ। ସଂଯମଦ୍ୱାରା ସାଧକଙ୍କର କିଛି ଅସାଧ୍ୟ ରହେ ନାହିଁ। ସାମାନ୍ୟ ଶକ୍ତିଠାରୁ ଆରମ୍ଭ କରି ମହାଶକ୍ତିପର୍ଯ୍ୟନ୍ତ ସବୁ ସେହି ସଂଯମର ଅନ୍ତର୍ଗତ। ସଂଯମ-ବିଜୟରେ ଅଜ୍ଞାନ-ଅନ୍ଧକାର ବିଦୂରିତ ହୋଇ ଜ୍ଞାନାଲୋକ ପ୍ରକାଶିତ ହୁଏ।

କିନ୍ତୁ ସାବଧାନ! ଅଲୌକିକ ଶକ୍ତି ଲାଭ କରିବା ଉଦ୍ଦେଶ୍ୟରେ ଯୋଗସାଧନ କରିବା ଆଦୌ ଉଚିତ ନୁହେଁ; କାରଣ ସେଥିରେ ମାନବ-ସମାଜରେ, ଦେଶଭିତରେ ବାହାବା ମିଳିପାରେ; କିନ୍ତୁ ଏବଂବିଧ ବ୍ୟକ୍ତିଙ୍କର କୌଣସି ପ୍ରକାର ଆଧ୍ୟାତ୍ମିକ ଉନ୍ନତି ସମ୍ଭବ ହୁଏ ନାହିଁ।

ବ୍ରହ୍ମଉଦ୍ଦେଶ୍ୟରେ ଯୋଗସାଧନ ଆବଶ୍ୟକ। ବିଭୂତି ଆପଣା ମନକୁ ବିକଶିତ ହେବ। ଯୋଗାଭ୍ୟାସରେ ଆସକ୍ତିଶୂନ୍ୟ ହେବାକୁ ଯାଇ ପୁଣି ଯେପରି ଆସକ୍ତିବହ୍ନିରେ ଦଗ୍ଧ ଓ କର୍ମ-ବନ୍ଧନ ଛିନ୍ନ କରିବାକୁ ଯାଇ, କଣ୍ଟକ-ପିଞ୍ଜରରେ ଆବଦ୍ଧ ହେବାକୁ ନ ପଡ଼େ, ସେଥିପ୍ରତି ଲକ୍ଷ୍ୟ ରଖିବାକୁ ହେବ।

ଜ୍ଞେୟ ଅସୀମ ହେବାରୁ ଯୋଗୀମାନେ ସର୍ବଜ୍ଞତାକୁ ମଧ୍ୟ ତୁଚ୍ଛ କରି କୈବଲ୍ୟରୂପ ପରମପଦ ଆଶ୍ରୟ କରନ୍ତି। କୈବଲ୍ୟସଦୃଶ ଅକ୍ଷୟ ଓ ଅତିଶୟ ଅର୍ଥାତ୍ ତଦପେକ୍ଷା ଉଚ୍ଚତର ଅବସ୍ଥା ଆଉ ନାହିଁ।

## କେତେଗୋଟି ଜ୍ଞାତବ୍ୟ ବିଷୟ

ସାଧାରଣଙ୍କ ପକ୍ଷରେ ଧ୍ୟାନ ହିଁ ଶ୍ରେୟସ୍କର। ଧ୍ୟାନ ଜ୍ଞାନର ପଥ। ଏକମାତ୍ର ଧ୍ୟେୟବସ୍ତୁଠାରେ ସର୍ବଦା ଚିତ୍ତ ଲୟ କରିବାକୁ ପଡ଼ିବ, ତଦ୍‌ବ୍ୟତୀତ ଆଉସବୁ ଅଗ୍ରାହ୍ୟ କରିବାକୁ ହେବ।

ଅଧିକାଂଶ ସ୍ଥଳରେ ଯୋଗ ହିଁ ଜ୍ଞାନର ସାଧନ-ପଥ; ପୁଣି ତନ୍ତ୍ର ହିଁ ଭକ୍ତିର ସାଧନ-ପଥ।

ଅନ୍ନମୟ କୋଷ ଭେଦ ହେଲେ ପାର୍ଥିବ ବସ୍ତୁର ଆକର୍ଷଣ ରହେ ନାହିଁ। ପ୍ରାଣମୟ କୋଷ ଭେଦ ହେଲେ ଶାରୀରିକ ଉତ୍ତେଜନା ରହେ ନାହିଁ, ମନୋମୟ ସଂକଳ୍ପ-ବିକଳ୍ପ ଦୂର ହୁଏ; ବିଜ୍ଞାନମୟ କୋଷ ଭେଦ ହେଲେ ସଂଶୟବୁଦ୍ଧି ଦୂର ହୁଏ ଏବଂ ଆନନ୍ଦମୟ କୋଷ ଭେଦ ହେଲେ ପାର୍ଥିବ ଆନନ୍ଦ ଆଉ ମୁଗ୍ଧ କରିପାରେ ନାହିଁ।

ଚକ୍ଷୁ କିମ୍ବା ମନ କିଛି ଦେଖେ ନାହିଁ କିମ୍ବା ଉପଲବ୍ଧ କରେ ନାହିଁ। ପ୍ରକୃତରେ ଆତ୍ମା ହିଁ ଏସବୁର ସାହାଯ୍ୟରେ ବା ଏସବୁ ଆଧାର ମଧ୍ୟଦେଇ ଦର୍ଶନ କରିଥାଏ।

ଜ୍ୟୋତିଃଦର୍ଶନରେ ମଧ୍ୟ ପ୍ରକାରଭେଦ ଅଛି। ରକ୍ତବର୍ଣ୍ଣ ଜ୍ୟୋତିଃ ରଜୋଗୁଣସମ୍ପନ୍ନ। ସେଥିରେ ଦେବଦର୍ଶନ ହୋଇଥାଏ। ଶୁଭ୍ରଜ୍ୟୋତିଃ ମାତ୍ରେ ସତ୍ତ୍ୱଗୁଣର ପ୍ରକାଶକ। ସେଥିରେ କ୍ରମେ ଆତ୍ମଦର୍ଶନ ହୁଏ।

ମାଟିଉପରେ ବସି ଯୋଗ ସାଧନ କରିବା ଉଚିତ ନୁହେଁ। କାରଣ, ଯୋଗସାଧନକାଳରେ ଶରୀରରେ ଯେଉଁ ତଡ଼ିତ୍‌ଶକ୍ତି ଉତ୍ପନ୍ନ ହୁଏ, ତାହା ମାଟିରେ ମିଶିଯାଇପାରେ। ଏଥିପାଇଁ ହିନ୍ଦୁମାନେ କୁଶାସନ ବା କମ୍ବଳାସନର ବ୍ୟବସ୍ଥା କରିଥାନ୍ତି।

ବାହ୍ୟସମ୍ପଦର ଆକାଂକ୍ଷା, ଜିହ୍ୱା ଓ ଉପସ୍ଥ—ଏହି ତିନିଗୋଟି ନିବୃତ୍ତିମାର୍ଗର ବା ଯୋଗମାର୍ଗର ପ୍ରଧାନ ଅନ୍ତରାୟ। ତଦ୍‌ବିଷୟକ ସ୍ପୃହାକୁ ଆନ୍ତରିକଭାବରେ ଓ ଅକପଟଭାବରେ ତ୍ୟାଗ କରିବାର ଇଚ୍ଛା ନ ହେଲେ ନିବୃତ୍ତିମାର୍ଗରେ ଯିବାର ଅଧିକାର ହୁଏ ନାହିଁ।

ଯଦି ପ୍ରତ୍ୟେକ ଉଦ୍ୟମ ବାହ୍ୟସମ୍ପଦର ଆକାଂକ୍ଷା, ଜିହ୍ୱା ଓ ଉପସ୍ଥ ଏହି ତିନି ପ୍ରକାର ସ୍ପୃହାତ୍ୟାଗର ଅବିରୋଧୀ ହୁଏ ଓ ଆସକ୍ତିବଶରୁ ସ୍ପୃହାର ଅନୁକୂଳର କୌଣସି ଉଦ୍ୟମ କଲେ ସେଥିରେ ଯଦି ଅନୁତାପ ଆସେ, ତେବେ ତାହାର ନାମ ଅକପଟ ତ୍ୟାଗେଚ୍ଛା। ଲୋଭବଶରୁ ଆହାର କରିବା ଉଚିତ ନୁହେଁ। ଔଷଧ ସେବନପରି ଭୋଜନ କରିବାର ବିଧି ଅଛି। ସ୍ତ୍ରୀ-ପୁତ୍ର, ଘର-ଦ୍ୱାର ଛାଡ଼ିବା ନାମ ତ୍ୟାଗ ନୁହେଁ। ଆସକ୍ତି ପରିହାର କରିବାକୁ ଜ୍ଞାନୀମାନେ ତ୍ୟାଗ ବୋଲି କହିଥାନ୍ତି।

ଯେତେବେଳେ ତିନି ଦିନ ଖାଇବାକୁ ନ ପାଇଲେ ମଧ୍ୟ ତୁମ ମନରେ କିଛି ମାତ୍ର ବିକାର ହେବ ନାହିଁ, ସେତେବେଳେ ତୁମର ଭକ୍ଷ-ଅଭକ୍ଷର ବିଚାର କରିବାର ମଧ୍ୟ ଦରକାର ହେବ ନାହିଁ। ବର୍ତ୍ତମାନ ବେଳାଏ ନ ଖାଇଲେ ପ୍ରାଣ ଯିବାଉପରେ; ସୁତରାଂ, ବର୍ତ୍ତମାନ ଆହାରସମ୍ବନ୍ଧରେ ପୂରା ବିଚାର କରିବା ଆବଶ୍ୟକ।

ଯେତେବେଳେ ସମଭାବରେ ସତ୍ତ୍ୱଶୁଦ୍ଧି ଓ ପୁରୁଷଶୁଦ୍ଧି ହୋଇଯାଏ, ସେତେବେଳେ କୈବଲ୍ୟ ଲାଭ ହୁଏ। ସେତେବେଳେ ଆତ୍ମା ଅବଗତ ହୋଇପାରେ ଯେ ଏହି ପରିଦୃଶ୍ୟମାନ ବିଶ୍ୱର କ୍ଷୁଦ୍ରତମ ଅଣୁଠାରୁ ଦେବତାମାନଙ୍କ ପର୍ଯ୍ୟନ୍ତ

କାହାରି ଉପରେ ତାଙ୍କର ନିର୍ଭର କରିବାର ପ୍ରୟୋଜନ ନାହିଁ । ସେତେବେଳର ସେହି ଅବସ୍ଥାକୁ କୈବଲ୍ୟ ବା ପୂର୍ଣ୍ଣତା କୁହାଯାଏ ।

ଗୋଟିଏ ଗୋଟିଏ ଚକ୍ର ଅତିକ୍ରମ କଲେ, ଗୋଟିଏ ଗୋଟିଏ ଲୋକ ଜୟ ହୋଇଥାଏ । ଅର୍ଥାତ୍ ମୂଳାଧାରଚକ୍ର ଜୟ ହେଲେ ଭୂଲୋକସମ୍ବନ୍ଧରେ ସଂପୂର୍ଣ୍ଣ ଜ୍ଞାନ ଆସିଯାଏ । ସେତେବେଳେ ଭୂଲୋକର ତୁମେ ଦ୍ରଷ୍ଟା । ଏହିପରି ଭାବରେ ଗ୍ରନ୍ଥିଭେଦ ହେଲେ ମଧ୍ୟ ଅନୁରୂପ ଅବସ୍ଥା ଲାଭ ହୋଇଥାଏ । ହୃଦୟଗ୍ରନ୍ଥି ଭେଦ ହେଲେ ସାଧକର କୌଣସି ସଂଶୟ ରହେ ନାହିଁ; କିନ୍ତୁ ଶ୍ରୀଗୁରୁଦେବଙ୍କୁ ଯେଉଁମାନେ ସୁଖ ପାଆନ୍ତି, ସେମାନଙ୍କ ଚିତ୍ତ ସହଜରେ ଉନ୍ନତ ହୋଇଯାଏ । ଗୁରୁଭକ୍ତିହୀନ ନିୟମନିଷ୍ଠାରେ କିଛି ଫଳ ହୁଏ ନାହିଁ ।

ଭକ୍ତ କିମ୍ବା ଜ୍ଞାନୀଙ୍କ ମତରେ ମନ ସ୍ଥିର ହେଲେ ପ୍ରାଣ ସ୍ଥିର ହୁଏ; କିନ୍ତୁ ଯୋଗପଥରେ ପ୍ରାଣ ସ୍ଥିର ହେଲାକ୍ଷଣି ମନ ସ୍ଥିର ହୋଇଯାଏ । ତେଣୁ ଶ୍ୱାସ-ପ୍ରଶ୍ୱାସ ଜୟ କରିପାରିଲେ ମନ ସ୍ୱତଃ ସ୍ଥିର ହୋଇଯାଏ ।

ନିଜେ ଭଲ ତ ଜଗତ୍ ଭଲ । ତେଣୁ କାହାରି ଅସଙ୍ଗତ ରୁକ୍ଷ ବ୍ୟବହାରରେ ନିଜ ମନକୁ ରୁକ୍ଷ ନ କରି, ନିଜ ମନକୁ ଦୁଃଖାଭିଭୂତ ନ କରି, ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷାଦ୍ୱାରା ହୃଦୟକୁ ସୁନ୍ଦର କରିପାରିଲେ ଦେଖିବ, ସମଗ୍ର ଜଗତ ତୁମପକ୍ଷରେ କେତେ ସୁନ୍ଦର ଓ ଆନନ୍ଦମୟ ହେବ । ଜଗତର ସମସ୍ତ ବସ୍ତୁ ଲାଭ କଲେ ମଧ୍ୟ ଜୀବନ ପୂର୍ଣ୍ଣ ହେବନାହିଁ । ଯେତେବେଳେ ସାଧକଙ୍କର କିଛି ଆକାଂକ୍ଷିତ ବସ୍ତୁ ନ ଥିବ, ସେତେବେଳେ ସେ ପୂର୍ଣ୍ଣାନନ୍ଦ ଲାଭ କରିବେ ।

ସଂଯମ-ସାଧନା ସମସ୍ତଙ୍କନିମିତ୍ତ ସମାନଭାବରେ ପ୍ରୟୋଜନ । ଏଥିରେ ଯୋଗୀ ଓ ଭୋଗୀଙ୍କମଧ୍ୟରେ ପ୍ରଭେଦ ନାହିଁ । ଭୋଗରେ ପ୍ରବୃତ୍ତି ହେବାନିମିତ୍ତ ମଧ୍ୟ ସଂଯମର ପ୍ରୟୋଜନ । ପଶୁଜଗତ୍‌ର ସଂଯମଶିକ୍ଷାର ଭାର ପ୍ରକୃତି ନିଜ ହାତରେ ରଖିଛନ୍ତି; ତେଣୁ ଭୋଗ କରି ମଧ୍ୟ ପଶୁର ଅକାଳମୃତ୍ୟୁ ଘଟେ ନାହିଁ । ମାନବ ପଶୁବୃତ୍ତି ବୋଲି କହି ଯାହାକୁ ଗାଳିଦିଏ, ସେ ନିଜେ ଅସଂଯତ ହୋଇ ତାହାଦ୍ୱାରା ବିନଷ୍ଟ ହୁଏ ଅଥଚ ପଶୁକୁ ଅଯଥା ଅପବାଦ ଦିଏ । ତେଣୁ ପ୍ରାଥମିକ ଜୀବନରେ ସମସ୍ତଙ୍କନିମିତ୍ତ ସଂଯମ ଏକାନ୍ତ ପ୍ରୟୋଜନ । ତା ନହେଲେ ପରବର୍ତ୍ତୀ ଜୀବନରେ ମାନବ କେବେହେଲେ ପ୍ରକୃତ ଭୋଗ କରିପାରିବ ନାହିଁ ।

ଭୋଗୀମାନଙ୍କୁ ବାଧ୍ୟ କରି ଯୋଗପଥରେ ନେଲେ ସେ ଭ୍ରଷ୍ଟାଚାରୀ ହୋଇ ଏହି ପଥକୁ କଳଙ୍କିତ କରିବେ।

କୁଣ୍ଡଳିନୀ ଊର୍ଦ୍ଧ୍ୱକୁ ଚାଳିତ ହେବା ଏବଂ ଜାଗରିତ ହେବା ପୃଥକ୍ ବିଷୟ। ଭଗବାନଙ୍କୁ ଜାଣିବାକୁ ଇଚ୍ଛା କରିବା, ତାଙ୍କୁ ଲାଭ କରିବାନିମିତ୍ତ ଚେଷ୍ଟା, ସତ୍‌ପଥରେ ଚଳିବାନିମିତ୍ତ ଆଗ୍ରହ, ଶ୍ରୀଗୁରୁଦେବଙ୍କୁ ଅନ୍ୱେଷଣ କରିବାର ସ୍ପୃହା, ଗୁରୁସେବା ପ୍ରବୃତ୍ତି ଅର୍ଥାତ୍ ସତ୍‌କର୍ମରେ ପ୍ରବୃତ୍ତି ଜାତ ହେଲେ ଜାଣିବ, କୁଣ୍ଡଳିନୀର ଜାଗରଣ ହୋଇଛି। କୁଣ୍ଡଳିନୀଜାଗରଣ ନିମିତ୍ତ ଶ୍ରୀଗୁରୁଦେବଙ୍କର କିଛି ମାତ୍ର ପ୍ରୟୋଜନ ନାହିଁ। ଦୀକ୍ଷାପୂର୍ବରୁ ମଧ୍ୟ କୁଣ୍ଡଳିନୀ ଜାଗ୍ରତ ହୋଇଥାଏ। ଶ୍ରୀଗୁରୁଦେବଙ୍କ ସାହାଯ୍ୟରେ ସେହି ଶକ୍ତି ଊର୍ଦ୍ଧ୍ୱକୁ ଚାଳିତ ହୋଇଥାଏ। ଯୋଗପଥ ଭିନ୍ନ କୁଣ୍ଡଳିନୀର ଊର୍ଦ୍ଧ୍ୱଗମନ ସ୍ପଷ୍ଟଭାବରେ ଅନୁଭୂତ ହୋଇପାରେ ନାହିଁ।

ଅଭ୍ୟାସ ହିଁ ଯୋଗ। ଅଭ୍ୟାସଟା ଦେହଦ୍ୱାରା ହୋଇଥାଏ। ତେଣୁ ମୃତ୍ୟୁପରେ ମଧ୍ୟ ସେ ଅଭ୍ୟାସ ପ୍ରବଳ ହୋଇ ସାଧକଙ୍କୁ ଊର୍ଦ୍ଧ୍ୱଗତି କରାଏ। ତେଣୁ ଧ୍ୟାନଯୋଗର ଅଭ୍ୟାସ କେବେହେଲେ ତ୍ୟାଗ କରିବା ଉଚିତ ନୁହେଁ।

ପ୍ରତି କାର୍ଯ୍ୟରେ, ପ୍ରତି ଭାବରେ, ପ୍ରତି ଚିନ୍ତାରେ ସଂଯମର ପ୍ରୟୋଜନ। ଅନ୍ତରରେ ଓ ବାହାରେ ସଂଯତ ଥିଲେ କାର୍ଯ୍ୟ ଓ ଚିନ୍ତା ଚତୁର୍ଦ୍ଦିଗର ବାଧାବିଘ୍ନରୁ ସହଜରେ ରକ୍ଷା ପାଏ। ସଂଯମ ବ୍ୟତୀତ ସାଧନା ଅସମ୍ଭବ। ମାନବର ଦୈହିକ ପୁଷ୍ଟିରେ ବହିର୍ଜ୍ଜଗତ୍‌ର ଶକ୍ତି ବୃଦ୍ଧି ପାଏ। ଏହି ଶକ୍ତିକୁ ବାହାରଆଡୁ ଫେରାଇଆଣି ଅନ୍ତର୍ମୁଖୀ କରାଇବାକୁ କୁହାଯାଏ ସଂଯମ। ସଂଯମ ହିଁ ମନୁଷ୍ୟତ୍ୱର ପରିଚୟ। ପ୍ରକୃତ ମନୁଷ୍ୟତ୍ୱ ଲାଭ କରିବାକୁ ହେଲେ ସର୍ବପ୍ରଥମେ ଦେହର ସଂଯମ ଓ ମନର ସୁଦୃଢ଼ ସଂଯମ ଆବଶ୍ୟକ।

ଧ୍ୟେୟବସ୍ତୁରେ ଚିତ୍ତ ଟିକିଏ ତନ୍ମୟ ହେଲାକ୍ଷଣି ସ୍ୱପ୍ନମାଧ୍ୟମରେ ସେହି ମୂର୍ତ୍ତିର ଦର୍ଶନ ମିଳେ। ସେଥିରେ ଚିତ୍ତ ଅଭିନବ ଆନନ୍ଦରସରେ ବୁଡ଼ିଯାଏ; କିନ୍ତୁ ଏହା କେବେ ଚରମ ଅନୁଭୂତି ନୁହେଁ। ମନ ହିଁ ଏହି ଧ୍ୟେୟବସ୍ତୁରେ ପରିଣତ ହେଉଅଛି। ଏହା ହିଁ ତାହାର ପ୍ରମାଣ। ଚିତ୍ତ ଏକାଗ୍ରତା ଲାଭ କରିଛି—ଏହା ହିଁ ଶୁଭ ଲକ୍ଷଣ। ଶ୍ରୀଗୁରୁଦେବ ହିଁ ଏ ପଥରେ ଏକମାତ୍ର କର୍ଣ୍ଣଧାର। ସଦ୍‌ଗୁରୁଙ୍କୁ ଅନ୍ୱେଷଣ କରି ତାଙ୍କ ପଦରେ ଆତ୍ମସମର୍ପଣପୂର୍ବକ ଆତ୍ମରକ୍ଷା କରିବା ବିଧେୟ।

ଭଗବାନ ପ୍ରଥମେ ବନ୍ଧନମୋଚନର ଉପାୟ ସ୍ଥିର କରି ପରେ ମହାମାୟାଙ୍କ ବନ୍ଧନରେ ନିଜକୁ ଆବଦ୍ଧ କରିଛନ୍ତି। ଶ୍ରୀଗୁରୁଦେବ ହିଁ ସେହି ଭବବନ୍ଧନର ମୋଚନକାରୀ। ତାଙ୍କ କୃପା ବ୍ୟତୀତ ଭଗବତଦର୍ଶନ କିମ୍ବା ମୋକ୍ଷ କିଛି ହେଲେ ଲାଭ ହୋଇପାରିବ ନାହିଁ। ଭଗବାନ ମଧ୍ୟ ମୁକ୍ତି ଦେବାକୁ ଅକ୍ଷମ। କାରଣ, ସେ ନିଜ ନିୟମରେ ନିଜେ ଆବଦ୍ଧ। ତେଣୁ ସେ ଗୁରୁଭାବରେ ପ୍ରକଟ ହୋଇ ଜୀବ ଉଦ୍ଧାର କରିଥାନ୍ତି। ସେହିପରି ନ ହେଉଥିଲେ ତାଙ୍କ ଇଚ୍ଛାରେ ଜୀବ ମୁକ୍ତିଲାଭ କରୁଥାନ୍ତା, ତାଙ୍କୁ ଆଉ କଷ୍ଟ ସ୍ୱୀକାର କରି ଅବତାର ଗ୍ରହଣ କରିବାକୁ ପଡୁ ନ ଥାଆନ୍ତା।

ବାହାରର କର୍ମ କରି ଆମେ ଯେ ପରିଶ୍ରମ କରୁଛୁଁ ବୋଲି ମନେ କରୁଛୁଁ, ତାହା ନିତାନ୍ତ ଭ୍ରମଧାରଣା। ଯେ କୌଣସି କାର୍ଯ୍ୟକୁ ଏକାଗ୍ରଭାବରେ କରିବାକୁ ଗଲେ ସୁନ୍ଦର ଆନନ୍ଦ ମିଳେ। ଏହା ହିଁ ମନର ବିଶ୍ରାମ। ଅବିଶ୍ରାନ୍ତ କର୍ମ ହିଁ ବିଶ୍ରାମ ବୋଲି ଜାଣିବ। ଏହା ହିଁ ମନ ସ୍ଥିର କରିବାର ସହଜ ସରଳ ପନ୍ଥା, ଚିତ୍ତଶୁଦ୍ଧିର ସହଜ ଉପାୟ। ମନକୁ କାମ ନ ଦେଇ ଛାଡ଼ିଦେଲେ ସେ ବିକ୍ଷିପ୍ତ ହୋଇ ନାନାଦିଗରେ ଘୂରିବୁଲେ। ସେଥିରେ ମନ ବିଶ୍ରାମ ନ ପାଇ ଅତ୍ୟଧିକ ପରିଶ୍ରମର କଷ୍ଟ ଭୋଗ କରେ। ଯେକୌଣସି କାମ ମନପ୍ରାଣ ଦେଇ କରିବାବେଳେ ଆମେ ଷଡ଼ରିପୁର ଅତ୍ୟାଚାରରୁ ମୁକ୍ତ ଥାଉଁ। ସେତେବେଳେ କାମନା-ବାସନାର ଜଞ୍ଜାଳରୁ ସାଧକ ମୁକ୍ତ ଥାନ୍ତି। କର୍ମଭିତର ଦେଇ ଚିତ୍ତକୁ ଶୁଦ୍ଧ ଓ ଏକାଗ୍ର କରିବା ଅତି ସହଜ ସରଳ ଯୋଗପଥ। ନିଃଶ୍ୱାସର ତାଳ ଠିକ୍ ରଖି ଭଗବତ୍‌ନାମ ନେଇ ଚିତ୍ତରେ ଧୈର୍ଯ୍ୟ ଓ ଆତ୍ମବିଶ୍ୱାସ ରଖି କାର୍ଯ୍ୟ କଲେ ମନରେ କଷ୍ଟ ବୋଧ ହେବ ନାହିଁ, କ୍ଲାନ୍ତି ମଧ୍ୟ ବୋଧ ହେବ ନାହିଁ। ଉତ୍ସାହ ଓ ଆନନ୍ଦରେ ପ୍ରାଣ-ମନ ପରିପୂର୍ଣ୍ଣ ହୋଇଯିବ। ଏହା ହିଁ ସେବା। ଏହାର ନାମ କର୍ମଯୋଗ।

ଅନ୍ତର୍ବିଜ୍ଞାନର ନିୟମ ବହିର୍ବିଜ୍ଞାନର ସଂପୂର୍ଣ୍ଣ ବିପରୀତ। ଯେଉଁମାନେ ଇହଲୋକରେ ଧନସମ୍ପଦରେ ମହାଧନୀ, ପ୍ରକୃତ ଜ୍ଞାନୀଙ୍କ ଚକ୍ଷୁରେ ସେହିମାନେ ହିଁ ଦୀନହୀନ। ନିଃସମ୍ବଳ ତ୍ୟାଗୀମାନେ ହିଁ ମହାସମ୍ପଦର ଅଧିକାରୀ। ଯେଉଁମାନେ ରୂପରସାଦି ବିଷୟରସରେ ଯେ ପରିମାଣରେ ବୁଡ଼ିରହିଛନ୍ତି, ସେହିମାନେ ହିଁ ସେତିକି ନିର୍ବୀର୍ଯ୍ୟ, ଦୁର୍ବଳ ଓ ରୁଗ୍ଣ। ଯେଉଁମାନେ ବିଷୟତ୍ୟାଗୀ, ସେହିମାନେ ହିଁ ଯୋଗୀ, ବୀର, ସବଳ ଓ ସୁସ୍ଥ।

ନିଜଭିତରେ ସାମାନ୍ୟ ଟିକିଏ ଆନନ୍ଦାନୁଭୂତି ଜାଗିଲେ ତାହା ପ୍ରଥମେ ଲୋକସମାଜରେ ବିତରଣ କରିବାକୁ ବ୍ୟଗ୍ର ହୋଇପଡ଼ ନାହିଁ। ଫୁଲ ଫୁଟିଲେ ଭ୍ରମର ଆପଣା ମନକୁ ମଧୁପାନ କରିବାକୁ ଯୁଟିଯିବେ। ଦାନ କରିବାର ଉପଯୁକ୍ତ ସମୟ ହେଲେ ସୁପାତ୍ରରେ ତାହା ପ୍ରଦାନ କରିବ। ନିଜକୁ ତାଙ୍କର ବୋଲି ଯେଉଁଦିନ ପୂର୍ଣ୍ଣ ଉପଲବ୍ଧି ହେବ, ସେହିଦିନ ହିଁ ତୁମର ଦାନ କରିବାର ଯୋଗ୍ୟତା ଲାଭ ହେବ। ସେତେବେଳେ ଇଚ୍ଛା କଲେ ଅପରର ହିତ କରିବାର ଶକ୍ତି ଜାତ ହେବ; କିନ୍ତୁ ଏ ଅବସ୍ଥା ଭଲ ନ ହେବାପର୍ଯ୍ୟନ୍ତ କୃପଣର ଧନସଞ୍ଚୟଭଳି ନିଜର ଧନ ଭଣ୍ଡାର ପୂର୍ଣ୍ଣ କରି ରଖିବା ଦରକାର।

ଦିବାରାତ୍ରି ସ୍ମରଣ-ମନନ କଲେ ମଧ ଲକ୍ଷ୍ୟ ଠିକ୍ ରଖି ତାହା କରିବାକୁ ପଡ଼ିବ। ଚିତ୍ତ ଯଦି ଗଭୀରଭାବରେ ଲକ୍ଷ୍ୟବସ୍ତୁରେ ତନ୍ମୟ ନ ହୋଇ ବିକ୍ଷିପ୍ତଭାବରେ ସ୍ମରଣ-ମନନ କରେ, ତେବେ ତାହା ପକ୍ଷୀର ହରିନାମ-ସ୍ମରଣଭଳି ମୃତ୍ୟୁସମୟକୁ କିଛି ଫଳଦାୟକ ହେବ ନାହିଁ। ଏହି ଲକ୍ଷ୍ୟହୀନଭାବ ଅସଂଯତ ଚିତ୍ତର ଲକ୍ଷଣ। ସାଧନା ମଧ ବୃଥା ଅନୁଷ୍ଠାନର ଅଭିନୟ ବୋଲି ଧରାଯିବ। ଇନ୍ଦ୍ରିୟ ସଂଯମ କରି ସ୍ମରଣ-ମନନ କଲେ ତାହା ସହଜରେ ସିଦ୍ଧ ହେବ। ଇନ୍ଦ୍ରିମାନେ ସ୍ୱବଶକୁ ଆସିଲାମାତ୍ରେ ସାଧକଙ୍କର ପ୍ରଜ୍ଞାଦୃଷ୍ଟି ଖୋଲିଯାଏ। ଅଭିମାନ ପୋଷଣ କରି ସାଧନପଥରେ ଗତି କଲେ ତାଙ୍କ ସ୍ନେହର ମର୍ଯ୍ୟାଦା କ୍ଷୁଣ୍ଣ ହୁଏ। ତାଙ୍କରି ଆଦେଶ ପ୍ରତିପାଳନ କରି ଅବିଚାରରେ ତାଙ୍କ ସେବାପଥରେ ଅଗ୍ରସର ହେବାକୁ ପଡ଼ିବ। ମନେ ରଖିବ, ସେ ହେଉଛନ୍ତି ଆମ ଜୀବନର ଲକ୍ଷ୍ୟ। ତାଙ୍କ କାର୍ଯ୍ୟରେ ଆତ୍ମନିୟୋଗ କଲେ ଆମେ ତାଙ୍କୁ ଲାଭ କରିପାରିବୁ। ଏହି ବିଶ୍ୱାସକୁ ସ୍ଥିର ରଖିବାକୁ ହେବ। ସମସ୍ତ ବିଷୟ ଭୁଲି ତାଙ୍କରି କାର୍ଯ୍ୟ କରୁ କରୁ ତାଙ୍କୁ ନିଶ୍ଚୟ ଅନ୍ତରରେ ଉପଲବ୍ଧି କରିପାରିବ। ଏହି ଦୃଢ଼ ବିଶ୍ୱାସ ରଖିବାକୁ ପଡ଼ିବ। ସ୍ମରଣ ରଖିବ, ଭଗବାନ କହିଛନ୍ତି, ''ମତ୍କର୍ମ ପରମୋ ଭବ।'' ତାଙ୍କ କର୍ମ କଲେ ନିଶ୍ଚୟ ସିଦ୍ଧି ଲାଭ ହେବ।

ନୀରବ ନିଶ୍ଚେଷ୍ଟ ହୋଇ ବସିରହିଲେ ଭଗବତ୍ ପ୍ରେରଣା ମିଳେ ନାହିଁ। ତାଙ୍କରି ନିର୍ଦ୍ଦିଷ୍ଟ କର୍ମ କରୁ କରୁ ତାଙ୍କରି ଆଦେଶ ପ୍ରତିପାଳନ କରିବା ଅବସ୍ଥାରେ ନିଜଭିତରେ ଭଗବତ୍ ପ୍ରେରଣା ଜାତ ହେବ। ସେ ଇଚ୍ଛା ସାଧକ ସ୍ପଷ୍ଟଭାବରେ ଉପଲବ୍ଧି କରିପାରିବେ। ତେଣୁ ତାଙ୍କ କର୍ମ କରିଯାଅ; ତାଙ୍କର ପ୍ରେରଣା

କର୍ମମାଧ୍ୟମରେ ତୁମମଧ୍ୟରେ ଅନବରତ ପ୍ରବାହିତ ହେଉ ।

ଶକ୍ତିର ଅଫୁରନ୍ତ ଉତ୍ସ ତୁମ ଭିତରେ । ତୁମେ ବୀର; ଉଠ, ଜାଗ; ପ୍ରାପ୍ୟ ବର ଲାଭ କର । ଅନ୍ତରର ଗ୍ଲାନି, ହିଂସା, ଦ୍ୱେଷ, କୁଟୀଳତାକୁ ଦୂର କରିଦିଅ । ଶିଶୁପରି ସରଳ ଉଦାର ପ୍ରାଣରେ ମହାପୁରୁଷଙ୍କ ଶରଣ ନିଅ । ତୁମର ଚିରଜନ୍ମାର୍ଜିତ କଳୁଷକାଳିମା ମୁହୂର୍ତ୍ତକରେ ରୂପାନ୍ତରିତ ହୋଇ ଜୀବନ ଧନ୍ୟ ହେବ । ସେତେବେଳେ ତାଙ୍କ କୃପା ଉପଲବ୍ଧ କରି ଜୀବନ ମଧୁମୟ ହୋଇଯିବ ।

ତୁମ ଭିତରେ ସବୁ ଅଛି; ସାମାନ୍ୟ ଚେଷ୍ଟାରେ ତାହା ଫୁଟିଉଠିବ । କେବଳ ଶ୍ରୀଗୁରୁଦେବଙ୍କ କୃପା ଆବଶ୍ୟକ । ଜଗତରେ ଗୁରୁଙ୍କର ଅଭାବ କେବେ ହୋଇ ନାହିଁ । ଲୋକେ କହନ୍ତି, ଗୁରୁଙ୍କର ଦେହାନ୍ତର ହୋଇଛି, ଏହା ମିଥ୍ୟା । ସଦ୍‌ଗୁରୁ ହିଁ ଜଗଦ୍‌ଗୁରୁ । ସେହି ଜଗଦ୍‌ଗୁର ହିଁ ଶିଷ୍ୟର ଆନ୍ତରିକ ଆହ୍ୱାନରେ ଆସି ଶିଷ୍ୟ ଭିତରେ ସମସ୍ତ ଭାବ ଜାଗ୍ରତ କରିଦିଅନ୍ତି ।

ମାନବ-ଶରୀରମଧ୍ୟରେ ଏକପ୍ରକାର ତଡ଼ିତ ପ୍ରବାହିତ ହେଉଥାଏ । ଏହା ହିଁ ମାନବର ଜୀବନୀ ଶକ୍ତି । ଜଣକଠାରୁ ତଡ଼ିତପ୍ରବାହ ଅନ୍ୟଠାରେ ପ୍ରବେଶ କରାଯାଇ ଅନ୍ୟକୁ ସମ୍ମୋହିତ କରାଯାଇପାରେ । ମାନବ-ଶରୀରରେ ଅଧିକ ପରିମାଣରେ ତଡ଼ିତ୍ ପ୍ରବେଶ କଲେ ତାହାର ଜ୍ଞାନ ଲୋପ ପାଏ । ଶରୀରରେ ତଡ଼ିତ୍ ପ୍ରବାହର ଅଭାବ ହେଲେ ଦେହ ଦୁର୍ବଳ ବୋଧ ହୁଏ । ତେଣୁ ଯୁବକ ବୃଦ୍ଧକୁ, ପୁରୁଷ ସ୍ତ୍ରୀକୁ ସହଜରେ ସମ୍ମୋହିତ କରିପାରନ୍ତି ।

ସାଧକମାନେ ଯୋଗସାହାଯ୍ୟରେ ଅପରକୁ ଯେପରି ସମ୍ମୋହିତ କରନ୍ତି, ନିଜେ ମଧ୍ୟ ସେହିପରି ସମ୍ମୋହିତ ହୋଇଥାନ୍ତି । ଯୋଗାଙ୍ଗସାଧନାର ନ୍ୟାସ ହିଁ ଏହାର ରୂପାନ୍ତର । ଅପର ଶରୀରରୁ ଓ ଦ୍ରବ୍ୟରୁ ତଡ଼ିତ୍ ଆକର୍ଷଣ କରି ନିଜ ଶରୀରରେ ପ୍ରବେଶ କରାଇପାରିଲେ ନିଜକୁ ମଧ୍ୟ ତଦ୍ୱାରା ସମ୍ମୋହିତ ହେବାକୁ ପଡ଼େ; କିନ୍ତୁ ଅନ୍ୟଠାରୁ ନିଜ ଶରୀରକୁ ବିଦ୍ୟୁତ୍ ଆକର୍ଷଣ କରି ସମ୍ମୋହିତ ହେବା ଅପେକ୍ଷାକୃତ କଷ୍ଟସାଧ୍ୟ । ଏହି ଅବସ୍ଥାରେ ସାଧକଙ୍କର ଅନ୍ତର୍ଦ୍ଦୃଷ୍ଟି ଖୋଲିଯାଏ । ଯୋଗସାଧନଦ୍ୱାରା ଏହି ଐଶ୍ୱରିକ ଶକ୍ତି ସହଜରେ ଲାଭ ହୋଇଥାଏ ।

ଏହି ଶକ୍ତି ଲାଭ କରିବାକୁ ହେଲେ ପ୍ରଥମେ ମନ ସ୍ଥିର କରିବାର ଅଭ୍ୟାସ-ଗଠନ ଆବଶ୍ୟକ । ଯେ ଅସ୍ଥିରଚିତ୍ତ, ତାଙ୍କପକ୍ଷରେ ଏହି ଶକ୍ତିଲାଭ ସମ୍ଭବ ନୁହେଁ । ଯେ ମନକୁ ଯେତେ ସ୍ଥିର କରିପାରିଛନ୍ତି, ତାଙ୍କଦ୍ୱାରା ଜଗତ୍‌ରେ ସେହି ପରିମାଣରେ

ମହତ୍‌କାର୍ଯ୍ୟ ସମ୍ପନ୍ନ ହୋଇପାରିଛି । ଅଭ୍ୟାସଦ୍ୱାରା ଏହି କାର୍ଯ୍ୟ ସମ୍ପନ୍ନ ହୋଇଥାଏ । ମନ ସଂପୂର୍ଣ୍ଣଭାବରେ ଗୋଟିଏ ବିଷୟର ଚିନ୍ତାରେ ନିବିଷ୍ଟ ରହିଲେ ମନରେ ଇଚ୍ଛାଶକ୍ତିର ଉଦୟ ହୁଏ । ଏହି ଶକ୍ତିର ଉତ୍କର୍ଷ ସାଧନ କରିପାରିଲେ ଅତ୍ୟାଶ୍ଚର୍ଯ୍ୟ ଐଶ୍ୱରିକ ଶକ୍ତି ଲାଭ ହୋଇଥାଏ ।

ଇଚ୍ଛା ମାନବ-ହୃଦୟର ଗୋଟିଏ ବୃତ୍ତି । ମାନବର ସମସ୍ତ ବୃତ୍ତି ଅଭ୍ୟାସ ବା ଅନୁଶୀଳନଦ୍ୱାରା ଉତ୍କର୍ଷତା ଲାଭ କରେ । ସେତେବେଳେ ଇଚ୍ଛାଶକ୍ତିବଳରେ ମାନବ ଅନନ୍ୟମନା ହୋଇ ଯେଉଁ ବସ୍ତୁଲାଭନିମିତ୍ତ ଇଚ୍ଛା କରିବେ, ସେ ତାହା ସହଜରେ ଲାଭ କରିପାରିବେ ।



# ମୁକ୍ତି

## ଆତ୍ୟନ୍ତିକ ବିରକ୍ତି

ନିତ୍ୟାନିତ୍ୟବସ୍ତୁ-ବିଚାରଦ୍ୱାରା ନିତ୍ୟବସ୍ତୁ ନିଶ୍ଚିନ୍ତ ହେଲେ ଅନିତ୍ୟ ସଂସାରର ସମସ୍ତ ସଂକଳ୍ପ କ୍ଷୟପ୍ରାପ୍ତ ହୁଏ। ଏହାକୁ ମୁକ୍ତି କୁହାଯାଏ। ସଂକଳ୍ପ-ବିକଳ୍ପ ମନର ଧର୍ମ। ମନ ଅତିଶୟ ଚଞ୍ଚଳ। ଚଞ୍ଚଳ ମନକୁ ଏକାଗ୍ର କରି ନ ପାରିଲେ ମୁକ୍ତି ଲାଭ ହୁଏ ନାହିଁ। ମନର ଏକାଗ୍ରତା ନ ଜନ୍ମିଲେ ସେହି ମନକୁ ଜ୍ଞାନୀମାନେ ମୃତ ବୋଲି କହନ୍ତି। ସାଧନଫଳରେ ସେହି ମୃତମନ ମୋକ୍ଷରୂପରେ ପରିଣତ ହୁଏ। ସ୍ଥୁଳ କଥାରେ, ସଂସାରରେ ଆତ୍ୟନ୍ତିକ ବିରକ୍ତିର ନାମ ମୁକ୍ତି।

ସାଂସାରିକ ଭୋଗବିଳାସ ପୂର୍ଣ୍ଣ ନ ହେଲେ ନିବୃତ୍ତି ଆସେ ନାହିଁ। ଭୋଗବିଳାସ ପୂର୍ଣ୍ଣ ହେଲାକ୍ଷଣି ସାଂସାରିକ ସୁଖ-ଦୁଃଖର ନିବୃତ୍ତି ହୋଇ ସଂସାର ବିଷୟରେ ବିରକ୍ତି ଜନ୍ମିଥାଏ। ଚିତ୍ତବୃତ୍ତିର ନିରୋଧ ହେଲାକ୍ଷଣି ଇନ୍ଦ୍ରିୟମାନଙ୍କର ବହିର୍ମୁଖୀନତା ନିବୃତ୍ତ ହୋଇଯାଏ। ଏହିପରି ନିବୃତ୍ତିର ନାମ ମୁକ୍ତି।

ଇନ୍ଦ୍ରିୟମାନଙ୍କର ବହିର୍ମୁଖୀନତାଜନିତ ସଂସାରରେ ଯେଉଁ ପ୍ରବୃତ୍ତିଜାତ ହୁଏ, ତାର ନାମ ବନ୍ଧନ। କର୍ମ ସେହି ବନ୍ଧନର କାରଣ। କର୍ମ ନାନା ପ୍ରକାରର; ସେଥିପାଇଁ ବନ୍ଧନ ମଧ୍ୟ ନାନା ପ୍ରକାରର। ଏହିସବୁ ବନ୍ଧନରେ ଆବଦ୍ଧ ହୋଇ ଜୀବ ନିଜକୁ ଅତିଶୟ ଦୁଃଖୀ ବୋଲି ମନେ କରେ। ତ୍ରିବିଧ ଦୁଃଖର ଐକାନ୍ତିକ ନିବୃତ୍ତିର ନାମ ମୁକ୍ତି। ଦୁଃଖ ନିରୋଧ ହେଲାକ୍ଷଣି ମନୁଷ୍ୟ ମୁକ୍ତ ହୁଏ।

ମୁକ୍ତି ପାଞ୍ଚ ପ୍ରକାର–ସାଲୋକ୍ୟ ସାରୂପ୍ୟ, ସାଯୁଜ୍ୟ, ସାର୍ଷ୍ଟି ଓ କୈବଲ୍ୟ।

## ନିର୍ବାଣମୁକ୍ତି

ଦେହୀ ମାନବ ସ୍ନେହ, ଦ୍ୱେଷ କିମ୍ବା ଭୟବଶରୁ ଯେଉଁ ଯେଉଁ ବସ୍ତୁରେ ସର୍ବତୋଭାବରେ ବୁଦ୍ଧିର ସହିତ ଏକାଗ୍ରଭାବରେ ମନ ଧାରଣା କରେ, ତାହାର ତାଦୃଶ ରୂପ ପ୍ରାପ୍ତ ହୁଏ। ଦୀର୍ଘକାଳ ଯୋଗସାଧନାରେ ଯେତେବେଳେ ସ୍ଥୁଳ,

ସୂକ୍ଷ୍ମ ଓ କାରଣ—ଏହି ତିନି ପ୍ରକାର ଦେହ ଭଗ୍ନ ହୋଇ ଜୀବ ଓ ଆତ୍ମାର ଐକ୍ୟଜ୍ଞାନ ଜାତ ହେବ, ସେତେବେଳେ କେବଳ ବିଶୁଦ୍ଧ ଚୈତନ୍ୟସ୍ଫୁର୍ତ୍ତି ହେବ । ଏହିପରିଭାବରେ ସାଧକଙ୍କର କେବଳ ଚୈତନ୍ୟସ୍ଫୂର୍ତ୍ତି ହେଲେ ଜୀବଦ୍ଦଶାରେ ତାଙ୍କର ଜୀବନ୍ମୁକ୍ତି ଏବଂ ଅନ୍ତିମରେ ନିର୍ବାଣମୁକ୍ତି ଲାଭ ହୁଏ ।

ନିର୍ବାଣ ଅର୍ଥ ଲିଭିଯିବା ନୁହେଁ । ଯେଉଁମାନେ ନିର୍ବାଣ ଧାରଣା କରିପାରନ୍ତି ନାହିଁ, ସେମାନେ କହିଥାନ୍ତି, ''ଆମେ ଲିଭିଯିବାକୁ ଇଚ୍ଛା କରୁ ନାହୁଁ; ଆମେ ଚିନି ହେବୁ ନାହିଁ, ଆମେ ଚିନି ଖାଇବାକୁ ଇଚ୍ଛା କରୁ ।'' ଚିନି ଖାଇବାକୁ ମିଠା ଲାଗେ, ସତ; କିନ୍ତୁ ଚିନି ହେଲେ ତାହା ସେବନ କରି ସମଗ୍ର ଜୀବର ଯେଉଁ ଆସ୍ୱାଦନ-ଆନନ୍ଦ ତୁମ ଭିତରେ ଅଭିବ୍ୟକ୍ତ ହେବ, ତାହା ତୁଳନାରେ ନିଜେ ଚିନି ଖାଇବାର ଆସ୍ୱାଦନାନନ୍ଦ ବା କେତେ ? ସମଗ୍ର ଜୀବର ଆସ୍ୱାଦ ନିଜ ଭିତରେ ଉପଲବ୍ଧି କରିବା ସୁଖ ତୁଳନାରେ ଏହା କଣାଂଶ ମଧ୍ୟ ନୁହେଁ । ଚିନିର ଆସ୍ୱାଦଲୋଲୁପ ବ୍ୟକ୍ତିଙ୍କୁ ଭକ୍ତପ୍ରବର ଶ୍ରୀମତ୍ କବିରାଜ ଗୋସ୍ୱାମୀଙ୍କର—

''ଗୋପିକା ଦର୍ଶନେ କୃଷ୍ଣେର୍ ଯେ ଆନନ୍ଦ ହୟ ।
ତାହା ହଇତେ ଗୋପୀଗନ କୋଟି ଆସ୍ୱାଦୟ ।''

ଏହି ଗୋପୀଭାବର ନିଗୂଢ଼ ତତ୍ତ୍ୱ ହୃଦୟଙ୍ଗମ କରାଇବାକୁ ହେବ । ରାଧାକୃଷ୍ଣଙ୍କ ମିଳନାତ୍ମକ ଆତ୍ମାର ସ୍ୱରୂପାନନ୍ଦ ଉପଭୋଗ ବ୍ୟତୀତ ଶ୍ରୀକୃଷ୍ଣଙ୍କୁ ଉପଭୋଗ କରିବା କେବେହେଲେ ଗୋପୀଭାବର ଆଦର୍ଶ ନୁହେଁ । ନିର୍ବାଣ ଅର୍ଥ ଲିଭିଯିବା ନୁହେଁ । ବିଲୀନଭାବକୁ ନିର୍ବାଣ କୁହାଯାଏ । ଯେଉଁ ଆତ୍ମାର କ୍ଷୟ ନାହିଁ, ବିକାଶ ନାହିଁ, ଯେ ଅଜର, ଅମର, ତାହା ଲିଭିଯିବ ବା କିପରି ?

## ସ୍ୱରୂପରେ ଅବସ୍ଥାନ

ସମସ୍ତ ଶ୍ରୁତି, ଦର୍ଶନ, ପୁରାଣ, ଉପନିଷଦ, ତନ୍ତ୍ର ପ୍ରଭୃତି ଶାସ୍ତ୍ରରେ ମୁକ୍ତିସମ୍ବନ୍ଧରେ ଯାହା କିଛି କୁହାଯାଇଛି, ତଦ୍ଦ୍ୱାରା ସ୍ପଷ୍ଟ ପ୍ରତୀୟମାନ ହେଉଛି ଯେ ସ୍ୱରୂପରେ ଅବସ୍ଥାନ ହିଁ ମୁକ୍ତି; ପୁଣି ସ୍ୱରୂପତ୍ୟାଗ ହେଉଛି ବନ୍ଧନ । ବସ୍ତୁର ଯଥାର୍ଥ ଦର୍ଶନ ବା ବୁଦ୍ଧିର ଭ୍ରମ-ଅପନୋଦନ ହିଁ ମୁକ୍ତି । ଅଯଥାର୍ଥ ଦର୍ଶନର ନାମ ବନ୍ଧନ । ଚଞ୍ଚଳତାଶୂନ୍ୟ ମନରେ ସ୍ଥିରଭାବରେ ଅବସ୍ଥାନ ହିଁ ମୁକ୍ତି ଏବଂ ବହୁ ବିଷୟରେ ମନର ଗମନାଗମନ ହେଉଛି ବନ୍ଧନ । ମନର ଶାନ୍ତିରୂପ ନିର୍ମଳ ଆନନ୍ଦ ହେଉଛି ମୁକ୍ତି ଏବଂ ମନର ପ୍ରକାଶର ନାମ ବନ୍ଧନ । ପୃଥିବୀର କୌଣସି ବିଷୟପ୍ରତି ଆସ୍ଥା

ନ ଥିବାର ନାମ ମୁକ୍ତି; ଅନାତ୍ମିୟ ପଦାର୍ଥରେ ବିନ୍ଦୁମାତ୍ର ଆସ୍ଥା ରହିବା ହିଁ ସୁଦୃଢ଼ ବନ୍ଧନ। ଅନିତ୍ୟ ସଂସାରର ସମସ୍ତ ସଂକଳ୍ପ କ୍ଷୟ ହେବାର ନାମ ମୁକ୍ତି ଏବଂ ସଂକଳ୍ପ ମାତ୍ରେ ବନ୍ଧନ। ସଂପୂର୍ଣ୍ଣଭାବରେ ନିଜ ଇଚ୍ଛା ବା ବାସନାତ୍ୟାଗ ହିଁ ମୁକ୍ତି ଏବଂ ବାସନା ମାତ୍ରେ ବନ୍ଧନ। ସକଳ ପ୍ରକାର ଆଶା କ୍ଷୟ ହେଲେ ମନର ଯେଉଁ କ୍ଷୟ ହୁଏ, ତାହା ମୁକ୍ତି; ଆଶା ମାତ୍ରେ ବନ୍ଧନ। ସଂପୂର୍ଣ୍ଣରୂପରେ ଭୋଗଚିନ୍ତାର ବିରାଗ ହେଉଛି ମୁକ୍ତି, ଭୋଗଚିନ୍ତା ମାତ୍ରେ ବନ୍ଧନ। ସକଳ ପ୍ରକାର ଅଶାନ୍ତି ତ୍ୟାଗ ହେଉଛି ମୁକ୍ତି, ବିଷୟସଙ୍ଗ ମାତ୍ରେ ବନ୍ଧନ। ଆତ୍ମାର ସ୍ୱରୂପରେ ଅବସ୍ଥାନ ହିଁ ମୁକ୍ତି।

ଦୁର୍ବାସା, ଦତ୍ତାତ୍ରେୟ, ଉଦ୍ଦାଳକ, ଆରୁଣି, ଶୁକଦେବ, ପ୍ରହ୍ଲାଦ, ଶ୍ୱେତକେତୁ ପ୍ରଭୃତି ରକ୍ତମାଂସଦେହଧାରୀ ହୋଇ ମଧ୍ୟ ମୁକ୍ତପୁରୁଷ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି। ସୁତରାଂ, ନିର୍ବାଣର ଅର୍ଥ 'ଅହଂନାଶ' ଏ କଥା ବୁଝାଯାଉଅଛି। ନିର୍ବାଣର ଅର୍ଥ ସ୍ୱରୂପପ୍ରତିଷ୍ଠା। ପାର୍ଥିବ ସୁଖ, ଦୁଃଖ, ଅଭିଳାଷ ପ୍ରଭୃତି ସକଳ ପ୍ରକାର ପାର୍ଥିବ ଭାବର ବିଲୀନ ଅବସ୍ଥାକୁ ମୁକ୍ତି କୁହାଯାଏ।

ଭଗବାନ ବୁଦ୍ଧଦେବ ଜରାମରଣ ଓ ପୀଡ଼ାଜନିତ ଦୁଃସହ ଦୁଃଖକବଳରୁ ନିସ୍ତାର ପାଇବାକୁ ନିର୍ବାଣ ବୋଲି କହିଛନ୍ତି। ସୁତରାଂ, ନିର୍ବାଣ ଅର୍ଥ ସତ୍ତାବିଲୋପ ନୁହେଁ। କେବଳ ମାତ୍ର ଭ୍ରମ, ଘୃଣା ଓ ତୃଷ୍ଣା—ଏହି ତିନିଗୋଟିର ଅତ୍ୟନ୍ତିକ ଉଚ୍ଛେଦକୁ ନିର୍ବାଣ କୁହାଯାଏ। ଯେଉଁ ଅବସ୍ଥାରେ ମନର ଲୟ ହୁଏ, ତାହାକୁ ମୁକ୍ତି ବୋଲି ଜାଣିବ।

ଏକମାତ୍ର ପରମେଶ୍ୱରଙ୍କ ପ୍ରତି ସୁଦୃଢ଼ ଭକ୍ତି, ଯୋଗ ବ୍ୟତୀତ ଯୋଗଯଜ୍ଞାଦି ରୂପ କ୍ରିୟାକାଣ୍ଡର ଅନୁଷ୍ଠାନଦ୍ୱାରା ଅଥବା କୌଣସି ଦେବଦେବୀଙ୍କ ପୂଜାର୍ଚ୍ଚନାଦ୍ୱାରା କିମ୍ୱା ତୀର୍ଥଭ୍ରମଣଦ୍ୱାରା ମାନବ କେବେ ହେଲେ ମୁକ୍ତି ଲାଭ କରିବାକୁ ସମର୍ଥ ହୋଇପାରେ ନାହିଁ। ଜପ, ତପ, ପ୍ରତିମାପୂଜାଦି ଝିଅମାନଙ୍କ କଣ୍ଢେଇଖେଳପରି। ଯେପର୍ଯ୍ୟନ୍ତ ସେମାନଙ୍କର ସ୍ୱାମୀ ସହିତ ସମ୍ମିଳନ ହୋଇ ନ ଥାଏ, ସେପର୍ଯ୍ୟନ୍ତ ସେମାନେ ଖେଳନ୍ତି; ତା'ପରେ ସେହିସବୁ କଣ୍ଢେଇ ପେଡ଼ିରେ ରଖିଦିଅନ୍ତି।

## ଭକ୍ତିକାରଣ

ବ୍ରହ୍ମତତ୍ତ୍ୱ ପରିଜ୍ଞାତ ନ ହେଲେ ଅନ୍ୟ କୌଣସି ପ୍ରକାରରେ ମୁକ୍ତି ଲାଭ ହୋଇପାରେ ନାହିଁ, ଆଉ ଭକ୍ତିଦ୍ୱାରା ସେହି ଜ୍ଞାନ ଲାଭ ହୁଏ। ଭଗବାନଙ୍କଠାରେ କିମ୍ୱା ବ୍ରହ୍ମତତ୍ତ୍ୱରେ ପ୍ରବଳ ଅନୁରାଗ ବା ଐକାନ୍ତିକ ଭକ୍ତି ଜାତ ନ ହେଲେ ଜ୍ଞାନ

କେବେହେଲେ ପ୍ରକାଶ ପାଇବ ନାହିଁ। ଯଜ୍ଞାଦି ଦ୍ୱାରା ଧର୍ମ ଲାଭ ହୁଏ; ଧର୍ମରୁ ଭକ୍ତି ଓ ଭକ୍ତିରୁ ଜ୍ଞାନ ହୁଏ ଏବଂ ଜ୍ଞାନଦ୍ୱାରା ମୁକ୍ତି ଲାଭ ହୋଇଥାଏ। ସୁତରାଂ, ଭକ୍ତି ହିଁ ମୁକ୍ତିର କାରଣ।

ଅତଏବ ଯେଉଁ ସାଧକମାନେ ମୁକ୍ତି ଇଚ୍ଛା କରନ୍ତି, ସେମାନେ ଭକ୍ତିପରାୟଣ ହୋଇ ତାଙ୍କ ପୂଜାଦି ପ୍ରସଙ୍ଗରେ ପ୍ରୀତିଯୁକ୍ତ ମାନସ ହେବେ। କାୟମନୋବାକ୍ୟରେ ତାଙ୍କୁ ଆଶ୍ରୟ କରିବେ ଏବଂ ତଦ୍‌ଗତପ୍ରାଣ ହୋଇ ରହିବେ। ସର୍ବଦା ତାଙ୍କରି ପ୍ରସଙ୍ଗ, ତାଙ୍କରି ଗୁଣଗାନ ଏବଂ ତାଙ୍କରି ନାମଜପରେ ସମୁତ୍ସୁକ ରହିବେ। ଭକ୍ତି ଲାଭ ହେଲେ ଆଉ ବର୍ଣ୍ଣାଶ୍ରମୋଚିତ ଯୋଗ, ଯାଗ, ପୂଜାଦିର ପ୍ରୟୋଜନ ନାହିଁ।

ଏହିପରିଭାବର ଶାସ୍ତ୍ରବିଧିବିହିତ କର୍ମ କରି ଯେତେବେଳେ ଅନ୍ତଃକରଣ ନିର୍ମଳ ହେବ, ସେତେବେଳେ ଭକ୍ତିର ଉଦ୍ରେକ ହୋଇ ସର୍ବଦା ଇଚ୍ଛା ହେବ ଯେ ମୁଁ କେବେ ସେହି ପରମଧନ ଲାଭ କରିବି। ସେତେବେଳେ ଜଗତର ଯାବତୀୟ ବସ୍ତୁପ୍ରତି ବୈରାଗ୍ୟ ଜାତ ହୋଇ ସଚ୍ଚିଦାନନ୍ଦ ସ୍ୱରୂପ ନିତ୍ୟବିଗ୍ରହରେ ମନୋନିବେଶ ହେବ ଏବଂ ତଦୁପଯୋଗୀ ଶାସ୍ତ୍ରରେ ରୁଚି ଜାତ ହେବ। ଶ୍ରୀଗୁରୁଦେବଙ୍କ ଉପଦେଶ ଅନୁସାରେ ଏହିସବୁ ଶାସ୍ତ୍ର ଆଲୋଚନା କରୁ କରୁ ତାଙ୍କର ସ୍ୱରୂପ ଅତି ଅଳ୍ପ କାଳପାଇଁ ଅନ୍ତଃକରଣରେ ଫୁଟିଉଠିବ; ଫଳରେ ଅନ୍ୟ କୌଣସି ବସ୍ତୁରେ ଅଭିଳାଷ ଆଉ ରହିବ ନାହିଁ। ସୁତରାଂ, କାମନା ପରିତ୍ୟାଗ ହୋଇଯାଏ। ତତ୍ତ୍ୱଜ୍ଞାନ ଉପସ୍ଥିତ ହେଲେ ତାଙ୍କ ନିତ୍ୟାନନ୍ଦବିଗ୍ରହର ସାକ୍ଷାତ୍‌କାର ହୁଏ; ସେଥିରେ ଜୀବନ୍ମୁକ୍ତି ଲାଭ ହୋଇଥାଏ।

ଯେଉଁମାନେ ଭକ୍ତିପୂର୍ବକ ଭଗବାନଙ୍କ ଭଜନ କରନ୍ତି, ସେହିମାନେ ହିଁ ପରମରୂପ ଅବଗତ ହୋଇ ମାୟାଜାଲରୁ ଉତ୍ତୀର୍ଣ୍ଣ ହୋଇଥାନ୍ତି। ସୂକ୍ଷ୍ମରୂପପରି ସ୍ଥୂଳରୂପରେ ମଧ୍ୟ ଏହି ସମସ୍ତ ବିଶ୍ୱ ପରିବ୍ୟାପ୍ତ ହୋଇ ରହିଛନ୍ତି। ସୁତରାଂ, ସମସ୍ତ ରୂପ ତାଙ୍କର ସ୍ଥୂଳରୂପମଧ୍ୟରେ ଗଣ୍ୟ। ତଥାପି ନିଜ ନିଜ ଗୁରୁପଦିଷ୍ଟ ଧ୍ୟେୟମୂର୍ତ୍ତିର ଆରାଧନା କରିବାକୁ ହେବ। କାରଣ, ଏହା ଶୀଘ୍ର ମୁକ୍ତିଦାନରେ ସମର୍ଥ। ଏହିପରି ଉପାସନା କରୁ କରୁ ଯେତେବେଳେ ଗାଢ଼ ଭକ୍ତିର ଉଦୟ ହୁଏ, ସେତେବେଳେ ଇଷ୍ଟଦେବତାଙ୍କର ଦର୍ଶନ ମିଳେ। ଜଗତ୍‌ର କୌଣସି ରମଣୀୟ ବସ୍ତୁ ତଦପେକ୍ଷା ରମଣୀୟ ବୋଲି ବୋଧ ହୁଏ ନାହିଁ। ମନ, ପ୍ରାଣ ତାଙ୍କର ପ୍ରେମ-ରସମାଧୁର୍ଯ୍ୟରେ ଚିରକାଳନିମିତ୍ତ ବୁଡ଼ିରହେ।

# ଅର୍ପଣ

ମୁମୁକ୍ଷୁ ବ୍ୟକ୍ତିଙ୍କର ଭକ୍ତି ଏକମାତ୍ର ଶ୍ରେଷ୍ଠ ସାଧନା । ଭକ୍ତିଯୋଗରେ ମନୁଷ୍ୟ ଧର୍ମ, କର୍ମ, କୁଳଶୀଳ, ମାନଯଶ, ପୁତ୍ର-କଳତ୍ରାଦି ସମସ୍ତ ଭଗବାନଙ୍କ ଶ୍ରୀଚରଣରେ ଅର୍ପଣ କରି ତାଙ୍କ ସ୍ୱରୂପାନନ୍ଦରେ ମତ୍ତ ହୋଇପାରନ୍ତି । ବ୍ରଜର କୃଷ୍ଣ-ପ୍ରେମପାଗଳିନୀ ଆଭୀର-ରମଣୀଗଣ ଶ୍ରୀକୃଷ୍ଣଙ୍କ ବିରହରେ ଆତ୍ମହରା ହୋଇ ତାଙ୍କ ଧ୍ୟାନ ଓ ତାଙ୍କରି ମନନ କରୁ କରୁ ନିଜେ ନିଜକୁ ଶ୍ରୀକୃଷ୍ଣ ବୋଲି ମନେ କରୁଥିଲେ ଏବଂ ତାଙ୍କ ଲୀଳାଦିର ଅନୁକରଣ କରୁଥିଲେ । ମହାପ୍ରଭୁ ଶ୍ରୀଗୌରାଙ୍ଗଦେବ ଭଗବତ୍‌ପ୍ରେମରେ ଉନ୍ମତ୍ତ ହୋଇ, ନିଜକୁ ଭୁଲିଯାଇ ଭଗବାନଙ୍କ ମହାଭାବରେ ଆବିଷ୍ଟ ହୋଇ, ନିଜ ମାତାଙ୍କ ମସ୍ତକରେ ପଦସ୍ପର୍ଶ କରି ତାଙ୍କୁ ଆଶୀର୍ବାଦ କରିଥିଲେ ।

ଭକ୍ତିଯୋଗରେ ସ୍ୱରୂପତତ୍ତ୍ୱଜ୍ଞାନ ଲାଭ କରିପାରିଲେ ସ୍ୱଳ୍ପାୟୁଷରେ ମୋକ୍ଷ ଲାଭ ହୁଏ । ଅତଏବ ମୁକ୍ତିର ପ୍ରଧାନ କାରଣ ଯେ ଭକ୍ତି, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ତେଣୁ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି–

''ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ !
ତତ୍‌ପ୍ରସାଦାତ୍ ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତମ୍ ।''

ହେ ଭାରତ ! ସର୍ବାବସ୍ଥାରେ ତୁମେ ତାଙ୍କରି ଶରଣାପନ୍ନ ହୁଅ । ତାଙ୍କ ପ୍ରସାଦରୁ ପରାଶାନ୍ତି ଓ ଶାଶ୍ୱତୀ ଗତି ପାଇପାରିବ ।

ଭୂଲୋକ ବ୍ୟତୀତ ଅନ୍ୟ କୌଣସି ଲୋକରୁ ମୁକ୍ତିପଥ ନାହିଁ । ଅନ୍ୟ ଲୋକରେ କେବଳ ସେହି ଲୋକର ଜ୍ଞାନ ହୋଇଥାଏ । ଗୋଟିଏ ବ୍ରହ୍ମାଣ୍ଡର କର୍ତ୍ତା ବ୍ରହ୍ମାଙ୍କର ମଧ୍ୟ ଅନ୍ୟ ବ୍ରହ୍ମାଣ୍ଡ ସମ୍ବନ୍ଧରେ ଜ୍ଞାନ ନାହିଁ । ଭୂଃ, ଭୁବଃ, ସ୍ୱଃ ଲୋକ ଉପରେ ଯେଉଁ ଚାରି ଲୋକ ଅଛି, ସେହି ପଥରେ ମୁକ୍ତିନିମିତ୍ତ ବହୁ ବିଳମ୍ବ ଘଟେ । ସେହିସବୁ ଲୋକରେ ଉଚ୍ଚସ୍ତରର ଭୋଗରେ ଆସକ୍ତ ହୋଇପଡ଼ିଲେ, ସେହି ଲୋକରେ କେତେ ଯୁଗଯୁଗାନ୍ତର ଅତୀତ ହୋଇଯାଏ । କେତେ ଜଣ ଯେ ମୁକ୍ତି ଲାଭ କରନ୍ତି, ତାହାର ସୀମା ସଂଖ୍ୟା ନାହିଁ ଅଥଚ ଉଚ୍ଚଲୋକବାସୀ ସାଧକ ତାହା ଜାଣିପାରନ୍ତି ନାହିଁ ।

ପ୍ରକୃତପକ୍ଷରେ ଆମେ ସମସ୍ତେ ମୁକ୍ତ; କିନ୍ତୁ ନିଜକୁ ମୁକ୍ତ ବୋଲି ନ ଭାବିବା ହେତୁ ଆମେ ବନ୍ଧନର କାରଣ ହୋଇଛୁଁ । ତେଣୁ ଯେ ନିଜକୁ ମୁକ୍ତ

ବୋଲି ବିଶ୍ୱାସ କରନ୍ତି, ସେ ମୁକ୍ତ; ପୁଣି ଯେ ନିଜକୁ ବଦ୍ଧ ବୋଲି ଭାବନ୍ତି, ସେ ବଦ୍ଧ। ଏହି କାରଣରୁ ଜଗତ ମାୟାଜାଲରେ ଆବଦ୍ଧ ଥିଲେ ମଧ୍ୟ ଆଚାର୍ଯ୍ୟ ଶଙ୍କର ଓ ମହାପ୍ରଭୁ ଗୌରାଙ୍ଗଦେବ ପ୍ରଭୃତି ମହାପୁରୁଷମାନେ ମୁକ୍ତ ଏବଂ ଅନ୍ୟମାନେ ମୁକ୍ତ ହେଲେ ମଧ୍ୟ ଆପ୍ତବାକ୍ୟରେ ବିଶ୍ୱାସ ନ ଥିବାରୁ ସେମାନେ ବଦ୍ଧ, ସେମାନେ ଅଜ୍ଞାନ। ମୁକ୍ତି ମାନବର ସ୍ୱରୂପାବସ୍ଥା। ଅଜ୍ଞାନାବୃତ ହୋଇ ଆମେ ନିଜକୁ ବଦ୍ଧ ବୋଲି ଭ୍ରମ ଧାରଣା ପୋଷଣ କରୁଅଛୁଁ। ଶ୍ରୀଗୁରୁଦେବଙ୍କ କୃପା ଏବଂ ତାଙ୍କ ବାକ୍ୟରେ ବିଶ୍ୱାସ ବ୍ୟତୀତ ଏହି ଆବରଣମୋଚନ ସମ୍ଭବପର ନୁହେଁ।

ମନୁଷ୍ୟ ଭିତରେ ମନୁଷ୍ୟତ୍ୱକୁ ଉଦ୍‌ବୁଦ୍ଧ କରିଦେଇପାରିଲେ ତାଙ୍କୁ ପ୍ରକୃତ ସାହାଯ୍ୟ କରିବା ସଙ୍ଗେ ସମାନ। ମୁକ୍ତପୁରୁଷମାନଙ୍କର ତାହା ହିଁ ପ୍ରଧାନ କାର୍ଯ୍ୟ। ଆମେ ମନୁଷ୍ୟକୁ ନାନାବିଧ ଭାବରେ ସାହାଯ୍ୟ କରିଥାଉଁ; କିନ୍ତୁ ସେହି ସାହାଯ୍ୟରେ କିଛି ଫଳ ହୁଏ ନାହିଁ। ମନୁଷ୍ୟ ଭିତରେ ମୁକ୍ତ ପୁରୁଷ ସିଂହବିକ୍ରମରେ ଜାଗ୍ରତ ନ ହେଲେ ତାହାର ଅଭାବ ବିନାଶ ହେବ ନାହିଁ କିମ୍ବା ସେ ମୁକ୍ତ ବୋଲି ଅନୁଭବ କରିବ ନାହିଁ। ଆତ୍ମବିଶ୍ୱାସରେ ଅଚଳ ଅଟଳ ରହି ଅପରମଧରେ ସେହି ବିଶ୍ୱାସ ଜାତ କରାଇବା ହିଁ ମୁକ୍ତବ୍ୟକ୍ତିଙ୍କର କାର୍ଯ୍ୟ।



# ସ୍ୱପ୍ନ

## ଆରୋପ ଜ୍ଞାନ

ସ୍ୱପ୍ନ ଓ ଜାଗରଣ ଗୋଟିଏ ମନର କେବଳ ଦୁଇଗୋଟି ଭିନ୍ନ ଭିନ୍ନ ଅବସ୍ଥା । ଏହିଭାବରେ ଦେଖିଲେ ଜାଗ୍ରତ ଅବସ୍ଥା ଯେପରି, ସ୍ୱପ୍ନ ଅବସ୍ଥା ମଧ୍ୟ ସେହିପରି ସତ୍ୟ । ଜାଗ୍ରତ ଅବସ୍ଥାରେ ଏହି ଜଗତର ସ୍ୱରୂପ ନ ବୁଝି ଆପଣା ଇଚ୍ଛାନୁରୂପେ ମନ ଏହାକୁ ନାନାରୂପରେ ଅନୁମାନ କରେ । ପ୍ରକୃତରେ ଦେଖିବାକୁ ଗଲେ ତାର ସମସ୍ତ ଆରୋପ ହିଁ ମିଥ୍ୟା । ସ୍ୱପ୍ନାବସ୍ଥାରେ ମଧ୍ୟ ମନ ନିଜ ଇଚ୍ଛାନୁଯାୟୀ କଳ୍ପନା କରିଥାଏ । ତାହା ସମସ୍ତ ମଧ୍ୟ ମିଥ୍ୟା । ସୁତରାଂ, ମନର ଦିଗରୁ ବିଚାର କଲେ ଜାଗ୍ରତାବସ୍ଥା ଯେଉଁ ପରିମାଣରେ ସତ୍ୟ, ସ୍ୱପ୍ନାବସ୍ଥା ମଧ୍ୟ ସେହି ପରିମାଣରେ ସତ୍ୟ ।

ସ୍ୱପ୍ନ ହିଁ ଜୀବର ଆଧ୍ୟାତ୍ମିକ ଉନ୍ନତିର ସଙ୍କେତ । ଯେ ଯେତେ ଉନ୍ନତ ସ୍ୱପ୍ନ ଦେଖନ୍ତି, ସେ ସେତିକି ଅଗ୍ରସର ହୋଇ ଚାଲିଥାନ୍ତି । ପୂର୍ବସଂସ୍କାର ଯେତେ ପରିମାଣରେ ନିମଗ୍ନ ହେବ, ନୂତନ ସଂସ୍କାର ସେହି ପରିମାଣରେ ଭାସିଉଠିବ ।

ଚୈତନ୍ୟ ଅନ୍ନମୟ କୋଷ ତ୍ୟାଗ କଲେ ତନ୍ଦ୍ରା ହୁଏ । ପ୍ରାଣମୟ କୋଷ ତ୍ୟାଗ କରି ମନୋମୟ କୋଷକୁ ଗଲେ ସ୍ୱପ୍ନ । ତା'ପରେ ବିଜ୍ଞାନମୟ କୋଷରେ ସୂକ୍ଷ୍ମଦର୍ଶନ । ସ୍ୱପ୍ନଠାରୁ ତାର ପାର୍ଥକ୍ୟ ଅଛି । ତା'ପରେ ଆନନ୍ଦମୟ କୋଷରେ ତାର ସୁଷୁପ୍ତି । ଏ ଅବସ୍ଥାରେ ଖୁବ୍ ଆନନ୍ଦ ହୁଏ; କିନ୍ତୁ ମନର ଅଭାବ ଥାଏ ବୋଲି ଜାଗରଣରେ କିଛି ସ୍ମରଣ ହୁଏ ନାହିଁ । ସାରାଦିନର ପରିଶ୍ରମପରେ ଅଧଘଣ୍ଟା ସୁଷୁପ୍ତି ହେଲାମାତ୍ରେ ଶରୀରର ସମସ୍ତ ଅବସାଦ ଦୂର ହୋଇଯାଏ । ତା'ର କାରଣ ଏହି ଆନନ୍ଦ । ଆନନ୍ଦ ହିଁ ସବୁଥିର ରସାୟନ ।

ନିଦ୍ରା ତାମସୀ ବୃତ୍ତି । ଚିତ୍ତ ଯେତେ ଉନ୍ନତ ହେବ, ନିଦ୍ରା ସେତେ କମିଆସିବ । ଯୋଗୀଙ୍କର ନିଦ୍ରା ପ୍ରାୟ ନଥାଏ ।

## ସ୍ୱପ୍ନର ପ୍ରକାରଭେଦ

ସ୍ୱପ୍ନ ତିନି ପ୍ରକାର– (୧) ପ୍ରାଣମୟ କୋଷର ସ୍ୱପ୍ନ, (୨) ମନୋମୟ କୋଷର ସ୍ୱପ୍ନ ଓ (୩) ବିଜ୍ଞାନମୟ କୋଷର ସ୍ୱପ୍ନ । ତନ୍ଦ୍ରା ଆସିଲେ ମନ କ୍ଷଣକନିମିତ୍ତ ଦେହ ଛାଡ଼ି ପ୍ରାଣମୟ କୋଷକୁ ଚାଲିଯାଏ । ସେହି ତନ୍ଦ୍ରାମୁହୂର୍ତ୍ତରେ ଯେଉଁ ସ୍ୱପ୍ନ, ତାହା କିଛି ନୁହେଁ । ଦ୍ୱିତୀୟ ମନୋମୟ କୋଷର ସ୍ୱପ୍ନ । ଏହା ମାନସିକ ଚିନ୍ତାର ପ୍ରତିକ୍ରିୟା ବା ପ୍ରତିଘାତ ମାତ୍ର । ଏହା ମିଥ୍ୟା ସ୍ୱପ୍ନ । ତେବେ ପୂର୍ବଜନ୍ମର ସଂସ୍କାର ମଧ୍ୟ ମଝିରେ ମଝିରେ ଏହି କୋଷରେ ପ୍ରତିଭାତ ହୁଏ । ତୃତୀୟ ବିଜ୍ଞାନମୟ କୋଷର ସ୍ୱପ୍ନ । ବିଜ୍ଞାନମୟ କୋଷରେ ଗୁରୁଦର୍ଶନ ଓ ଦେବତାଦର୍ଶନ ହୁଏ । ଏହା ସତ୍ୟ ସ୍ୱପ୍ନ । ଦେବତାମାନେ ସେହି କୋଷରେ ଦର୍ଶନ ଦିଅନ୍ତି, ସେହି କୋଷଦ୍ୱାରା ତୁମମାନଙ୍କ ଭିତରେ ସ୍ପନ୍ଦନ ଅଣାଇଦିଅନ୍ତି ।

ମିଥ୍ୟାସ୍ୱପ୍ନ ବା ମନୋମୟ କୋଷରେ ସ୍ୱପ୍ନ ଦେଖାଯିବାବେଳେ ସଙ୍ଗେ ସଙ୍ଗେ ବିଜ୍ଞାନମୟ କୋଷର ସତ୍ୟର ପ୍ରତିଘାତ ଆସି ମନୋମୟ କୋଷର ମିଥ୍ୟାତ୍ୱ ପ୍ରମାଣିତ କରିଦିଏ । ସତ୍ୟ ସବୁ ସମୟରେ ଜାଗ୍ରତ ଥାଏ ।

ଯୋଗୀମାନଙ୍କର ଯୋଗନିଦ୍ରା । ତେବେ ଜଡ଼ଶରୀରରେ ବିଶ୍ରାମନିମିତ୍ତ ନିଦ୍ରାର ପ୍ରୟୋଜନ ହେଲେ ଯୋଗୀମାନେ ଇଚ୍ଛାପୂର୍ବକ ଅଜ୍ଞାନରେ ପ୍ରବେଶ କରିପାରନ୍ତି ।

## ସ୍ୱପ୍ନସିଦ୍ଧି

ସ୍ୱପ୍ନ ଅବସ୍ଥାରେ ଆତ୍ମଦର୍ଶନକୁ ସ୍ୱପ୍ନସିଦ୍ଧି କୁହାଯାଏ । ସ୍ୱପ୍ନରେ ହେଉ ବା ଯେଉଁ ପ୍ରକାରରେ ହେଉ, ଆତ୍ମଦର୍ଶନ ହେଲେ ମାନବର ଅଜ୍ଞାନତା ରହିବ ନାହିଁ । ଯେ କୌଣସି ଅବସ୍ଥାରେ ସତ୍ୟ ପ୍ରତିଫଳିତ ହେବାକ୍ଷଣି ଅସତ୍ୟ ଦୂର ହୋଇଯାଏ ।

ସ୍ୱପ୍ନ ଦୁଇ ପ୍ରକାରର ହୁଏ । ଜାଗ୍ରତ ରହି ସାଧନକାଳରେ ଯେଉଁ ସ୍ୱପ୍ନ ଅବସ୍ଥା ହୁଏ, ତାହା ଯୌଗିକ ସ୍ୱପ୍ନ । ନିଦ୍ରାବସ୍ଥାରେ ଯେଉଁ ସ୍ୱପ୍ନ ଦେଖାଯାଏ, ତାହା ମଧ୍ୟ ସ୍ୱପ୍ନ । ଯେଉଁ ସାଧକ ଯୌଗିକ ସ୍ୱପ୍ନରେ ଖୁବ୍ ଅଭ୍ୟସ୍ତ ହୋଇଯାନ୍ତି, ତାଙ୍କର ନିଦ୍ରାକାଳରେ ଅବଶଭାବରେ ଯୌଗିକ ସ୍ୱପ୍ନର ସଂସ୍କାରର ଅନୁଭୂତି ହୋଇଥାଏ । ସେହି ଅବସ୍ଥାରେ ଆତ୍ମଦର୍ଶନକୁ ସ୍ୱପ୍ନସିଦ୍ଧି କୁହାଯାଏ ।

ଆତ୍ମଜ୍ଞାନ ଲାଭ ବା ଆତ୍ମୋପଲବ୍ଧି କରିବାର ଗୋଟିଏ ସହଜ ଉପାୟ ହେଲା ନିଦ୍ରାସମୟରେ ସାଧନ କରିବା । ଆମେମାନେ ସାଧାରଣତଃ ବହିର୍ମୁଖୀ ଚିତ୍ତବୃତ୍ତିଗୁଡ଼ିକୁ ଅନ୍ତର୍ମୁଖୀ କରିବାନିମିତ୍ତ ନାନା ପ୍ରକାର ଚେଷ୍ଟା କରିଥାଉ; କିନ୍ତୁ ସବୁ ସମୟରେ କୃତକାର୍ଯ୍ୟ ହୋଇପାରୁ ନାହିଁ । ନିଦ୍ରା ଆସିବା ପୂର୍ବରୁ ମନ ସ୍ୱାଭାବକ ନିୟମରେ କ୍ରମେ କ୍ରମେ ଅନ୍ତର୍ମୁଖୀ ହୁଏ । ସୁତରାଂ, ଏହି ସମୟରେ ଯଦି କୌଣସି ସାଧକ ଆତ୍ମୋପଲବ୍ଧିନିମିତ୍ତ ଜପ-ଧ୍ୟାନାଦି ସାହାଯ୍ୟରେ ମନର ଦ୍ରଷ୍ଟା ହେବାପାଇଁ ଚେଷ୍ଟା କରନ୍ତି, ତାହାହେଲେ ଖୁବ୍ ସହଜରେ ତାଙ୍କର ସାଧନା ସଫଳ ହୋଇଯିବ ।

ତେବେ ଏହା ଖୁବ୍ ସହଜ ଓ ଖୁବ୍ କଠିନ ମଧ୍ୟ; କାରଣ, କେତେବଳେ ଯେ କେଉଁ ପ୍ରକାରେ ନିଦ୍ରା ଆସିଯାଏ, ତାହା କେହି ଧରିପାରନ୍ତି ନାହିଁ; କିନ୍ତୁ କିଛି ଦିନ ନିୟମିତ ଭାବରେ ଅଭ୍ୟାସ କଲେ ସବୁ ସମ୍ଭବ ହୁଏ । ଏହା କିପରି ଜାଣ ? ଯେପରି ନିଦ୍ରିତାବସ୍ଥାରେ ଜାଗ୍ରତ ରହିବା; ଜାଗତିକ ବସ୍ତୁ କିଛି ନାହିଁ, ଅଥଚ ମୁଁ ଅଛି—ଏହି ଭାବ ଉପଲବ୍ଧ କରିବା । ଏହା ଖୁବ୍ ଶାନ୍ତିର ଜିନିଷ । ନିଦ୍ରାକୁ ଜୟ କଲେ ମୋହ-ଆକର୍ଷଣକୁ ଜୟ କରାଯିବ । ମୁଁ ଯେତେବେଳେ ନିଦ୍ରାଯାଏ, ସେତେବେଳେ ମୋ ଭିତରେ ସମସ୍ତ ବିଶ୍ୱଜଗତ ଦେଖିବାକୁ ପାଏ । ସୁତରାଂ, ଯେଉଁମାନେ ସହଜରେ ଆତ୍ମୋପଲବ୍ଧି କରିବାକୁ ଇଚ୍ଛା କର, ସେମାନେ ନିଦ୍ରାରେ ଦ୍ରଷ୍ଟା ହେବାପାଇଁ ଶିଖ ।

## ସ୍ୱପ୍ନପ୍ରାପ୍ତି

ବାଲ୍ୟକାଳରେ ବିଦ୍ୟାସାଗର ମହାଶୟଙ୍କ ବୋଧୋଦୟ ନାମକ ପୁସ୍ତକରେ ପାଠ କରିଥିଲି, ସ୍ୱପ୍ନସବୁ ଅମୂଳକ ଚିନ୍ତାଭିନ୍ନ ଆଉ କିଛି ନୁହେଁ । ସେହିଦିନଠାରୁ ସ୍ୱପ୍ନଦର୍ଶୀ ବ୍ୟକ୍ତିମାନଙ୍କୁ ଲିଖିତ ବାକ୍ୟରେ ପ୍ରବୋଧ ଦେଇ ବିଜ୍ଞତାର ପରିଚୟ ଦେଇଥିଲି; କାରଣ, ମୋର ବିଶ୍ୱାସ ଥିଲା, ସ୍କୁଲ ପାଠ୍ୟପୁସ୍ତକର କଥା ମିଥ୍ୟା ହୋଇ ନ ପାରେ; କିନ୍ତୁ କାର୍ଯ୍ୟକାରଣର ପ୍ରତ୍ୟକ୍ଷଫଳରେ ବର୍ତ୍ତମାନ ଭକ୍ତର ଅପୂର୍ବ ବିଶ୍ୱାସ ଚାଲିଯାଇଛି । କାରଣ, ମୋ ଭାଗ୍ୟରେ ଅନେକ ସମୟରେ ସ୍ୱପ୍ନଫଳ ପ୍ରତ୍ୟକ୍ଷ ହୋଇଛି । ସ୍ୱଚକ୍ଷୁରେ କେତେ ଜଣଙ୍କୁ ସ୍ୱପ୍ନରେ ଔଷଧ ପାଇ ରୋଗମୁକ୍ତ ହେବାର ଦେଖିଛି । ଖୁଲନାଜିଲ୍ଲାବାସୀ ଜଣେ ଲୋକ ସ୍ୱପ୍ନ ଦେଖି ଦୁଇ ମାଇଲ ଦୂରରୁ ଘରକୁ ଆସି ସିନ୍ଧି କରୁଥିବାବେଳେ ଚୋରଙ୍କୁ ଧରିଥିଲା । ସୁତରାଂ, ଦୁଗ୍ଧପୋଷ୍ୟ ଶିଶୁପାଠକୁ ଆଉ ବିଶ୍ୱାସ କରିପାରୁ ନାହିଁ ।

ବିଜ୍ଞାନମୟ କୋଷରେ ଗୁରୁ ଓ ଇଷ୍ଟଙ୍କୁ ଦେଖିବାକୁ ହୁଏ; ଏହି କୋଷର ସ୍ୱପ୍ନ ସତ୍ୟ। ଏଥିରେ ବିପଦ-ଆପଦ ଜାଣିହୁଏ; କେତେବେଳେ ବା କଠିନ ରୋଗର ଔଷଧ ମିଳେ। ସୁତରାଂ, ସ୍ୱପ୍ନ ମିଥ୍ୟା ବା ଅଳୀକ ନୁହେଁ। ଏହା ଆତ୍ମାର ମନୋମୟ କୋଷରେ ବିହାରର ବିବରଣ। ପୁଣି ବିଜ୍ଞାନମୟ କୋଷସ୍ଥିତ ଆତ୍ମା ବିଜ୍ଞାନମୟ କ୍ଷେତ୍ରରେ ବିହାର କରିବା ସମୟରେ ଯାହା ଦେଖେ, ତାହା ବ୍ୟାବହାରିକ ଜଗତ୍‌ରେ ସତ୍ୟ ହୁଏ। ମୁଁ ସ୍ୱପ୍ନରେ ମନ୍ତ୍ର ପାଇଥିଲି। ଅନେକ ସୌଭାଗ୍ୟବଶରୁ ସ୍ୱପ୍ନରେ ମନ୍ତ୍ର ପାଇଥାନ୍ତି। ସ୍ୱପ୍ନରେ ମନ୍ତ୍ର ଲାଭ ହେଲେ ମଧ୍ୟ ସେହି ମନ୍ତ୍ର ସଦ୍‌ଗୁରୁଙ୍କ ନିକଟରୁ ପୁନରାୟ ଗ୍ରହଣ କରିବା ବିଧେୟ। କାରଣ, ଆତ୍ମାର ଶକ୍ତିସଞ୍ଚାରକ ଆଉ ଗୋଟିଏ ଆତ୍ମାର ପ୍ରୟୋଜନ।

## ଯୋଗନିଦ୍ରା

ନିଦ୍ରା ତାମସୀ ବୃତ୍ତି, ତାହା ମନୁଷ୍ୟର ସହଜ ଅବସ୍ଥା ନଷ୍ଟ କରି ତାକୁ ଅଧିକାର କରିବସେ। ନିଦ୍ରାଭିତରେ ଜାଗ୍ରତ ରହିଲେ ତାହାକୁ ହିଁ ଯୋଗନିଦ୍ରା କୁହାଯାଏ—ଏହା ହିଁ ସମାଧି। ପ୍ରଳୟକାଳରେ ମହାନିଦ୍ରା ଆସି ଜଗତ୍‌କୁ ଗ୍ରାସ କରିଦିଏ। ନିଦ୍ରା ସେହିପରି ପ୍ରତିଦିନ ଆସି ଜଗତ୍‌କୁ ଗ୍ରାସ କରୁଅଛି। ଆହାର ଓ ନିଦ୍ରା—ଏ ଦୁଇଟି ସାଧନପଥରେ ବିଶେଷ କଣ୍ଟକ। ଦିବାନିଦ୍ରା ବିଶେଷ ଅନିଷ୍ଟକାରକ।

ଆକାଶ ଓ ମେଘରେ ଆମେ ଯେଉଁ ଆଲୋକ ଦେଖିବାକୁ ପାଉ, ତାହାକୁ ବିଦ୍ୟୁତ୍ କୁହାଯାଏ। ଠିକ୍ ସେହିପରି ତେଜ ପୃଥିବୀର ସବୁ ପଦାର୍ଥରେ ଅଛି। ଏହିଭାବରେ ଜଗତ୍‌ର ସମସ୍ତ ପଦାର୍ଥରେ ଯେଉଁ ଅଜ୍ଞେୟ ତେଜ ବିରାଜିତ ଅଛି, ତାହାର ନାମ ତଡ଼ିତ। ପରୀକ୍ଷାଦ୍ୱାରା ଜଣାଯାଇଛି ଯେ ମାନବ-ଶରୀରରେ ମଧ୍ୟ ଏହି ତଡ଼ିତ୍ ବିଦ୍ୟମାନ। ଏହି ତଡ଼ିତ ସାହାଯ୍ୟରେ ଅନୁଭୂତି ହୁଏ। ମାନସିକ କାର୍ଯ୍ୟାଦି ସମସ୍ତ ଏହି ଶକ୍ତି ସାହାଯ୍ୟରେ ସମ୍ପନ୍ନ ହୁଏ। ଏହି ତଡ଼ିତ୍‌ଶକ୍ତି ହିଁ ମାନବର ଜୀବନୀ ଶକ୍ତି।

ବିଦ୍ୟୁତ୍ ପ୍ରବାହ ଆମ ଶରୀରରେ ପ୍ରବେଶ କଲେ ଆମର ଯେ କେତେ କ୍ଳେଶ ଅନୁଭୂତ ହୁଏ, ତାହା କେହି ଗୋଟିଏ ବ୍ୟାଟେରୀରେ ହସ୍ତ ସଂସ୍ଥାପନ କଲେ ସ୍ପଷ୍ଟ ବୁଝିପାରିବେ। ତଡ଼ିତ୍ ପ୍ରବାହ ଅଧିକ ପରିମାଣରେ ଆମ ଦେହରେ

ପ୍ରବେଶ କଲେ ଯେ ମୃତ୍ୟୁ ହୁଏ, ତାହା ବଜ୍ରପାତଦ୍ୱାରା ମନୁଷ୍ୟକୁ ମରିବାର ଦେଖି ଜଣାଯାଏ। ଯେଉଁ ପରିମାଣରେ ତଡ଼ିତ୍‌ଶକ୍ତି ଆମ ତନ୍ତ୍ରୀମଣ୍ଡଳୀ ମଧ୍ୟରେ ବିଚରଣ କରେ, ତା ଅପେକ୍ଷା ଅଧିକ ପରିମାଣରେ ତଡ଼ିତ୍ ଶରୀରରେ ପ୍ରବିଷ୍ଟ ହେଲେ ଆମର ଜ୍ଞାନ ରହିତ ହେବ।

ଗୋଟିଏ ମାନବ-ଶରୀରରୁ ଅନ୍ୟ ଶରୀରକୁ କୌଣସିମତେ ଅତ୍ୟଧିକ ତଡ଼ିତ ପ୍ରବାହିତ ହୋଇପାରେ ନାହିଁ। ଅତି ଅଳ୍ପ ପରିମାଣରେ ତଡ଼ିତ୍ ଅନ୍ୟ ଶରୀରକୁ ଗଲାକ୍ଷଣି ଅପର ବ୍ୟକ୍ତି ଚୈତନ୍ୟହୀନ ହୋଇଯାଏ। ଏହାକୁ ସମ୍ମୋହନ ବା ମେସ୍‌ମେରିଜମ୍ କୁହାଯାଏ।

ଯେପରି ନିଜ ଶରୀରରୁ ତଡ଼ିତ୍ ପ୍ରବାହିତ କରି ଅନ୍ୟ ଶରୀରକୁ ନେଇହୁଏ, ସେହିପରି ଅପର ଶରୀର ବା ଅପର ପଦାର୍ଥରୁ ତଡ଼ିତ ଆକର୍ଷଣ କରି ନିଜ ଶରୀରକୁ ଆଣି ନିଜେ ନିଜେ ଯୋଗନିଦ୍ରାଭିଭୂତ ହୋଇପାରିବ। ତଡ଼ିତ୍‌ର ଆକର୍ଷଣ ଓ ବିକର୍ଷଣ ଦୁଇଟି ଶକ୍ତି। ନିଜ ଶରୀରରୁ ଅନ୍ୟ ଶରୀରକୁ ତଡ଼ିତ୍ ଯେତେ ସହଜରେ ପ୍ରବାହିତ କରିହୁଏ, ଅପର ଶରୀରରୁ ବା ଚତୁଃପାର୍ଶ୍ୱସ୍ଥ ପାର୍ଥିବ ଦ୍ରବ୍ୟରୁ ସେତେ ସହଜରେ ନିଜ ଶରୀରକୁ ସେ ପ୍ରବାହ ଆଣିହୁଏ ନାହିଁ। ତେବେ ଏହା ଏକାବେଳକେ ଅସମ୍ଭବ ନୁହେଁ, ଅପେକ୍ଷାକୃତ କଠିନସାଧ୍ୟ।

ବାହ୍ୟବସ୍ତୁରୁ ତଡ଼ିତପ୍ରବାହ ଆକର୍ଷଣ କରିବାନିମିତ୍ତ କୌଣସି ପ୍ରକ୍ରିୟା ଆବଶ୍ୟକ ନାହିଁ। ଯଦି ଅନନ୍ୟମନା ହୋଇ ଇଚ୍ଛା କର, ତେବେ ବାହ୍ୟବସ୍ତୁରୁ ତଡ଼ିତ୍ ଆସିବାକୁ ଆରମ୍ଭ କରିବ। ଇଚ୍ଛାଶକ୍ତିର ଉତ୍କର୍ଷ ସାଧନ କରିପାରିଲେ ଏହି ଶକ୍ତିବଳରେ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ ସମ୍ପନ୍ନ ହୁଏ।

ଇଚ୍ଛାବୃତ୍ତି ମାନବ-ହୃଦୟରେ ଅଧିଷ୍ଠିତ। ଅଭ୍ୟାସ କଲେ ମାନବର ଇଚ୍ଛାଶକ୍ତି ପ୍ରବଳ ହୋଇଯାଏ। ଏଥିନିମିତ୍ତ କିଛି ଶ୍ରମ କରିବାର ଆବଶ୍ୟକତା ନାହିଁ। କେବଳ ମାତ୍ର ମନ ସ୍ଥିର କରି ଅର୍ଥାତ୍ ମନକୁ ଅନ୍ୟସବୁ ବସ୍ତୁରୁ ଅପସୃତ କରି କୌଣସି ବିଷୟ ଇଚ୍ଛା କଲେ ଇଚ୍ଛାନୁଯାୟୀ କାର୍ଯ୍ୟ ନିଶ୍ଚୟ ସମ୍ପନ୍ନ ହୁଏ। ଯଦି ମୁଁ ଅନନ୍ୟମନା ହୋଇ ଇଚ୍ଛା କରେ ଯେ ବାହ୍ୟବସ୍ତୁରୁ ତଡ଼ିତ୍ ମୋ ଦେହକୁ ଆସୁ, ତାହାହେଲେ ତାହା ଆସିବ।

ଏହିପରି କିଛି କ୍ଷଣ କଳାପରେ କ୍ରମେ ବାହ୍ୟବସ୍ତୁ ସହିତ ସବୁ ସମ୍ବନ୍ଧ ବିଚ୍ୟୁତ ହୋଇ ଏକପ୍ରକାର ଅଚୈତନ୍ୟ ଅବସ୍ଥା ଆସିଯିବ। ସେତେବେଳେ ଅଜ୍ଞାନତା

ରହିବ ନାହିଁ; ସହସା ଗୋଟିଏ ଅଭୂତପୂର୍ବ ଶକ୍ତି ଦୃଷ୍ଟିଗୋଚର ହେବ । ସାଧକ ବହୁ ଦୂରସ୍ଥ ଦ୍ରବ୍ୟ ଦେଖିବାକୁ ପାଇବେ । କେବଳ ଏତିକି ନୁହେଁ, ଭୂତ, ଭବିଷ୍ୟତ ସବୁ ତାଙ୍କ ଚକ୍ଷୁ ଆଗରେ ପ୍ରତିଭାତ ହେବ । ସେତେବେଳେ ଅତ୍ୟାଶ୍ଚର୍ଯ୍ୟ କ୍ଷମତା ଜନ୍ମିବ । ଯେତେବେଳେ ମାନବର ଏହିପରି ଅବସ୍ଥା ହୁଏ, ତାକୁ ଯୋଗନିଦ୍ରା କୁହାଯାଏ ।

## ଅଭ୍ୟାସ

ଏହି କ୍ଷମତା ଲାଭପାଇଁ ତିନିଗୋଟି ବିଷୟ ଶିକ୍ଷା କରିବା ଆବଶ୍ୟକ– (୧) ମନ ସ୍ଥିର କରିବା, (୨) ବାହ୍ୟବସ୍ତୁରୁ ବିଦ୍ୟୁତ୍ ଆକର୍ଷଣ କରିବା ଓ (୩) ଏହି କାର୍ଯ୍ୟକୁ ପୁନଃ ପୁନଃ ଅଭ୍ୟାସ କରିବା ।

ମନ ସ୍ଥିରକରି ନ ପାରିଲେ ଅଥବା ଅସ୍ଥିରଚିତ୍ତ ଲୋକପକ୍ଷରେ ଏହି ଆଶ୍ଚର୍ଯ୍ୟ ଶକ୍ତି ଲାଭ କରିବା ଅସମ୍ଭବ । ସମସ୍ତେ ଜାଣନ୍ତି, ମନ ବଡ଼ ଚଞ୍ଚଳ, ମନକୁ ସ୍ଥିରଭାବରେ ରଖିବା ବଡ଼ କଠିନ କାର୍ଯ୍ୟ । ତେବେ ଏହି ଚଞ୍ଚଳ ମନକୁ ସ୍ଥିର କରାଯାଇପାରେ; ପୁଣି ଏହି ମନକୁ ସଂପୂର୍ଣ୍ଣ ଆୟତ୍ତ ମଧ୍ୟ କରାଯାଇପାରେ । ତାହା ହେଉ ନ ଥିଲେ, ଏ ସଂସାରରେ କୌଣସି ମହତ୍ କାର୍ଯ୍ୟ ସମ୍ପନ୍ନ ହୋଇପାରୁ ନଥାନ୍ତା । ଯେ ମନକୁ ଯେତେ ସ୍ଥିର କରିପାରିଛନ୍ତି, ସେ ସଂସାରର ସେତେ ଉପକାର ସାଧନ କରିବାରେ କୃତକାର୍ଯ୍ୟ ହୋଇଛନ୍ତି ।

ମନ ସ୍ଥିର କରିବା ଯେପରି ସମ୍ଭବ, କୌଣସି ବିଷୟରେ ମନକୁ ନିବିଷ୍ଟ କରି ରଖିବା ମଧ୍ୟ ସେହିପରି ସମ୍ଭବ । ଯେତେବେଳେ ଅଭ୍ୟାସଦ୍ୱାରା ଏହି କାର୍ଯ୍ୟ ସମ୍ପନ୍ନ କରିପାରିବ, ସେତେବେଳେ ମନ କ୍ରମେ ବାହ୍ୟବସ୍ତୁରୁ ଅପସୃତ ହେବାକୁ ଆରମ୍ଭ କରିବ । ସେତେବେଳେ ସେହି ଗୋଟିଏ ବିଷୟରେ ମନ ଏକାଗ୍ର ହୋଇଗଲେ ତାର ଅନ୍ୟ କୌଣସି ବିଷୟରେ ଅସ୍ତିତ୍ୱଜ୍ଞାନ ରହିବ ନାହିଁ । ସେତେବେଳେ ସେହି ଗୋଟିଏ ବିଷୟରେ ସେ ନିମଗ୍ନ ହୋଇଯିବ । ଏହିପରି କାର୍ଯ୍ୟନିମିତ୍ତ ବିଶେଷ ଯତ୍ନ ଓ ଅଭ୍ୟାସ ଲୋଡ଼ା । ଯେତେବେଳେ ମନର ଏହି ଅବସ୍ଥା ଆସେ ଅର୍ଥାତ୍ ମନକୁ ଅଭ୍ୟାସଦ୍ୱାରା ନିଜ ଆୟତ୍ତରେ ରଖିହୁଏ, ସେତେବେଳେ ବାହ୍ୟବସ୍ତୁରୁ ନିଜ ଶରୀରକୁ ତଡ଼ିତ୍‌ଆକର୍ଷଣ କରିବା ପ୍ରୟୋଜନ । ମନ ଯଦି ସଂପୂର୍ଣ୍ଣ ଭାବରେ ଏ ବିଷୟରେ ନିବିଷ୍ଟ ହୁଏ, ତେବେ ବାହ୍ୟବସ୍ତୁରୁ ତଡ଼ିତ୍ ନିଜ ଶରୀରକୁ ଆନୟନ କରିବା କ୍ଲେଶକର ହେବ ନାହିଁ । ଏହିପରି ହେଲେ ଦିବ୍ୟଦୃଷ୍ଟି

ଲାଭ ହେବ ।

ପୂର୍ବଜନ୍ମମାନଙ୍କରେ ଇଷ୍ଟଦେବତା ଯେଉଁ ଭାବରେ, ଯେଉଁ ମୂର୍ତ୍ତିରେ ସାଧିତ ହୋଇଥାନ୍ତି, ସାଧନସିଦ୍ଧିପୂର୍ବରୁ ସେହି ଦେବତା ସ୍ୱପ୍ନରେ ଦର୍ଶନ ଦାନ କରି ଆକର୍ଷଣ କରନ୍ତି । ପୂର୍ବଯୁଗରେ ସେମାନେ ସାକ୍ଷାତ୍‌ଭାବରେ ଆସି ପରିଚୟ ଦେଉଥିଲେ । କଳିଯୁଗରେ ସାକ୍ଷାତ୍ ଦର୍ଶନ ଓ ସିଦ୍ଧଲାଭ ଏକା କଥା । ତେଣୁ ସେମାନେ ସ୍ୱପ୍ନରେ ଦର୍ଶନ ଦେଇଥାଆନ୍ତି ।

ଯେଉଁମାନେ ସ୍ୱପ୍ନରେ ଦେବତା ଦର୍ଶନ କରନ୍ତି କିମ୍ବା ସେମାନଙ୍କ ସହିତ ଆଳାପ କରନ୍ତି, ସେମାନଙ୍କର ଆଉ ଜନ୍ମ ହୁଏ ନାହିଁ । କେବଳ ଶାସ୍ତ୍ରବାକ୍ୟରେ ବିଶ୍ୱାସ ନ ହେବାରୁ ସ୍ୱପ୍ନରେ ଦର୍ଶନ କରି ଫଳ ପାଆନ୍ତି ନାହିଁ । ବ୍ରହ୍ମଜ୍ଞାନ ହୃଦୟରେ ଉଜ୍ଜ୍ୱଳ ହେଲେ ଦେବଦର୍ଶନ ହୁଏ । ଦେବତା, ସାଧୁ ପ୍ରଭୃତିଙ୍କୁ ସ୍ୱପ୍ନରେ ଦେଖିବା ବୃଥା ହୋଇଯାଏ ନାହିଁ । ସେସବୁ ସ୍ୱପ୍ନ ମନେ ରହେ । ସଦ୍‌ଗୁରୁଙ୍କ ପ୍ରଭାବ ସ୍ୱପ୍ନଭିତରେ ଅଧିକାଂଶ ସମୟରେ ପ୍ରକାଶିତ ହୁଏ ।

ମୃତ୍ୟୁ ଓ ନିଦ୍ରା ସବୁ ଦେହର । ମୃତ୍ୟୁଞ୍ଜୟ ବା ନିଦ୍ରାଜୟ ଅର୍ଥ ଏପରି ନୁହେଁ ଯେ କେବେ ତାହାର ନିଦ୍ରା କିମ୍ବା ମୃତ୍ୟୁ ହେବ ନାହିଁ । ଆତ୍ମଚୈତନ୍ୟକୁ ପ୍ରଦୀପ୍ତ ରଖି ନିଦ୍ରାଭିଭୂତ ହେଲେ ନିଦ୍ରାରେ ମଧ୍ୟ ଜାଗ୍ରତ ରହିପାରିବ । ଏହା ହିଁ ନିଦ୍ରାଜୟ ।

ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତିର ଦର୍ଶନ ମିଥ୍ୟା । ସତ୍ୟ ସବୁ ସମୟରେ ତୁରୀୟ ଅର୍ଥାତ୍ ସତ୍ୟ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତିର ଅତୀତ । ଆମେ ଜାଗ୍ରତ ଅବସ୍ଥାରେ ଇନ୍ଦ୍ରିୟସାହାଯ୍ୟରେ ଯାହା ଅନୁଭବ କରିଥାଉଁ, ସେସବୁ ମିଥ୍ୟା । ସ୍ୱପ୍ନ ସମୟରେ ତାହା ସତ୍ୟ ବୋଲି ମନେ ହେଲେ ମଧ୍ୟ ତାହା ପ୍ରକୃତରେ ସତ୍ୟ ନୁହେଁ । ସୁଷୁପ୍ତିରେ ଜୀବ ଅଜ୍ଞାନରେ ପ୍ରବେଶ କରେ । ଜାଗ୍ରତାଦି ଅବସ୍ଥାଭେଦରେ ଯାହା ଏକ ବୋଲି ଦୃଢ଼ ପ୍ରତ୍ୟୟ ଜାତ ହୁଏ, ତାହା ହିଁ ତୁରୀୟ ଅବସ୍ଥା । କ୍ଷୁତ୍, ପିପାସା ସଙ୍ଗରେ ଯିବ ନାହିଁ । ଦେହତ୍ୟାଗ ସଙ୍ଗେ ସଙ୍ଗେ ତାହା ମଧ୍ୟ ଚାଲିଯିବ; କିନ୍ତୁ ତୁମର ନିଦ୍ରାଟି ତୁମକୁ ଛାଡ଼ିବ ନାହିଁ । ମୃତ୍ୟୁପରଠାରୁ ଘୁମ ବା ତମୋଗୁଣ ସମସ୍ତଙ୍କୁ ଆଚ୍ଛନ୍ନ କରି ରଖେ । ଏହି ମହାଶତ୍ରୁକୁ ଜୟ କରିପାରିଲେ ବ୍ରହ୍ମାନନ୍ଦ ସହଜରେ ସାଧକଙ୍କର କରାୟତ୍ତ ହେବ । ତେଣୁ ଜାଗ୍ରତରେ ନିଦ୍ରା ଓ ନିଦ୍ରାରେ ଜାଗରିତ ରହିବା ଏକାନ୍ତ ଆବଶ୍ୟକ । ଦେହ ନିଦ୍ରାଭିଭୂତ ହେଉ, କିନ୍ତୁ ମନ ସର୍ବଦର୍ଶୀ ହୋଇ ସିଦ୍ଧନାମ-ଜପରେ ମଗ୍ନ ରହୁ—ଏହା ହିଁ ମହାଜପ; ତେବେ

ଯାଇ ମାୟାଜୟ ଓ ବ୍ରହ୍ମଲାଭ ହେବ ।

କେହି ଯଦି ସଦ୍‌ଗୁରୁଙ୍କ ଦର୍ଶନ ଲାଭ କରିବାକୁ ଇଚ୍ଛା କରନ୍ତି, ତେବେ ଏହି ନିଦ୍ରାମଧ୍ୟରେ ଜାଗ୍ରତ ରହିପାରିଲେ ସାଧକ ତାଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କରିପାରିବେ ।

ଯେତେବେଳେ କର୍ମ-କୋଳାହଳରୁ ଅବସର ନେବ, ସେତେବେଳେ 'ଜୟଗୁରୁ' 'ଜୟଗୁରୁ' ଏହି ସିଦ୍ଧମନ୍ତ୍ର ଯଥାବିଧାନରେ ଜପ କରିବ । କିଛିଦିନ ପରେ ତାହା ଅଭ୍ୟାସରେ ପରିଣତ ହୋଇଯିବ । ଯେତେବେଳେ ସେହି ମନ୍ତ୍ର ନିଦ୍ରାଭିତରେ ଜପ ହେଉଛି ବୋଲି ଅନୁଭବ କରିବ, ସେତେବେଳେ ନାମର ମହିମା ଦର୍ଶନ କରି ଆନନ୍ଦରେ ଆତ୍ମହରା ହୋଇଯିବ । ଗୁରୁ ସେତେବେଳେ ସ୍ୱ-ଭାବନା ଅନୁଯାୟୀ ଅନ୍ତରରେ ଦର୍ଶନ ଦାନ କରିବେ ।



# ସାଧୁ-ସନ୍ନ୍ୟାସୀ

## ବ୍ରହ୍ମଜ୍ଞ

ଯେଉଁମାନଙ୍କ ହୃଦୟରେ ଆଚାର୍ଯ୍ୟ ଶଙ୍କର ଓ ଗୌରାଙ୍ଗଦେବଙ୍କର ଗୋଟିଏ ସିଂହାସନ ପ୍ରତିଷ୍ଠିତ ହୋଇଅଛି ଏବଂ ଭକ୍ତିଗଙ୍ଗା ଜ୍ଞାନ-ସମୁଦ୍ର-ସହିତ ମିଳିତ ହୋଇଅଛି, ସେମାନେ ଜୀବନ୍ମୁକ୍ତ ସାଧୁ । ତତ୍ତ୍ୱଜ୍ଞାନୀ, ନିର୍ଲିପ୍ତ ଗୃହସ୍ଥ ଏବଂ ପରମହଂସ ସନ୍ନ୍ୟାସୀ ଜୀବନ୍ମୁକ୍ତ । ଗୋଟିଏ କଥାରେ, ବ୍ରହ୍ମବିଦ୍ ମାତ୍ରେ ମୁକ୍ତପୁରୁଷ; କିନ୍ତୁ ବ୍ରହ୍ମବିଦ୍ କହିଲେ—ଆଧୁନିକ ଲୋକେ ଆତଙ୍କିତ ହୋଇପଡ଼ନ୍ତି । କାରଣ, ସେମାନେ ବ୍ରହ୍ମଜ୍ଞାନୀ ଅର୍ଥରେ ସ୍ୱେଚ୍ଛାଚାରୀ, ସମାଜଦ୍ରୋହୀ, ଦେବଗୁରୁନିନ୍ଦାକାରୀ, ବେଦବିରୋଧୀ ନାସ୍ତିକଙ୍କୁ ବୁଝନ୍ତି । ଯେଉଁ ଦେଶରେ ବ୍ରହ୍ମଜ୍ଞ ଶଙ୍କରାଚାର୍ଯ୍ୟ ଆବିର୍ଭୂତ ହୋଇ ବ୍ରହ୍ମଜ୍ଞାନ-ପ୍ରଚାରଦ୍ୱାରା ମୁକ୍ତିର ଦ୍ୱାର ଉଦ୍‌ଘାଟନ କରିଥିଲେ, ସେହି ଦେଶ ଲୋକଙ୍କର ସାଧୁମାନଙ୍କ ସମ୍ବନ୍ଧରେ ଏପରି ଧାରଣା ଯେ କାହିଁକି ହେଲା, ତାହା ମହାମାୟାଙ୍କୁ ଗୋଚର ।

ବ୍ରହ୍ମଜ୍ଞ ମହାତ୍ମାଙ୍କ ନିକଟରେ ଜଗତ୍‌ର ଯାବତୀୟ ବସ୍ତୁ ବ୍ରହ୍ମସ୍ୱରୂପରେ ପ୍ରତିଭାତ । ସାଧାରଣ ଲୋକେ ନିଜ ଇଷ୍ଟଦେବତାଙ୍କ ବ୍ୟତୀତ ତୁଷ୍ଟ ହୋଇପାରନ୍ତି ନାହିଁ; କିନ୍ତୁ ବ୍ରହ୍ମଜ୍ଞଙ୍କ ନିକଟରେ ସମସ୍ତ ହିଁ ଇଷ୍ଟଦେବତାସ୍ୱରୂପ । ଶାକ୍ତମାନେ କହନ୍ତି, ଶକ୍ତି ଭିନ୍ନ ମୁକ୍ତି ନାହିଁ । ବୈଷ୍ଣବମାନେ କାଳୀ ନାମ ଶୁଣିଲେ କର୍ଣ୍ଣରେ ଅଙ୍ଗୁଳି ଦିଅନ୍ତି, କିନ୍ତୁ ବ୍ରହ୍ମଜ୍ଞ ସାଧୁଙ୍କ ନିକଟରେ କାଳୀ, କୃଷ୍ଣ, ଶିବ ସମାନ ଆଦର ପ୍ରାପ୍ତ ହୁଅନ୍ତି । ସାଧାରଣ ଲୋକେ ତୁଳସୀବୃକ୍ଷକୁ ପବିତ୍ର ମନେ କରନ୍ତି; କିନ୍ତୁ ପ୍ରକୃତ ସାଧୁ ବୃକ୍ଷମାତ୍ରକୁ ତୁଳସୀସଦୃଶ ପବିତ୍ର ଜ୍ଞାନ କରନ୍ତି ।

ସାଧାରଣ ଲୋକେ ଶାଳଗ୍ରାମ ଶିଳାକୁ ନାରାୟଣ ମନେ କରନ୍ତି; କିନ୍ତୁ ସାଧୁଙ୍କ ନିକଟରେ ସବୁ ଶିଳା ନାରାୟଣସ୍ୱରୂପ । ସୁତରାଂ, ଯେଉଁମାନେ ନାରାୟଣ ଶିଳାକୁ ଚୋଇଠା ମାରି ବ୍ରହ୍ମଜ୍ଞାନର ପରିଚୟ ଦିଅନ୍ତି, ସେମାନେ କିପରି ଜ୍ଞାନୀ,

ତାହା ଆମ ଧାରଣାର ଅତୀତ । ସବୁ କାଳର ପ୍ରଭାବ । ସମାଜର ସ୍ୱେଚ୍ଛାଚାରିତା ଓ ଉଚ୍ଛୃଙ୍ଖଳତା ହିଁ ଏହିପରି ସର୍ବନାଶର ମୂଳ କାରଣ, ଏଥିରେ ଟିକିଏ ହେଲେ ସନ୍ଦେହ ନାହିଁ ।

## ବ୍ରହ୍ମଲୋକବାସୀ

ପ୍ରକୃତ ଜୀବନ୍ମୁକ୍ତ ସାଧୁ ସାଧାରଣ ମନୁଷ୍ୟମଣ୍ଡଳୀଠାରୁ ବହୁ ଉଚ୍ଚରେ ଅବସ୍ଥାନ କରନ୍ତି । ସେ ଯେଉଁଠାରେ ରହନ୍ତି, ସେହିଠାରେ ରୋଗ, ଶୋକ, ଭୟ, ଦାରିଦ୍ର୍ୟ ଏସବୁ କିଛି ରହେ ନାହିଁ । ସେ ପୃଥିବୀରେ ଥିଲେ ମଧ୍ୟ ବ୍ରହ୍ମଲୋକବାସୀ, ରୋଗୀ ହୋଇଥିଲେ ମଧ୍ୟ ବଳବାନ୍ । ସେ ଭିକ୍ଷୁକ ଅବସ୍ଥାରେ ଥିଲେ ମଧ୍ୟ ରାଜଚକ୍ରବର୍ତ୍ତୀ । ଯେ ପ୍ରକୃତରେ ଜୀବନ୍ମୁକ୍ତ ସାଧୁ, ସେ ଅତିମାତ୍ରାରେ ତିରସ୍କୃତ ହେଲେ ମଧ୍ୟ କେବେହେଲେ ରୁକ୍ଷ ବାକ୍ୟ ପ୍ରୟୋଗ କରନ୍ତି ନାହିଁ ଏବଂ ସେ ଅତିମାତ୍ରାରେ ପ୍ରଶଂସିତ ହେଲେ ମଧ୍ୟ ପ୍ରିୟବାକ୍ୟ କହନ୍ତି ନାହିଁ । ସେ ଆହତ ହେଲେ ମଧ୍ୟ ପ୍ରତିଘାତ କରନ୍ତି ନାହିଁ କିମ୍ବା ହନ୍ତାର ଅମଙ୍ଗଳ ହେଉ, ଏପରି ଇଚ୍ଛା କରନ୍ତି ନାହିଁ । ଯେ ଏପରି ଗୁଣସମ୍ପନ୍ନ, ତ୍ରିଲୋକରେ ତାଙ୍କ ଅପେକ୍ଷା ପୂଜ୍ୟ କେହି ନାହାନ୍ତି ।

ସାଧକ ଯେତେବେଳେ ନିଜକୁ ଚିରଦିନପାଇଁ ଇଷ୍ଟଦେବତାଙ୍କ ଶ୍ରୀଚରଣରେ ଉତ୍ସର୍ଗ କରି ନିତ୍ୟାନନ୍ଦର ଅଧିକାରୀ ହୁଅନ୍ତି, ସେତେବେଳେ ସେ ସ୍ପଷ୍ଟ ଦେଖିପାରନ୍ତି ଯେ ତାଙ୍କର ସେହି ପ୍ରେମ ଓ ଆନନ୍ଦ ଅନନ୍ତକାଳବ୍ୟାପୀ । କୌଣସି କାଳରେ, କୌଣସି ଜଗତ୍‌ରେ ସେହି ପ୍ରେମ ଓ ଆନନ୍ଦର କ୍ଷୟ ବା ବିନାଶ ହୁଏ ନାହିଁ । ଇହଲୋକରେ ଅବସ୍ଥାନ କରିସେ ତାଙ୍କ ସହବାସଜନିତ ଯେଉଁ ପ୍ରେମ ଓ ଆନନ୍ଦ ସମ୍ଭୋଗ କରନ୍ତି, ଦେହାବସାନ ପରେ ମଧ୍ୟ ତାହା ତାଙ୍କ ନିକଟରେ ରହିବ ଏବଂ ସେ ସେହି ପ୍ରେମ ସମ୍ଭୋଗ କରିବେ । ମୃତ୍ୟୁ ତାଙ୍କ ନିକଟରେ ମୃତ୍ୟୁପରି ଆଉ ପ୍ରତୀୟମାନ ହେବ ନାହିଁ । ଇହକାଳରେ ସାଧକଙ୍କର ଅମର ଜୀବନ, ଅନନ୍ତ ଜୀବନ ବା ସତ୍ୟ ଜୀବନ ଲାଭ ହେବ । ଏହିପରି ସତ୍ୟଜୀବନଲାଭ ହିଁ ଜୀବନ୍ମୁକ୍ତ ଅବସ୍ଥା । ଇହ ଲୋକରେ ଯେ ଜୀବନ୍ମୁକ୍ତ, ପରଲୋକରେ ସେ ନିର୍ବାଣମୁକ୍ତି ଲାଭ କରିଥାନ୍ତି ।

## ସନ୍ନ୍ୟାସୀଙ୍କ ଲକ୍ଷଣ

ସାଧୁଙ୍କ ଦେହକୁ ମଧ୍ୟ ରୋଗ ଛାଡ଼େ ନାହିଁ । କାରଣ, ସାଧୁଙ୍କ ଦେହ, ଅସାଧୁଙ୍କ ଦେହ, ଏପରିକି ବିଲୁଆ, କୁକୁରଙ୍କ ଦେହ ମଧ୍ୟ ଏକା ଧାତୁରେ, ଏକା

ଉପାଦାନରେ, ଏକା ପାଗରେ ଗଠିତ ହୋଇଛି । ସୁତରାଂ, ଦେହର ବିଧାନ ଅନୁସାରେ ରୋଗ ନ ହେବ ବା କିପରି ? ଦେହର ତ ମୁକ୍ତି ହୁଏ ନାହିଁ, ମୁକ୍ତି ହୁଏ ଜ୍ଞାନର । ଦେହର ମୁକ୍ତି ହେଲେ ବିଲୁଆ, କୁକୁର ସମସ୍ତେ ମୁକ୍ତି ଲାଭ କରୁଥାନ୍ତେ ।

ସନ୍ନ୍ୟାସୀ କାହାକୁ କହନ୍ତି ? ଘର ଛାଡ଼ି କୁଟୀରରେ ଯାହାଙ୍କର ଆସକ୍ତି, ଶଯ୍ୟା ଛାଡ଼ି ଯାହାଙ୍କର ଲେଙ୍ଗୁଟି ଓ କମ୍ବଳରେ ଆସକ୍ତି, ସେ ଗୃହୀମାନଙ୍କଠାରୁ ମଧ୍ୟ ଅଧମ । ସବୁ ପ୍ରକାର ଆସକ୍ତିତ୍ୟାଗ ହିଁ ପ୍ରକୃତ ସନ୍ନ୍ୟାସ । ଯେ ପରକୁ ଅମୃତ ବିତରଣକରି ନିଜେ ହଳାହଳ ପାନ କରନ୍ତି, ସେ ପ୍ରକୃତ ସନ୍ନ୍ୟାସୀ । ଯେ ପର ଗଳାରେ ମଣିହାର ପିନ୍ଧାଇ ନିଜ ଗଳାରେ ଫଣୀହାର ଧାରଣ କରନ୍ତି, ସେ ପ୍ରକୃତ ସନ୍ନ୍ୟାସୀ । ଯେ ବୁଝନ୍ତି ଯେ ମୁଁ ଏହି ରକ୍ତମାଂସର ପିଞ୍ଜରା ଆଶ୍ରୟ କରି ଚାଲିଛି, ଏହାକୁ ସ୍ୱର୍ଣ୍ଣମଣ୍ଡିତ କଲେ ଅଥବା ଛିନ୍ନକନ୍ଥାରେ ଆବୃତ କଲେ ଉଭୟ ସମାନ, ସେ ପ୍ରକୃତ ସନ୍ନ୍ୟାସୀ ।

ଧର୍ମଲାଭ ଉଦ୍ଦେଶ୍ୟରେ ଯେ ସନ୍ନ୍ୟାସୀ ହୁଅନ୍ତି, ସେ ଭଣ୍ଡ । ସନ୍ନ୍ୟାସୀଙ୍କ ଜୀବନ ପରହିତନିମିତ୍ତ । ନିଜକୁ ତ୍ୟାଗ କରିବା ହିଁ ପ୍ରକୃତ ସନ୍ନ୍ୟାସ । କ୍ଷୁଦ୍ର କର୍ତ୍ତବ୍ୟକୁ ମହାକର୍ତ୍ତବ୍ୟ ନିକଟରେ ବଳିଦେବା ହିଁ ପ୍ରକୃତ ସନ୍ନ୍ୟାସ ।

ଯେଉଁ ସାଧୁମାନେ ସଦାସର୍ବଦା ବୁଲନ୍ତି, କୌଣସି ସ୍ଥାନରେ ସ୍ଥାୟୀ ଭାବରେ ରୁହନ୍ତି ନାହିଁ, ସେମାନଙ୍କୁ 'ରମ୍‌ତା' ସାଧୁ କହନ୍ତି । ରମ୍‌ତା ସାଧୁମାନଙ୍କର ଚିତ୍ତ ସହଜରେ ମଳିନ ହୁଏ ନାହିଁ, ତେଣୁ ସେମାନଙ୍କର ସହଜରେ ପତନ ହୁଏ ନାହିଁ । ନଦୀର ସ୍ରୋତ ବହିଯାଉଥିଲେ ଯେପରି ଶିଉଳି ଜନ୍ମେ ନାହିଁ, ଏହା ସେହିପରି । କଥାରେ ଅଛି, ''ରମ୍‌ତା ସାଧୁ ଅଉର୍ ଚଲ୍‌ତୀ ନଦୀ ।''

ସନ୍ନ୍ୟାସୀଙ୍କ ପକ୍ଷରେ ଏକାକୀ ଭ୍ରମଣ କରିବା ବିଧେୟ । ତାହାହେଲେ ସନ୍ନ୍ୟାସୀଙ୍କ ଜୀବନ ପବିତ୍ର ହୋଇ ରହେ । ଗୋଟିଏ ପ୍ରଚଳିତ କଥା ଅଛି, ଦୁଇ ଜଣ ସନ୍ନ୍ୟାସୀ ଏକତ୍ର ରହିଲେ ମିଥୁନ, ତିନି ଜଣ ଏକତ୍ର ରହିଲେ ଗ୍ରାମ, ପୁଣି ଚାରି ଜଣ ଏକତ୍ର ବାସ କଲେ ନଗର ।

ସାଧୁମାନଙ୍କର ସମୟ-ସମୟରେ ଯେଉଁ କ୍ରୋଧ ହୁଏ, ତାହା ପ୍ରକୃତରେ କ୍ରୋଧ ନୁହେଁ; କାରଣ, ପ୍ରକୃତ କ୍ରୋଧ ପରର ଅନିଷ୍ଟ ଇଚ୍ଛାରେ ଉତ୍ପନ୍ନ ହୁଏ; କିନ୍ତୁ

ସାଧୁମାନେ କାହାର ହେଲେ ମନ୍ଦ ପାଞ୍ଚନ୍ତି ନାହିଁ । ସେମାନଙ୍କର କ୍ରୋଧ ସାମୟିକ । ତାହା ଜୀବର ମଙ୍ଗଳପାଇଁ ହୋଇଥାଏ ।

## ସାଧୁଙ୍କୁ ଚିହ୍ନିବ କିପରି ?

ମହାପୁରୁଷଙ୍କ ବ୍ୟତୀତ ମହାପୁରୁଷଙ୍କୁ କେହି ଚିହ୍ନିପାରନ୍ତି ନାହିଁ । ତୁମର ଯେତିକି ଉନ୍ନତି ହୋଇଥିବ, ସେତିକି ଚିହ୍ନିପାରିବ । ସାଧାରଣତଃ ଯାହାଙ୍କର ଯେପରି ସଂସ୍କାର, ତାଙ୍କର ଅନୁକୂଳ କଥା କେହି କହିଲେ ସେ ଲୋକ ଉକ୍ତ ଲୋକଙ୍କୁ ସାଧୁ ମନେକରନ୍ତି; କିନ୍ତୁ ବିପରୀତ କଥା କହିଲାମାତ୍ରେ ତାଙ୍କୁ ଅସାଧୁ ଆଖ୍ୟା ଦେଇଥାନ୍ତି । ନିଜର ମନ-ବୁଦ୍ଧିର ମାନଦଣ୍ଡରେ ଲୋକେ ସାଧୁଙ୍କୁ ଦେଖନ୍ତି । ସୁତରାଂ, ନିଜେ ସାଧୁ ନ ହେଲେ କେହି ସାଧୁଙ୍କୁ ଚିହ୍ନିପାରନ୍ତି ନାହିଁ ଅଥଚ ସାଧୁଙ୍କ କୃପା ବ୍ୟତୀତ କେହି ତାଙ୍କୁ ଚିହ୍ନିପାରନ୍ତି ନାହିଁ । ଜଣେ ଖୁବ୍ ଭକ୍ତ ହେଲେ ଯେ ସାଧୁଙ୍କୁ ଚିହ୍ନି ପାରିବେ, ତାହା ମଧ୍ୟ ନୁହେଁ; ତେବେ ସେ ତାଙ୍କ ବିଷୟ ସାମାନ୍ୟ କିଛି ବୁଝିପାରିବେ । ଭକ୍ତ ଯେଉଁଦିନ ଶ୍ରୀଗୁରୁଦେବଙ୍କଠାରେ ଲୀନ ହୋଇଯିବେ, ସେହିଦିନ ସେ ଯେକୌଣସି ସାଧୁଙ୍କୁ ଚିହ୍ନିପାରିବେ ।

ଗୃହସ୍ଥମାନଙ୍କର ଭକ୍ତିମାର୍ଗ—ବିଷ୍ଣୁ ସେମାନଙ୍କର ଆଦର୍ଶ । ସନ୍ନ୍ୟାସୀମାନଙ୍କର ଜ୍ଞାନମାର୍ଗ—ଶିବ ସେମାନଙ୍କର ଆଦର୍ଶ । ଗୁରୁଦେବ କହିଲେ ଶିବଙ୍କୁ ବୁଝିବାକୁ ହେବ । ସେ ସନ୍ନ୍ୟାସୀ ହୋଇ ସୁଦ୍ଧା ବିଶ୍ୱପ୍ରକୃତିକୁ ହୃଦୟରେ ଧାରଣ କରନ୍ତି ।

ଜ୍ଞାନଭାବ ଧରି କଦାପି ସଂସାର କରିବ ନାହିଁ । କାରଣ, ଜ୍ଞାନର ଯେତେ ଅନୁଶୀଳନ କଲେ ମଧ୍ୟ ସଂସାର ଛାଡ଼ିପାରିବ ନାହିଁ । ତେବେ ଭକ୍ତିଭାବ ଧରି ପଞ୍ଚଭାବ ସହିତ ମିଶାଇ ଆତ୍ମୋନ୍ନତି କରାଯାଇପାରେ । ଜ୍ଞାନୀ ଭାବନ୍ତି, ମୁଁ ଦେହ ନୁହେଁ, ମନ ନୁହେଁ—ଏହିପରି । ଏହି ଭାବ ଧରି ଗୁଣର ଅତୀତ ହେବାକୁ ହୁଏ । ଗୃହୀମାନଙ୍କର ସଂସାରରେ ଏହି ଭାବର ସାଧନା ହୋଇପାରିବ ନାହିଁ ।

## ସାଧୁସଙ୍ଗ

ସାଧୁ-ମହାପୁରୁଷ ଜ୍ୱଳନ୍ତ ଅଗ୍ନି । ସାଧୁସଙ୍ଗ ବା ସାଧୁସେବା ବିଫଳ ହୁଏ ନାହିଁ । ଦିନେ ନା ଦିନେ ତାହାର ଫଳ ଅବଶ୍ୟ ପ୍ରାପ୍ତ ହେବ । ସାଧୁ ମହାଜନପ୍ରତି ଅତ୍ୟାଚାରରୂପ ଅପରାଧ କଲେ ତାହା ଅତ୍ୟାଚାରୀଙ୍କ ଉପରେ ସଂପୂର୍ଣ୍ଣଭାବରେ ପ୍ରତିଫଳିତ ହୋଇଥାଏ ।

ଘୋରଣା ଚକିର ମଧ୍ୟସ୍ଥିତ ଖୁଣ୍ଟିଠାରୁ ଦୂରରେ ଥିବା ଗହମ ଚକର ନିଷ୍ପେଷଣରେ ଚୂର୍ଣ୍ଣ-ବିଚୂର୍ଣ୍ଣ ହୋଇଯାଏ, କିନ୍ତୁ ଯେଉଁ ଗହମ, ଖୁଣ୍ଟିକୁ ଆଶ୍ରୟ କରିଥାଏ, ତାହା ଅକ୍ଷତ ଅବସ୍ଥାରେ ରହେ। ଏ ସଂସାର ମଧ୍ୟ ସେହି ଘୋରଣା ଚକିପରି। ଯେଉଁମାନେ ଅହଂବୁଦ୍ଧିଦ୍ୱାରା ପରିଚାଳିତ ହୋଇ ସଂସାରରେ ବିଚରଣ କରନ୍ତି, ସଂସାର-ଚକ୍ରର ଆବର୍ତ୍ତରେ ପଡ଼ି ଚୂର୍ଣ୍ଣ-ବିଚୂର୍ଣ୍ଣ ହୋଇଯାନ୍ତି। କେବଳ ଯେଉଁମାନେ ଏ ସଂସାର-ଚକ୍ରର ଖୁଣ୍ଟି ସ୍ୱରୂପ ଭଗବାନଙ୍କୁ ଆଶ୍ରୟ କରି ରହନ୍ତି, ସେହିମାନେ ହିଁ ସାଧୁସଜ୍ଜନ। ସେମାନେ ଏ କୂଳ, ସେ କୂଳ—ଦୁଇକୂଳ ରକ୍ଷା କରି ଫଳଭୋଗ କରନ୍ତି।

ଦୋଷାଂଶ ପରିତ୍ୟାଗ କରି ଗୁଣାଂଶ ଗ୍ରହଣ କରିବା ସାଧୁମାନଙ୍କର ଲକ୍ଷଣ—ଯେପରି ଦୁଧ ଓ ଜଳ ମିଶାଇଦେଲେ ହଂସ କେବଳ ଦୁଧଟିକକ ଗ୍ରହଣ କରେ। ଗୁଣାଂଶ ପରିତ୍ୟାଗ କରି ଦୋଷାଂଶ ଗ୍ରହଣ କରିବା ଅସାଧୁମାନଙ୍କର ଲକ୍ଷଣ—ଯେପରି ମଳ ଓ ମଧୁ ଏକ ସ୍ଥାନରେ ଥିଲେ ମଧ ମାଛି ମଧୁ ଛାଡ଼ି ମଳରେ ବସେ।

ସାଧୁସଙ୍ଗର ପ୍ରଭାବ ଆଶ୍ଚର୍ଯ୍ୟଜନକ। ବର୍ଷ ବର୍ଷ ଯୋଗ-ତପସ୍ୟା କରି ଯାହା ଲାଭ ହୁଏ ନାହିଁ, ଥରେ ସାଧୁ ସଙ୍ଗ କଲେ ତାହା ଅନାୟାସରେ ଲାଭ ହୁଏ। ସାଧୁମାନଙ୍କ ଦର୍ଶନମାତ୍ରେ ପାପରୁ ମୁକ୍ତି ମିଳେ। ସାଧୁଙ୍କ ଦର୍ଶନ ଓ ସେମାନଙ୍କୁ ସ୍ପର୍ଶ କରିବାଦ୍ୱାରା ସେମାନଙ୍କର ସାତ୍ତ୍ୱିକ ପରମାଣୁ ସାଧାରଣ ଲୋକଙ୍କ ତାମସିକ ପରମାଣୁକୁ ଅଭିଭୂତ କରିପକାଏ। ସାଧୁମାନେ ଅନ୍ୟ ବ୍ୟକ୍ତିଙ୍କୁ ସାଧୁ କରିଦିଅନ୍ତି। କେତେ ପାଷଣ୍ଡ, ନାସ୍ତିକ ସାଧୁମାନଙ୍କର ସଂସ୍ପର୍ଶରେ ଅମର ଜୀବନ ଲାଭ କରିଛନ୍ତି, ତାର ଭୂରି ଭୂରି ପ୍ରମାଣ ମିଳେ। ସାଧୁମାନଙ୍କ ଜୀବନୀ ଆଲୋଚନା, ସଦ୍‌ଗ୍ରନ୍ଥପାଠ, ପବିତ୍ର ଚିତ୍ର ଦର୍ଶନ, ଭଗବତ୍‌କଥା ଆଲୋଚନା ଏବଂ ତୀର୍ଥଭ୍ରମଣାଦି ମଧ୍ୟ ସାଧୁ ସଙ୍ଗର ଅନ୍ତର୍ଗତ।

ଶକ୍ତି ଦେଖି ସାଧୁଙ୍କ ନିକଟକୁ ଗଲେ ନିଶ୍ଚୟ ପ୍ରବଞ୍ଚନାରେ ପଡ଼ିବ। ଯାହାଙ୍କୁ ଦେଖିଲେ ହୃଦୟରେ ଆନନ୍ଦ ଜାତ ହେବ, ସେ ପ୍ରକୃତ ସାଧୁ। ସାଧୁସଙ୍ଗ ଲାଭ କରିବାକୁ ଇଚ୍ଛା କଲେ ପ୍ରଥମେ ପ୍ରଥମେ ନିଜକୁ ସେଥିପାଇଁ ଉପଯୁକ୍ତ କର। ତାହାହେଲେ ସବୁଠାରେ ତାଙ୍କ ଦର୍ଶନ ପାଇପାରିବ; ବନପର୍ବତରେ ଅନ୍ୱେଷଣ କରିବାକୁ ହେବ ନାହିଁ।

କି କି ଉପାୟରେ ସାଧୁସଙ୍ଗ ହୋଇପାରେ ? ସାଧୁସଙ୍ଗ ଦୁଇ ପ୍ରକାର–ମୃତ ସାଧୁସଙ୍ଗ ଓ ଜୀବିତ ସାଧୁସଙ୍ଗ । ମୃତ ସାଧୁସଙ୍ଗ ପାଇବାକୁ ହେଲେ ତାଙ୍କ ଜୀବନ-ବୃତ୍ତାନ୍ତ କିମ୍ବା ତାଙ୍କ ଉପଦେଶପୂର୍ଣ୍ଣ ଗ୍ରନ୍ଥାଦି ପାଠ କରିବାକୁ ହେବ । ତାଙ୍କ ଦର୍ଶନଲାଭ ଭାଗ୍ୟରେ ନ ଘଟିଲେ ମଧ ତାଙ୍କ ଜୀବନୀ ପାଠ କରି ଜାଣିପାରିବ ଯେ ସେ କିପରି ଉନ୍ନତି ଲାଭ କରିଛନ୍ତି । ସେମାନଙ୍କ ଚରିତ୍ର, ସେମାନଙ୍କ ଧୈର୍ଯ୍ୟ, ଅଧବସାୟ ପ୍ରଭୃତି କେତେ ସଦ୍‌ଗୁଣର ବିକାଶ ଦେଖିବାକୁ ପାଇବ । ସେମାନେ ସାମାନ୍ୟ ମନୁଷ୍ୟପରି ଜନ୍ମଗ୍ରହଣ କରି ମଧ ନିଜ ଗୁଣରେ ଏ ଜଗତରେ ଉଚ୍ଚ ସ୍ଥାନ ଲାଭ କରିଛନ୍ତି ।

ମନୁଷ୍ୟମାନଙ୍କ ମଧରେ ଯେଉଁମାନେ ଶ୍ରେଷ୍ଠ, ସେମାନଙ୍କୁ ଜୀବନରେ ଆଦର୍ଶ କରିବାକୁ ହେବ । ସେମାନଙ୍କ ଛବି ମନ ମଧ୍ୟରେ ଏପରି ଅଙ୍କିତ କରିବାକୁ ହେବ ଯେ, ବୋଧ ହେବ, ସତେ ଯେପରି ଦିନରାତି ସେମାନେ ତୁମକୁ ଘେରିରହିଛନ୍ତି । ତାହାହେଲେ ପାପଆଡ଼କୁ ଆଉ ମନ ଯିବ ନାହିଁ । କିପରି ତାଙ୍କପରି ହୋଇପାରିବ, ଏହି ଭାବ ପ୍ରାଣରେ ସର୍ବଦା ନାଚୁଥିବ । ସେମାନଙ୍କ ଉପଦେଶ ଅନୁସାରେ କାର୍ଯ୍ୟ କରିବାକୁ ଇଚ୍ଛା ହେବ ।

ଜୀବିତ ସାଧୁଙ୍କ ସଙ୍ଗ ଅପେକ୍ଷା ମୃତ ସାଧୁଙ୍କ ସଙ୍ଗ ଟିକିଏ ବିଳମ୍ବରେ ଫଳଦେବ । ସେମାନଙ୍କପ୍ରତି ବିଶ୍ୱାସ ରଖି ପ୍ରାଣର କଥା ସେମାନଙ୍କୁ ଜଣାଇଲେ ସାଧୁସଙ୍ଗର ଫଳ ଲାଭ ହେବ । ଆଉ କିଛି ଆବଶ୍ୟକ ପଡ଼ିବ ନାହିଁ । ଆବଶ୍ୟକ ପଡ଼ିଲେ ସେ ସବୁ ଠିକ୍ କରିଦେବେ । ଯାହା ହେଲେ ଭଲହେବ, ସେ ବ୍ୟବସ୍ଥା ସେ କରିବେ । ସେଥିପାଇଁ ଆଉ କାହାକୁ ଚିନ୍ତା କରିବାକୁ ପଡ଼ିବ ନାହିଁ ।

ସାଧୁସଙ୍ଗଦ୍ୱାରା ବିଷୟବୈରାଗ୍ୟ ଜାତ ହୁଏ । ସେହି ବୈରାଗ୍ୟଦ୍ୱାରା ବ୍ରହ୍ମ-ବିଚାର ଓ ସେହି ବିଚାରଦ୍ୱାରା ଆତ୍ମସାକ୍ଷାତ୍‌କାର ଲାଭ ହୁଏ । ଜ୍ଞାନଲାଭପାଇଁ ସାଧୁସଙ୍ଗ ଆବଶ୍ୟକ । ଯଦି ମାୟା-ମୋହରେ ଆବଦ୍ଧ ହୋଇ ରହିଲ, ସାଧୁସଙ୍ଗର ଆଉ ପ୍ରୟୋଜନ କ'ଣ ? ସୁତରାଂ, ଆତ୍ମାନୁସନ୍ଧାନ କରି ଦେଖ, କେତେ ପରିମାଣରେ ତୁମର ପାଶ ଛିନ୍ନ ହୋଇପାରିଛି ।

ଜଗତରେ ଯେଉଁମାନେ ମହାଜନ, ସେମାନଙ୍କ ସମ୍ପର୍କାନ୍ୱିତ ବ୍ୟକ୍ତିଙ୍କର କ୍ଳେଶ ଅବଶ୍ୟମ୍ଭାବୀ । ସେମାନେ ସେବାନିମିତ୍ତ ଆତ୍ମବଳିଦାନ କରନ୍ତି । ସେହି ବଳିଦ୍ୱାରା ପ୍ରଥମେ ସେମାନଙ୍କ ହୃତ୍‌ପିଣ୍ଡ ଉତ୍ପାଟିତ ହୁଏ । ପରେ ସେମାନଙ୍କ ସମ୍ପର୍କିତ ନରନାରୀଙ୍କ ଦୁଃଖ ସଂଘଟିତ ହୁଏ ।

ସାଧୁମାନେ ଜୀବତାବସ୍ଥାରେ ଜୀବମାନଙ୍କର ହିତ ସାଧନ କରିଥାନ୍ତି । ଦେହାନ୍ତର ହେଲେ ମଧ୍ୟ ସେମାନଙ୍କର ଦେହର ଅଣୁ-ପରମାଣୁଗୁଡ଼ିକ ଜଗତ୍‌ସାରା ବ୍ୟାପ୍ତ ହୋଇ ଜୀବ-ଜଗତର ହିତ ସାଧନ କରିଥାଏ; ତେଣୁ ସାଧୁ-ସଙ୍ଗର ଏତେ ଫଳ ।

## ସନ୍ନ୍ୟାସୀଙ୍କ କର୍ମ

ଜୀବନ୍ମୁକ୍ତ ସାଧୁ ଜାଣିପାରନ୍ତି ନାହିଁ ଯେ ସେ ଜୀବନ୍ମୁକ୍ତ—ଅନ୍ୟମାନେ ତାହା ବିଚାର କରିପାରନ୍ତି ।

ସନ୍ନ୍ୟାସ ଚରମ ସାଧନା । ନିଜ ଭିତରେ ସନ୍ନ୍ୟାସୀ ସବୁ ଦେଖନ୍ତି । ଅନନ୍ତ କୋଟି ବ୍ରହ୍ମାଣ୍ଡର ଆନନ୍ଦ ଉପଭୋଗ କରନ୍ତି । ସଚ୍ଚିଦାନନ୍ଦଙ୍କର କୌଣସି ବିଗ୍ରହରେ ସନ୍ନ୍ୟାସୀଙ୍କର ଲୟ ହୁଏ ନାହିଁ । ତାହା ସାକ୍ଷୀଭାବରେ ହୋଇପାରେ । ତ୍ୟାଗ ହିଁ ସନ୍ନ୍ୟାସୀଙ୍କର ମୂଳମନ୍ତ୍ର ।

ଅନେକ ସତ୍‌ପ୍ରକୃତିର ଲୋକ ଭେକ ଧାରଣ କରି ବାହ୍ୟ ଲୋକହିତକର କାର୍ଯ୍ୟରେ ଲିପ୍ତ ରହନ୍ତି । ସେଥିପାଇଁ ସେମାନଙ୍କର ସନ୍ନ୍ୟାସୀ ହେବାର ପ୍ରୟୋଜନ ନାହିଁ । ତାହା ସନ୍ନ୍ୟାସଗ୍ରହଣର ଉଦ୍ଦେଶ୍ୟ ନୁହେଁ ।

## ପନ୍ଥା-ଅବଲମ୍ବନ

ମେଳା ପ୍ରଭୃତି ସ୍ଥାନରେ ବଡ଼ ଭିଡ଼ ହୁଏ । ସେଠାରେ ଲୋକଙ୍କୁ ଠେଲି ବାଟ ଚାଲିବା ବଡ଼ କଷ୍ଟକର; କିନ୍ତୁ ସେହି ପଥରେ ଯଦି ଗୋଟିଏ ହାତୀ ଚାଲିଯାଏ, ଆପେ ଆପେ ବାଟ ଖୋଲା ହୋଇଯିବ । ସେତେବେଳେ କେବଳ ହାତୀର ଅନୁସରଣ କଲେ ହେଲା । ବାଟପାଇଁ ଆଉ ଚିନ୍ତା କରିବାକୁ ପଡ଼ିବ ନାହିଁ । ସଂସାରକ୍ଷେତ୍ର ମଧ୍ୟ ସେହିପରି । ସାଧୁମହାପୁରୁଷଙ୍କୁ ଅନୁସରଣ କଲେ ଆଉ କୌଣସି ବିପଦର ଭୟ ରହିବ ନାହିଁ; ତେଣୁ "ମହାଜନୋ ଯେନ ଗତ, ସ ପନ୍ଥା ।"

ଯେ ଯେଉଁ ମାର୍ଗରେ ଗତିକରି ସତ୍ୟର ଉପନୀତ ହୋଇଛନ୍ତି, ସେ ତାହା ଅନୁମୋଦନ କରନ୍ତି ଏବଂ ତାହା ଅନୁସରଣ କରନ୍ତି—ଏହା ତାଙ୍କର ସ୍ୱଭାବ, ସଂସ୍କାର ନୁହେଁ । ସାଧୁମାନଙ୍କର ସଂସ୍କାର ନ ଥାଏ; କିନ୍ତୁ ସ୍ୱଭାବର ଛାପ ଟିକିଏ ଥାଏ ।

ଯଥାର୍ଥ ମନୁଷ୍ୟ ହେବା ଆବଶ୍ୟକ। ଯଥାର୍ଥ ମନୁଷ୍ୟ କାହାକୁ କହନ୍ତି? ମନୁଷ୍ୟଙ୍କପରି ହାତ, ଗୋଡ଼ ମୁହଁ ଥିଲେ ଯଥାର୍ଥ ମନୁଷ୍ୟ ହେଲା ନାହିଁ। ଖୁବ୍ ବଡ଼ ପଣ୍ଡିତ ହେଲେ ମଧ ମନୁଷ୍ୟତ୍ୱଲାଭପକ୍ଷରେ ତାହା ଯଥେଷ୍ଟ ନୁହେଁ। ଖୁବ୍ ବଳ ଥିଲେ ଜଣେ ମନୁଷ୍ୟ ହୋଇଯିବ ନାହିଁ। ଏସବୁ ମନ୍ଦ ବୋଲି କହୁ ନାହିଁ। ତେବେ ଏହାସବୁ ବ୍ୟତୀତ ଏପରି ଗୋଟିଏ ବସ୍ତୁ ଅଛି, ଯାହା ମନୁଷ୍ୟକୁ ମନୁଷ୍ୟତ୍ୱ ପ୍ରଦାନ କରେ—ତାହା ହେଉଛି ଚରିତ୍ର। ଚରିତ୍ରବଳ ନ ଥିଲେ କିଛି ହୁଏ ନାହିଁ। ଚରିତ୍ର ନ ହେଲେ ହଜାର ଧନବାନ ହେଲେ ସୁଦ୍ଧା ସବୁ ବୃଥା; ତେଣୁ ପ୍ରଥମେ ଆମମାନଙ୍କୁ ଚରିତ୍ର ଗଠନ କରିବାକୁ ହେବ। ଚରିତ୍ରଗଠନ କରିବାକୁ ଗଲେ ଆମମାନଙ୍କୁ ରୀତିମତ ସଂଗ୍ରାମ କରିବାକୁ ପଡ଼ିବ। ଏଥିପାଇଁ ଖଣ୍ଡା, ତରବାରି, ଢାଲ, କମାଣର ଆବଶ୍ୟକ ହେବ ନାହିଁ; ଅନ୍ୟପ୍ରକାର ଅସ୍ତ୍ର-ଶସ୍ତ୍ର ଆବଶ୍ୟକ ହେବ।

ସତ୍‌ଇଚ୍ଛା, ମନର ବଳ, ଈଶ୍ୱର-ବିଶ୍ୱାସ, ଭକ୍ତି ଓ ସାଧୁସଙ୍ଗ—ଏହି ସଂଗ୍ରାମରେ ପ୍ରଧାନ ସହାୟ। ଇଚ୍ଛା ନ ହେଲେ କୌଣସି କାର୍ଯ୍ୟ ଆରମ୍ଭ କରିବା ଉଚିତ୍ ନୁହେଁ, ପୁଣି ଇଚ୍ଛା ଥିଲେ କୌଣସି କାର୍ଯ୍ୟ ଅଟକି ରହିଯାଏ ନାହିଁ। ଗୋଟିଏ କାର୍ଯ୍ୟ କରିବାପାଇଁ ଯଦି ଯଥାର୍ଥ ଇଚ୍ଛା ହୁଏ, ତେବେ ତାହା ନିଶ୍ଚୟ ସମ୍ପନ୍ନ କରିପାରିବ। ଯାହାର ଭଲ ହେବାପାଇଁ ଇଚ୍ଛା ଥିବ; କେଉଁଠାରେ ଭଲ ଲୋକ ଅଛନ୍ତି, ସେ ତାହା ଖୋଜିବୁଲିବେ, କେଉଁଠାରେ ଟିକିଏ ଭଲ କଥା ଆଲୋଚନା ହେଉଛି, ତାହା ଶୁଣିବାକୁ ଇଚ୍ଛା କରିବେ। ପୁଣି ଯେଉଁମାନଙ୍କର ଭଲ ହେବାପାଇଁ ଇଚ୍ଛା ନଥିବ, ସେମାନଙ୍କର ହୃଦୟବଳ ଥିଲେ ମଧ ଭଲ ହେବାପାଇଁ ସେମାନଙ୍କର କୌଣସି ପ୍ରକାରରେ ମନ ବଳିବ ନାହିଁ। ପ୍ରବାଦ ଅଛି—"ସତ୍‌ସଙ୍ଗରେ କାଶୀବାସ, ଅସତସଙ୍ଗରେ ସର୍ବନାଶ।" ସତ୍‌ସଙ୍ଗରେ ମନ ବଦଳିଯାଏ। କ୍ରମେ ସେ ସାଧୁ ହୋଇଯାନ୍ତି। ଚୁମ୍ବକ ପାଖରେ ଲୁହା ରହିଲେ ତାହା ଚୁମ୍ବକ ପାଲଟିଯାଏ। ସେହିପରି ଜଣେ ସାଧୁ ଲୋକଙ୍କ ନିକଟରେ ଅସତ୍ ଲୋକ ରହିଲେ, କେତେ ଦିନପରେ ସେହି ଅସତ୍ ଲୋକ ଭଲ ହୋଇଯିବେ। ଈଶ୍ୱର ଉପାସକ ଓ ସାଧୁସଙ୍ଗର ଫଳ ଏକ। କାରଣ, ସାଧୁସଙ୍ଗ ଦ୍ୱାରା ପ୍ରକାରାନ୍ତରେ ଈଶ୍ୱର-ଉପାସନା କରାଯାଇଥାଏ।

ଅସତ୍ ହେବା ସହଜ, ସତ୍ ହେବା ଟିକିଏ କଠିନ ଓ ସମୟସାପେକ୍ଷ। କାରଣ, ଆମର ମନ ଜଳପରି। ଜଳ ତଳଆଡ଼କୁ ସହଜରେ ଗଡ଼ିଯାଏ। ଉପରକୁ

ଯିବାକୁ ହେଲେ ବାଷ୍ପ ଆକାରରେ ପରିଣତ ହେବା ଦରକାର ପଡ଼େ। ଭଲ ଓ ଖରାପ ହେବାଟା ଠିକ୍ ଏହିପରି। ଯେଉଁ ମହାତ୍ମା କଷ୍ଟ ସହ୍ୟ ପରିପାରନ୍ତି, ଶେଷରେ ସେ ଯଶସ୍ୱୀ ହୁଅନ୍ତି। ସେ ଅନନ୍ତ ସୁଖ-ଶାନ୍ତିରେ ବିଶ୍ରାମ କରନ୍ତି। ମୋଟ ଉପରେ ଈଶ୍ୱର-ଉପାସନା ହିଁ ସର୍ବୋତ୍କୃଷ୍ଟ ସଙ୍ଗ।

ସମସ୍ତେ ଭଗବାନଙ୍କୁ ଡାକନ୍ତି; କାରଣ, ଏପରି ସଙ୍ଗ ଆଉ ନାହିଁ, କିନ୍ତୁ ମନୁଷ୍ୟସଙ୍ଗ କଲାବେଳେ ସତ୍ ଓ ଅସତ୍ ଲୋକ ଚିହ୍ନିବା ନିତାନ୍ତ ଆବଶ୍ୟକ।

## ସାଧୁ ପରଶମଣି

ମହାପ୍ରଭୁ ଶ୍ରୀଗୌରାଙ୍ଗଦେବ ଯେତେବେଳେ ନୀଳାଚଳରେ ଅବସ୍ଥାନ କରୁଥିଲେ, ସେ ସମୟରେ କେତେ ଜଣ ଅବିଶ୍ୱାସୀ ପାଷଣ୍ଡ ତାଙ୍କୁ ପରୀକ୍ଷା କରିବାନିମିତ୍ତ ଗୋଟିଏ ରୂପବତୀ ବେଶ୍ୟାକୁ ନିଯୁକ୍ତ କଲେ। ଗୌରାଙ୍ଗଦେବ ଧ୍ୟାନରେ ଯେତେବେଳେ ଭଗବାନଙ୍କର ଅତୁଳ ସୌନ୍ଦର୍ଯ୍ୟରେ ବୁଡ଼ିଛନ୍ତି, ଏପରି ସମୟରେ ବେଶ୍ୟା ତାଙ୍କ ନିକଟରେ ଉପବେଶନ କଲା। ସ୍ତ୍ରୀ-ଅଙ୍ଗସ୍ପର୍ଶରେ ତାଙ୍କର ଧ୍ୟାନ ଭାଙ୍ଗିଗଲା, କିନ୍ତୁ ସେତେବେଳେ ମଧ୍ୟ ସେ ଭାବସମାଧିସ୍ଥ ଥିଲେ। ସେ ଚକ୍ଷୁ ମେଲାକରି ପୁଣି ବୁଜିଦେଉଛନ୍ତି। ଏହିପରି କିଛି ସମୟ ଗତ ହେବାପରେ ନିକଟରେ ଜଣେ ସ୍ତ୍ରୀଲୋକ ଥିବାର ବୁଝିପାରି ମନେ କଲେ, ମା ଶଚୀଦେବୀ ସମ୍ଭବତଃ ବ୍ୟାକୁଳହୋଇ ତାଙ୍କୁ ଦେଖିବାକୁ ଆସିଛନ୍ତି। ଏହିପରି ଭାବି ଶ୍ରୀଗୌରାଙ୍ଗଦେବ ବେଶ୍ୟାର ଚତୁର୍ଦ୍ଦିଗ ପ୍ରଦକ୍ଷିଣ କରି ମା ମା ବୋଲି ସମ୍ବୋଧନ କଲେ ଓ ସ୍ତନ୍ୟପାନ କରିବାକୁ ଲାଗିଲେ।

ତାଙ୍କର ଏ ଭାବ ଦର୍ଶନ କରି ବେଶ୍ୟା ବିମୋହିତ ହୋଇଗଲା ଏବଂ କହିଲା, ''ବାବା! ମୁଁ ତୁମର ମା ନୁହେଁ, ମୁଁ ଅତି ଦୁଷ୍ଟାରିଣୀ ପାପିୟସୀ ରୂପଜୀବୀ। ତୁମର ଧର୍ମ ନଷ୍ଟ କରିବାନିମିତ୍ତ ପ୍ରଲୋଭନ-ମୁଗ୍ଧ ହୋଇ ତୁମ ନିକଟକୁ ଆସିଛି। ବର୍ତ୍ତମାନ ମୋତେ ଉଦ୍ଧାର କର ବାବା!'' ମହାପ୍ରଭୁ କହିଲେ, ''ମା! ଏ ରାଜ୍ୟରେ କାହାରି ନିରାଶ ହେବାର କାରଣ ନାହିଁ। ତୁମର ନିଜର ବୋଲି ଯାହା ଅଛି, ତାହାସବୁ ଗରିବ ଦୁଃଖୀଙ୍କୁ ଦାନ କରିଦେଇ ମୋ ନିକଟକୁ ଆସ। ତା'ପରେ ତୁମର ଉପାୟ ବିଧାନ କରିଦେବି।'' ବେଶ୍ୟା ତଦନୁଯାୟୀ ଗରିବ ଦୁଃଖୀଙ୍କୁ ତା'ର ଯଥାସର୍ବସ୍ୱ ଦାନ କରିଦେଇ ଆସି ପ୍ରଭୁଙ୍କ ନିକଟରେ

ଉପସ୍ଥିତ ହେଲା । ମହାପ୍ରଭୁ ତାକୁ ହରିନାମରେ ଦୀକ୍ଷିତ କଲେ । ସାଧୁ ସଂସ୍ପର୍ଶରେ ବେଶ୍ୟାର ଘୃଣିତ ଜୀବନ ମଧୁମୟ ହୋଇଗଲା । ତା'ପରେ ବେଶ୍ୟା ହେଲା ପରମାଭକ୍ତିର ଅଧିକାରିଣୀ ।

ନ ବୁଝି ସାଧୁ-ମହାପୁରୁଷଙ୍କର ଅନୁକରଣ କର ନାହିଁ । ପ୍ରଥମେ ବୁଝିବାକୁ ଚେଷ୍ଟା କର, ପରେ ଯାହା ଇଚ୍ଛା ତାହା କରିବ ।

ଈଶ୍ୱର ସର୍ବତ୍ର ବିଦ୍ୟମାନ—ସେ ସର୍ବସୁଖଦାତା । ମାନବ ଅନେକ ସମୟରେ ପଥପ୍ରଦର୍ଶକ । ଏହି କାରଣରୁ ସାଧନ-ରାଜ୍ୟରେ ମାନବ ଅତି ଅମୂଲ୍ୟ ସଙ୍ଗୀ ।

ମନୁଷ୍ୟ ବଡ଼ ଅହଂକାରୀ । ମନୁଷ୍ୟ ନିଜ ମାନଦଣ୍ଡରେ ଜଗତ୍‌କୁ ତୁଳନା କରେ; ତେଣୁ ବୁଝି ନ ପାରି ସେ ସାଧାରଣ ଲୋକଙ୍କ କଥା ଛାଡ଼ି ସାଧୁ-ମହାପୁରୁଷଙ୍କ କାର୍ଯ୍ୟରେ ମଧ୍ୟ ଦୋଷ ଦେଖାଇଥାଆନ୍ତି । ସେ ଥରେ ଚିନ୍ତା କରି ଦେଖନ୍ତି ନାହିଁ, ସେମାନଙ୍କ ବିଦ୍ୟାବୁଦ୍ଧିର ସୀମା କେଉଁଠି ? ଯେ ନିଜକୁ ଜାଣନ୍ତି ନାହିଁ, ଅନ୍ୟର କାର୍ଯ୍ୟ ବା ଚରିତ୍ରର ଦୋଷ ଧରିବାକୁ ଯିବା ତାଙ୍କର ଧୃଷ୍ଟତା ନୁହେଁ କି ?

ଯେ ଯାହା ଲୋଡ଼ନ୍ତି ନାହିଁ, ସ୍ୱତଃପ୍ରବୃତ୍ତ ହୋଇ ତାହା ତାଙ୍କ ନିକଟକୁ ଯାଏ । ଏହା ଅସ୍ତେୟ ସାଧନାର ଫଳ; ତେଣୁ ସାଧୁ-ମହାପୁରୁଷଙ୍କର ଧନ-ଜନର ଅଭାବ ନାହିଁ । ପୁଣି ଭିକ୍ଷୁକ ଦିବାଅବସାନ ପର୍ଯ୍ୟନ୍ତ ମୁଠିଏ ଅନ୍ନଭିକ୍ଷା ମଧ୍ୟ ପାଏ ନାହିଁ ।

ଓଦା କାଠରେ ପ୍ରଥମେ ଜଳ ଅଛି ବୋଲି ଜଣାପଡ଼େ ନାହିଁ, ନିଆଁରେ ପକାଇଲେ ତାହା ଜଣାପଡ଼େ । ସାଧୁସଙ୍ଗ ପ୍ରଭାବରେ ସାଧକଙ୍କର ଏହିପରି ଦଶା ହୋଇଥାଏ । ଅସାଧୁତାର ରସ ନ ମଲେ ସାଧୁତାର ଅଗ୍ନି ସାଧକଙ୍କୁ ସ୍ପର୍ଶ କରିପାରେ ନାହିଁ । ସାଧୁସଙ୍ଗ ପ୍ରଭାବରେ ସମସ୍ତେ ଦିନେ ନିଶ୍ଚୟ ଅଗ୍ନିମୟ ହୋଇଯିବେ । ତେଣୁ ସାଧୁସଙ୍ଗ ଛାଡ଼ିବା କେବେହେଲେ ଉଚିତ ନୁହେଁ ।



# ଧର୍ମଜ୍ଞାନ

## ଆଚରଣ

ଯେଉଁ ଦେଶବାସୀ ହୁଅନ୍ତୁ ନା କାହିଁକି, ଯେଉଁ ଜାତିରେ ଜନ୍ମ ଗ୍ରହଣ କରିଥାନ୍ତୁ ନା କାହିଁକି, ମନୁଷ୍ୟ ମାତ୍ରେ ସକଳ ଅବସ୍ଥାରେ ଧର୍ମଚିନ୍ତା କରିଥାନ୍ତି । ଧନୀ-ଦରିଦ୍ର, ବିଦ୍ୱାନ-ମୂର୍ଖ, ସୁସ୍ଥ ବା ରୋଗୀ ଯେ ଯେପରି ଅବସ୍ଥା ଲାଭ କରୁନ୍ତୁ ନା କାହିଁକି ତାଙ୍କର ଧର୍ମଚିନ୍ତା ଥାଏ । ନାସ୍ତିକ ମଧ୍ୟ ଧର୍ମଚିନ୍ତା କରେ । ଆସ୍ତିକମାନେ ଚିନ୍ତାଦ୍ୱାରା ଯାହା ସ୍ଥିର କରନ୍ତି, ନାସ୍ତିକମାନେ ଚିନ୍ତା କରି ତା'ର ବିପରୀତ ଭାବରେ ପହଞ୍ଚନ୍ତି । ଫଳରେ ଉଭୟେ ଧର୍ମ ଚିନ୍ତା କରନ୍ତି ।

ଧର୍ମଚିନ୍ତା ମନୁଷ୍ୟର ପ୍ରଜ୍ଞାଶକ୍ତିର ଅମୋଘ ଫଳ । ଧର୍ମଚିନ୍ତା ନ କରି ମନୁଷ୍ୟ ରହି ନ ପାରେ । ଯେଉଁମାନେ ଈଶ୍ୱରବିଶ୍ୱାସୀ, ସେମାନେ ଧର୍ମଚିନ୍ତା କରି ତାହା ଆଚରଣ କରନ୍ତି । ଯେଉଁମାନେ ଅବିବେକ ଅନ୍ଧକାରରେ ସେହି ଚିନ୍ତାକୁ ମଳିନ ଓ ଦୂଷିତ କରିପକାନ୍ତି, ସେମାନେ ଚିନ୍ତା କରନ୍ତି; କିନ୍ତୁ ଆଚରଣ କରନ୍ତି ନାହିଁ, ଆଚରଣ କରିବା ଶକ୍ତି ହରାଇବସନ୍ତି । ତୃଷାର୍ତ୍ତ ପଥିକକୁଳ ଜଳାଶୟ ନିକଟକୁ ଯାଆନ୍ତି । କେହି ଜଳପାନ କରି ନିଜର ପିପାସିତ କଣ୍ଠ ଶୀତଳ କରନ୍ତି ଆଉ କେହି ବା ପଙ୍କ ଚକଟି ପଙ୍କିଳ ଜଳପାନ ନ କରି ଫେରିଆସି ଶୁଷ୍କକଣ୍ଠରେ ଘୂରିବୁଲନ୍ତି; କିନ୍ତୁ ଉଭୟଙ୍କର ପିପାସା ଅଛି, ଉଭୟଙ୍କର ଆକାଂକ୍ଷା ମଧ୍ୟ ରହିଛି ।

ଧର୍ମ ଦେଶବିଶେଷରେ, ଜାତିବିଶେଷରେ, ଅବସ୍ଥାବିଶେଷରେ, ବିଭିନ୍ନ ପ୍ରକାରରେ ପ୍ରଚଳିତ । ତାହା ଗୁଣଭେଦରେ, ଆଚାରଭେଦରେ, ମାନବୀୟ ପ୍ରକୃତିଭେଦରେ, ବିଭିନ୍ନ ଭାବରେ ସାଧନରୂପରେ ଆଚରିତ ହୋଇଥାଏ । ଗୋଟିଏ ଦେଶର ଆଚରଣରେ ଯାହା ଧର୍ମ, ଅପର ଦେଶରେ ତାହା ଅଧର୍ମ ।

### ଉଦ୍ଦେଶ୍ୟ

ଗୋଟିଏ ଜାତିପକ୍ଷରେ ଯେଉଁ ଧର୍ମ ଆଚରଣ କଲେ ସ୍ୱର୍ଗଦ୍ୱାର ଉନ୍ମୁକ୍ତ ହୁଏ, ଅପର ଜାତି ସେହି କାର୍ଯ୍ୟ କଲେ ନରକ ତା'ର ଭୀମ ବାହୁଦ୍ୱାରା ଆଲିଙ୍ଗନ

କରିବାକୁ ଆସେ ବୋଲି ସେମାନେ ମନେ କରନ୍ତି । ଗୋଟିଏ ଜାତିର ଯେଉଁ ଧର୍ମାଚରଣଦ୍ୱାରା ଆତ୍ମୋନ୍ନତି ହୁଏ, ଅନ୍ୟ ଜାତି ତାହା କଲେ ଆତ୍ମଗ୍ଲାନି-ଅନ୍ଧକାରରେ ସମଗ୍ର ହୃଦୟ ଆଚ୍ଛନ୍ନ ହୋଇପଡ଼େ; କିନ୍ତୁ ସମସ୍ତଙ୍କର ଧର୍ମ ଅଛି; ଧର୍ମଚିନ୍ତା ଓ ଧର୍ମ-ଆଚରଣ ମଧ୍ୟ ଅଛି ।

ମୁସଲମାନ୍‌ମାନେ ଅନ୍ୟ ଧର୍ମାବଲମ୍ବୀ କାଫେରଙ୍କୁ ହତ୍ୟା କରି ଧର୍ମ ସଞ୍ଚୟ କରନ୍ତି । ଖ୍ରୀଷ୍ଟିୟାନ ପରୋପକାର କରି ଆତ୍ମରକ୍ତରେ ପାପୀମାନଙ୍କର ପାପ ବିଦୂରିତ କରନ୍ତି । ହିନ୍ଦୁ ନରହତ୍ୟାକୁ ଅଧର୍ମ ଜ୍ଞାନ କରେ । ହିନ୍ଦୁର ମନ୍ତ୍ର, ତନ୍ତ୍ର, ପୂଜା, ଆହ୍ନିକ ଦେଖି ଖ୍ରୀଷ୍ଟିୟାନମାନେ ଲଜ୍ଜାରେ ଅଧୋମୁଖୀ ହୁଅନ୍ତି । ବୈଦିକ ଉଦାତ୍ତ ସ୍ୱରରେ, ବୈଦିକ ଗାଥା ଗାନ କରି ଯଜ୍ଞାଗ୍ନିରେ ହବିର୍ଦ୍ଦାନ କରି ସ୍ୱର୍ଗକାମନା କରନ୍ତି, କିନ୍ତୁ କାମନା ଶୂନ୍ୟ ବ୍ୟକ୍ତି ସେଥିରେ ଆତ୍ମଗ୍ଲାନି ବୋଧ କରନ୍ତି । କର୍ମୀ କର୍ମକରି ଧନ ସଞ୍ଚୟ ଓ ଆତ୍ମପ୍ରସାଦ ଲାଭ କରନ୍ତି; ଯୋଗୀ ଓ ସନ୍ନ୍ୟାସୀ କର୍ମ ତ୍ୟାଗନିମିତ୍ତ ସହସ୍ର ଚେଷ୍ଟାରେ ଚେଷ୍ଟାନ୍ୱିତ । ମୋଟ କଥା, ଧର୍ମର ସାଧନ-ଉପାୟ ସହସ୍ର ପ୍ରକାର—ଆଚାର, ପଦ୍ଧତି ବିଭିନ୍ନ ପ୍ରକାର । କିନ୍ତୁ ଧର୍ମ ଲାଭ କରିବା, ଧର୍ମ ସଞ୍ଚୟ କରିବା ଏବଂ ଅଧର୍ମରୁ ଦୂରରେ ରହିବା ହିଁ ସମସ୍ତଙ୍କର ଉଦ୍ଦେଶ୍ୟ ।

## ଜାତିବିଭାଗ

ଏଠାରେ ପ୍ରଶ୍ନ ଉଠିପାରେ, ଧର୍ମ ଯଦି ସମସ୍ତଙ୍କର ଉଦ୍ଦେଶ୍ୟ, ଧର୍ମଲାଭ ଯଦି ସମସ୍ତଙ୍କର ଲକ୍ଷ୍ୟ, ତେବେ ପଥ ବିଭିନ୍ନ କାହିଁକି ? ଜଣକର ଯେଉଁଥିରେ ଅଧର୍ମ, ଅପରର ସେଥିରେ ଧର୍ମ ହେବ ବା କିପରି ? ତେବେ କ'ଣ ଧର୍ମ ଏକ ନୁହେଁ, ବିଭିନ୍ନ ପ୍ରକାରର ? ତାହା ନୁହେଁ, ଧର୍ମ ଏକ ଏବଂ ଅନାଦି, କିନ୍ତୁ ଧର୍ମର ସ୍ତରଭେଦ ଅଛି । ଯେଉଁ ଜାତିର ମାନବ ଧର୍ମର ଯେଉଁ ସ୍ତରର ଅଧିକାରୀ, ତାଙ୍କର ସାଧନପଥ ସେହି ପ୍ରକାରରେ ପ୍ରବର୍ତ୍ତିତ । ଗୁଣଭେଦରେ ସାଧନଭେଦ ।

ପ୍ରକୃତିଠାରୁ ସତ୍ତ୍ୱ, ରଜଃ, ତମଃ—ଏହି ତ୍ରିଗୁଣର ଉତ୍ପତ୍ତି । ଜୀବଦେହ ଏହି ତିନିଗୁଣର ଆଧାର । ଯାହାଙ୍କର ଯେପରି ଗୁଣ ଅଧିକ, ତାଙ୍କର ପ୍ରବୃତ୍ତି ମଧ୍ୟ ସେହି ପ୍ରକାରର । ପ୍ରବୃତ୍ତି ଅନୁସାରେ ସାଧନମାର୍ଗ ଅବଲମ୍ବନ କରାଯାଇଥାଏ । ଏହି ଗୁଣ ଏବଂ ଗୁଣରୁ ପ୍ରବୃତ୍ତି ବଂଶଗତ ହୋଇଥାଏ । ବୈଦିକ ତତ୍ତ୍ୱରେ ଏହି ଗୁଣ ବଂଶଗତ ବା ଜାତିଗତ ହୋଇଥିବାର ଜଣାଯାଏ । ମିଷ୍ଟ ଆମ୍ରବୀଜର

ବୃକ୍ଷରେ ମିଷ୍ଟ ଆମ୍ର ଫଳେ । ଗୁଣ ଭେଦରେ ଧର୍ମପନ୍ଥାର ବିଭାଗ ହୋଇଅଛି । ଗୁଣବିଭାଗ ହିଁ ଜାତି ବିଭାଗ; ତେଣୁ ପ୍ରତ୍ୟେକ ଜାତିର ଧର୍ମାଚରଣର ବିଧି-ବ୍ୟବସ୍ଥାରେ ପ୍ରଭେଦ ପରିଦୃଷ୍ଟ ହୁଏ ।

ଯେଉଁ ଗୁଣରେ ଯାହାଙ୍କର ଜନ୍ମ, ତାଙ୍କୁ ସେହି ପ୍ରକାର କାର୍ଯ୍ୟରେ ଆସକ୍ତ ହେବାକୁ ପଡ଼େ । ତାଙ୍କର ଆସକ୍ତିବହ୍ନି ନିର୍ବାପନ କରିବାନିମିତ୍ତ ଓ କାର୍ଯ୍ୟ-କାରଣେଚ୍ଛା ବିଦୂରିତ କରିବାପାଇଁ ସେହିପରି ଆଚରଣରେ ଲିପ୍ତ ହେବାକୁ ହୁଏ । ଧର୍ମାଚାର୍ଯ୍ୟମାନେ ସେମାନଙ୍କ ନିମିତ୍ତ ସେହି ପ୍ରକାରର ଧର୍ମପନ୍ଥା ନିର୍ବାଚନ କରି ରଖିଛନ୍ତି । ବାଳିକାମାନେ ଧର୍ମର ଉନ୍ନତ ଭାବ କିଛି ବୁଝିପାରନ୍ତି ନାହିଁ, ତେଣୁ ସେମାନଙ୍କ ପାଇଁ ଛୋଟ ଛୋଟ ବ୍ରତାଦିର ବ୍ୟବସ୍ଥା ହୋଇଛି । ଯୁବତୀମାନଙ୍କ ସଂଯମନିମିତ୍ତ ଉପବାସାଦି ସମ୍ବଳିତ ପୌରାଣିକ ବ୍ରତବିଧାନର ବ୍ୟବସ୍ଥା ଅଛି ।

ଯେତେବେଳେ ଯେପରି ବୁଦ୍ଧି, ଯେପରି ଗୁଣ, ଯେପରି ଭାବ ପ୍ରସ୍ଫୁଟିତ ହୁଏ, ସେତେବେଳେ ତାଙ୍କପାଇଁ ସେହିପରି ବିଧି-ବ୍ୟବସ୍ଥା ହୋଇଛି । ମନୁଷ୍ୟ ଗୋଟିଏ ଜନ୍ମର ନୁହେଁ, ଜନ୍ମ ଜନ୍ମ ଧରି ସେ ଏହି କର୍ମକ୍ଷେତ୍ରକୁ ଯାତାୟାତ କରୁଛି । ଜନ୍ମ-ଜନ୍ମର କର୍ମଶକ୍ତି ବା ସଂସ୍କାର ତାକୁ ଆଶ୍ରୟ କରି ଚଳୁଛି । ଜନ୍ମ-ଜନ୍ମର ପ୍ରଜ୍ଞା ତା ମସ୍ତିଷ୍କ-କୋଟରରେ ନିବଦ୍ଧ ହୋଇ ରହିଯାଉଛି । ତେଣୁ ମନୁଷ୍ୟର ଧର୍ମପ୍ରବୃତ୍ତି ଦିନକର ନୁହେଁ । ସେ ସଂସ୍କାର, ସେ ଶକ୍ତି ଯାହାଙ୍କର ଯେଉଁ ପ୍ରକାରର, ତାଙ୍କର ସେହି ପ୍ରକାର ଗୁଣ ଧରି ଜନ୍ମ ହୋଇଥାଏ । ଏହି ଗୁଣରୁ ଜନ୍ମ ଓ ଜାତିର ସୃଷ୍ଟି ହୋଇଅଛି ।

## ଉଦାରଧର୍ମ

ଯାହାଙ୍କର ଯେଉଁ ଗୁଣରେ ଜନ୍ମ, ତାଙ୍କୁ ସେହିପରି ଧର୍ମାଚରଣ କରିବାକୁ ହେବ, ତା ନହେଲେ ଗୁଣର କ୍ଷୟ ହେବ ନାହିଁ । ଯେଉଁ ଧର୍ମର, ଯେଉଁ ବ୍ୟବସ୍ଥା, ତଦ୍ଧର୍ମାବଲମ୍ବୀଙ୍କର ତଦାଚରଣ କରିବା କର୍ତ୍ତବ୍ୟ । ଜାତିଗତ ଗୁଣ ଆଲୋଚନା କରି ଧର୍ମାଚାର୍ଯ୍ୟମାନେ ଗୁଣକ୍ଷୟନିମିତ୍ତ ସେହି ପ୍ରକାର ଧର୍ମର ବିଧି ବ୍ୟବସ୍ଥା କରିଯାଇଛନ୍ତି ।

ବ୍ରାହ୍ମଣମାନେ ଉଚ୍ଚଧର୍ମାନୁଷ୍ଠାନ କରିବ ବୋଲି ନିମ୍ନତମ ଶୂଦ୍ରକୁ ଯେ ତାହା କରିବାକୁ ହେବ ନାହିଁ, ତାହା ନୁହେଁ । ଯେ ଯେପରି ଗୁଣ ଧରି ଜନ୍ମିଛନ୍ତି, ତାଙ୍କୁ

ତଦନୁରୂପ ଧର୍ମ କରିବାକୁ ହେବ। ଇହଜନ୍ମର ଶୂଦ୍ର ପରଜନ୍ମରେ ବ୍ରାହ୍ମଣ ହୋଇପାରେ। ଇହଜନ୍ମର ବ୍ରାହ୍ମଣ କର୍ମଫଳରେ ଶୂଦ୍ର ହୋଇ ଜନ୍ମିପାରେ। ପ୍ରତ୍ୟେକ ମନୁଷ୍ୟ ପାଇଁ ଧର୍ମ ଓ ଧର୍ମପଥ ନିର୍ଦ୍ଦିଷ୍ଟ ଅଛି। ସୁତରାଂ, ପ୍ରତ୍ୟେକ ମନୁଷ୍ୟର ଧର୍ମାଚରଣ କରିବା କର୍ତ୍ତବ୍ୟ।

ମନୁଷ୍ୟ ହୋଇ ଯେ ଧର୍ମାଚରଣ କରନ୍ତି ନାହିଁ, ସେ ମନୁଷ୍ୟ ନାମ ଅଯୋଗ୍ୟ। ସଂପ୍ରଦାୟ, ପ୍ରବୃତ୍ତି ଓ ଜାତିଭେଦରେ ଧର୍ମାଚରଣ ସମ୍ବନ୍ଧରେ ଯେଉଁ ପାର୍ଥକ୍ୟ ଦେଖାଯାଏ, ତାହା ଗୁଣନିମିତ୍ତ। ଏହି ଗୁଣକ୍ଷୟପରେ ସମସ୍ତଙ୍କନିମିତ୍ତ ଏକ ମହାନ ଉଦାର ଧର୍ମର ଜ୍ୟୋତିଃ ପ୍ରତିଭାତ ହୋଇଅଛି। ତାହାର ଅନୁଭୂତି ଓ ଆନନ୍ଦ ସବୁ ଧର୍ମର ମଜ୍ଜାସ୍ୱରୂପରେ ବିରାଜିତ।

ଧର୍ମ ହିଁ ଭାରତବର୍ଷର ଆଦର୍ଶ। ଭାରତବର୍ଷ ବହୁ ଯୁଗରୁ ଏହି ଧର୍ମସାଧନାରେ ଅଗ୍ରଗତି କରିଥିବାରୁ ଏହି ଧର୍ମ ଭିତରେ ଯେପରି ବୈଚିତ୍ର୍ୟ ପରିଦୃଷ୍ଟ ହୁଏ, ସେହିଭଳି ଏକତା ମଧ୍ୟ ଦେଖାଯାଇଥାଏ। ଭାରତରେ ସମସ୍ତ ଧର୍ମର ମୂଳ ପ୍ରତିଷ୍ଠା ବେଦରେ। ଯେ ଏହି ବେଦବିଦ୍ୟାରେ ସିଦ୍ଧ ହୋଇ ଭାରତରେ ଗୁରୁଭାବରେ ଅବତୀର୍ଣ୍ଣ ହୋଇଛନ୍ତି, ସେହିମାନଙ୍କୁ କୁହାଯାଏ ବ୍ରାହ୍ମଣ। ଏହି ବ୍ରାହ୍ମଣଙ୍କ ନିକଟରେ ଭାରତବର୍ଷ ଚିରକାଳ ମସ୍ତକ ଅବନତ କରିଅଛି। ବ୍ରାହ୍ମଣଙ୍କ ଆହ୍ୱାନରେ ଭାରତର ସମଗ୍ର ଚିତ୍ତ ଆଲୋଡ଼ିତ ହୋଇଛି। ଭଗବାନ ଶଙ୍କରାଚାର୍ଯ୍ୟ ଓ ଶ୍ରୀଗୌରାଙ୍ଗ ମହାପ୍ରଭୁ ଯେଭଳି ଧର୍ମଜ୍ଞାନ ପ୍ରଦାନ କରି ବିଚ୍ଛିନ୍ନ ଭାରତକୁ ଐକ୍ୟସୂତ୍ରରେ ଗ୍ରଥିତ କରିଗଲେ, ଅନ୍ୟ କାହାରି ଆହ୍ୱାନରେ ଭାରତବର୍ଷ ସେପରି ଜାଗ୍ରତ ହୋଇ ନାହିଁ।

ତେଣୁ ପ୍ରଗତି ନାମରେ ଧର୍ମକୁ ତ୍ୟାଗ କରି ଧର୍ମଜ୍ଞାନକୁ ବାଦ୍ ଦେଇ ଯେତେ ପ୍ରକାରରେ ଉନ୍ନତିର ଚେଷ୍ଟା କଲେ ମଧ୍ୟ ଭାରତବର୍ଷ ସେଥିରେ ଜାଗ୍ରତ ହେବ ନାହିଁ। ପ୍ରଥମେ ସ୍ୱରୂପଜ୍ଞାନରେ ପ୍ରତିଷ୍ଠିତ ହୋଇ ଦେଶ-ସେବା କରିବାକୁ ହେବ; ତେବେ ଯାଇ ଦେଶର ଶ୍ରୀବୃଦ୍ଧି ହେବ। ସ୍ୱରୂପଜ୍ଞାନକୁ ତ୍ୟାଗ କରି କେବଳ ବିଳାସ-ବ୍ୟସନରେ ବୁଡ଼ିରହିବା ଭାରତର ଧର୍ମ ନୁହେଁ। ଭଗବାନ୍ ଭାରତବାସୀଙ୍କୁ ଯେଉଁ ବୀଜ ପ୍ରଦାନ କରିଛନ୍ତି, ସେହି ବୀଜକୁ ଅଙ୍କୁରିତ କରିବାନିମିତ୍ତ ସାଧନା କରିବା ଏକାନ୍ତ ଆବଶ୍ୟକ। ବିଶ୍ୱାମିତ୍ରଙ୍କର ଲୋଭ ଆମର ଆଦର୍ଶ ନୁହେଁ, ଆମର ଆଦର୍ଶ ବିଶିଷ୍ଠଙ୍କର ତପଃଶକ୍ତି। ବ୍ରାହ୍ମଣତ୍ୱ ଲାଭ ହେଲେ ତପଃଶକ୍ତିରୂପ କାମଧେନୁ ଆମ ଦେଶରେ ବନ୍ଧା ହୋଇ ରହିବ।

ପୂର୍ବପୁରୁଷଙ୍କ ଜ୍ଞାନ-ବିଜ୍ଞାନ ବର୍ତ୍ତମାନ ସୁଦ୍ଧା ଦେଶରୁ ଲୋପ ପାଇ ନାହିଁ; କିନ୍ତୁ ଅଧ୍ୟାତ୍ମ୍ୟ ଶିକ୍ଷାଗ୍ରହଣ ଉପଯୋଗୀ ମାନସିକ ବଳ ଆମକୁ ଲାଭ କରିବାକୁ ହେବ । ସବୁ ଅବସ୍ଥାରେ ପାଶ୍ଚାତ୍ୟ ଦେଶକୁ ତୁଳନା କରି ଚଳିଲେ, ଚଳିହେବ ନାହିଁ । ପାଶ୍ଚାତ୍ୟ ଦେଶର ଆଦର୍ଶ ଓ ଭାବଧାରା ସ୍ୱତନ୍ତ୍ର; କିନ୍ତୁ ଆମର ସ୍ୱଧର୍ମ ତାଙ୍କ ଆଦର୍ଶରେ ପରିଚାଳିତ ହେବା ଉଚିତ ନୁହେଁ । ଯୋଗ୍ୟ ଆଧାର-ଅଭାବରୁ ଉପଯୁକ୍ତ ଉପଦେଷ୍ଟା ଥିଲେ ମଧ୍ୟ କେହି ଧର୍ମଜ୍ଞାନକୁ ଧାରଣ କରିପାରୁ ନାହାନ୍ତି । ତେଣୁ ଚିତ୍ତଶୁଦ୍ଧିର ସାଧନା କରି ଧର୍ମଜ୍ଞାନ ଧାରଣ କରିବାକୁ ହେବ । ଧର୍ମଜ୍ଞାନ ଅର୍ଜନ କରି ସ୍ୱରୂପରେ ପ୍ରତିଷ୍ଠିତ ହେବାକୁ ପଡ଼ିବ । ଯେ ଏହି ଧର୍ମଜ୍ଞାନ ପ୍ରଦାନ କରନ୍ତି, ସେ ଆମର ଗୁରୁ । ସେହି ସତ୍ୟଦର୍ଶୀ ସଦ୍‌ଗୁରୁଙ୍କଠାରେ ଆତ୍ମସମର୍ପଣ କଲେ ସହଜରେ ଧର୍ମଜ୍ଞାନ ଲାଭ ହୋଇପାରିବ ।

ଏହି ଧର୍ମଶିକ୍ଷା ଦେବ କିଏ? ବର୍ଣ୍ଣ ଓ ଆଶ୍ରମଧର୍ମ ତ ଉଠିଯାଇଛି । ପ୍ରଚଳିତ ଶିକ୍ଷାପ୍ରତିଷ୍ଠାନରେ ମଧ୍ୟ ଧର୍ମର ଦୁର୍ଗତି ତତୋଽଧିକ । ଧର୍ମଶିକ୍ଷା ସମ୍ବନ୍ଧରେ ରାଜା ବା ଶାସକମାନେ ମଧ୍ୟ ଉଦାସୀନ । ଏକ ଔଦାସିନ୍ୟସହିତ ବିଜାତୀୟ ଶିକ୍ଷାର ସଂଯୋଗହେତୁ ଦିନକୁ ଦିନ ଉଚ୍ଛୃଙ୍ଖଳତା ବଢ଼ିଚାଲିଛି । ତେଣୁ ବର୍ତ୍ତମାନ ଏହି ସମସ୍ୟାରୁ ରକ୍ଷା ପାଇବାର ଉପାୟ ମଧ୍ୟ ଦେଖାଯାଉ ନାହିଁ । ବର୍ତ୍ତମାନ ସଂଘବଦ୍ଧ ହୋଇ ଆମର ଆଶା ଭରସାର ସ୍ଥଳ ବାଳକ-ବାଳିକାମାନଙ୍କୁ ଯଦି ଜାତୀୟ ଶିକ୍ଷା ଦିଆଯାଇପାରନ୍ତା; ତାହାହେଲେ ଏହି ସମସ୍ୟାର ସମାଧାନ ଅବା ହୋଇପାରନ୍ତା ।



# କାଳ

## କାଳସ୍ରୋତର ବିରାଟତ୍ୱ

କଷ୍ଟକର ସାଧନାଦ୍ୱାରା ବ୍ୟାସ-ବଶିଷ୍ଠାଦି ଋଷିମାନ ଯେଉଁ ଅମୃତ ଲାଭ କରି ଜଗତ୍‌ରେ ବିତରଣ କରିଥିଲେ, ଆମେମାନେ ତାହା ନିଶ୍ଚୟ ଲାଭ କରିବା । ତାହା ବ୍ୟତୀତ ଯଦି କିଛି ନୂତନ ସତ୍ୟ ଥାଏ, ତାହା ମଧ୍ୟ ଆମେ ଲାଭ କରିପାରିବା । ଏଥିପାଇଁ କଳିଯୁଗର ମାନବ ଧନ୍ୟ । କଠୋର ସାଧନାଦ୍ୱାରା ଋଷିମାନେ ସତ୍ୟଲାଭର ସୁଗମ ପନ୍ଥା ଆବିଷ୍କାର କରିଥିଲେ; ଆମେମାନେ ଅନାୟାସରେ ଆଜି ତାହା ପ୍ରାପ୍ତ ହୋଇପାରିବା । ଜଗତ୍‌ର ଉନ୍ନତି ସଙ୍ଗେ ସଙ୍ଗେ ସାଧନ-ପନ୍ଥା ମଧ୍ୟ ସହଜ ସୁଗମ ହୋଇଆସୁଛି । ସୁତରାଂ, ଆମମାନଙ୍କପରି ଭାଗ୍ୟବାନ ଆଉ କେହି ନାହାନ୍ତି ।

କାଳ ସର୍ବଦା ଜୀବର ଆୟୁ କ୍ଷୟ କରୁଛି, ଜଗତ୍‌କୁ ନବ ପରିବର୍ତ୍ତନଆଡ଼କୁ ଅନବରତ ଟାଣିନେଉଛି । ତାହାର ଗତି ରୋଧ କରିବାକୁ କାହାରି ସାଧ୍ୟ ନାହିଁ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ମଧ୍ୟ କାଳକବଳରୁ ମୁକ୍ତ ନୁହନ୍ତି । ସମଷ୍ଟି କାଳପ୍ରବାହ ଅନାଦି ଓ ଅନନ୍ତ । ବ୍ୟଷ୍ଟିଭାବରେ ଲିତା, ବିଲିତା ଓ ଅନୁଲିତା ବିଭାଗଦ୍ୱାରା ଆମେମାନେ କାର୍ଯ୍ୟ ନିର୍ବାହ କରିଥାଉଁ । କାଳକୁ ଏଡ଼ାଇଯିବା ସମ୍ଭବ ନୁହେଁ । ତାର ବିରାଟତ୍ୱ ବିଷୟ ଚିନ୍ତା କଲେ ଅଭିମାନ ଚୂର୍ଣ୍ଣ ହୋଇଯାଏ–ଏ କଥା ଶାସ୍ତ୍ରରେ ଉଲ୍ଲେଖ ଅଛି । ଏହି ଜଗତ୍‌ରେ ମନୁଷ୍ୟର ଯେପରି ଶହେ ବର୍ଷ ମାତ୍ର ପରମାୟୁ; ସପ୍ତଲୋକର ଜୀବଙ୍କର, ଏପରି ବ୍ରହ୍ମାଙ୍କର ମଧ୍ୟ ସେହି ଶହେବର୍ଷ ମାତ୍ର ପରମାୟୁ; କିନ୍ତୁ ଆମମାନଙ୍କର ଦିନର କାର୍ଯ୍ୟକାଳ ଏବଂ ସେହି ସେହି ଲୋକରେ ଦିନର କାର୍ଯ୍ୟକାଳମଧ୍ୟରେ ବହୁତ ପାର୍ଥକ୍ୟ ଅଛି ।

ଆମମାନଙ୍କର ଗୋଟିଏ ଅହୋରାତ୍ରରେ ଗୋଟି ଦିନ । ଭୁବଲୋକରେ କୃଷ୍ଣପକ୍ଷ, ଶୁକ୍ଳପକ୍ଷ ମିଶି ଗୋଟିଏ ଗୋଟିଏ ଦିନ ହୁଏ । ସ୍ୱର୍ଲୋକରେ ଉତ୍ତରାୟଣ ଦିନ, ଦକ୍ଷିଣାୟନ ରାତି । ଏହିଭାବରେ କ୍ରମାନୁସାରେ ଲୋକର ଦିନ ବୃଦ୍ଧି ପାଇଅଛି । ଊର୍ଦ୍ଧ୍ୱଲୋକବାସୀଙ୍କ ଆୟୁଃକାଳ ତୁଳନାରେ ଆମମାନଙ୍କ ଆୟୁଃକାଳ ଏକ କିମ୍ବା ଦୁଇ ଲିତାରୁ ନ୍ୟୂନ । ସୁତରାଂ, ଏହି ଆୟୁଃକାଳରେ ପୁଣି ସୁଖ-ଦୁଃଖ

କ'ଣ? କାଳ-ସ୍ରୋତରେ କ୍ରମବିବର୍ତ୍ତନ ନିୟମରେ ଆମେ କେତେ କାଳ କଟାଇଆସିଛୁ। ପୁଣି ଭବିଷ୍ୟତରେ କେତେ ସୁଦୀର୍ଘ କାଳର ଖେଳ ସଞ୍ଚିତ ରହିଛି ଜାଣେ ନାହିଁ। ଏସବୁ ଭାବିଲେ ମନେ ହୁଏ, ବିରାଟ କାଳ-ସ୍ରୋତର କେତେ ଅଂଶବ୍ୟାପୀ ବା ତୁମ ଆମର ଜୀବନ! ଏଠାରେ ସୁଖ-ଦୁଃଖ ପୁଣି କ'ଣ? କେତେ କାଳ ବା ସ୍ଥାୟୀ?

ଜଣେ ଋଷି ହିମାଳୟରେ କୁଟୀର ନିର୍ମାଣ ନ କରି ବାହାରେ ବାସ କରୁଥିଲେ। ଜଣେ ସାଧୁ ତାଙ୍କୁ ପଚାରିଲେ, "ଆପଣ ନିଜର ରହିବାପାଇଁ କୁଡ଼ିଆ ଘରଟିଏ ହେଲେ ପ୍ରସ୍ତୁତ ନ କରି ବୃଥାଟାରେ କାହିଁକି କଷ୍ଟ ଭୋଗ କରୁଛନ୍ତି?" ସେ ଉତ୍ତର କଲେ, "ମୁଁ ଜାଣିପାରିଛି, ଆଉ ଦଶ ହଜାର ବର୍ଷ ମାତ୍ର ମୋତେ ଏଠାରେ ରହିବାକୁ ହେବ। ଏତିକି ମାତ୍ର ସମୟପାଇଁ ପୁଣି କୁଟୀର ବାନ୍ଧିବାର ଆୟୋଜନ ବା କାହିଁକି କରିବି?" ଏହି ଉତ୍ତରରୁ ବୁଝାଯିବ ଯେ ଋଷିମାନେ କାଳମାହାତ୍ମ୍ୟ ବୁଝିପାରିଥିଲେ ଅଥଚ ସଂସାରବାସୀ ଅଢ଼େଇ ଦିନର ସଂସାର ବୋଲି ଜାଣିଶୁଣି ମଧ୍ୟ ସେଥିରେ ହିଁ ମୁଗ୍ଧ ହୋଇ ରହୁଛନ୍ତି, ପୁଣି ହିଂସା-ଦ୍ୱେଷ ପୋଷଣ କରି ଚିତ୍ତକୁ ମଳିନ କରିପକାଉଛନ୍ତି।

## କାଳର ଅତୀତ

କାଳର ଅତୀତ ନ ହେଲେ କୌଣସି ଉପାୟରେ ନିସ୍ତାର ନାହିଁ। କାଳର ଅତୀତ କେବଳ ବ୍ରହ୍ମ। ସେ କାଳର ଅଧିଷ୍ଠାତା। ତାଙ୍କ ଆଶ୍ରୟରେ କାଳ ଓତଃପ୍ରୋତ ଭାବରେ ବିଦ୍ୟମାନ। ସୁତରାଂ, ଏକମାତ୍ର ବ୍ରହ୍ମଜ୍ଞାନୀ ହିଁ କାଳର ଅତୀତ। ତାଙ୍କୁ ଛାଡ଼ିଦେଲେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ମଧ୍ୟ କାଳର ଅଧୀନ। କ୍ରମବିକାଶରେ ଜଗତ୍‌ରେ ସମସ୍ତେ ଉନ୍ନତି ଲାଭ କରିବେ; କିନ୍ତୁ ସମସ୍ତେ ଯେ ମୁକ୍ତ ହୋଇଯିବେ, ଏକଥା ନୁହେଁ। କାରଣ, ଏହି ନିୟମରେ କ୍ରମବିକାଶ ହେଉ ହେଉ କେତେ ଥର ବ୍ରହ୍ମାଣ୍ଡର ମହାପ୍ରଳୟ ସଂଘଟିତ ହେବ। ଜଗତ ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛି, ମହାପ୍ରଳୟରେ ଏସବୁ ବୀଜାକାରରେ ଲୀନ ହୋଇଯିବ। ପ୍ରଳୟପରେ ସୃଷ୍ଟି ସମୟରେ ସେହି ବୀଜରୁ ପୂର୍ବର ଅବସ୍ଥା ନେଇ ପୁଣି ଜଗତ୍ ଜାଗିଉଠିବ। ଯେଉଁମାନଙ୍କର ସତ୍ୟଲୋକକୁ ଗତି ହେବ, ଏକ କଳ୍ପପର୍ଯ୍ୟନ୍ତ ସେମାନଙ୍କର ଆନନ୍ଦରେ କାଳଯାପନ ହେବ। କଳ୍ପାନ୍ତରରେ ଜ୍ଞାନ ହୋଇ ସେମାନଙ୍କର ମୁକ୍ତି ହେବ।

ପ୍ରବାହରୂପରେ ଜଗତ୍ ସତ୍ୟ । ଗୋଟିଏ ବିରାଟ ପ୍ରବାହର ରେଖା ଅନାଦି କାଳରୁ ଚଳିଆସିଛି । କେତେ ଜନ୍ମ, ମୃତ୍ୟୁ, କେତେ ପରିବର୍ତ୍ତନ ଜଗତ୍‌ରେ ହୋଇଯାଉଛି; କିନ୍ତୁ କୌଣସି ବିଷୟ ନଷ୍ଟ ହେଉ ନାହିଁ । ସବୁ ଉନ୍ନତି ଦିଗରେ ଅଗ୍ରସର ହେଉଅଛି । ବ୍ୟଷ୍ଟିଭାବରେ ତୁମେ ଓ ମୁଁ ଅତି ନଗଣ୍ୟ । କାର୍ଯ୍ୟ ଉପଲକ୍ଷ୍ୟରେ ଏହି ଉନ୍ନତିପ୍ରବାହରେ ନିମିତ୍ତ ମାତ୍ର ଭାଗୀ ହୋଇ ଆମେ ଆତ୍ମପ୍ରସାଦ ମାତ୍ର ଲାଭ କରୁଥାଇ । କାର୍ଯ୍ୟପ୍ରବାହ କିନ୍ତୁ ଅନାଦି କାଳରୁ ଚାଲିଆସିଛି; ଭବିଷ୍ୟତରେ ମଧ୍ୟ ଚାଲୁଥିବ । ଏହି ବିରାଟ ପ୍ରବାହ ବିଷୟ ଚିନ୍ତା କଲେ ବିହ୍ୱଳ ହେବାକୁ ପଡ଼େ । ମୁଁ କିଏ, କେତେ କାର୍ଯ୍ୟ ବା କରିଛି, ସେତିକି ନିମିତ୍ତି ପୁଣି ଏତେ ଅହଙ୍କାର !

## ଆଦିକାଳରେ

ଆଦି କାଳରେ ଯେ ପାପ ନ ଥିଲା, ତାହା ନୁହେଁ । ପାପ ନ ଥିଲେ ମଧୁ କୈଟଭ ଅତ୍ୟାଚାରୀ ହୋଇ ନ ଥାନ୍ତେ । ସତ୍ୟଯୁଗରେ ଧର୍ମ ଚାରିପଦ । ଏହାର ଅର୍ଥ, ସତ୍ୟଯୁଗରେ ଯେ ପାପ ନ ଥିଲା, ଏପରି ନୁହେଁ; ସତ୍ୟଯୁଗରେ ଧର୍ମପାଇଁ ଧର୍ମକ୍ରିୟା ଷୋଳଅଣା କରିବାକୁ ହେଉଥିଲା । ତ୍ରେତା, ଦ୍ୱାପର, କଳିଯୁଗ ବିଷୟରେ ଏହି ହିସାବରେ ବୁଝିବାକୁ ହେବ । ମାନବ ତ୍ରେତାରେ ଧର୍ମକ୍ରିୟାର ଅଙ୍ଗଗୁଡ଼ିକ ବାରପଣ ସମ୍ପାଦନ କଲେ ଦ୍ୱାପରରେ ଅର୍ଦ୍ଧେକ ଏବଂ କଳିରେ ଏକ-ଚତୁର୍ଥାଂଶ ସମ୍ପାଦନ କଲେ ଷୋଳଅଣା ଫଳଭାଗୀ ହେବେ । ସୁତରାଂ, କଳିର ଜୀବ ସମଧିକ ଭାଗ୍ୟବାନ୍ ।

## ମହାପୁରୁଷ

ବହୁ ଶତାବ୍ଦୀପରେ ଜଣେ ଜଣେ ମହାପୁରୁଷ ଯୋଗରେ କୃତକାର୍ଯ୍ୟ ହୁଅନ୍ତି । ସେହିଦିନଠାରୁ ତାଙ୍କ ଦୃଷ୍ଟାନ୍ତଦ୍ୱାରା ଆହୁରି କିଛି କାଳ ଅନେକ ଲୋକ ସେଥିରେ ଅଳ୍ପାଧିକ ପରିମାଣରେ ସାଫଲ୍ୟ ଲାଭକରନ୍ତି ।

ସାଧାରଣ ଲୋକେ ଅତ୍ୟନ୍ତ ଜୀବନପ୍ରିୟ; ତେଣୁ ସେମାନେ ସ୍ୱକଳ୍ପିତ ମତରେ ମହାପୁରୁଷମାନଙ୍କର ଶତ ଶତ ବର୍ଷ ଜୀବନ କଳ୍ପନା କରନ୍ତି; କିନ୍ତୁ ସେମାନେ ବୁଝନ୍ତି ନାହିଁ ଯେ ଯାହାଙ୍କପାଇଁ ଚତୁର୍ଦ୍ଦଶ ଭୁବନ ଓ ମୋକ୍ଷଦ୍ୱାର ଉନ୍ମୁକ୍ତ, ସେମାନେ କାହିଁକି ଏହି କ୍ଷୁଦ୍ର ପୃଥିବୀରେ ପଡ଼ିରହିବେ ?

ଅବଶ୍ୟମ୍ଭାବୀ ନିୟତି ଦୈବ ନାମରେ ଅଭିହିତ। ସେହି ନିୟତି ମଧ୍ୟ ପୌରୁଷଦ୍ୱାରା ଉପଜାତ ହୁଏ। ଅତଏବ ସେହି ପରମପୌରୁଷ ଅବଲମ୍ବନପୂର୍ବକ ବିଷୟରେ ଆନାସ୍ଥା ଆଣିବାକୁ ହେବ।

ଦେହୀ କାଳକ୍ରମେ ଜର୍ଜ୍ଜରିତ ହୋଇ ବାସନାବଶରୁ ପୁଣି ଦେହାନ୍ତର ଧାରଣ କରେ। ବାସନା ବୈଶିଷ୍ଟ୍ୟ ହିଁ ଜୀବର ଦେହ। ବାସନା ପରିତ୍ୟାଗ କରି ନ ପାରିଲେ ପରମପଦ ଲାଭ ହୁଏ ନାହିଁ। ସୃଷ୍ଟିର ଆଦି କାଳରେ ଯେ ଯେପରି ଭାବନା କରନ୍ତି, ସେ ସେହିପରି ପ୍ରାପ୍ତ ହୋଇଥାନ୍ତି। ଦେହାଦିର ଆକାର ପ୍ରାକ୍ତନ ବାସନାର ମୂଳ।

ଭୂତକାଳ ସ୍ମରଣ କର ନାହିଁ; ଭବିଷ୍ୟତର ପ୍ରତୀକ୍ଷା କର ନାହିଁ, ତୁମେ ବର୍ତ୍ତମାନର ହୋଇ ରହ।

ବ୍ରହ୍ମରୁ ମାୟା, ମାୟାରୁ ବ୍ରହ୍ମା, ବିଷ୍ଣୁ, ଶିବ, ସମସ୍ତ ଜଗତର ସୃଷ୍ଟି, ସ୍ଥିତି ପ୍ରଳୟ। ଏହିସବୁ ତତ୍ତ୍ୱ ପ୍ରତ୍ୟକ୍ଷ କରି ମାୟାରୁ ମୁକ୍ତି ଲାଭ କଲେ ପରା ଭକ୍ତି ଲାଭ ହୁଏ। ତାହା ହିଁ ପରମପୁରୁଷାର୍ଥ।

ତୁମ ନିକଟରେ ବର୍ତ୍ତମାନ କାଳ ହିଁ ସତ୍ୟ। କାଳକୁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତରେ ଭାଗ କରିବା ମାୟାର କାର୍ଯ୍ୟ। ତୁମେ କାଳର ଅଧିଷ୍ଠାତା। ଚଞ୍ଚଳତାର ସ୍ଥିର ଆଧାର ନ ଥିଲେ କାଳର ଗତି ଅପ୍ରତିହତ ଭାବରେ ଚାଲିପାରନ୍ତ ନାହିଁ। ଏହି ସ୍ଥିର କାଳର ନାମ ମହାକାଳ ଏବଂ ଗତିଶୀଳ।, କ୍ରିୟାଶୀଳ କାଳର ନାମ ମହାକାଳୀ। ଏହି ନିତ୍ୟ ଅଚଞ୍ଚଳ ସ୍ଥିରକାଳ ହିଁ ଆମର ସ୍ୱରୂପ। ତୁମର ଅବିଚଳ ଅନ୍ତହୀନ ସମୁଦ୍ରବତ୍ ସ୍ଥିରସତ୍ତାମଧ୍ୟରେ ଚଞ୍ଚଳତାରୂପ ଢ଼େଉ ଉଠୁଛି। ସ୍ଥିର ସତ୍ତା ହିଁ ଶିବ; ତରଙ୍ଗ ବା ଅସ୍ଥିର ସତ୍ତା ହିଁ ଶକ୍ତି। ପାପ-ପୁଣ୍ୟ ସବୁ କାଳର ସୃଷ୍ଟି। ତେଣୁ ଭଲ-ମନ୍ଦର ଅତୀତ ହେଲେ କାଳକୁ ଜୟ କରିପାରିବ।



# ସଂଘ-ତତ୍ତ୍ୱ

## ସମସ୍ତେ ଅନନ୍ତ ପଥର ଯାତ୍ରୀ

ଏ ଜଗତ୍ କର୍ମକ୍ଷେତ୍ର । ଏଠାରେ ଜୀବମାତ୍ରକେ କର୍ମ କରିବାକୁ ଆସିଛନ୍ତି । ସେ କର୍ମ ଅନ୍ୟ କିଛି ନୁହେଁ, ତାହା ପରସ୍ପର ପରସ୍ପରକୁ ସାହାଯ୍ୟ କରିବା ଏବଂ ପରସ୍ପରର ଅଭାବ ପୂରଣଦିଗରେ ଚେଷ୍ଟା କରିବା । ଜଗତ୍‌ର ପ୍ରତ୍ୟେକଙ୍କଠାରେ କିଛି ନା କିଛି ବିଶେଷତ୍ୱ ଅଛି । ସମସ୍ତେ କୌଣସି ନା କୌଣସି ବିଶେଷ ଶକ୍ତିରେ ଶକ୍ତିମାନ । ସମସ୍ତଙ୍କର ମଧ୍ୟ ପ୍ରୟୋଜନୀୟତା ଅଛି । ସମସ୍ତେ ପରସ୍ପରର ସହାୟତାରେ ଉନ୍ନତିପଥରେ ଅଗ୍ରସର ହୋଇଥାନ୍ତି । ଜଗତ୍‌ର ପ୍ରତ୍ୟେକ ପଦାର୍ଥ ପରସ୍ପର ସଂଯୁକ୍ତ ହୋଇ ବିରାଟ ବିଶ୍ୱସଂସାରର କର୍ମପ୍ରବାହ ଅବ୍ୟାହତ ରଖିଛନ୍ତି । ତେଣୁ ଜୀବନ ପରନିମିତ୍ତ । ସୁତରାଂ, ଗୃହସ୍ଥ ନିଜକୁ ଶତ ବିପଦରେ ପକାଇ ପରିବାରର ସୁଖ-ସୁବିଧାନିମିତ୍ତ ବ୍ୟସ୍ତ ।

ଆମେ ଅନନ୍ତ ପଥର ଯାତ୍ରୀ । ଆମେ ସ୍ୱତନ୍ତ୍ରଭାବରେ ଗତି କରିବାଫଳରେ ଦୁଃଖ-କଷ୍ଟ ଭୋଗ କରିବାକୁ ବାଧ୍ୟ ହୋଇଥାଉ । ନିଜର ଉଚ୍ଛୃଙ୍ଖଳତା ଓ ବ୍ୟକ୍ତିଗତ ସ୍ୱାଧୀନତାଦୋଷରୁ ଆମେ କଷ୍ଟ ଭୋଗ କରୁ । ତେଣୁ ବ୍ୟକ୍ତିଗତ ସ୍ୱାଧୀନତା ଲୋପ କରି ପରସ୍ପର ସାହାଯ୍ୟରେ ଲକ୍ଷ୍ୟପଥରେ ଅଗ୍ରସର ହେବାନିମିତ୍ତ ସଂଘ ଗଠନ କରିବା ଦରକାର । ଯେଉଁ ସମାଜ ଯେତେ ଉନ୍ନତ, ସେ ସମାଜ ସଂଘକର୍ତ୍ତୃକ ସେତିକି ବିଶେଷଭାବରେ ପରିଚାଳିତ । ଦେବତାମାନେ, ଋଷିମାନେ ସଂଘବଦ୍ଧ ହୋଇ ଯେଉଁ କାର୍ଯ୍ୟ କରିଛନ୍ତି, ସେଥିରେ ମହାଶକ୍ତିଙ୍କର ଆବିର୍ଭାବ ହୋଇଅଛି । ଋଷିମାନେ ସଂଘବଦ୍ଧ ହୋଇ ଧର୍ମଜଗତ୍‌ର ଉନ୍ନତି ବିଧାନ କରିବାନିମିତ୍ତ ବଦ୍ଧପରିକର । ପ୍ରେମାବତାର ଶ୍ରୀଗୌରାଙ୍ଗଦେବ ତାଙ୍କ ଶିଷ୍ୟମଣ୍ଡଳୀଙ୍କୁ ସଂଘବଦ୍ଧ ହୋଇ ନାମ-ପ୍ରଚାରନିମିତ୍ତ ଉଦ୍‌ବୁଦ୍ଧ କରିଥିଲେ । ପାଶ୍ଚାତ୍ୟ ଜାତି ସାମାଜିକ ଜୀବନରେ ସଂଘବଦ୍ଧ ହେବାଫଳରେ ବିଶେଷ ବୈଷୟିକ ସାଧନ କରିଛନ୍ତି ।

## ଧର୍ମଜୀବନରେ ସଂଘଶକ୍ତିର ସ୍ଥାନ

ଭାରତୀୟ ଋଷିମାନେ ଆର୍ଯ୍ୟଜାତିର ଧର୍ମ-ଜୀବନରେ ମଧ୍ୟ ସଂଘଶକ୍ତି ପ୍ରତିଷ୍ଠାର ପ୍ରୟୋଜନୀୟତା ଅନୁଭବ କରି ସେଥିପାଇଁ ଉପଦେଶ ଦେଇଥିଲେ । ତେଣୁ ମହର୍ଷି ବ୍ୟାସଦେବ ''ସଂଘଶକ୍ତିଃ କଲୌ ଯୁଗେ'' ବୋଲି ଉଲ୍ଲେଖ କରିଛନ୍ତି । ହିନ୍ଦୁମାନେ ଏହି ସଂଘଶକ୍ତି-ଅଭାବରୁ ହତଭାଗ୍ୟ ଓ ଅନୁନ୍ନତ । ଯାହାଙ୍କର ଯେଉଁ ବିଷୟରେ ଅଭାବ, ଏକାକୀ ଥିଲେ ସେ ତାହା ଉପଲବ୍ଧ କରିପାରିବେ ନାହିଁ; କିନ୍ତୁ ଯାହାଙ୍କଠାରେ ସେ ଗୁଣ ଅଛି, ତାଙ୍କ ସାହଚର୍ଯ୍ୟରେ ଆସିଲେ ସେହି ଗୁଣ ପୂରଣନିମିତ୍ତ ସ୍ୱାଭାବିକ ଭାବରେ ଉତ୍ତେଜନା ଆସିଥାଏ । ପ୍ରତ୍ୟେକ ମାନବଙ୍କ ମଧ୍ୟରେ କିଛି ନା କିଛି ବିଶେଷତ୍ୱ ଅଛି । ଏହି ବିଶେଷତ୍ୱଗୁଡ଼ିକ ଯଦି ନିୟନ୍ତ୍ରିତ ଓ ଏକତ୍ରିତ କରି କର୍ମକ୍ଷେତ୍ରରେ ପ୍ରୟୋଗ କରାଯାଏ, ତେବେ ବିଶାଳ ସଂଘଶକ୍ତିର ଆବିର୍ଭାବ ଘଟିବ । ପ୍ରତ୍ୟେକ ଧର୍ମଜୀବନଯାପନକାରୀ ସାଧକଙ୍କର ସଂଘବଦ୍ଧ ହେବା ଏକାନ୍ତ କର୍ତ୍ତବ୍ୟ । ସବୁ ମାନବଙ୍କର ଉଦ୍ଦେଶ୍ୟ ଓ କର୍ମକ୍ଷେତ୍ର ବିଭିନ୍ନ ହେଲେ ମଧ୍ୟ ଧର୍ମ-ଜୀବନରେ ସମସ୍ତଙ୍କର ଲକ୍ଷ୍ୟ ସମାନ ।

ସମାଜର ଅଜ୍ଞାନ ମାନବଙ୍କ ମଧ୍ୟରେ ଯେଉଁ ଭଗବତ୍‌ଶକ୍ତି ଲୁକ୍‌କାୟିତ ହୋଇ ରହିଛି, ଜ୍ଞାନୀମାନେ ସେମାନଙ୍କୁ ସଂଘବଦ୍ଧ କରି ସେହି ଶକ୍ତିକୁ ଭଗବତ୍ ଉଦ୍ଦେଶ୍ୟରେ ପ୍ରୟୋଗ ନ କଲେ ତାହା ନଷ୍ଟହୋଇଯିବ । ତେଣୁ ମାନବ ସ୍ୱେଚ୍ଛାରେ ସଂଘବଦ୍ଧ ହୋଇ ପରାଧୀନତାକୁ ସ୍ୱେଚ୍ଛାରେ ବରଣ କରିନେଉଅଛି । ଜ୍ଞାନୀ-ସାଧକମାନେ ଜାଣିଶୁଣି ସ୍ୱେଚ୍ଛାରେ ଏହି ଦାସତ୍ୱକୁ ବରଣ କରି ସମାଜରେ ବରେଣ୍ୟ ହେଉଛନ୍ତି । ଅଜ୍ଞାନୀମାନେ ଉନ୍ନତ ମାନବଙ୍କ କର୍ତ୍ତୃକ ବଳପୂର୍ବକ ନିୟନ୍ତ୍ରିତ ହୁଅନ୍ତି । ଉଚ୍ଛୃଙ୍ଖଳ ଜୀବନ ପଶୁଜୀବନଠାରୁ ହୀନ । ମାନବ ଉଚ୍ଛୃଙ୍ଖଳଭାବ ତ୍ୟାଗ କରି ସଂଘବଦ୍ଧ ହୋଇ ନୀତି, ନିୟମ, ଶୃଙ୍ଖଳା ମାନି ସଂଘର ଅଧୀନ ହୋଇ ଚଳିଲେ ଜ୍ଞାନ ସହଜରେ ଫୁଟିଉଠେ । ଯେଉଁ ସମାଜ ଯେ ପରିମାଣରେ ନିୟମ-ସଂଯମର ଅଧୀନ, ସେ ସମାଜ ସେତିକି ଜ୍ଞାନୀ ଓ ଉନ୍ନତ । ହିନ୍ଦୁଧର୍ମରେ ନାନାବିଧ ନିୟମ-ସଂଯମ ଥିବା ହେତୁ ବହୁ ମହାପୁରୁଷଙ୍କ ଆବିର୍ଭାବ ସମ୍ଭବ ହୋଇଥାଏ । ହିନ୍ଦୁମାନେ ଏହି ବନ୍ଧନ ମଧ୍ୟରେ ଥାଇ ପ୍ରକୃତ ମୁକ୍ତିର ସ୍ୱାଦ ଗ୍ରହଣ କରୁଛନ୍ତି । ପ୍ରକୃତ ମନୁଷ୍ୟତ୍ୱ ଲାଭ କରିବାକୁ ହେଲେ, ସ୍ୱାଧୀନଭାବରେ ଚଳିଲେ କେବେ

ହେଲେ ଚଳିବ ନାହିଁ। ପ୍ରକୃତିର ଅଧୀନ ହେଲେ ମାନବ-ଅନ୍ତରରେ ପଶୁବୃତ୍ତି ଗୁଡ଼ିକ ଜାଗ୍ରତ ହେବା ବ୍ୟତୀତ ଦୈବୀଗୁଣର କେବେ ହେଲେ ବିକାଶ ହେବ ନାହିଁ। ତେଣୁ ପ୍ରକୃତ ମନୁଷ୍ୟତ୍ୱରେ ପ୍ରତିଷ୍ଠିତ ହେବାକୁ ହେଲେ ଆମମାନଙ୍କୁ ନୀତି, ନିୟମ, ସଂଯମ ମଧ୍ୟଦେଇ ଗତି କରିବାକୁ ପଡ଼ିବ।

ଗୋଟିଏ ଭାବରେ ଭାବିତ, ଗୋଟିଏ ଭାବରେ ଅନୁପ୍ରାଣିତ ଜନସମୂହ ସଂଘରେ ପରିଣତ ହୁଅନ୍ତି। ପୁରାକାଳରେ ଋଷିସଂଘ ହିଁ ବ୍ରହ୍ମବିଦ୍ୟାର ଧାରକ, ପାଳକ ଓ ରକ୍ଷକ ଥିଲେ। ବୌଦ୍ଧମାନେ ମଧ୍ୟ ସଂଘବଦ୍ଧଭାବରେ ରହି ଧର୍ମ ଜୀବନ ଯାପନ କରି ଉନ୍ନତ ହେଉଥିଲେ। ହିନ୍ଦୁଜାତିକୁ ପୁନରାୟ ଉନ୍ନତ କରାଇବାକୁ ହେଲେ ସଂଘବଦ୍ଧ ହୋଇ କାର୍ଯ୍ୟରେ ଅଗ୍ରସର ହେବାକୁ ପଡ଼ିବ। ଧର୍ମନିମିତ୍ତ ଭାରତବାସୀଙ୍କ ପ୍ରତିଷ୍ଠା ଓ ଗୌରବ। ଧର୍ମହୀନ ହେଲେ ଜାତିର ଜାତୀୟତା ନଷ୍ଟ ହୋଇଯିବ। ତେଣୁ ଆଦର୍ଶ ଧର୍ମସଂଘ ପ୍ରତିଷ୍ଠା କରି ଜାତିକୁ ଜାଗ୍ରତ କରିବାକୁ ହେବ।

## ସଂଘରେ ଜ୍ଞାନ କର୍ମର ସମନ୍ୱୟ

ସଂଘଦ୍ୱାରା ଜ୍ଞାନ ଓ କର୍ମର ସମନ୍ୱୟ ସାଧିତ ହୋଇଥାଏ। କର୍ମକୁ ପରିତ୍ୟାଗ କରି ଜ୍ଞାନର ପ୍ରତିଷ୍ଠା ହୋଇପାରେ ନାହିଁ। ତେଣୁ ପରମହଂସ ଅଗ୍ରଗଣ୍ୟ ଚିରମୁକ୍ତ ଶୁକଦେବଙ୍କର ଗୁରୁ ଥିଲେ କର୍ମଯୋଗୀ ଗୃହୀ ଜନକଋଷି। କର୍ମରେ ହିଁ ସଂଘର ପ୍ରତିଷ୍ଠା। ବୁଦ୍ଧଦେବ ମଧ୍ୟ କର୍ମଭିତ୍ତିରେ ସଂଘ ପ୍ରତିଷ୍ଠା କରିଛନ୍ତି। ସମଗ୍ର ଜଗତ୍ କର୍ମସୂତ୍ରରେ ଆବଦ୍ଧ। କର୍ମବନ୍ଧନରେ ଆବଦ୍ଧ ହୋଇ ଧର୍ମର ସାଧନା କରିବାକୁ ଜୀବ ସମଷ୍ଟିରୁ ବ୍ୟଷ୍ଟିକୁ ଅବତରଣ କରିଅଛି। ସଂଘେସେବାଦ୍ୱାରା ଚିତ୍ତର ମଳିନତା ଦୂର ହୁଏ। ନିଜକୁ ଅପରର ସେବାରେ ଉତ୍ସର୍ଗ କରିବା ହିଁ ଜୀବର ପରମ ପରିଣତି। ସଂଘ ଏହି ପରିଣତିର ନାମାନ୍ତର। ସଂଘଦେବତା ସାଧକଙ୍କର ଅନ୍ତରରେ ଓ ବାହାରେ ସମଭାବରେ ବିଦ୍ୟମାନ। ଅହଂନାଶରେ ଅମୃତର ସନ୍ଧାନ ମିଳେ। ବ୍ୟଷ୍ଟିର ପୂର୍ଣ୍ଣତା କର୍ମରେ ଏବଂ ସମଷ୍ଟିର ପୂର୍ଣ୍ଣତା ଜ୍ଞାନରେ। ମାନବ ଆତ୍ମଧର୍ମ ପ୍ରତିଷ୍ଠା ନିମିତ୍ତ ନୀତିନିୟମ ମାନି ଚଳେ। ସଂଘରେ ଭାବ ଓ ପ୍ରାଣର ବିନିମୟରେ ଭଗବତ୍‌ସେବାନନ୍ଦ ଲାଭ ହୋଇଥାଏ। ଶ୍ରୀଗୁରୁଦେବ କରୁଣା ଓ ପ୍ରେମର ଘନମୂର୍ତ୍ତି; ଶିଷ୍ୟ ଶ୍ରଦ୍ଧା ଓ ନିଷ୍ଠାର ଘନବିଗ୍ରହ। ତେଣୁ ସଂଘରେ ହିଁ ଗୁରୁ-ଶିଷ୍ୟଙ୍କ ସମ୍ମିଳନ ଘଟେ। ସଂଘ ଓ ଶ୍ରୀଗୁରୁଦେବଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ। ଶ୍ରୀଗୁରୁ ଯଦି

ପ୍ରତି ଜୀବ-ହୃଦୟରେ ଚିନ୍ମୟରୂପରେ ବିରାଜିତ ହୁଅନ୍ତି, ତେବେ ସଂଘ ହିଁ ଶ୍ରୀଗୁରୁଦେବଙ୍କ ସ୍ଥୁଳବିଗ୍ରହ। ଏହା ହିଁ ବ୍ୟଷ୍ଟିକୁ ନେଇ ସମଷ୍ଟିର ପରିପୁଷ୍ଟି। ଏହା ହିଁ ସୂକ୍ଷ୍ମରୁ ସ୍ଥୁଳତର ବିବର୍ତ୍ତନ, ସ୍ଥୁଳରୁ ସୂକ୍ଷ୍ମକୁ ଆବର୍ତ୍ତନ। ଏହା ହିଁ ବେଦରେ ଓଁ କାରରେ ପର୍ଯ୍ୟବସିତ ହୋଇଛି। ପ୍ରଣବରେ ନିଖିଳ ବିଶ୍ୱ ସଂହତ। ତେଣୁ ଆମେ ସଂହତି, ଐକ୍ୟ ଓ ମିଳନନିମିତ୍ତ ଇଚ୍ଛୁକ।

ଅଭାବର ତାଡ଼ନାରେ ସଂଘଶକ୍ତିର ପ୍ରତିଷ୍ଠା ହେଲେ ସେଥିରେ ଶକ୍ତିର ଆବିର୍ଭାବ ହୁଏ ସତ୍ୟ; ମାତ୍ର ସେ ଦେବୀ ନିରସ୍ତ୍ରା ଓ ନିରାଭରଣା, ନିଷ୍କ୍ରିୟା ଓ ଓ ଅସୁନ୍ଦରୀ। ଦେବୀଙ୍କୁ କେବଳ ଅସ୍ତ୍ର-ଶସ୍ତ୍ର ନୁହେଁ, ଆଭରଣ, ପୁଷ୍ପମାଲ୍ୟ ମଧ୍ୟ ଅର୍ପଣ କରିବାକୁ ହେବ। ତେଣୁ ସଂଘ ଗଠନ କରି ଏକ ମନ ଏକ ପ୍ରାଣରେ ସେବା କଲେ ଆତ୍ମଶକ୍ତିର ଜାଗରଣ ହେବ।

## ସଂଘର ନିର୍ଦ୍ଦେଶ

ସଂଘରେ ସଂରକ୍ଷଣ ଓ ସୃଜନଶକ୍ତିର କ୍ରିୟା ନ ଥିଲେ ସଂଘ କେବଳ ଅପରର ଅନିଷ୍ଟ କରିବାରେ ନିଯୁକ୍ତ ହୋଇ ଧ୍ୱଂସ ପାଇଯିବ। ତେଣୁ ଚଣ୍ଡୀର ଯେଉଁ ସଂଘଶକ୍ତି, ତାହା ଧ୍ୱଂସକାରିଣୀ ଶକ୍ତି। ବେଦ-ଉପନିଷଦ-ବର୍ଣ୍ଣିତ ଋଷିସଂଘର ଆଦର୍ଶ ଶିବ। ଏଠାରେ ସେ କହିଛନ୍ତି, ''ତୁମେମାନେ ସମାନଭାବରେ ଚଳ; ସମାନ ମନ୍ତ୍ର ଉଚ୍ଚାରଣ କର, ତୁମର ସମିତି ସମାନ ହେଉ, ତୁମ ସମସ୍ତଙ୍କର ମନପ୍ରାଣ ଏକ ହେଉ, ଚିତ୍ତ ଓ ଆକୃତି ସମାନ ହେଉ, ସମସ୍ତଙ୍କ ହୃଦୟ ସମାନ ହେଉ।''—ଏହା ହିଁ ସଂଘର ଅଲଙ୍ଘ୍ୟ ନିର୍ଦ୍ଦେଶ। କେବଳ ପରସ୍ପର ପ୍ରେମପ୍ରୀତିବଳରେ ସଂଘବଦ୍ଧ ହୋଇ, ଯଜ୍ଞବେଦିରେ ଅଗ୍ନିକୁ ସାକ୍ଷୀ ରଖି, ଏହି ମନ୍ତ୍ର ଉଚ୍ଚାରଣ କରି ସଂଘବଦ୍ଧ ହେବା ହିଁ ପ୍ରକୃତ ସଂଘଶକ୍ତିର ପ୍ରତିଷ୍ଠା। ସଂଘ ଯେତେବେଳେ କେବଳ ଆତ୍ମରକ୍ଷାରେ ପର୍ଯ୍ୟବସିତ ନ ହୋଇ ଆତ୍ମଦାନର ବ୍ରତ ଗ୍ରହଣ କରେ, ସେତେବେଳେ ତାହା ସାର୍ଥକ ହୁଏ। ବୈଷ୍ଣବମାନଙ୍କର ସଂକୀର୍ତ୍ତନ ମଧ୍ୟ ସଂଘ-ଉପାସନାର ଅନ୍ତର୍ଗତ। ଏକାକୀ ସେହି ନାମ ନେଲେ ପ୍ରାଣରେ ସେପରି ତରଙ୍ଗ ଉଠେ ନାହିଁ, ସଂକୀର୍ତ୍ତନ ବା ସମ୍ମିଳିତ କୀର୍ତ୍ତନରେ ସେପରି ହୁଏନାହିଁ। ତୀବ୍ର ବ୍ୟକ୍ତିସ୍ୱାତନ୍ତ୍ର୍ୟ ଓ ଜଡ଼ତ୍ୱ—ଏହାର ମଧ୍ୟସ୍ଥଳରେ ସଂଘ। ସଂଘ ବ୍ୟକ୍ତିସ୍ୱାତନ୍ତ୍ର୍ୟ ଲୋପ କରି ଜଡ଼ତ୍ୱର ଅପସାରଣ କରେ। ସଂଘ ହିଁ ଶ୍ରୀଗୁରୁଦେବଙ୍କ ସ୍ଥୁଳଦେହ ବା ଆବାସସ୍ଥଳ, ସେବକମାନଙ୍କର ଶିକ୍ଷାକେନ୍ଦ୍ରସ୍ୱରୂପ। ଗୁରୁଗୃହ ବା

ସଂଘ ସନାତନଧର୍ମର ସାଧନ-କ୍ଷେତ୍ର । ଏହି ଧର୍ମରେ ଦେଶ-କାଳ-ପାତ୍ରଭେଦ ନାହିଁ ।

ପିତା-ମାତା ସାମାଜିକ ପ୍ରାଣୀ । ସଂସ୍କାରବିହୀନ ସରଳ ମନୁଷ୍ୟତ୍ୱର ପରିଚୟ ଦେବା ସବୁ କ୍ଷେତ୍ରରେ ସେମାନଙ୍କପକ୍ଷରେ ସମ୍ଭବପର ହୁଏ ନାହିଁ । ତେଣୁ ପିତା-ମାତା ଶିକ୍ଷାନିମିତ୍ତ ପୁତ୍ରର ଗୁରୁଗୃହକୁ ପ୍ରେରଣ କରିବା ସନାତନରୀତି । ଏଠାରେ ସନ୍ତାନମାନେ ମାନବ-ଧର୍ମର ଶିକ୍ଷା ଲାଭ କରିବେ । ଶିକ୍ଷାକ୍ଷେତ୍ରରେ ପିତୃତ୍ୱ ଓ ମାତୃତ୍ୱ ଥିବା ପ୍ରୟୋଜନ । ଦ୍ୱିଜ-ସନ୍ତାନର ପିତା ଆଚାର୍ଯ୍ୟ, ମାତା ଗାୟତ୍ରୀ । ଗୁରୁ ବ୍ରହ୍ମଭାବର ଘନୀଭୂତ ବିଗ୍ରହ । ଗୁରୁପତ୍ନୀ ଜଗଜ୍ଜନନୀଙ୍କର ମୂର୍ତ୍ତପ୍ରକାଶ—ସାକ୍ଷାତ୍ ଗାୟତ୍ରୀ ଦେବୀ । ଏହି ପିତାମାତାଙ୍କ କୋଳରେ ମାନବସନ୍ତାନ ଦ୍ୱିଜତ୍ୱ ବା ଭାବ ଜନ୍ମ ଲାଭକରେ । ଗୁରୁ ମିଳିଲେ, ଗୁରୁଶକ୍ତି ମିଳିଲେ । ବର୍ତ୍ତମାନ ଦ୍ୱିଜ ସନ୍ତାନର ପ୍ରୟୋଜନ ।

ପ୍ରାଣର ଅବ୍ୟକ୍ତ ଆକର୍ଷଣରେ ଦ୍ୱିଜର ଜନ୍ମ ଅର୍ଥାତ୍ ସେବକତ୍ୱ ଗ୍ରହଣ କରିବା ନିମିତ୍ତ ଯେଉଁମାନେ ଆକୁଳ ଆଗ୍ରହରେ ଗୁରୁଗୃହକୁ ସ୍ୱତଃ ଆଗମନ କରନ୍ତି, ସେହିମାନେ ହିଁ ଯଥାର୍ଥ ସଂଘସେବୀ ବା ଦ୍ୱିଜ-ସନ୍ତାନ । ସଂଘରେ ଗୁରୁ ଗୁଣାତୀତ, ଗୁରୁଶକ୍ତି ଗୁଣାଧୀଶ ଓ ସେବକ ଗୁଣାଧୀନ । ଗୁରୁଗୃହ ହିଁ ଅମାୟିକ ଭାବର କ୍ଷେତ୍ର ।

ବ୍ରାହ୍ମମୁହୂର୍ତ୍ତରୁ ଦ୍ୱିଜ ସେବକମାନେ ଗୁରୁବନ୍ଦନା ଆରମ୍ଭ କରି ଗୁରୁଗୃହକୁ ସ୍ପନ୍ଦିତ ଓ ନିନାଦିତ କରିଦିଅନ୍ତି । ତତ୍ପରେ ସମଗ୍ର ଦିବସ ଗୁରୁସେବା ଉଦ୍ଦେଶ୍ୟରେ କର୍ମରେ ଯୋଗ ଦିଅନ୍ତି । ଏହାପରେ ସନ୍ଧ୍ୟାସମୟରେ ମଧ୍ୟ ସ୍ତୋତ୍ର-ବନ୍ଦନାରେ ଶିକ୍ଷାୟତନ ମୁଖରିତ ହୋଇଉଠେ । ତତ୍ପରେ ଗୁରୁଦେବଙ୍କ ନିକଟରେ ବସି ଦ୍ୱିଜ-ସନ୍ତାନମାନେ ଜ୍ଞାନାଲୋଚନାରେ ପ୍ରବୃତ୍ତ ହୁଅନ୍ତି । ସେବକମାନେ ଆନନ୍ଦରେ ସମସ୍ତ କର୍ମ ସମ୍ପାଦନ କରନ୍ତି ।

## ସଂଘସେବୀମାନେ ଦ୍ୱିଜ

ଗୁରୁଗୃହରେ ସମସ୍ତେ ଦ୍ୱିଜ । ସେଠାରେ କେହି ଶୂଦ୍ର ନାହାନ୍ତି । ଗୁରୁଗୃହରେ କେବେ ଶୁଦ୍ରର ପ୍ରବେଶାଧିକାର ନାହିଁ । ଏହାର ତତ୍ତ୍ୱ ହେଉଛି ଯେ ପ୍ରତ୍ୟେକ

ବ୍ୟକ୍ତି ଜାତ ହେଲାମାତ୍ରେ ନିଜ ଗୃହରେ ଶୂଦ୍ରପଦବାଚ୍ୟ । ଶ୍ରୀଗୁରୁଦେବଙ୍କ ଗୃହରେ ସେବାନିମିତ୍ତ ପ୍ରବେଶ କଲାମାତ୍ରେ ସେମାନେ ଦ୍ୱିଜ-ସନ୍ତାନରେ ପରଣିତ ହୋଇଯାଆନ୍ତି । ସଂଘରେ ପିତା ବିଶ୍ୱନାଥ, ମାତା ଅନ୍ନପୂର୍ଣ୍ଣା । ଅନ୍ୟମାନେ ଭାଇ । ଏଥିରେ ସମସ୍ତ ଭେଦବୁଦ୍ଧି ଲୋପ ପାଇଯାଏ । ଗୁରୁଗୃହରେ ଗୁରୁଦେବ ତାଙ୍କର ମୌନ ବ୍ୟାଖ୍ୟାନଦ୍ୱାରା ସମସ୍ତଙ୍କର ପ୍ରାଣରେ ଜ୍ଞାନାଗ୍ନି ପ୍ରଜ୍ୱଳିତ ରଖନ୍ତି । ସଂଘ ହିଁ ଗୁରୁଗୃହସ୍ୱରୂପ । ଗୁରୁଗୃହରେ ଶାସ୍ତ୍ରମର୍ମ ବୁଝାଯାଏ ଏବଂ ତାହାର ମର୍ମ ଜୀବନ୍ତ ହୋଇଉଠେ । ଗୁରୁଗୃହର ଅନ୍ତେବାସୀ ସେବକ ବା ସଂଘସେବକ ନ ହେଲେ ସେ ବାଣୀର ମର୍ମାଥ ଆୟତ୍ତ କରାଯାଇପାରେ ନାହିଁ । ଗୁରୁଶକ୍ତି ହିଁ ଗୁରୁଗୃହର ପ୍ରାଣ । ଶ୍ରୀଗୁରୁଦେବଙ୍କ ସେବା କିପରି କରିବାକୁ ହୁଏ, ଗୁରୁଭକ୍ତି, ଗୁରୁନିଷ୍ଠା କାହାକୁ କହନ୍ତି ଇତ୍ୟାଦି ଶିକ୍ଷା ସେବକମାନେ ତାଙ୍କଠାରୁ ଲାଭ କରନ୍ତି । ଶ୍ରୀଗୁରୁ ନିର୍ଗୁଣ ତତ୍ତ୍ୱ; ତାଙ୍କର ତଟସ୍ଥପ୍ରକାଶ ସଗୁଣ ଶକ୍ତିମୂର୍ତ୍ତିରେ । ତେଣୁ ଗୁରୁଦେବଙ୍କ ଭାବ ଗୁରୁଶକ୍ତିଙ୍କଠାରେ ଫୁଟିଉଠେ । ସୁତରାଂ, ସେବକମାନେ ମାତୃମନ୍ତ୍ରର ସାଧକ । ମହାଶକ୍ତି ସାବିତ୍ରୀ ଦେବୀ ତାଙ୍କର ଆଦର୍ଶ । ଏଥିପାଇଁ ଗୁରୁଗୃହରେ ଶକ୍ତିର ସାଧନା ହୋଇଥାଏ । ଶକ୍ତିର ଅନୁସରଣ ନକରି କେହିହେଲେ ଗୁରୁଦେବଙ୍କ ଭାବ ଉପଲବ୍ଧି କରିପାରନ୍ତି ନାହିଁ । ଦୀକ୍ଷାର ଭାର ଗୁରୁଙ୍କର, କିନ୍ତୁ ଶିକ୍ଷାର ଭାର ଗୁରୁଶକ୍ତିଙ୍କର । ତେଣୁ ସଂଘ ହିଁ ଦ୍ୱିଜ-ସନ୍ତାନମାନଙ୍କର ଶିକ୍ଷା-ଦୀକ୍ଷାର ସ୍ଥାନ । ଗୁରୁଗୃହରେ ବା ସଂଘରେ ଯଥାର୍ଥ ମନୁଷ୍ୟତ୍ୱର ଶିକ୍ଷା ମିଳିଥାଏ । ଗୁରୁଦେବ କେବଳ ମଙ୍ଗଳଭାବନାଦ୍ୱାରା ନିର୍ବାକ୍ ମୌନଭାବରେ ଶିଷ୍ୟଙ୍କର ଅଜ୍ଞାନ-ଅନ୍ଧକାର ଦୂର କରନ୍ତି ।

ସଂଘ ସମଷ୍ଟିହିତନିମିତ୍ତ ବିଶ୍ୱଦେବଙ୍କ ନିକଟରେ ପ୍ରାର୍ଥନା କରନ୍ତି । ବ୍ୟକ୍ତିର ଆତ୍ମଦାନରେ ସଂଘଶକ୍ତିର ପ୍ରତିଷ୍ଠା ହୁଏ । ତେଣୁ ଯେଉଁ ଅସ୍ତ୍ର ତୁମ ନିକଟରେ ଥିଲା, ତାକୁ ଶକ୍ତିଙ୍କ ହାତରେ ବା ମା'ଙ୍କ ହାତରେ ସମର୍ପଣ କରିବାକୁ ହେବ । ବ୍ୟଷ୍ଟି ପ୍ରାଣଶକ୍ତି ସମଷ୍ଟି ହିତ ନିମିତ୍ତ ସମର୍ପଣ କରିବା କୁହେ । ଅଭାବବୋଧ ରଖି ସଂଘଶକ୍ତିର ପ୍ରତିଷ୍ଠା ହୋଇପାରେ ନାହିଁ । ସେପରି ମିଳନ ଅସ୍ଥାୟୀ । ଚିତ୍ତର ଉତ୍କର୍ଷ ନ ହେଲେ ମିଳନ ସମ୍ଭବପର ହୁଏ ନାହିଁ । ବୁଦ୍ଧିର ଜଡ଼ତା, ଚିତ୍ତର

ସଂକୀର୍ଣ୍ଣତାଦ୍ୱାରା ପ୍ରକୃତ ମିଳନ ହୋଇପାରେ ନାହିଁ। ସଂଘ ଦୁର୍ବଳମାନଙ୍କର ଆଶ୍ରୟକ୍ଷେତ୍ର ନୁହେଁ। ଦୁର୍ମଳମାନେ ଚାହାନ୍ତି ଅସ୍ଥାୟୀ ସୁଖ୍ୟାତି। ଯେଉଁମାନେ ସଂଘଦ୍ୱାରା ଜଗତ୍‌ର ହିତ ବାଞ୍ଛା କରନ୍ତି, ସେମାନେ ଦୁର୍ବଳତାକୁ କେବେହେଲେ ପ୍ରଶ୍ରୟ ଦେଲେ ଚଳିବ ନାହିଁ। ପ୍ରାଣୀହୀନ ସଂଘଦ୍ୱାରା ଜଗତ୍‌ର ହିତ ତ ଦୂରର କଥା, ଆତ୍ମହିତ ମଧ୍ୟ ସାଧିତ ହୋଇପାରିବ ନାହିଁ। ଏଥିପାଇଁ ପ୍ରଥମେ ଆତ୍ମଗଠନ, ପରେ ସଂଘଶକ୍ତିର ପ୍ରତିଷ୍ଠା।

ଯେଉଁଠାରେ ସମସ୍ତଙ୍କ ଚିତ୍ତ ସଜାଗ, ସମସ୍ତେ ଯେଉଁଠାରେ କର୍ମପ୍ରବଣ, ଯେଉଁଠାରେ କେହି ଅନ୍ୟର ମୁଖାପେକ୍ଷୀ ନୁହନ୍ତି, ସେହି ସଂଘ ଦ୍ୱାରା ଜଗତ୍‌ର କାର୍ଯ୍ୟ ସାଧିତ ହୋଇଥାଏ। ସଂଘସେବୀ ପ୍ରତ୍ୟେକେ କର୍ମପ୍ରବଣ ନ ହେଲେ ସଂଘ ସ୍ଥାୟୀ ହୁଏ ନାହିଁ। ବ୍ୟକ୍ତିଗତ ଜୀବନର ସମ୍ପଦ ଦ୍ୱାରା ସଂଘକୁ ସମ୍ପଦଯୁକ୍ତ କରିବାକୁ ହେବ। ସମ୍ମିଳିତ ଶକ୍ତି-ଆକର୍ଷଣରେ ଇଷ୍ଟ ରୂପ ପରିଗ୍ରହ କରନ୍ତି। ସଂଘରେ ହିଂସା-ଦ୍ୱେଷ, ମାନ-ଅଭିମାନର ସ୍ଥାନ ନ ଥାଏ। ସମଷ୍ଟିଭାବରେ ପ୍ରାର୍ଥନା କଲେ ଦେଶରେ ବିରାଟ ଶକ୍ତିର ଉଦ୍ଭବ ହୁଏ। ଏକ ଲକ୍ଷ୍ୟ ଏକ ଉଦ୍ଦେଶ୍ୟ ନେଇ ଯଦି ପାଞ୍ଚ ଜଣ ଭକ୍ତ ଜୀବନକୁ ଉତ୍ସର୍ଗ କରିପାରନ୍ତି, ସେମାନଙ୍କ ସମବେତ ଶକ୍ତିବଳରେ ଶକ୍ତିର ପ୍ରଚଣ୍ଡ ଲୀଳା ଦେଖାଦିଏ ଏବଂ ସେମାନେ ଅସାଧ୍ୟ ସାଧନ କରିପାରନ୍ତି। ପ୍ରତ୍ୟେକ ମନକୁ, ପ୍ରତ୍ୟେକ ପ୍ରାଣକୁ ଗୋଟିଏ ଉଜ୍ଜ୍ୱଳ ଲକ୍ଷ୍ୟଦିଗକୁ ପ୍ରଚୋଦିତ କରିପାରିଲେ ପ୍ରକୃତି ସଂଘଶକ୍ତିର ଉଦ୍ଭବ ହେବ। ନିଜ ନିଜ ଶକ୍ତିକୁ କେନ୍ଦ୍ରୀକୃତ କରି ଗୋଟିଏ ଲକ୍ଷ୍ୟଦିଗକୁ ଅଗ୍ରସର କରାଇପାରିଲେ ମହାଶକ୍ତିଙ୍କର ଆବିର୍ଭାବ ଘଟେ। ତେଣୁ ମହାଶକ୍ତିଙ୍କର ଦର୍ଶନ ଲାଭ କରିବାକୁ ହେଲେ ସଂଘବଦ୍ଧ ହେବାକୁ ପଡ଼ିବ। ଜୟ ଲାଭ କରିବାକୁ ହେଲେ ପ୍ରଥମେ ସଂଘବଦ୍ଧ ହେବାକୁ ପଡ଼ିବ।

## ପ୍ରାଣବିନିମୟରେ ସଂଘଶକ୍ତି ପ୍ରତିଷ୍ଠା

ସଂଘଶକ୍ତି-ପ୍ରତିଷ୍ଠାମୂଳରେ ଅନ୍ତତଃ ତିନୋଟି ଭକ୍ତଙ୍କ ପ୍ରାଣ ସଂପୂର୍ଣ୍ଣ ଭାବରେ ଉତ୍ସର୍ଗୀକୃତ ହେବା ଆବଶ୍ୟକ। ଗୋଟିଏ ପ୍ରାଣସହିତ ଆଉ ଗୋଟିଏ ପ୍ରାଣର ଆନ୍ତରିକ ସଂଯୋଗରେ ଯେଉଁ ଶକ୍ତିର ସୃଷ୍ଟି ହୁଏ, ସେହି ଦୈବୀଭାବରେ ଅନୁପ୍ରାଣିତ

ହୋଇ ଶତ ଶତ ପ୍ରାଣ ଉଦ୍‌ବୁଦ୍ଧ ହୁଅନ୍ତି ଏବଂ ତାହା ସଂଘଶକ୍ତି ପ୍ରତିଷ୍ଠାରେ ସହାୟକ ହୁଏ। ପ୍ରାଣବିନିମୟରେ ବା ଯଥାର୍ଥ ସୁଖ ପାଇବାରେ ହିଁ ପ୍ରକୃତ ମନୁଷ୍ୟତ୍ୱ ଉଦ୍‌ବୁଦ୍ଧ ହୋଇଥାଏ। ମାନବ ପରସ୍ପର ସ୍ନେହ-ପ୍ରୀତିବଳରେ ସମ୍ମିଳିତ ହେବାକୁ ସୁଖ ପାଆନ୍ତି। ସୃଷ୍ଟି ମୂଳରେ ରହିଛି ପ୍ରାଣର ସ୍ପନ୍ଦନ। ଜଗତ୍‌ର ମହାନ୍ କର୍ମମୂଳରେ ପ୍ରାଣଶକ୍ତି ନିହିତ। ଭଗବାନ୍ ପ୍ରେମଦ୍ୱାରା ହିଁ ଜଗତ୍ ସୃଷ୍ଟି କରିଛନ୍ତି। ଯାହାଙ୍କୁ ଉପଲକ୍ଷ୍ୟ କରି ସଂଘର ସୃଷ୍ଟି, ତାଙ୍କୁ ଆମ ନିଜର ବୋଲି ଜ୍ଞାନ କରିବାକୁ ହେବ। ତପଃଶକ୍ତିରେ ସଂଘର ସୃଷ୍ଟି ହୁଏ। ତପଃଶକ୍ତି ଅଭାବରେ ସଂଘ ନଷ୍ଟ ହୋଇଯାଏ। ମନରେ ଶ୍ରୀଗୁରୁଦେବଙ୍କ ପ୍ରତି ବଜ୍ରଦୃଢ଼ ବିଶ୍ୱାସ ନ ଥିଲେ ପ୍ରାଣ ଉତ୍ସର୍ଗ କରିବାକୁ ପ୍ରେରଣା ଜାତ ହୁଏ ନାହିଁ। ତେଣୁ ଅବିଶ୍ୱାସୀଙ୍କର ସ୍ଥାନ ସଂଘରେ ନାହିଁ।

ଅବିଶ୍ୱାସଭାବ ନେଇ ଯେଉଁମାନେ ସଂଘରେ ଯୋଗ ଦିଅନ୍ତି, ସେଥିରେ ସଂଘର ମହିମା କ୍ଷୁଣ୍ଣ ହୁଏ। ନିଜର ଦେହ, ମନ, ପ୍ରାଣ ସମର୍ପଣ କରିବାଫଳରେ ଯେ ସଂଘରେ ଶକ୍ତି ସଞ୍ଚାର ହୁଏ, ସେଥିରେ ସେମାନଙ୍କର ବିଶ୍ୱାସ ନାହିଁ। ତେଣୁ ପ୍ରାଣବିନିମୟରେ ହିଁ ପ୍ରକୃତ ସଂଘଶକ୍ତିର ପ୍ରତିଷ୍ଠା ହୁଏ। ସଂଘକୁ ପ୍ରାଣ ଦେଇ ଭଲ ନ ପାଇଲେ ସଂଘର ମହିମା ସେମାନଙ୍କ ନିକଟରେ ପ୍ରତିଭାତ ହୁଏ ନାହିଁ। ଯେଉଁମାନେ ନିଜ ଚିନ୍ତା ତ୍ୟାଗ କରି ସମ୍ପୂର୍ଣ୍ଣ ଭାବରେ ଶ୍ରୀଗୁରୁଦେବଙ୍କ ଚିନ୍ତାରେ ତନ୍ମୟ ହୋଇଯିବେ, ସେହିଭଳି କେତେ ଜଣ ତ୍ୟାଗୀ ସେବକଙ୍କଦ୍ୱାରା ସଂଘର ଭିତ୍ତିପତ୍ତନ ହେବା ଆବଶ୍ୟକ। ଇଷ୍ଟ ବା ଗୁରୁଦେବଙ୍କ ପ୍ରତି ଅବିଶ୍ୱାସଭାବ ଜାଗ୍ରତ ହେଲାମାତ୍ରେ ସଂଘସେବୀମାନଙ୍କ ମଧ୍ୟରେ ବ୍ୟଭିଚାରଭାବ ଓ ବିରୁଦ୍ଧଭାବ ପ୍ରବେଶ କରେ। ସେମାନଙ୍କର ତ୍ୟାଗଭାବ ସ୍ତିମିତ ହୋଇଆସେ। ଏହି ଅବିଶ୍ୱାସଭାବ ମଧ୍ୟ ସଂକ୍ରାମକ। ତେଣୁ ସେହି ଭାବର ଭାବୁକଙ୍କୁ ସଂଘରୁ ଅନ୍ତର କରିବା ଏକାନ୍ତ କର୍ତ୍ତବ୍ୟ। ଲକ୍ଷ୍ୟଭ୍ରଷ୍ଟ ସାଧକମାନେ ହିଁ ହତଭାଗ୍ୟ। ସଂଘର ବୀଜମନ୍ତ୍ର ସୁଖ ପାଇବା ଭିତରେ ଆତ୍ମଗୋପନ କରିଥାଏ। ସଂଘରେ ବ୍ୟକ୍ତିଗତ ସାଧନା ନାହିଁ; ଇଷ୍ଟଙ୍କ ଇଚ୍ଛା ପୂରଣନିମିତ୍ତ ସମସ୍ତେ ସଂଘବଦ୍ଧ ହେବା ହିଁ ଯଥାର୍ଥ ଆତ୍ମସମର୍ପଣ। ଏକ ଲକ୍ଷ୍ୟ ବା ଇଷ୍ଟସିଦ୍ଧିନିମିତ୍ତ ଯେତେବେଳେ ସମସ୍ତଙ୍କ ପ୍ରାଣରେ ସମଭାବରେ ବ୍ୟାକୁଳତା

ଜାଗେ, ପରସ୍ପର ମନବୁଦ୍ଧିର ବୈଚିତ୍ର୍ୟ ଥିଲେ ମଧ୍ୟ ମାନବ ସଂଘବଦ୍ଧ ହୋଇପାରେ । ଯେଉଁମାନଙ୍କର ଶ୍ରୀଗୁରୁଦେବଙ୍କ ପ୍ରତି ଆନ୍ତରିକ ଶ୍ରଦ୍ଧାଥାଏ, ସେହିମାନେ ହିଁ ସଂଘକୁ ଆଶ୍ରୟ କରି ପରିଚାଳିତ ହୁଅନ୍ତି । ପ୍ରାଣର ଆକର୍ଷଣ ସମସ୍ତଙ୍କର ଏକମୁଖୀ ହୋଇ ଏକମାତ୍ର ଶ୍ରୀଗୁରୁଦେବଙ୍କ ଲକ୍ଷ୍ୟରେ ଗତି କଲେ ସହଜରେ ସଂଘର ଭିତ୍ତି ସ୍ଥାପିତ ହୁଏ । ତାଙ୍କ ଇଚ୍ଛାକୁ ରୂପଦେବା ହିଁ ସେତେବେଳେ ଜୀବର ବ୍ରତ ହୁଏ । ସେହି ଇଚ୍ଛାକୁ ରୂପ ଦେବାନିମିତ୍ତ ଯେଉଁ ତ୍ୟାଗ ଦରକାର, ସେମାନେ ସେହି ତ୍ୟାଗ କରିବାକୁ ପ୍ରସ୍ତୁତ ହୁଅନ୍ତି । ସତ୍ୟ ବା ଗୁରୁଦେବଙ୍କ ପ୍ରତି ଭକ୍ତି, ବିଶ୍ୱାସ ଅଟଳ ଥିଲେ ସଂଘର ପତନ ଘଟେ ନାହିଁ । ସଂଘସେବୀଙ୍କ ଜୀବନ ଭଗବତ୍ ଇଚ୍ଛାର ଯନ୍ତ୍ରବିଶେଷ । ସେହି ଯନ୍ତ୍ରରେ ଭଗବାନଙ୍କ ପ୍ରେରଣା ବାଜିଉଠେ । ଶ୍ରଦ୍ଧା ଓ ନିଷ୍ଠାର ଅଭାବ ହେଲେ ମନରେ ସଂଶୟ ଜାଗେ । ଇଷ୍ଟଙ୍କ ଇଚ୍ଛାଠାରୁ ନିଜର ଇଚ୍ଛା ବଡ଼ ବୋଲି ବୋଧ ହେଲେ ସଂଘର ଅଧଃପତନ ହୁଏ । ଜୀବନର ଯେ ଧ୍ରୁବତାରା, ତାଙ୍କପ୍ରତି ସମାଲୋଚନାର ଭାବ ଜାଗ୍ରତ ହେଲେ ଇଷ୍ଟପ୍ରୀତି ତିରୋହିତ ହୋଇଯାଏ । ବ୍ୟକ୍ତିତ୍ୱବୋଧ ଯେଉଁମାନଙ୍କଭିତରେ ତୀବ୍ର, ସେମାନେ ସଂଘରେ ରହିବା ଉଚିତ ନୁହେଁ । ସଂଘସେବୀମାନେ ଜୀବନ୍ମୁକ୍ତ । ସେମାନେ କ୍ଷୁଦ୍ର ବ୍ୟକ୍ତିଗତ ଇଚ୍ଛାକୁ ବଳିଦେଇ ଗୁରୁଦେବଙ୍କ ଇଚ୍ଛାକୁ ରୂପ ଦେବା ନିମିତ୍ତ ଆପ୍ରାଣ ଚେଷ୍ଟା କରୁଛନ୍ତି । କର୍ତ୍ତାଭାବ ଯେଉଁଠରେ ପ୍ରବଳ, ସେମାନେ କେବେହେଲେ ଅନ୍ୟ ଉପରେ କର୍ତ୍ତୃତ୍ୱ କରିପାରନ୍ତି ନାହିଁ । ସଂଘସେବୀଙ୍କର ଜୀବନ ଭଗବତ୍‌ଶକ୍ତିର ଆଧାର ।



# ଉନ୍ନତିର ଉପାୟ

## ନବଜାଗରଣ

ଐତିହାସିକ ସିଦ୍ଧାନ୍ତ ଅନୁସାରେ ହିନ୍ଦୁମାନେ ଆର୍ଯ୍ୟ-ମହାମହୀରୁହର ସର୍ବପ୍ରଥମ ଓ ସର୍ବପ୍ରଧାନ ଶାଖା ଏବଂ ଟିଉଟନିକବଂଶୀୟ ଇଂରେଜମାନେ ପଞ୍ଚମ ଶାଖା; କିନ୍ତୁ କାଳକ୍ରମେ ହିନ୍ଦୁମାନେ ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇ ଦାସ ଜାତି ବୋଲି ଆଜି ଜଗତ୍‌ରେ ପରିଚିତ। ଏସବୁ କାଳର ପ୍ରଭାବ। କାଳର ଶକ୍ତି ଦୁର୍ନିରୀକ୍ଷ ଓ ଅଚିନ୍ତନୀୟ। କାଳସ୍ରୋତମୁଖରେ ଶତପୁରୁଷକାର ତୃଣଖଣ୍ଡସଦୃଶ ଭାସିଯାଏ। ଏକମାତ୍ର ଦୈବୀଶକ୍ତି ହିଁ ଏହି ସ୍ରୋତର ନିୟାମକ। ଦୈବୀଶକ୍ତି ଯେତେବେଳେ ପ୍ରତିକୂଳ ହୁଏ, ସେତେବେଳେ ସହସ୍ର ସହସ୍ର କର୍ମବୀରଙ୍କ ଜୀବନପାତରେ ମଧ୍ୟ କାଳସ୍ରୋତ ଅପ୍ରତିହତଭାବରେ ପ୍ରତିକୂଳ ଗତିରେ ପ୍ରବାହିତ ହୋଇଥାଏ ଆଉ ଦୈବୀଶକ୍ତି ଅନୁକୂଳ ହେଲେ ଏହି ସ୍ରୋତ ପୂର୍ବପରି ଅନୁକୂଳ ଗତିରେ ପ୍ରବାହିତ ହୁଏ।

ବହୁ କାଳପରେ ଆଜି ଦୈବୀଶକ୍ତି ପୁନରାୟ ହିନ୍ଦୁମାନଙ୍କର ଅନୁକୂଳ ହୋଇଅଛି ବୋଲି ମନେହୁଏ। ମୋହନିଦ୍ରାଭିଭୂତ ହିନ୍ଦୁମାନେ ଆଜି ସ୍ୱପ୍ନାବେଶରେ କୌଣସି ମହାଶକ୍ତିଙ୍କର ଆଦେଶ ଲାଭ କରି ମାଆ ମାଆ ବୋଲି ଜାଗିଉଠିଲେଣି। କାଳସ୍ରୋତ ଚିରଦିନ ଏକାପରି ପ୍ରବାହିତ ହୁଏ ନାହିଁ। ସ୍ରୋତ ଅନୁକୂଳ ଗତିରେ ପ୍ରବାହିତ ହେଲାଣି। ବର୍ତ୍ତମାନ ହିନ୍ଦୁସନ୍ତାନ ହିନ୍ଦୁଧର୍ମ ମାନିଲେଣି, ହିନ୍ଦୁଶାସ୍ତ୍ରକୁ ବିଶ୍ୱାସ କଲେଣି, ହିନ୍ଦୁ ମତାନୁସାରେ ଉପାସନା କଲେଣି। ସୁଖର ବିଷୟ, ଉଚ୍ଚ ବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟର ଛାତ୍ର, ଉଚ୍ଚ ଉପାଧିଧାରୀ ଏବଂ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କଠାରୁ ଆରମ୍ଭ କରି ବଡ଼ ସାନ ସମସ୍ତେ ହିନ୍ଦୁଧର୍ମରେ ବିଶ୍ୱାସ କଲେଣି ଏବଂ କେତେକଙ୍କର ସାଧନ-ଭଜନରେ ପ୍ରବୃତ୍ତି ମଧ୍ୟ ହେଲାଣି।

ମୁଁ ଯେତେବେଳେ 'ଯୋଗୀଗୁରୁ' ଗ୍ରନ୍ଥ ପ୍ରକାଶ କଲି, ଅନେକେ ଆମକୁ ବିଦ୍ରୂପ କରି କହିଥିଲେ, ଏହି ନାଟକ-ନଭେଲ୍‌ପ୍ଲାବିତ ଦେଶରେ ବାଇନାଚ, ଥିଏଟର୍ ଅମଳରେ ଧର୍ମଗ୍ରନ୍ଥ କିଏ ପଢ଼ିବ ? ଅଳ୍ପ ଦିନପରେ ମୋର ସେ ଆଶଙ୍କା ଦୂରୀଭୂତ ହେଲା । ମୁଁ ବିଶେଷଭାବରେ ବୁଝିଛି ଯେ ବର୍ତ୍ତମାନ ସୁଦ୍ଧା ଅସଂଖ୍ୟ ହିନ୍ଦୁଙ୍କର ହିନ୍ଦୁଶାସ୍ତ୍ରରେ ଆସ୍ଥା ଓ ବିଶ୍ୱାସ ଅଛି ।

ହିନ୍ଦୁମାନେ ଜାଗ୍ରତ ହେଲେଣି ସତ; ତଥାପି ସେମାନଙ୍କ ଚକ୍ଷୁରେ ତନ୍ଦ୍ରାର ଆବେଶ ଲାଗିରହିଛି, ବର୍ତ୍ତମାନ ମଧ୍ୟ ପ୍ରକୃତ ଉତ୍‌ଥାନର ଉପାୟ ଜାଣିପାରୁ ନାହାନ୍ତି । ଧର୍ମ ହିନ୍ଦୁମାନଙ୍କର ପ୍ରାଣ, ଧର୍ମରେ ହିନ୍ଦୁ ଜାତି ସୁପ୍ରତିଷ୍ଠିତ । ଆଜି ସେମାନେ ସେ ଧର୍ମପଥ ଆଉ ଦେଖିପାରୁ ନାହାନ୍ତି । ବହୁ କାଳର ଅବ୍ୟବହାର ଯୋଗୁଁ ସେ ପଥ କଣ୍ଟକାକୀର୍ଣ୍ଣ ହୋଇଯାଇଛି । ତାର ରେଖାମାତ୍ର ଦେଖାଯାଉଛି । ଏହି ରେଖା ଅବଲମ୍ବ ନକରି ଅଗ୍ରସର ହେବା ଅତ୍ୟନ୍ତ ବିପଜ୍ଜନକ ଏବଂ ଆୟାସସାଧ୍ୟ ବୋଲି ସେମାନେ ଇତସ୍ତତଃ ହେଉଛନ୍ତି; କିନ୍ତୁ ସିଦ୍ଧିଲାଭ କରିବାକୁ ହେଲେ ଏହି ଧର୍ମପଥକୁ ହିଁ ଅବଲମ୍ବନ କରି କରିବାକୁ ହେବ । ଅନ୍ୟାନ୍ୟ କୁଟିଳ ପଥରେ ଗମନ କଲେ ଅନର୍ଥକ ଶକ୍ତି କ୍ଷୟ କରି ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼ିବ ।

## ବର୍ତ୍ତମାନର ଦୂରବସ୍ଥା

ଯେଉଁମାନଙ୍କର ପ୍ରାଣ ଅଛି, ଥରେ ଅନୁଭବ କରନ୍ତୁ, ବର୍ତ୍ତମାନ ହିନ୍ଦୁ ଧର୍ମ ବୋଲି କ'ଣ କିଛି ଅଛି ? ହିନ୍ଦୁଙ୍କର ହିନ୍ଦୁତ୍ୱ କିଛି ରହିଛି କି ? ଭିତରେ ସବୁ ସଢ଼ା, ବାହାରେ ଆପାତମନୋହର ଚର୍ମାବରଣ ମାତ୍ର ଅଛି । ଯେଉଁ ହିନ୍ଦୁ ଋଷିମାନେ ଦିନେ ଜାଗତିକ ସବୁ ଧର୍ମାବଲମ୍ବୀଙ୍କର ଆଚାର୍ଯ୍ୟ ଆସନ ଲାଭ କରିଥିଲେ, ଯେଉଁ ହିନ୍ଦୁଧର୍ମର ସୁଶୀତଳ ଅଙ୍କରେ ବସି ଦିନେ ସହସ୍ର ସହସ୍ର ଧର୍ମାତ୍ମା ମହାପୁରୁଷ ଶାନ୍ତି ଲାଭ କରିପାରୁଥିଲେ, ଏବେ ସେଦିନ ଚିକାଗୋ ନଗରୀରେ ଧର୍ମ-ମହାସଭାରେ ଶ୍ରୀମତ୍ ସ୍ୱାମୀ ବିବେକାନନ୍ଦ ଚତୁର୍ମହାଦେଶବାସୀଙ୍କ ସମକ୍ଷରେ ଯେଉଁ ହିନ୍ଦୁଧର୍ମର ପ୍ରାଧାନ୍ୟ ପ୍ରମାଣ କରିଆସିଲେ, ଆଜି ସେହ ହିନ୍ଦୁଧର୍ମର ଅବସ୍ଥା କ'ଣ ହୋଇଛି, ଥରେ ମାତ୍ର ଦେଖନ୍ତୁ ।

ଦୂରଧିଗମ୍ୟ ବେଦର ନିଗୂଢ଼ ଅର୍ଥ ବୁଝି ନ ପାରି ହିନ୍ଦୁମାନେ ଆଜି ଧର୍ମସମ୍ବନ୍ଧରେ ମଧ୍ୟ ସାଂପ୍ରଦାୟିକତାର କ୍ଷୁଦ୍ର ବେଷ୍ଟନୀଭିତରେ ରହି ମରାମରି ହେଉଛନ୍ତି । ଜଣେ ଆଉ ଜଣକ ସାଧନପଥର ନିନ୍ଦା କରି ନିଜର ଓ ଦେଶର

ଅଧଃପତନର ପଥ ପରିଷ୍କାର କରୁଛନ୍ତି । ଦ୍ୱୈତବାଦୀ ଓ ଅଦ୍ୱୈତବାଦୀଙ୍କ ଭିତରେ ସବୁବେଳେ ସଂଘର୍ଷ ଲାଗିରହିଛି । ବିଶିଷ୍ଟ ଦ୍ୱୈତାଦ୍ୱୈତ ମତରେ ମନୋନିବେଶ କରି କେହିହେଲେ ଅଚିନ୍ତ୍ୟ ଭେଦାଭେଦତତ୍ତ୍ୱ ନିରୂପଣ କରିପାରୁ ନାହାନ୍ତି । ଅଦ୍ୱୈତବାଦୀଙ୍କ ମଧ୍ୟରେ ସୁଦ୍ଧା ଆଦି ମତ ଓ ନବବିଧାନ ମତ ନେଇ ଗୃହବିବାଦ ଲାଗିଛି, ଦ୍ୱୈତବାଦୀଙ୍କ ମଧ୍ୟରେ ସୌର, ଶାକ୍ତ, ଗାଣପତ୍ୟ, ଶୈବ, ବୈଷ୍ଣବ— ଏହି ପଞ୍ଚୋପାସକ ସଂପ୍ରଦାୟ ପରସ୍ପରପ୍ରତି ବିଦ୍ୱେଷଭାବ ପୋଷଣ କରୁଛନ୍ତି । ସେମାନେ ମହିମ୍ନ ସ୍ତବର—

"ତ୍ରୟୀ ସାଂଖ୍ୟଂ ଯୋଗଃ ପଶୁପତିମତଂ ବୈଷ୍ଣବମିତି ।
ପ୍ରଭିନ୍ନେ ପ୍ରସ୍ଥାନେ ପରମିଦମଦଃ ପଥ୍ୟମିତି ଚ ॥
ରୁଚାନାଂ ବୈଚିତ୍ରିୟାଦୃଜୁ-କୁଟିଳ ନାନାପଥ ଜୁଷାଂ ।
ନୃଣାମେକୋଗମ୍ୟସ୍ତ୍ୱମସି ପୟସାମର୍ଣ୍ଣଂବ ଇବ ॥
ଏ ସମସ୍ତ ସୁମହାନ ଉପଦେଶ ଭୁଲି ଯାଉଛନ୍ତି ।

## ସାଧନାର ଅବଲମ୍ବନ

କର୍ମ, ଜ୍ଞାନ ଓ ଭକ୍ତି—ଏ ତିନୋଟି ଅବଲମ୍ବନରେ ଭଗବତ୍-ସାଧନ ହୋଇଥାଏ । ଭଗବାନ ଏ ତିନିର ପ୍ରତ୍ୟେକଟିରେ ସ୍ୱରୂପରେ ବିରାଜିତ । ଏ ତିନିର ସମନ୍ୱୟ ହିଁ ଭଗବନାଙ୍କ ପୂର୍ଣ୍ଣସ୍ୱରୂପ । ବର୍ତ୍ତମାନ ଜ୍ଞାନମାର୍ଗର ସାଧକମାନେ ଭକ୍ତିମାର୍ଗର ସାଧକଙ୍କୁ ଦେଖିଲେ ସେମାନଙ୍କୁ ପାଗଳ ଉପାଧିରେ ଭୂଷିତ କରନ୍ତି; ଭକ୍ତିମାର୍ଗର ସାଧକମାନେ ଜ୍ଞାନମାର୍ଗର ସାଧକଙ୍କୁ ଦେଖିଲେ ଅରସିକ ବୋଲି ଉପେକ୍ଷା କରନ୍ତି । ବାସ୍ତବରେ ଦେଖିବାକୁ ଗଲେ ଉଭୟ ମାର୍ଗାବଲମ୍ବୀଙ୍କ ମଧ୍ୟରେ କର୍ମର ଅବହେଳା ସଂପୂର୍ଣ୍ଣଭାବରେ ପରିଦୃଷ୍ଟ ହେଉଅଛି ।

କେହିହେଲେ ନିଜ ଆଚରଣର ଭାବୀ ବିଷମୟ ଫଳକଥା ଚିନ୍ତା କରୁନାହାନ୍ତି । ଭକ୍ତମାନେ କହୁଛନ୍ତି, ଜ୍ଞାନରେ ମିଷ୍ଟତ୍ୱ ଅଛି, ସତ; କିନ୍ତୁ ଏହା ଅତିଶୟ ଶୁଷ୍କ, ଯେପରି ମିଶ୍ରି । ପୁଣି ଜ୍ଞାନୀମାନେ କହୁଛନ୍ତି, ଭକ୍ତି ଉତ୍କୃଷ୍ଟ ପାନୀୟ, ସତ; କିନ୍ତୁ ଏଥିରେ ସେପରି ମିଷ୍ଟତ୍ୱ ନାହିଁ, ଯେପରି ଦୁଗ୍ଧ । କିନ୍ତୁ ଏମାନଙ୍କ ମଧ୍ୟରୁ କେହି ବୁଝୁ ନାହାନ୍ତି ଯେ ଦୁଧ ଓ ମିଶ୍ରି କର୍ମଆବର୍ତ୍ତନରେ ମିଳିତ ହେଲେ ତାହା ତ୍ରିସମନ୍ୱୟ ଅତି ସୁସ୍ୱାଦୁ ସର୍ବତ୍ ଘନାମୃତ ପ୍ରସ୍ତୁତ ହେବ । ଜ୍ଞାନୀ ବୁଝନ୍ତି ନାହିଁ ଯେ ଦୁଧସହିତ ମିଶ୍ରି ମିଶିଗଲେ ମଧ୍ୟ ତାର କେବେହେଲେ ଅସ୍ତିତ୍ୱ

ଲୋପ ହେବନାହିଁ । ପୁଣି ଭକ୍ତମାନେ ବୁଝନ୍ତି ନାହିଁ ଯେ ମିଶ୍ରିସାହାଯ୍ୟରେ ଦୁଗ୍ଧର ଆସ୍ୱାଦ ଅନ୍ୟରୂପ ହେଲେ ମଧ୍ୟ ଦୁଗ୍ଧ ରୂପାନ୍ତରିତ ହୁଏ ନାହିଁ । ବରଂ ମିଶ୍ରି ତାର ମାଧୁର୍ଯ୍ୟ ଆହୁରି ବଢ଼ାଇଦିଏ । ଅଧିକନ୍ତୁ ଜ୍ଞାନୀ ଓ ଭକ୍ତ ଉଭୟେ ବୁଝନ୍ତି ନାହିଁ ଯେ ଜ୍ଞାନ ଓ ଭକ୍ତିର ଶୁଭସମ୍ମିଳନର ପ୍ରଧାନ ସହାୟକ କର୍ମ । ତେଣୁ ସେମାନେ କର୍ମପ୍ରତି ଅବହେଳା କରି କର୍ମର ମାହାତ୍ମ୍ୟ ବୁଝି ନ ପାରି ଆଜି ଏତେ ଉତ୍ପାତ ଘଟାଉଛନ୍ତି । ସେଥିପାଇଁ ଆଜି ହିନ୍ଦୁଧର୍ମରୂପ କଳ୍ପପାଦ ଉପରେ ଶହ ଶହ ମଲାଙ୍ଗ ଉଠି ତାକୁ ଜୀର୍ଣ୍ଣଶୀର୍ଣ୍ଣ ଶୁଷ୍କକାଷ୍ଠରେ ପରିଣତ କରିପକାଇଛନ୍ତି । ହିନ୍ଦୁମାନେ କ୍ରମେ କର୍ମଚ୍ୟୁତ ହେବାରୁ ଏହି ଦୁର୍ଦ୍ଦଶା ଉପସ୍ଥିତ ହୋଇଅଛି । ଯେଉଁ ଧର୍ମଶକ୍ତି ସର୍ବନିୟାମକ; ସେହି ଧର୍ମ ହିଁ କର୍ମର ଅଧୀନ । ଧର୍ମଜଗତ୍‌ରେ ପ୍ରବେଶାର୍ଥୀମାନଙ୍କ ପକ୍ଷରେ କର୍ମ ହିଁ ପ୍ରଧାନ ସହାୟ । ଭଗବାନ୍ ଶ୍ରୀକୃଷ୍ଣ ଦର୍ଶନଶାସ୍ତ୍ରଶିରୋମଣି ଶ୍ରୀମଦ୍‌ଭଗବତ୍‌ଗୀତାରେ କହିଯାଇଛନ୍ତି–

''ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମକାରଣମୁଚ୍ୟତେ ।''

ସୁତରାଂ, କର୍ମତ୍ୟାଗ ଜୀବପକ୍ଷରେ ପ୍ରକୃତ ଅମଙ୍ଗଳର ନିଦାନ । ଆହୁରି ମଧ୍ୟ କେହି ଯଦି ପ୍ରାକୃତ ଦେହ ତ୍ୟାଗ କରି ଅପ୍ରାକୃତ ଦେହ ପ୍ରାପ୍ତ ହୁଅନ୍ତି ଏବଂ ଯୋଗରେ ସୁପ୍ରତିଷ୍ଠିତ ହୋଇପାରନ୍ତି, କେବଳ ତାଙ୍କପକ୍ଷରେ କର୍ମତ୍ୟାଗ ସୁବିଧାଜନକ । ତେଣୁ ଗୀତାରେ ପୁଣି କୁହାଯାଇଛି–

''ଯୋଗାରୂଢ଼ସ୍ୟ ତସ୍ୟୈବ ଶମଃ କାରଣମୁଚ୍ୟତେ ।''

କିନ୍ତୁ ତାହା ସାଧାରଣ ଜୀବଭାବରେ ସମ୍ଭବ ହୁଏ ନାହିଁ । ଅତଏବ କର୍ମ ହିଁ ଜୀବର ପ୍ରଧାନ ଅବଲମ୍ବନ, କର୍ମ ସର୍ବପ୍ରକାର ଉନ୍ନତିର ମୂଳ । କର୍ମଯୋଗ ଅବହେଳା କରି ହିନ୍ଦୁ ଆଜି ଅଧଃପତିତ । ଶାରୀରିକ ହେଉ, ସାମାଜିକ ହେଉ, ଆଧ୍ୟାତ୍ମିକ ହେଉ କିମ୍ବା ନୈତିକ ହେଉ, ହିନ୍ଦୁମାନଙ୍କର ସବୁପ୍ରକାର ଅବନତିର ମୂଳକାରଣ ଏକମାତ୍ର କର୍ମଯୋଗରେ ଅବହେଳା ।

## ଅତୀତ ଓ ବର୍ତ୍ତମାନ

ବର୍ତ୍ତମାନ ଭାରତବାସୀ ହିନ୍ଦୁସନ୍ତାନମାନଙ୍କ ଶରୀରପ୍ରତି ଦୃଷ୍ଟିପାତ କଲେ ଏବଂ ଚିତ୍ରପଟରେ ସେକାଳର ଭୀମ, କର୍ଣ୍ଣ, ଭଗଦତ୍ତ ପ୍ରଭୃତିଙ୍କ ପ୍ରତିକୃତି ପ୍ରତି ଦୃଷ୍ଟି ଦେଲେ ଅନାୟାସରେ ବୁଝାଯିବ ଯେ ବର୍ତ୍ତମାନର ଏହି ଶୃଗାଳ-ଜନନୀ ଭାରତମାତା ଦିନେ ସିଂହପ୍ରସବିନୀ ଥିଲା । ଦୁଇଟି ପଦ ସଂଯୋଗରେ ଗୋଟିଏ

ବାକ୍ୟ ରଚନା କରିବାକୁ ଘର୍ମାକ୍ତ କଳେବର ହେଉଥିବା ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିଧାରୀ ବାବୁମାନଙ୍କ ଚିନ୍ତାଶୀଳତା ସହିତ ଗଭୀର ଗବେଷଣାପୂର୍ଣ୍ଣ ଶତ ଶତ ଗ୍ରନ୍ଥର ପ୍ରଣୟନକର୍ତ୍ତା ବ୍ୟାସ, ବାଲ୍ମୀକି, ଜୈମିନୀ ପ୍ରଭୃତି ଋଷିମାନଙ୍କର ଚିନ୍ତାଶୀଳତାର ତୁଳନା କଲେ ସ୍ୱତଃ ବୁଝିହେବ ଯେ ଏହି ଅଙ୍ଗାରଖଣିରୁ ଦିନେ ପଦ୍ମରାଗ ମଣି ବାହାରୁଥିଲା । ଯେଉଁ ସମାଜରେ ଶ୍ରୀରାମଙ୍କପରି ପିତୃଭକ୍ତ, ଲକ୍ଷ୍ମଣଙ୍କପରି ଭ୍ରାତୃଭକ୍ତ, ସୀତାଙ୍କପରି ପତିବ୍ରତା, ଜନକଙ୍କପରି ଅନାସକ୍ତ ଗୃହସ୍ଥ ବାସ କରୁଥିଲେ, ସେହି ସମାଜ ସହିତ ବର୍ତ୍ତମାନର ହିଂସା, ଦ୍ୱେଷ, କୌଟିଲ୍ୟ, ବ୍ୟଭିଚାରାଦି ପରିପୂରିତ ସମାଜର ତୁଳନା କରିବାକୁ ଗଲେ ଅନୁମିତ ହେବ ଯେ ଏହି ପିଶାଚପରିପୂର୍ଣ୍ଣ କୋଳାହଳମୟ ସମାଜ ହିଁ ଦିନେ ଶାନ୍ତିର ମଧୁର ନିକେତନ ଥିଲା ।

ଯେଉଁ ଦେଶରେ ଭୀଷ୍ମଙ୍କପରି ତ୍ୟାଗୀ, ଯୁଧିଷ୍ଠିରଙ୍କପରି ସତ୍ୟନିଷ୍ଠ ଓ ଶୁକଦେବଙ୍କପରି ବ୍ରହ୍ମଚାରୀ ନୀତିଶିକ୍ଷା ଦେଉଥିଲେ, ବର୍ତ୍ତମାନ ନୀତିବିଦ୍‌ମାନେ ଯେତେବେଳେ ରାସଲୀଳାର ଅନୁକରଣ କରିବାକୁଯାଇ ବିଧବାମାନଙ୍କ ବ୍ରହ୍ମଚର୍ଯ୍ୟମୂଳରେ କୁଠାରାଘାତ କରନ୍ତି, ତନ୍ତ୍ରୋକ୍ତ ସାଧନ ପ୍ରଚାର କରିବାକୁ ଯାଇ ପଞ୍ଚମକାର ସ୍ରୋତରେ ଦେଶ ଭସାଇଦିଅନ୍ତି ଏବଂ ବୈରାଗୀମାନେ ତ୍ୟାଗୀବେଶ ଧରି ବୈଷ୍ଣବୀସହ ବ୍ୟଭିଚାର-ସ୍ରୋତରେ ଭାସିଯାଆନ୍ତି, ସେତେବେଳେ ଆଶ୍ଚର୍ଯ୍ୟ ଲାଗେ, ଏହି ପତିତ ଦେଶରେ ଦିନେ କଦନ୍ନପୁଷ୍ଟ ଗୋବର ପୋକର ଶ୍ରୁତିକଟୁ ଭଁ ଭଁ ଶବ୍ଦ ପରିବର୍ତ୍ତରେ ମଧୁପକୂଳର କର୍ଣ୍ଣାନନ୍ଦଦାୟକ ମୃଦୁଗୁଞ୍ଜନ ଶ୍ରୁତିଗୋଚର ହେଉଥିଲା ।

ଏହିସବୁ ମହାବୈଷମ୍ୟର କାରଣ ଏକମାତ୍ର କର୍ମଯୋଗର ଅବହେଳା ଏବଂ ସମନ୍ୱୟୀଭାବପ୍ରତି ନିଶ୍ଚେଷ୍ଟତା । କର୍ମର ଅବହେଳାରେ ଜଡ଼ତାର ଉତ୍ପତ୍ତି ଏବଂ ଜଡ଼ତାରୁ ଆବିଳତାର ବୃଦ୍ଧି । ଯେଉଁଠାରେ ଆବିଳତା, ସେଠାରେ ଧର୍ମ ରହିପାରେ ନାହିଁ । ମୂଳରେ ଧର୍ମ ନ ଥିଲେ ଉନ୍ନତି ଅସମ୍ଭବ । ଅତଏବ ଯେ ପର୍ଯ୍ୟନ୍ତ ହିନ୍ଦୁଜାତି କର୍ମମାହାତ୍ମ୍ୟ ବୁଝି ନ ପାରିବେ, ସେପର୍ଯ୍ୟନ୍ତ ହିନ୍ଦୁମାନଙ୍କ ଉନ୍ନତି ଆକାଶକୁସୁମପରି ଅସମ୍ଭବ । କର୍ମସାହାଯ୍ୟରେ ସମନ୍ୱୟୀଭାବ ଆଣିପାରିଲେ ପ୍ରକୃତ ଧର୍ମ ଲାଭ ହେବ । ଧର୍ମକୁ ଭିତ୍ତି କରିପାରିଲେ ଉନ୍ନତି ଅବଶ୍ୟମ୍ଭାବୀ ।

## ଉପାୟ

ସମସ୍ତେ ଯୋଗସାଧନପାଇଁ ଉଦଗ୍ରୀବ । ସମସ୍ତେ ଯୋଗୀ ହେବାକୁ ଲାଳାୟିତ; କିନ୍ତୁ ଯୋଗ-ଆସନରେ ବସି କାହାର ମନଃସଂଯୋଗ ହେଉ ନାହିଁ;

ଉତ୍ତରୋତ୍ତର ଚିତ୍ତଚାଞ୍ଚଲ୍ୟ ବୃଦ୍ଧି ପାଉଛି । ଅଭୀଷ୍ଟ ଦେବମୂର୍ତ୍ତି କାହାରି ଧ୍ୟାନଗମ୍ୟ ହେଉ ନାହାନ୍ତି । ଶ୍ୱାସରୋଧ ପରିବର୍ତ୍ତରେ ସମସ୍ତେ ନିରାଶାସୂଚକ ଦୀର୍ଘନିଃଶ୍ୱାସ ଛାଡୁଛନ୍ତି । ବାଳକ-ଋଷିମାନେ ତ ଦୂରର କଥା, କଳ୍ପାନ୍ତବାସୀ ସିଦ୍ଧଋଷିମାନଙ୍କ ଆସନପର୍ଯ୍ୟନ୍ତ ଟଳିଉଠିଛି । ଏହାର କାରଣ କ'ଣ ? ଗଭୀର ଗବେଷଣାସହିତ ଚିନ୍ତା କଲେ ପ୍ରତୀତ ହେବ ଯେ ସାଧକମାନେ ବୈଧୀ ମାର୍ଗ ଅନୁଯାୟୀ ଯଥାରୀତି ଦୀକ୍ଷା ଗ୍ରହଣ ନ କରି ଦୁର୍ବଳଚିତ୍ତ ମାନବପକ୍ଷରେ ନିଷିଦ୍ଧ ସହଜ ଭଜନ-ପନ୍ଥା ଅବଲମ୍ବନ କରୁଛନ୍ତି ବୋଲି ପଦେ ପଦେ ସ୍ଖଳନ ହେଉଅଛି ଏବଂ ଗୁରୁଶକ୍ତି ସାଧନର ଅନୁକୂଳ ନ ହୋଇ ପ୍ରତିକୂଳ ବୋଲି ପ୍ରତୀୟମାନ ହେଉଅଛି ।

ଶ୍ରୀଗୁରୁଦେବଙ୍କଠାରେ ସ୍ୱାର୍ଥତ୍ୟାଗର ଅଭାବ ଦେଖାଯାଉଛି । ଶିଷ୍ୟଙ୍କଠାରେ ଆତ୍ମସମର୍ପଣର ଅଭାବ ପରିଲକ୍ଷିତ ହେଉଅଛି । ଗୁରୁଦେବଙ୍କଠାରେ ଶକ୍ତି-ସାମର୍ଥ୍ୟ ନାହିଁ, ଶିଷ୍ୟଙ୍କଠାରେ ବୀଜର ପ୍ରକାଶ ନାହିଁ; ତେଣୁ ଯୋଗୀ ହେବାକୁ ଯାଇ ସାଧକମାନେ ମହାଭୋଗୀ ହୋଇଉଠୁଛନ୍ତି । ଅତଏବ ଗୁରୁମାନଙ୍କୁ ମଧ୍ୟ ବୈଧୀମାର୍ଗ ଅବଲମ୍ବନ କରିବାକୁ ପଡ଼ିବ । ଶିଷ୍ୟଙ୍କୁ ବୈଧୀମାର୍ଗ ଅନୁଯାୟୀ ଯଥାରୀତି ଗୁରୁକରଣ ସମ୍ପାଦନପୂର୍ବକ ବେଦବିଧିବିଗର୍ହିତ ଆଚରଣାଦି ପରିତ୍ୟାଗ କରିବାକୁ ପଡ଼ିବ । ତେବେ ଯାଇ ଶକ୍ତି-ସାମର୍ଥ୍ୟରେ ବୀର୍ଯ୍ୟର ପ୍ରକାଶ ହେବ ।

ଏହା ହେଲେ ଗୁରୁଙ୍କ ଗୁରୁତ୍ୱ ଦେଖି ଶିଷ୍ୟ ସ୍ତମ୍ଭିତ ହେବେ ଏବଂ ଶିଷ୍ୟଙ୍କର ବାଧ୍ୟତା ଓ ନିର୍ଭରତା ଦେଖି ଶ୍ରୀଗୁରୁଦେବ ଆତ୍ମହରା ହୋଇଯିବେ । ଶିଷ୍ୟଙ୍କ ଚକ୍ଷୁରେ ଗୁରୁଦେବ ବାଞ୍ଛାକଳ୍ପତରୁ ରୂପରେ ଦୃଷ୍ଟ ହେବେ; ଶ୍ରୀଗୁରୁଦେବଙ୍କ ଚକ୍ଷୁରେ ଶିଷ୍ୟ ଆତ୍ମପ୍ରତିବିମ୍ବବତ୍ ପ୍ରତିଭାତ ହୋଇଉଠିବେ । ପରିଶେଷରେ ଉଭୟଙ୍କ ସମବେତ ଚେଷ୍ଟାରେ ସମଗ୍ର ହିନ୍ଦୁଜାତି ଏକତାବନ୍ଧନରେ ଦୃଢ଼ବଦ୍ଧ ହୋଇ କଣ୍ଟକାକୀର୍ଣ୍ଣ ପଥରୁ କଣ୍ଟକ ଉତ୍ପାଟନ କରି ନିଜପାଇଁ ଓ ଭବିଷ୍ୟତ ବଂଶଧରମାନଙ୍କ ନିମିତ୍ତ ଦୁର୍ଗମ ପଥ ସୁଗମ କରିବେ । କ୍ରମେ-କ୍ରମେ ଅଗ୍ରସର ହୋଇ ନିକଟରେ ଥିବା ଦେବମନ୍ଦିରର ଅଭ୍ରଭେଦୀ ଚୂଡ଼ା ଦର୍ଶନ କରିପାରିବେ । ସର୍ବଶେଷରେ ମନ୍ଦିରରେ ଉପନୀତ ହୋଇ ସାଧନାରେ ବସିବାମାତ୍ରେ ସିଦ୍ଧି ଲାଭ ହେବ ।

**ଜୟଗୁରୁ**



ଜୟଗୁରୁ

ନୀଳାଚଳ ସାରସ୍ୱତ ସଂଘ, ପୁରୀ

କେନ୍ଦ୍ର ଆସନ ମନ୍ଦିର, ବୀରତୁଙ୍ଗଙ୍କ ଦ୍ୱାରା ପ୍ରକାଶିତ

# ପୁସ୍ତକ-ସୂଚୀ

## ନିଗମ ଗ୍ରନ୍ଥମାଳା

| | |
|---|---|
| * ଶ୍ରୀଶ୍ରୀଠାକୁର ନିଗମାନନ୍ଦ | ଶ୍ରୀଶ୍ରୀ ନିଗମାନନ୍ଦ କଥାମୃତ (୧,୨ ଏକତ୍ର) |
| ଶ୍ରୀଶ୍ରୀଠାକୁର ନଗମାନନ୍ଦ (ହିନ୍ଦୀ) | ଶ୍ରୀଶ୍ରୀନିଗମାନନ୍ଦ କଥାସଂଗ୍ରହ(୧,୨ ଏକତ୍ର) |
| ନିଗମ-ଲହରୀ | ତତ୍ତ୍ୱମାଳା |
| ନିଗମ-ତତ୍ତ୍ୱ | ବେଦାନ୍ତ-ବିବେକ |
| ନିଗମ ଉପଦେଶ | ପ୍ରେମିକଗୁରୁ—ଏକ ଅଧ୍ୟୟନ |
| ନୀଳାଚଳ ବାଣୀ | ଶ୍ରୀଶ୍ରୀ ଗୁରୁଗୀତା |
| ସଂସାର-ପଥେ (ଭାବନା) | ସାରସ୍ୱତ ପନ୍ଥା |
| ସଂସାର-ପଥେ (ସିଦ୍ଧିଯୋଗ) | ସାରସ୍ୱତ ଦୀକ୍ଷା |
| ସଂସାର-ପଥେ (ସାଧନା) | ନାମାମୃତ (୧ମ, ୨ୟ,୩ୟ) |
| ସଂସାର-ପଥେ (ସଂଗ୍ରାମ) | ନିରାଜନା |
| ଭକ୍ତ-ସମ୍ମିଳନୀ | ସାରସ୍ୱତ ସତୀ ନୀତି |
| ସାରସ୍ୱତ ସଂଘନୀତି | ପ୍ରଣତି ଶତକ(୧,୨,୩,୪,୫) |
| * ସତୀଚରିତମାଳା (୧,୨,୩ ଏକତ୍ର) | ପ୍ରାର୍ଥନା ଶତକ |
| | ନିଗମ-ସଙ୍ଗୀତ |

## ସାଧୁଚରିତମାଳା

* ଭଗବାନ ଶଙ୍କରାଚାର୍ଯ୍ୟ

(ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କାରପ୍ରାପ୍ତ)

## ଶ୍ରୀମତୀ ନାରାୟଣୀ ଦେବୀଙ୍କ ପ୍ରଣୀତ

ଶ୍ରୀଶ୍ରୀ ନିଗମାନନ୍ଦ ଜୀବନ-ପ୍ରସଙ୍ଗ (୧ମ, ୨ୟ)

ପିଲାଙ୍କ ନିଗମାନନ୍ଦ

ନୀଳାଚଳ ବାଣୀ (ବଙ୍ଗଳା)

## ସାରସ୍ୱତ ଗ୍ରନ୍ଥମାଳା

* ବ୍ରହ୍ମଚର୍ଯ୍ୟ ସାଧନ (ଓଡ଼ିଆ)
* ଯୋଗୀଗୁରୁ (ଓଡ଼ିଆ)
* ଜ୍ଞାନୀଗୁରୁ (ଓଡ଼ିଆ)
* ତାନ୍ତ୍ରିକଗୁରୁ (ଓଡ଼ିଆ)
* ପ୍ରେମିକଗୁରୁ (ଓଡ଼ିଆ)

**ଉତ୍କଳରେ ଶ୍ରୀଶ୍ରୀ ଠାକୁର ନିଗମାନନ୍ଦ ଓ ଭାଇ ଦୁର୍ଗାଚରଣ (୧ମ,୨ୟ,୩ୟ,୪ର୍ଥ)**

ପୁରାତନ ସଂଘ-ସେବକ—ବର୍ଷ ପ୍ରତି ଟ୧୦୦.୦୦

* ଚିହ୍ନିତ ପୁସ୍ତକମାନ ଡି.ପି.ଆଇଙ୍କ ନଂ 27983 (471) Dated 23.9.59 ଓ ନଂ 37154(58) Dated 28.12.71 ବିଜ୍ଞାପନ ଦ୍ୱାରା ପ୍ରାଇଜ୍-ଲାଇବ୍ରେରୀ ପୁସ୍ତକ ରୂପେ ଗୃହୀତ ।

## ଅନ୍ୟାନ୍ୟ ସହଯୋଗୀ ପୁସ୍ତକ

ଶ୍ରୀଗୁରୁ

ଭାଇ

ସଂଘସେବୀର ଆଦର୍ଶ ଓ ଆଚରଣ ବିଧି

ନୀଳାଚଳ ସାରସ୍ୱତ ସଂଘ ଇତିହାସ

ଆଦର୍ଶ ଗୁରୁପ୍ରାଣ ଦୁର୍ଗାଚରଣ ଭାଇ

---

## ଯୋଗାଯୋଗ ଠିକଣା

Nilachala Saraswata Sangha, Puri

Kendra Asana Mandira, Biratunga

At/P.O.- Biratunga, Dist-Puri

Pin-752116

